# କବିଚନ୍ଦ୍ରର ରଚନାବଳୀ



ସଂପାଦନା:

ଡକ୍ଟର ଦୁର୍ଗାମାଧବ ନନ୍ଦ

# କପିଳେଶ୍ୱର ରଚନାବଳୀ

[ ପ୍ରଥମ ଭାଗ ]

ସମ୍ପାଦନା :
ଡକ୍ଟର ଦୁର୍ଗାମାଧବ ନନ୍ଦ
ପ୍ରାଧ୍ୟାପକ, ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଖଲ୍ଲିକୋଟ ମହାବିଦ୍ୟାଳୟ (ସ୍ୱୟଂଶାସିତ), ବ୍ରହ୍ମପୁର

ଶ୍ରୀମତୀ ନିରୁପମା ଦାସ
କପିଳେଶ୍ୱର ସ୍ମୃତି ସଂସଦ, ଶଙ୍ଖୁଡ଼ିଖୋଲ, ଗଞ୍ଜାମ

# କପିଳେଶ୍ୱର ରଚନାବଳୀ

( ପ୍ରଥମ ଭାଗ )


ସମ୍ପାଦକ ଓ ସଂଗ୍ରାହକ :

**ଡକ୍ଟର ଦୁର୍ଗାମାଧବ ନନ୍ଦ**

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ

ଖଲ୍ଲିକୋଟ ମହାବିଦ୍ୟାଳୟ (ସ୍ୱୟଂଶାସିତ)

ବ୍ରହ୍ମପୁର, ଗଞ୍ଜାମ



ପ୍ରକାଶକ :

**ଶ୍ରୀମତୀ ନିରୁପମା ଦାସ**

ମାର୍ଫତ :

**ଶ୍ରୀ ଗଣେଶ୍ୱର ଦାସ**

ଗ୍ରାମ/ପୋ-ଚିଙ୍ଗୁଡ଼ିଖୋଲ

କୋଦଳା-୭୬୧୦୩୨, ଗଞ୍ଜାମ

ଦୂରଭାଷ : ୦୬୮୧୦-୬୭୬୨୭

ଦ୍ୱିତୀୟ ପରିବର୍ଦ୍ଧିତ ନୂତନ ସଂସ୍କରଣ :

**ନବବର୍ଷ—୧-୧-୨୦୦୧**

**କପିଳେଶ୍ୱର ସ୍ମୃତିସଂସଦ**

ଗ୍ରାମ/ପୋଷ୍ଟ : ଚିଙ୍ଗୁଡ଼ିଖୋଲ

ଭାୟା-କୋଦଳା, ଗଞ୍ଜାମ, ପି-୭୬୧୦୩୨

ଦୂରଭାଷ-୦୬୮୧୦-୬୭୬୨୭

ମୁଦ୍ରାକର :

ଶ୍ରୀ ଅଭିମନ୍ୟୁ ପାଢ଼ୀ

ସନ୍ତୋଷ ପ୍ରିଣ୍ଟର୍ସ

ପୁରୁଣା ବ୍ରହ୍ମପୁର ସାହି

ବ୍ରହ୍ମପୁର-୭୬୦୦୦୯

ମୂଲ୍ୟ :

ଟ ୧୫୦-୦୦


# KAPILESWAR-RACHANAVALI

(First Part)


*Edited by* :

**Dr. Durgamadhab Nanda**

Reader, P.G. Dept. of Oriya

Khallikote College(Autonomcus)

Berhampur-760001



*Published by* :

**Smt. Nirupama Das**

C/o **Sri Ganeswar Das**

At/PO. Chingudikhole

Kodala-761032 Ganjam

Phone-06810-67627

*2nd Enlarged New Edition* :

**New Year. 1-1-2001**

**Kapileswar Smrutisansad**

At/Po-Chingudikhole

Via ; Kodala, Dist. Ganjam

Pin-761032

Phone-06810-67627

*Printer* :

Abhimanyu Padhi

**Santosh Printers**

Old Berhampur Street

Berhampur-760009

*Price* :

**Rs.** 150-00

## ସଂକଳନ ସପକ୍ଷରେ..........

ବଣର ମାଳତୀ ପରି ଦକ୍ଷିଣ ଓଡ଼ିଶାର କେଉଁ ସୁଦୂର ପଲ୍ଲୀ ଟିଙ୍ଗୁଡ଼ି-ଖୋଲରେ ଜନ୍ମଗ୍ରହଣ କରି କପିଳେଶ୍ୱର ନିଜର ଅପୂର୍ବ ନିଷ୍ଠା ଓ ସାଧନାବଳରେ ଓଡିଆ ସାହିତ୍ୟ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିଯାଇଥିଲେ ମଧ୍ୟ ଆଜିର ସୁଧୀବର୍ଗଙ୍କ ନିକଟରେ ଅଜ୍ଞାତପ୍ରାୟ । ୧୯୩୦ ଖ୍ରୀଷ୍ଟାବ୍ଦରୁ ଏକାଦିକ୍ରମେ ୧୯୭୦ ମସିହା ପର୍ଯ୍ୟନ୍ତ ଶତାଧିକ ପ୍ରବନ୍ଧ, ଓଡ଼ିଆ ଓ ଇଂରେଜୀ ଭାଷାରେ ଲେଖିଯାଇଥିଲେ ମଧ୍ୟ ଓଡ଼ିଆ ପ୍ରବନ୍ଧ ସାହିତ୍ୟର କ୍ରମବିକାଶ ସମ୍ପର୍କରେ ଆଲୋଚନା କଲାବେଳେ ଆଜିର ସମାଲୋଚକଗଣ ତା'ଙ୍କୁ ତଥା ତାଙ୍କର ଅବଦାନକୁ ସ୍ୱୀକୃତି ଦେବାରେ ଯେପରି କୁଣ୍ଠିତ ଚିତ୍ତ ପ୍ରଦର୍ଶନ କରିଛନ୍ତି, ଏବଂ କରୁଛନ୍ତି ତାହା ବାସ୍ତବରେ ଅତ୍ୟନ୍ତ କ୍ଷୋଭର ବିଷୟ । ଲେଖକ ଯଦି ଓଡ଼ିଶାର କେନ୍ଦ୍ରାଞ୍ଚଳରେ ଜନ୍ମଗ୍ରହଣ କରିଥାନ୍ତେ, ତେବେ ବିଶିଷ୍ଟ ପ୍ରାବନ୍ଧିକ ଭାବେ ସମ୍ମାନିତ ହେଉଥାନ୍ତେ । ହାୟରେ ଦୁର୍ଭାଗା ଦେଶ ! ପ୍ରତିଭାର ଆକଳନ କାଳରେ ମଧ୍ୟ ଏହି ନିଷ୍ଠୁର ପକ୍ଷପାତ ବିଚାର ! ଏଥିପାଇଁ ହିଁ ଏହି ସଂକଳନର ଆବଶ୍ୟକତା ଯଥେଷ୍ଟ ବେଶୀ ।

ବିଂଶ ଶତାବ୍ଦୀର ୩ୟ ଓ ୪ର୍ଥ ଦଶକରେ ଲେଖକଙ୍କୁ ଲୋକଲୋଚନକୁ ଆଣିବାରେ ଓଡିଶାର ଯେଉଁ ଓଡ଼ିଆ ପତ୍ରପତ୍ରିକାଗୁଡ଼ିକ ବିଶେଷ ଭୂମିକା ଗ୍ରହଣ କରିଥିଲେ, ତନ୍ମଧ୍ୟରେ ସହକାର, ନବଭାରତ, ଚତୁରଙ୍ଗ, ଝଙ୍କାର, ଶତାବ୍ଦୀ, ନବୀନ, ଆଲୋକ ଓ ବାଣୀ ପ୍ରଭୃତି ଏବଂ ପ୍ରବୁଦ୍ଧଭାରତ, ବେଦାନ୍ତକେଶରୀ, ମୋଡ଼ର୍ଣ୍ଣ ରିଭ୍ୟୁ, ଏଡୁକେଶନେଲ ଇଣ୍ଡିଆ, ତ୍ରିବେଣୀ ଓ ଧର୍ମରାଜ୍ୟ ଆଦି ଇଂରେଜୀ ପତ୍ରିକା ଅନ୍ୟତମ । ବର୍ତ୍ତମାନ ପର୍ଯ୍ୟନ୍ତ ଆମର ଆୟାସଲବ୍ଧମେ ସଂଗୃହୀତ ସମସ୍ତ ପ୍ରବନ୍ଧ, ଅନୁବାଦ, ସମ୍ପାଦକୀୟ ଆଦିର ଏକ ତାଲିକା ଏହି ଗ୍ରନ୍ଥରେ ପାଠକମାନଙ୍କ ଦୃଷ୍ଟି-ଗୋଚର ନିମନ୍ତେ ଅନ୍ୟତ୍ର ପ୍ରଦାନ କରଯାଇଛି । ସେଥିରୁ ସେ ଜଣେ ଦକ୍ଷ ଗଦ୍ୟସ୍ରଷ୍ଟା, ବଳିଷ୍ଠ ସମ୍ପାଦକ ଓ କୁଶଳୀ ଅନୁବାଦକ ଥିବାର ପ୍ରମାଣ ସହଜରେ ଯେ କୌଣସି ବ୍ୟକ୍ତିର ଉପଲବ୍ଧି ହୋଇପାରିବ, ଏଥିରେ ଦ୍ୱିମତର ଅବକାଶ ନାହିଁ ।

କପିଳେଶ୍ୱର ଥିଲେ ଜଣେ ଋଷିପ୍ରତିମ, ଛାତ୍ରବତ୍ସଳ ଶିକ୍ଷକ । ଇଂରେଜୀ ଓ ଦର୍ଶନରେ ଏମ୍.ଏ. ପାଶ କଲାପରେ ଶିକ୍ଷକତାକୁ ବୃତ୍ତିରୂପେ ବାଛିନେଇ ଜଣେ ଆଦର୍ଶ ଶିକ୍ଷକ ଭାବେ ସେ ଇଚ୍ଛାପୁର, ନରସିଂହପେଟା, ପୁରୁଷୋତ୍ତମପୁର ଓ ବୁଗୁଡ଼ା ହାଇସ୍କୁଲରେ କାର୍ଯ୍ୟକରି ଅଗଣିତ ଛାତ୍ରଛାତ୍ରୀଙ୍କୁ ନିଜର କର୍ତ୍ତବ୍ୟନିଷ୍ଠା ଓ ଶିକ୍ଷାଦାନ ପଦ୍ଧତି ମାଧ୍ୟମରେ ଯେପରି ପ୍ରଭାବିତ କରିଯାଇଛନ୍ତି, ତାହାର ପଟାନ୍ତର ନାହିଁ । ଶିକ୍ଷକ ଜୀବନ ଶେଷ ହେବାର ଅବ୍ୟବହିତ ପୂର୍ବରୁ କିଛି ବର୍ଷ ଖଲ୍ଲିକୋଟରେ ନୂତନ ଭାବେ ଗଢ଼ି ଉଠିଥିବା ରାମଚନ୍ଦ୍ର ମର୍ଦ୍ଦରାଜ ମହାବିଦ୍ୟାଳୟର, ଅଧ୍ୟକ୍ଷ ଦାୟିତ୍ୱ ସମ୍ପାଦନ କରିବା ନିମନ୍ତେ ରାଜାଙ୍କର ଆହ୍ୱାନକୁ ସେ ସାଦରେ ଗ୍ରହଣ କରିଥିଲେ ଏବଂ ମହାବିଦ୍ୟାଳୟରେ ସାଂସ୍କୃତିକ ବାତାବରଣ ସୃଷ୍ଟି କରିବାରେ ନିଜର ଦକ୍ଷତା ମଧ୍ୟ ପ୍ରତିପାଦନ କରିଯାଇଛନ୍ତି ।

ଶୁଆ ମୂଲ ନିଜେ ନ ଗାଇଲା ପରି କପିଳେଶ୍ୱର କେଉଁଠି ନିଜର ଗର୍ବ, ଆଡମ୍ବର ତଥା ପ୍ରୌଢ଼ି ଉଲ୍ଲେଖ କରିଯାଇ ନାହାନ୍ତି । ନିଜର ଆତ୍ମଚରିତ ନିଜେ ଲେଖିବାକୁ ପସନ୍ଦ କରିନଥିଲେ । ବହୁ ବ୍ୟକ୍ତିଙ୍କ ଅନୁରୋଧରେ ଜୀବନର ଶେଷକାଳରେ କେବଳ ନିଜର ସ୍ମୃତିର ରୋମନ୍ଥନ କରି ଯାହାକିଛି କହି ଯାଇଛନ୍ତି ସେ ସବୁର ଆଲୋଚ୍ୟ ଗ୍ରନ୍ଥର ଅନ୍ୟତ୍ର "ଆତ୍ମଚରିତ ନୁହେଁ; "ଆତ୍ମକଥନ" ପର୍ଯ୍ୟାୟରେ ଉଲ୍ଲେଖ କରାଯାଇଛି ମାତ୍ର ।

ବନସ୍ତର କଣ୍ଟା ଗୋଡ଼ାପରି କପିଳେଶ୍ୱର ନିଜ ଗୋଡ଼ରେ ନିଜେ ଠିଆ ହୋଇ ଓଡ଼ିଆ ଓ ଇଂରାଜୀ ସାହିତ୍ୟର ପ୍ରବନ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ସମସ୍ତେ ଜାଣନ୍ତି ଯେ, ପ୍ରବନ୍ଧ ଲେଖିବା ଏକ କଷ୍ଟକର କାର୍ଯ୍ୟ । ଯୁଗେ ଯୁଗେ "ଗଦ୍ୟ କବିନାଂ ନିକଷାଂ ବଦନ୍ତି" । ତଥାପି ମରୁଭୂମିରେ ଓଟ କଣ୍ଟା ଖାଇ ଜୀବନଧାରଣ କଲାପରି, ସେ ପ୍ରବନ୍ଧ ରଚନା ଦିଗରେ ଆଗ୍ରହ ପ୍ରକାଶ କରିଥିଲେ । ସେ ସବୁ ତାଙ୍କ ନିଜସ୍ୱ ଶୈଳୀରେ ଛନ୍ଦିମନ୍ତ । ପାଶ୍ଚାତ୍ୟ ସମାଲୋଚକ "ବେକନ୍" ପ୍ରବନ୍ଧର ସଂଜ୍ଞା ସଂପର୍କରେ ଯାହା ଉଲ୍ଲେଖ କରିଛନ୍ତି ସେ ସବୁ ଏହି ମହାନ୍ ପ୍ରାବନ୍ଧିକଙ୍କ ପ୍ରବନ୍ଧ ପାଇଁ ଏକାନ୍ତ ଭାବେ ପ୍ରଯୁଜ୍ୟ । ସେ ଉଲ୍ଲେଖ କରିଛନ୍ତି ଯେ—"ପ୍ରାବନ୍ଧିକର ସୁଚିନ୍ତିତ ଓ ସୁସଂହତ ଚିନ୍ତାଧାରାର ପରିପ୍ରକାଶ ହିଁ ପ୍ରବନ୍ଧ । ଏହା ସକଳ ଆବର୍ଜନା ରହିତ ତଥା ଅନୁଭୂତି ପ୍ରେରିତ ଏକ ଉତ୍କୃଷ୍ଟ ଗଦ୍ୟ ରଚନା । ଅଭିଜ୍ଞତାର ସ୍ତରେ ସ୍ତରେ ଏହା ଅନୁଭବ୍ୟ ।" (Becon's Essays, Edited by F. G. Selby, Macmillan Education Ltd London, Page Introduction'—XVI) କପିଳେଶ୍ୱରଙ୍କ ପ୍ରବନ୍ଧ ସମୂହକୁ ଏହି ଦୃଷ୍ଟିରୁ ବିଚାର କରାଯାଇପାରେ । ବସ୍ତୁତଃ ଅସୀମର ଆହ୍ୱାନ, ଜୀବନ ପ୍ରବାହ, ସସୀମ ଓ ଅସୀମ; ସଂସ୍କାର, ବିପ୍ଳବ,

ଆତ୍ମସମର୍ପଣ, ସ୍ନେହର ସେତୁବନ୍ଧ, ବେଦାନ୍ତ ଓ ବିଶ୍ୱଶାନ୍ତି, ସେକେଣ୍ଡରି ଶିକ୍ଷାର ପୁନର୍ଗଠନ, ଇତିହାସର ଶିକ୍ଷଣୀୟତା ସାହିତ୍ୟ ଓ ଜୀବନ (ପ୍ରଥମ ଓ ୨ୟ ଭାଗ), ମିଳନମଣ୍ଡପ, ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ, ବିଶାଖ ପାଟଣା ଓଡିଆ ସମସ୍ୟା, ଜୀବନ ଉପାସନା ପ୍ରଭୃତି ପ୍ରବନ୍ଧରୁ ଏହାର ସତ୍ୟତା ପ୍ରତିପନ୍ନ ହୋଇଥାଏ ।

—୨—

କପିଳେଶ୍ୱରଙ୍କ ପ୍ରବନ୍ଧ ସମୂହକୁ ବୃତ୍ତିଗତ ବିଭାଜନ କଲେ ଜଣାଯାଏ ଯେ ସେ ମନ୍ମୟ ଓ ତନ୍ମୟ, ଉଭୟ ପ୍ରକାରର ପ୍ରବନ୍ଧମାନ ସୃଷ୍ଟି କରିଯାଇଛନ୍ତି । ଅସୀମର ଆହ୍ୱାନ, ଜୀବନ ପ୍ରବାହ, ଆତ୍ମସମର୍ପଣ, ସ୍ନେହର ସେତୁବନ୍ଧ, ସଂସ୍କାର, ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ, କବିବର ସ୍ମୃତି ପ୍ରଭୃତି ପ୍ରବନ୍ଧରେ ସେ ଆତ୍ମାନୁଭୂତ ପ୍ରେରିତ ଘଟଣାକୁ ହିଁ ଉଲ୍ଲେଖ କରିଥିବା ପରିଦୃଷ୍ଟ ହୁଏ । ବୁଦ୍ଧି ଅପେକ୍ଷା ପାଠକୀୟ ସହୃଦୟତା ସୃଷ୍ଟି କରିବାର ମାତ୍ରା ଏଗୁଡ଼ିକରେ ଅଧିକ । ବିଷୟବସ୍ତୁ ପ୍ରଧାନ ଅପେକ୍ଷା ଲେଖକଙ୍କ ହୃଦୟବତ୍ତା ଏ ସମସ୍ତ ପ୍ରବନ୍ଧକୁ ଭାବସର୍ବସ୍ୱ କରିପାରିଛି । ଉଦାହରଣ ସ୍ୱରୂପ "ଜୀବନ ପ୍ରବାହ" ପ୍ରବନ୍ଧର ଶେଷ ଭାଗରେ ପାଠକମାନଙ୍କୁ ସଚେତନ କରିବା ନିମନ୍ତେ ଲେଖକଙ୍କ ବ୍ୟକ୍ତିନିଷ୍ଠ ଉଦ୍ୟମକୁ ଲକ୍ଷ୍ୟ କରାଯାଇପାରେ । ଯଥା "ଜୀବନର ଅନ୍ତର୍ନିହିତ ଶକ୍ତି, ସମ୍ଭାବନା, ସୃଜନ କ୍ରିୟାକୁ ବିଭିନ୍ନ ଅବସ୍ଥାରେ ଗୋଟାଏ ନିରୁପଦ୍ରବ କଳାବନ୍ତ ପର୍ଯ୍ୟାୟ ପ୍ରକରଣରେ ଅନ୍ତର୍ଭୁକ୍ତ କରି ଫୁଟାଇବାର ଶିକ୍ଷଣୀୟ ପନ୍ଥା ହିଁ ଆଶ୍ରମ ଧର୍ମ । ଆମେ ଏବେ ମଧ୍ୟ ସେହି ଧର୍ମର ସାରାଂଶକୁ ଠିକ୍ ଭାବରେ ଅଧୁନାତନ ପ୍ରକରଣରେ ଅବଲମ୍ବନ କଲେ ଆମର ଅନେକ ଅସାମଞ୍ଜସ୍ୟ ଓ ବିଘାତ ଦୂର ହୋଇଯିବ ବୋଲି ମୋର ଗଭୀର ବିଶ୍ୱାସ । ତାହା ହେଲେ ଆମର ଜୀବନ ପ୍ରବାହରେ ଏବେ ଦେଖାଦେଇଥିବା ଅବରୁଦ୍ଧି ଅନେକ ଦୂର ଘୁଞ୍ଚିଯାଇ ତାହା ସ୍ୱଚ୍ଛଳ ଗତିଶୀଳ, ପୂର୍ଣ୍ଣକାମ ହେବ ବୋଲି ମୋର ଏକାନ୍ତ ବିଶ୍ୱାସ ।" (କପିଳେଶ୍ୱର ରଚନାବଳୀ, ପୃ ୯) କିନ୍ତୁ ତନ୍ମୟ ତଥା ବସ୍ତୁନିଷ୍ଠ ପ୍ରବନ୍ଧ ରଚନାରେ ହିଁ କପିଳେଶ୍ୱର ସିଦ୍ଧହସ୍ତ ଥିଲେ । ଯେହେତୁ ସେ ଜଣେ ଗମ୍ଭୀର, ଦୃଢ଼ବ୍ରତ, ଚିନ୍ତାଶୀଳ, ପ୍ରଜ୍ଞାବାନ ବ୍ୟକ୍ତି ଥିଲେ, ତେଣୁ ତାଙ୍କ ଲେଖନୀରୁ ଚିନ୍ତାପ୍ରଧାନ, ଗୁରୁଗମ୍ଭୀର, ଯୁକ୍ତିନିଷ୍ଠ ପ୍ରବନ୍ଧ ସୃଷ୍ଟି ହେବା ଆଦୌ ଅସମ୍ଭବ ନଥିଲା । ତାଙ୍କର ଅଧିକାଂଶ ପ୍ରବନ୍ଧ, ଯଥା—ବେଦାନ୍ତ ଓ ବିଶ୍ୱଶାନ୍ତି, ଇତିହାସର ଆର୍ଥନୀତିକ ଅନୁଶୀଳନ, ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ ସକ୍ରେଟିସ, ସସୀମ ଓ ଅସୀମ, ଅସୀମର ଆହ୍ୱାନ, ଜୀବନ ପ୍ରବାହ, ବିଶାଖପାଟଣା ଓଡିଆ ସମସ୍ୟା, କଳାର ସ୍ୱରୂପ, ଜୀବନ ଉପାସନା, ସାହିତ୍ୟ ଓ ଜୀବନ, ମିଳନ ମଣ୍ଡପ ଆଦି ଏହି ଶ୍ରେଣୀୟ ଅଟେ । ଏ ସମସ୍ତରୁ ତାଙ୍କର ଅଧ୍ୟୟନଶୀଳତା, ଅଭିଜ୍ଞତା ତଥା ଜ୍ଞାନର ଗଭୀରତା ସ୍ପଷ୍ଟରୂପେ ଯେ କୌଣସି ପାଠକର ଉପଲବ୍ଧି ହୋଇପାରିବ । ପୃଥିବୀର ବହୁ ସମସ୍ୟା ଏବଂ ତଥ୍ୟ ପରିବେଷଣ

## ସଂକଳନ ସପକ୍ଷରେ.........

ବଣର ମାଳତୀ ପରି ଦକ୍ଷିଣ ଓଡ଼ିଶାର କେଉଁ ସୁଦୂର ପଲ୍ଲୀ ଟିଙ୍ଗୁଡ଼ି-ଖୋଲରେ ଜନ୍ମଗ୍ରହଣ କରି କପିଳେଶ୍ୱର ନିଜର ଅପୂର୍ବ ନିଷ୍ଠା ଓ ସାଧନାବଳରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିଯାଇଥିଲେ ମଧ୍ୟ ଆଜିର ସୁଧୀବର୍ଗଙ୍କ ନିକଟରେ ଅଜ୍ଞାତପ୍ରାୟ । ୧୯୩୦ ଖ୍ରୀଷ୍ଟାବ୍ଦରୁ ଏକାଦିକ୍ରମେ ୧୯୭୦ ମସିହା ପର୍ଯ୍ୟନ୍ତ ଶତାଧିକ ପ୍ରବନ୍ଧ, ଓଡ଼ିଆ ଓ ଇଁରେଜୀ ଭାଷାରେ ଲେଖିଯାଇଥିଲେ ମଧ୍ୟ ଓଡ଼ିଆ ପ୍ରବନ୍ଧ ସାହିତ୍ୟର କ୍ରମବିକାଶ ସମ୍ପର୍କରେ ଆଲୋଚନା କଲାବେଳେ ଆଜିର ସମାଲୋଚକଗଣ ତା'ଙ୍କୁ ତଥା ତାଙ୍କର ଅବଦାନକୁ ସ୍ୱୀକୃତି ଦେବାରେ ଯେପରି କୁଣ୍ଠିତ ଚିତ୍ତ ପ୍ରଦର୍ଶନ କରିଛନ୍ତି, ଏବଂ କରୁଛନ୍ତି ତାହା ବାସ୍ତବରେ ଅତ୍ୟନ୍ତ କ୍ଷୋଭର ବିଷୟ । ଲେଖକ ଯଦି ଓଡ଼ିଶାର କେନ୍ଦ୍ରାଞ୍ଚଳରେ ଜନ୍ମଗ୍ରହଣ କରିଥାନ୍ତେ, ତେବେ ବିଶିଷ୍ଟ ପ୍ରାବନ୍ଧିକ ଭାବେ ସମ୍ମାନିତ ହେଉଥାନ୍ତେ । ହାୟରେ ଦୁର୍ଭାଗା ଦେଶ ! ପ୍ରତିଭାର ଆକଳନ କାଳରେ ମଧ୍ୟ ଏହି ନିଷ୍ଠୁର ପକ୍ଷପାତ ବିଚାର ! ଏଥିପାଇଁ ହିଁ ଏହି ସଂକଳନର ଆବଶ୍ୟକତା ଯଥେଷ୍ଟ ବେଶୀ ।

ବିଂଶ ଶତାବ୍ଦୀର ୩ୟ ଓ ୪ର୍ଥ ଦଶକରେ ଲେଖକଙ୍କୁ ଲୋକଲୋଚନକୁ ଆଣିବାରେ ଓଡିଶାର ଯେଉଁ ଓଡ଼ିଆ ପତ୍ରପତ୍ରିକାଗୁଡ଼ିକ ବିଶେଷ ଭୂମିକା ଗ୍ରହଣ କରିଥିଲେ, ତନ୍ମଧ୍ୟରେ ସହକାର, ନବଭାରତ, ଚତୁରଙ୍ଗ, ଝଙ୍କାର, ଶତାବ୍ଦୀ, ନବୀନ, ଆଲୋକ ଓ ବୀଣା ପ୍ରଭୃତି ଏବଂ ପ୍ରବୁଦ୍ଧଭାରତ, ବେଦାନ୍ତକେଶରୀ, ମୋଡ଼ର୍ଣ୍ଣ ରିଭ୍ୟୁ, ଏଡୁକେଶନେଲ ଇଣ୍ଡିଆ, ତ୍ରିବେଣୀ ଓ ଧର୍ମରାଜ୍ୟ ଆଦି ଇଁରେଜୀ ପତ୍ରିକା ଅନ୍ୟତମ । ବର୍ତ୍ତମାନ ପର୍ଯ୍ୟନ୍ତ ଆମର ଆୟାସକ୍ରମେ ସଂଗୃହୀତ ସମସ୍ତ ପ୍ରବନ୍ଧ, ଅନୁବାଦ, ସମ୍ପାଦକୀୟ ଆଦିର ଏକ ତାଲିକା ଏହି ଗ୍ରନ୍ଥରେ ପାଠକମାନଙ୍କ ଦୃଷ୍ଟି-ଗୋଚର ନିମନ୍ତେ ଅନ୍ୟତ୍ର ପ୍ରଦାନ କରାଯାଇଛି । ସେଥିରୁ ସେ ଜଣେ ଦକ୍ଷ ଗଦ୍ୟସ୍ରଷ୍ଟା, ବଳିଷ୍ଠ ସମ୍ପାଦକ ଓ କୁଶଳୀ ଅନୁବାଦକ ଥିବାର ପ୍ରମାଣ ସହଜରେ ଯେ କୌଣସି ବ୍ୟକ୍ତିର ଉପଲବ୍ଧି ହୋଇପାରିବ, ଏଥିରେ ଦ୍ୱିମତର ଅବକାଶ ନାହିଁ ।

କପିଳେଶ୍ୱର ଥିଲେ ଜଣେ ଋଷିପ୍ରତିମ, ଛାତ୍ରବତ୍ସଳ ଶିକ୍ଷକ । ଇଁରେଜୀ ଓ ଦର୍ଶନରେ ଏମ୍.ଏ. ପାଶ କଲାପରେ ଶିକ୍ଷକତାକୁ ବୃତ୍ତିରୂପେ ବାଛିନେଇ ଜଣେ ଆଦର୍ଶ ଶିକ୍ଷକ ଭାବେ ସେ ଇଚ୍ଛାପୁର, ନରସିଂହପେଟା, ପୁରୁଷୋତ୍ତମପୁର ଓ ବୁଗୁଡ଼ା ହାଇସ୍କୁଲରେ କାର୍ଯ୍ୟକରି ଅଗଣିତ ଛାତ୍ରଛାତ୍ରୀଙ୍କୁ ନିଜର କର୍ତ୍ତବ୍ୟନିଷ୍ଠା ଓ ଶିକ୍ଷାଦାନ ପଦ୍ଧତି ମାଧ୍ୟମରେ ଯେପରି ପ୍ରଭାବିତ କରିଯାଇଛନ୍ତି, ତାହାର ପଟାନ୍ତର ନାହିଁ । ଶିକ୍ଷକ ଜୀବନ ଶେଷ ହେବାର ଅବ୍ୟବହିତ ପୂର୍ବରୁ କିଛି ବର୍ଷ ଖଲ୍ଲିକୋଟରେ ନୂତନ ଭାବେ ଗଢ଼ି ଉଠିଥିବା ରାମଚନ୍ଦ୍ର ମର୍ଦ୍ଦରାଜ ମହାବିଦ୍ୟାଳୟର, ଅଧ୍ୟକ୍ଷ ଦାୟିତ୍ୱ ସମ୍ପାଦନ କରିବା ନିମନ୍ତେ ରାଜାଙ୍କର ଆହ୍ୱାନକୁ ସେ ସାଦରେ ଗ୍ରହଣ କରିଥିଲେ ଏବଂ ମହାବିଦ୍ୟାଳୟରେ ସାଂସ୍କୃତିକ ବାତାବରଣ ସୃଷ୍ଟି କରିବାରେ ନିଜର ଦକ୍ଷତା ମଧ୍ୟ ପ୍ରତିପାଦନ କରଯାଇଛନ୍ତି ।

ଶୁଆ ମୂଲ ନିଜେ ନ ଗାଇଲା ପରି କପିଳେଶ୍ୱର କେଉଁଠି ନିଜର ଗର୍ବ, ଆଡମ୍ବର ତଥା ପ୍ରୌଢ଼ି ଉଲ୍ଲେଖ କରିଯାଇ ନାହାନ୍ତି । ନିଜର ଆତ୍ମଚରିତ ନିଜେ ଲେଖିବାକୁ ପସନ୍ଦ କରିନଥିଲେ । ବହୁ ବ୍ୟକ୍ତିଙ୍କ ଅନୁରୋଧରେ ଜୀବନର ଶେଷକାଳରେ କେବଳ ନିଜର ସ୍ମୃତିର ରୋମନ୍ଥନ କରି ଯାହାକିଛି କହି ଯାଇଛନ୍ତି ସେ ସବୁର ଆଲୋଚ୍ୟ ଗ୍ରନ୍ଥର ଅନ୍ୟତ୍ର "ଆତ୍ମଚରିତ ନୁହେଁ; "ଆତ୍ମକଥନ" ପର୍ଯ୍ୟାୟରେ ଉଲ୍ଲେଖ କରଯାଇଛି ମାତ୍ର ।

ବନସ୍ତର କଣ୍ଟା ଗୋଜାପରି କପିଳେଶ୍ୱର ନିଜ ଗୋଡ଼ରେ ନିଜେ ତାଙ୍କର ଓଡ଼ିଆ ଓ ଇଁରଜୀ ସାହିତ୍ୟର ପ୍ରବନ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ସମସ୍ତେ ଜାଣନ୍ତି ଯେ, ପ୍ରବନ୍ଧ ଲେଖିବା ଏକ କଷ୍ଟକର କାର୍ଯ୍ୟ । ଯୁଗେ ଯୁଗେ "ଗଦ୍ୟ କବିନାଂ ନିକଷାଂ ବଦନ୍ତି" । ତଥାପି ମରୁଭୂମିରେ ଓଟ କଣ୍ଟା ଖାଇ ଜୀବନଧାରଣ କଲାପରି, ସେ ପ୍ରବନ୍ଧ ରଚନା ଦିଗରେ ଆଗ୍ରହ ପ୍ରକାଶ କରିଥିଲେ । ସେ ସବୁ ତାଙ୍କ ନିଜସ୍ୱ ଶୈଳୀରେ ଋଦ୍ଧିମନ୍ତ । ପାଶ୍ଚାତ୍ୟ ସମାଲୋଚକ "ବେକନ୍" ପ୍ରବନ୍ଧର ସଂଜ୍ଞା ସଂପର୍କରେ ଯାହା ଉଲ୍ଲେଖ କରିଛନ୍ତି ସେ ସବୁ ଏହି ମହାନ୍ ପ୍ରାବନ୍ଧିକଙ୍କ ପ୍ରବନ୍ଧ ପାଇଁ ଏକାନ୍ତ ଭାବେ ପ୍ରଯୁଜ୍ୟ । ସେ ଉଲ୍ଲେଖ କରିଛନ୍ତି ଯେ—"ପ୍ରାବନ୍ଧିକର ସୁଚିନ୍ତିତ ଓ ସୁସଂହତ ଚିନ୍ତାଧାରର ପରିପ୍ରକାଶ ହିଁ ପ୍ରବନ୍ଧ । ଏହା ସକଳ ଆବର୍ଜନା ରହିତ ତଥା ଅନୁଭୂତି ପ୍ରେରିତ ଏକ ଉତ୍କୃଷ୍ଟ ଗଦ୍ୟ ରଚନା । ଅଭିଜ୍ଞତାର ସ୍ତରେ ସ୍ତରେ ଏହା ଅନୁଭବ୍ୟ ।" (Becon's Essays, Edited by F. G. Selby, Macmillan Education Ltd London, Page·Introduction'–XVI) କପିଳେଶ୍ୱରଙ୍କ ପ୍ରବନ୍ଧ ସମୂହକୁ ଏହି ଦୃଷ୍ଟିରୁ ବିଚାର କରଯାଇପାରେ । ବସ୍ତୁତଃ ଅସୀମର ଆହ୍ୱାନ, ଜୀବନ ପ୍ରବାହ, ସସୀମ ଓ ଅସୀମ; ସଂସ୍କାର, ବିପ୍ଳବ,

ଆତ୍ମସମର୍ପଣ, ସ୍ନେହର ସେତୁବନ୍ଧ, ବେଦାନ୍ତ ଓ ବିଶ୍ୱଶାନ୍ତି, ସେକେଣ୍ଡରି ଶିକ୍ଷାର ପୁନର୍ଗଠନ, ଇତିହାସର ଶିକ୍ଷଣୀୟତା ସାହିତ୍ୟ ଓ ଜୀବନ (ପ୍ରଥମ ଓ ୨ୟ ଭାଗ), ମିଳନମଣ୍ଡପ, ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ, ବିଶାଖ ପାଟଣା ଓଡିଆ ସମସ୍ୟା, ଜୀବନ ଉପାସନା ପ୍ରଭୃତି ପ୍ରବନ୍ଧରୁ ଏହାର ସତ୍ୟତା ପ୍ରତିପନ୍ନ ହୋଇଥାଏ ।

—୨—

କପିଳେଶ୍ୱରଙ୍କ ପ୍ରବନ୍ଧ ସମୂହକୁ ବୃତ୍ତିଗତ ବିଭାଜନ କଲେ ଜଣାଯାଏ ଯେ ସେ ମନ୍ମୟ ଓ ତନ୍ମୟ, ଉଭୟ ପ୍ରକାରର ପ୍ରବନ୍ଧମାନ ସୃଷ୍ଟି କରିଯାଇଛନ୍ତି । ଅସୀମର ଆହ୍ୱାନ, ଜୀବନ ପ୍ରବାହ, ଆତ୍ମସମର୍ପଣ, ସ୍ନେହର ସେତୁବନ୍ଧ, ସଂସାର, ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ, କବିବର ସ୍ମୃତି ପ୍ରଭୃତି ପ୍ରବନ୍ଧରେ ସେ ଆତ୍ମାନୁଭୂତ ପ୍ରେରିତ ଘଟଣାକୁ ହିଁ ଉଲ୍ଲେଖ କରିଥିବା ପରିଦୃଷ୍ଟ ହୁଏ । ବୁଦ୍ଧି ଅପେକ୍ଷା ପାଠକୀୟ ସହୃଦୟତା ସୃଷ୍ଟି କରିବାର ମାତ୍ରା ଏଗୁଡ଼ିକରେ ଅଧିକ । ବିଷୟବସ୍ତୁ ପ୍ରଦାନ ଅପେକ୍ଷା ଲେଖକଙ୍କ ହୃଦୟବତ୍ତା ଏ ସମସ୍ତ ପ୍ରବନ୍ଧକୁ ଭାବସର୍ବସ୍ୱ କରିପାରିଛି । ଉଦାହରଣ ସ୍ୱରୂପ "ଜୀବନ ପ୍ରବାହ" ପ୍ରବନ୍ଧର ଶେଷ ଭାଗରେ ପାଠକମାନଙ୍କୁ ସଚେତନ କରିବା ନିମନ୍ତେ ଲେଖକଙ୍କ ବ୍ୟକ୍ତିନିଷ୍ଠ ଉଦ୍ୟମକୁ ଲକ୍ଷ୍ୟ କରାଯାଇପାରେ । ଯଥା "ଜୀବନର ଅନ୍ତର୍ନିହିତ ଶକ୍ତି, ସମ୍ଭାବନା, ସୃଜନ କ୍ରିୟାକୁ ବିଭିନ୍ନ ଅବସ୍ଥାରେ ଗୋଟାଏ ନିରୁପଦ୍ରବ କଳାବନ୍ତ ପର୍ଯ୍ୟାୟ ପ୍ରକରଣରେ ଅନ୍ତର୍ଭୁକ୍ତ କରି ଫୁଟାଇବାର ଶିକ୍ଷଣୀୟ ପନ୍ଥା ହିଁ ଆଶ୍ରମ ଧର୍ମ । ଆମେ ଏବେ ମଧ୍ୟ ସେହି ଧର୍ମର ସାରାଂଶକୁ ଠିକ୍ ଭାବରେ ଅଧୁନାତନ ପ୍ରକରଣରେ ଅବଲମ୍ବନ କଲେ ଆମର ଅନେକ ଅସାମଞ୍ଜସ୍ୟ ଓ ବିଘାତ ଦୂର ହୋଇଯିବ ବୋଲି ମୋର ଗଭୀର ବିଶ୍ୱାସ । ତାହା ହେଲେ ଆମର ଜୀବନ ପ୍ରବାହରେ ଏବେ ଦେଖାଦେଇଥିବା ଅବରୁଦ୍ଧି ଅନେକ ଦୂର ଘୁଞ୍ଚିଯାଇ ତାହା ସ୍ୱଚ୍ଛଳ ଗତିଶୀଳ, ପୂର୍ଣ୍ଣକାମ ହେବ ବୋଲି ମୋର ଏକାନ୍ତ ବିଶ୍ୱାସ ।" (କପିଳେଶ୍ୱର ରଚନାବଳୀ, ପୃ ୯) କିନ୍ତୁ ତନ୍ମୟ ତଥା ବସ୍ତୁନିଷ୍ଠ ପ୍ରବନ୍ଧ ରଚନାରେ ହିଁ କପିଳେଶ୍ୱର ସିଦ୍ଧହସ୍ତ ଥିଲେ । ଯେହେତୁ ସେ ଜଣେ ଗମ୍ଭୀର, ଦୃଢ଼ବ୍ରତ, ଚିନ୍ତାଶୀଳ, ପ୍ରଜ୍ଞାବାନ ବ୍ୟକ୍ତି ଥିଲେ, ତେଣୁ ତାଙ୍କ ଲେଖନୀରୁ ଚିନ୍ତାପ୍ରଧାନ, ଗୁରୁଗମ୍ଭୀର, ଯୁକ୍ତିନିଷ୍ଠ ପ୍ରବନ୍ଧ ସୃଷ୍ଟି ହେବା ଆଦୌ ଅସମ୍ଭବ ନଥିଲା । ତାଙ୍କର ଅଧିକାଂଶ ପ୍ରବନ୍ଧ, ଯଥା—ବେଦାନ୍ତ ଓ ବିଶ୍ୱଶାନ୍ତି, ଇତିହାସର ଆର୍ଥନୀତିକ ଅନୁଶୀଳନ, ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ ସକ୍ରେଟିସ, ସସୀମ ଓ ଅସୀମ, ଅସୀମର ଆହ୍ୱାନ, ଜୀବନ ପ୍ରବାହ, ବିଶାଖପାଟଣା ଓଡିଆ ସମସ୍ୟା, କଳାର ସ୍ୱରୂପ, ଜୀବନ ଉପାସନା, ସାହିତ୍ୟ ଓ ଜୀବନ, ମିଳନ ମଣ୍ଡପ ଆଦି ଏହି ଶ୍ରେଣୀୟ ଅଟେ । ଏ ସମସ୍ତରୁ ତାଙ୍କର ଅଧ୍ୟୟନଶୀଳତା, ଅଭିଜ୍ଞତା ତଥା ଜ୍ଞାନର ଗଭୀରତା ସ୍ପଷ୍ଟରୂପେ ଯେ କୌଣସି ପାଠକର ଉପଲବ୍ଧି ହୋଇପାରିବ । ପୃଥିବୀର ବହୁ ସମସ୍ୟା ଏବଂ ତଥ୍ୟ ପରିବେଷଣ

ପୂର୍ବକ ସଜ୍ଞାନର ବିସ୍ତୃତ ପରିଚୟ ପ୍ରଦାନରେ କପିଳେଶ୍ୱରଙ୍କ ବସ୍ତୁନିଷ୍ଠ ପ୍ରବନ୍ଧଗୁଡ଼ିକ ବେଶ୍ ସମର୍ଥ । ରଚନାପଟୁତା, ଚମତ୍କାର ଦୃଷ୍ଟିଭଙ୍ଗୀ, ଭବନାର ସ୍ୱଚ୍ଛନ୍ଦ ପରିପ୍ରକାଶ, ପୂର୍ବାପରକ୍ରମ ସନ୍ନିବେଶ ଓ ଏକସୂତ୍ରତା, ବଳିଷ୍ଠ ଉପକ୍ରମ ଓ ଚିନ୍ତାଶୀଳ ପରିସମାପ୍ତି ଆଦି ଲକ୍ଷଣଗୁଡ଼ିକ ତାଙ୍କର ପ୍ରବନ୍ଧ ସମୂହକୁ ଉତ୍ତୀର୍ଣ୍ଣ କରିପାରିଛି କହିଲେ ଆଦୌ ଅସଙ୍ଗତ ହେବନାହିଁ ।

ସ୍ଥୂଳତଃ କପିଳେଶ୍ୱର ଜଣେ ବହୁ ବିଷୟଗ୍ରାହୀ ପ୍ରାବନ୍ଧିକ । ତାଙ୍କ ପ୍ରବନ୍ଧ-ଗୁଡ଼ିକର ବିଷୟ ବିନ୍ୟାସ ପ୍ରତି ସମ୍ୟକ୍ ଦୃଷ୍ଟିଦେଲେ ଜଣାଯାଏ ଯେ ଇତିହାସ, ସମାଜବିଜ୍ଞାନ, ଦର୍ଶନ, ସାହିତ୍ୟ, ସଂସ୍କୃତି, ଶିକ୍ଷା ଆଦି ବହୁବିଷୟକୁ ଭିତ୍ତିକରି ସେ ଉତ୍ତମାନର ଅନେକ ପ୍ରବନ୍ଧ ସୃଷ୍ଟି କରିଯାଇଛନ୍ତି । ସେ ସବୁର ସଂକ୍ଷିପ୍ତ ପରିଚୟ ଏଠାରେ ପ୍ରଦାନ କଲେ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିକାଶକ୍ରମରେ ସେ ଯେ ଜଣେ ଦିଗବାରିଣୀ ଦୀପସ୍ତମ୍ଭ ଥିଲେ, ତାହାର ପ୍ରମାଣ ଓଡ଼ିଶାର ସୁଧୀବୃନ୍ଦ ସହଜରେ ଅବଧାରଣ କରିପାରିବେ । ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ଏଥିପାଇଁ ଆମେ ତାଙ୍କର ପ୍ରବନ୍ଧ ସମୂହର ଶ୍ରେଣୀ-ବିଭଜନ କରି ପର୍ଯ୍ୟାଲୋଚନା କରିବାକୁ ପ୍ରୟାସ କରୁଅଛୁ ।

## (କ) ଐତିହାସିକ ପ୍ରବନ୍ଧ :

ଇତିହାସକୁ ଭିତ୍ତିକରି କପିଳେଶ୍ୱର ଯେଉଁ ପ୍ରବନ୍ଧଗୁଡ଼ିକ ସୃଷ୍ଟି କରି-ଯାଇଛନ୍ତି, ତନ୍ମଧ୍ୟରେ "ଇତିହାସ ଶିକ୍ଷା", ସାମାଜିକ ଇତିହାସ, ଇତିହାସର ଆର୍ଥନୀତିକ ଅନୁଶୀଳନ, ଇତିହାସ ଉପରେ ଅର୍ଥନୀତିର ପ୍ରଭବ, ପ୍ରାଚୀନ ଭରତରେ ସ୍ୱାସ୍ଥ୍ୟରକ୍ଷା, ଅତୀତ ଭରତ, ଇତିହାସର ଶିକ୍ଷଣୀୟତା, ବସ୍ତୁପ୍ରହରଜ, ଇତିହାସ ଉପରେ ନୌଶକ୍ତିର ପ୍ରଭାବ, 'A Glance at our past, war in ancient India' ପ୍ରଭୃତି ଅନ୍ୟତମ । କଳ୍ପନା ବର୍ଜିତ ହୋଇଥିବାରୁ ଏହି ପ୍ରବନ୍ଧ-ଗୁଡ଼ିକର ବିଷୟବସ୍ତୁ ନିଛକ ସତ୍ୟ ଉପରେ ଆଧାରିତ ହେବା ସଙ୍ଗେ ସଙ୍ଗେ ସମୀକ୍ଷାତ୍ମକ ହୋଇପାରିଛି । ଆମର ଅତୀତ କ'ଣ ଥିଲା ଏବଂ ବର୍ତ୍ତମାନ ଆମେ କ'ଣ କରୁଛେ, କ'ଣ କରିବା ଉଚିତ; ତା' ଉପରେ ତାଙ୍କର ବୌଦ୍ଧିକ ବକ୍ତବ୍ୟ ବାସ୍ତବରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଉଦାହରଣ ସ୍ୱରୂପ ଦେଖନ୍ତୁ—"ମନେ ରଖିବାକୁ ହେବ; ସାମାଜିକ ଇତିହାସ ଚର୍ଚ୍ଚାରେ କୌଣସି ପୂର୍ବଘୋଷିତ ମତବାଦ, ଆସକ୍ତି ବା ଘୃଣା, ଶ୍ରେଣୀ, ଜାତିମୂଳକ ଉଚ୍ଚ ନୀଚ ଭେଦଭାବ ରଖିଲେ ଫଳ ବିଷମୟ ହୁଏ । ପ୍ରିୟ ମାତୃଭୂମି ପୁଣ୍ୟଭୂମି ଭାରତରେ ବାୟୁମଣ୍ଡଳ ଆଜି ବିଭିନ୍ନ ତଥାକଥିତ ଧର୍ମାବଲମ୍ବୀଙ୍କ ସଂଘର୍ଷ, ପ୍ରାଦେଶିକ ହିଂସା, ଶ୍ରେଣୀ-ଉତ୍କର୍ଷ-ଅପକର୍ଷ ଭେଦାଭେଦ ଦମ୍ଭ ଅଭିମାନରେ ବ୍ୟତିବ୍ୟସ୍ତ, ଅବରୁଦ୍ଧ, ବିଷାକ୍ତ । ସମୂହ କଲ୍ୟାଣ, ଲୋକହିତକର

ଅନୁଷ୍ଠାନ, ସ୍ୱାୟତ୍ତଶାସନ ଆଦି ଯେପରି ତା' ପକ୍ଷରେ ସ୍ୱପ୍ନ ହୋଇଛି । + + ପଦେ ପଦେ ଭାରତୀୟର ଆଜି ଦୁର୍ଦ୍ଦଶା; ଲୋକହସା, ବିଡମ୍ବନା ବ୍ୟସନ । ଭାରତ-ଗୌରବ-ରବି ଆଜି ମ୍ଳାନ, ଧୂସର, ଅସ୍ତୋନ୍ମୁଖ, ଭାରତ ଭାଗ୍ୟ ବିଧାତା ପ୍ରତିକୂଳ, ପରାଙ୍ମୁଖ, ବିଷଣ୍ଣ । ଏ ପରିସ୍ଥିତିରେ ସାମାଜିକ ଇତିହାସର ତାତ୍ତ୍ୱିକ ତାତ୍ପର୍ଯ୍ୟମୂଳକ ଶିକ୍ଷା କେତେ ମୂଲ୍ୟବାନ ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ ।"(କପିଳେଶ୍ୱର ରଚନାବଳୀ, ୧ମ ଭାଗ, ପୃ-୧୮୪) । ସେହିପରି ପ୍ରାଚୀନ ଭାରତର ଗୌରବାବହ ଐତିହ୍ୟ, ବଳିଷ୍ଠ ସାଂସ୍କୃତିକ ମୂଲ୍ୟବୋଧ ଆଜି କିପରି ଅବକ୍ଷୟ ହୋଇ ଚାଲିଛି, ତାହା ଏହି ଧରଣର ପ୍ରବନ୍ଧଗୁଡ଼ିକରେ ଆଲୋଚିତ । ବସ୍ତୁତଃ ଆଜିର ଏହିପରି ଗୁରୁଗମ୍ଭୀର ସମସ୍ୟାଗୁଡ଼ିକୁ ଅତୀତର ପ୍ରେକ୍ଷାପଟରେ ତୁଳନାତ୍ମକ ଅଧ୍ୟୟନ କରିବାରେ ସେ ଥିଲେ ଓଡ଼ିଆ ସାହିତ୍ୟର ଜଣେ ଅଗ୍ରଣୀ ପ୍ରାବନ୍ଧିକ, ଏଥିରେ ଦ୍ୱିମତର ଅବକାଶ ନାହିଁ ।

## (ଖ) ସାମାଜିକ ପ୍ରବନ୍ଧ :

ପୁନଶ୍ଚ ସମାଜର ବିଭିନ୍ନ ସମସ୍ୟାକୁ ନେଇ ସେ ବହୁ ପ୍ରବନ୍ଧ ସୃଷ୍ଟି କରି-ଯାଇଛନ୍ତି । ସେ ଯେଉଁଠି ସମାଜର ଦୋଷ ଦୁର୍ବଳତାକୁ ଲକ୍ଷ୍ୟ କରିଛନ୍ତି, ସେ ସବୁକୁ ସଂସ୍କାର କରିବା ନିମନ୍ତେ ଜଣେ ଉପଦେଷ୍ଟା ତଥା ଦିଗ୍‌ଦର୍ଶକର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ଉଦାହରଣ ସ୍ୱରୂପ ତତ୍‌କାଳୀନ ସମାଜରେ ଚାଲିଥିବା ବାଲ୍ୟବିବାହ ପରି ସାମାଜିକ କୁସଂସ୍କାରକୁ ଦୂରୀଭୂତ କରିବା ପାଇଁ 'ସଂସ୍କାର" ପ୍ରବନ୍ଧରେ ସେ ଉଲ୍ଲେଖ କରିଛନ୍ତି—"ବୈଦେଶିକ ଶାସନରେ ବଜ୍ରମୁଷ୍ଟିରେ ପଡ଼ି ଏ ଦେଶବାସୀଙ୍କର ବର୍ତ୍ତମାନ କୌଣସି ସ୍ୱାଧୀନ ସାଧାରଣ ମତ ନାହିଁ ବା ସେପରି ମତଥିଲେ ସୁଦ୍ଧା ତାହା ଉପଯୁକ୍ତ ଭାବରେ ପ୍ରକାଶ କରି ପ୍ରବର୍ତ୍ତାଇବାର ଶକ୍ତି ନାହିଁ । ପୁଣି ବିଦେଶୀ ସରକାର ନିଜ ଲାଭ ପ୍ରତି ସମସ୍ତ ଦୃଷ୍ଟି ଦେଇ ଲୋକଙ୍କର ଅଭାବ ଅଭିଯୋଗ ପ୍ରତି ମନଃଯୋଗ ଦିଅନ୍ତି ନାହିଁ । ବର୍ତ୍ତମାନ ପ୍ରଚଳିତ ଶାରଦା ଆଇନ ଏହାର ଉତ୍କୃଷ୍ଟ ପ୍ରମାଣ । ବାଲ୍ୟ ବିବାହ ସମ୍ବନ୍ଧରେ ବ୍ୟକ୍ତିଗତ ଭାବରେ ଅଧିକାଂଶ ଲୋକଙ୍କର ପ୍ରତିକୂଳ ମତ ଥିଲେ ସୁଦ୍ଧା, ସମାଜରେ ତାଡ଼ନା ଭୟରୁ ହେଉ କିମ୍ବା ନୈତିକ ସାହସ ଅଭାବରୁ ହେଉ କିମ୍ବା ଶତବର୍ଷ ବ୍ୟାପୀ ଗୋଟିଏ ପଥରେ ମାୟା ମମତା ଛିନ୍ନ କରିନପାରି ହେଉ, ଅନେକ ଲୋକ ଅଦ୍ୟାପି ଅସଂଖ୍ୟ ବାଲ୍ୟ ବିବାହ କରୁଛନ୍ତି । ସରକାର ଏ ବିଷୟରେ କରଛଡ଼ା ଦେଇ କହନ୍ତି—ପ୍ରଥମେ ଡ଼ିପୋଜିଟ ବାନ୍ଧି ମକଦମା ଫାଇଲ କର, ତା'ପରେ ବିଚାର କରାଯିବ । ଏହି ସବୁ ଅଭାବ ଅଭିଯୋଗ ଦୂର କରିବାକୁ, ପ୍ରବଳ ସ୍ୱାଧୀନ ଜନମତ ଗଠିତ କରି ସରକାର ଉପରେ ଜୋର ଦେବାକୁ ପ୍ରକୃତ ଶିକ୍ଷା ଆବଶ୍ୟକ । ଶିକ୍ଷା ବିନା ଯେଉଁ ସବୁ ଉଦ୍ଭଟ (Fanatical) ସଂସ୍କାର ପ୍ରବର୍ତ୍ତନ ହୁଏ, ତାହା କେବଳ କ୍ଷଣସ୍ଥାୟୀ ଓ ବିଦ୍ୱେଷାତ୍ମକ

ହୁଏ । ଶିକ୍ଷା ହିଁ ସଂସାରକୁ ଚିରସ୍ଥାୟୀ, ସୁନ୍ଦର, ମହତ୍ ଓ ଜନହିତକର କରିପାରେ ।"
(କପିଳେଶ୍ୱର ରଚନାବଳୀ, ୧ମ ଭାଗ, ପୃ-୪୩)

ପରାଧୀନ ଭାରତରେ ଶାସକମାନଙ୍କ ବିରୋଧରେ ଏପରି ଶାଣିତ ମତ ଉପସ୍ଥାପନ କରି କପିଳେଶ୍ୱର ନିଜର ଦୁଃସାହସିକତାର ପରିଚୟ ଦେଇଯାଇ ନାହାନ୍ତି କି ? ତାଙ୍କର ଦୃଢ଼ ମତ ଥିଲା ଯେ ସମାଜର ଲୋକମାନେ ଯଦି ଶିକ୍ଷିତ ନ ହେବେ, ତେବେ କୌଣସି ମୂଲ୍ୟବୋଧ ଭିତ୍ତିକ କାର୍ଯ୍ୟ କରିବା ଦୁରୁହ ବ୍ୟାପାର । ତେଣୁ ସେ ତାଙ୍କର "ସ୍ନେହର ସେତୁବନ୍ଧ, ମିଳନମଣ୍ଡପ, ବିପ୍ଳବ, ପାଶ୍ଚାତ୍ୟ ମନସ୍ତତ୍ତ୍ୱ ଓ ଧର୍ମନୀତି, ସାମାଜିକ ଇତିହାସ, ଜୀବନପ୍ରବାହ ପ୍ରଭୃତି ପ୍ରବନ୍ଧ ମାଧ୍ୟମରେ ସମାଜର ଅସଂଖ୍ୟ ସାମାଜିକଙ୍କ ପ୍ରାଣକୁ ସ୍ପର୍ଶ କଲାପରି ମୂଲ୍ୟବାନ ଉପଦେଶମାନ ପ୍ରଦାନ କରିଯାଇଛନ୍ତି । ଏପରିକି 'ଅସୀମର ଆହ୍ୱାନ" ପରି ପ୍ରବନ୍ଧର ଶେଷରେ ମଧ୍ୟ ଲୋକ ତଥା ପାଠକମାନଙ୍କୁ ଏକାଦିକ୍ରମେ ଚେତାବନୀ ତଥା ଅନୁରୋଧ କରିବାକୁ ଯାଇ ଉପଦେଶ ଦେଇଛନ୍ତି 'ହେ ମନୁଷ୍ୟ ଭାଇମାନେ' – ସମାଜରେ ସୁସ୍ଥ, ନିରୋଗ, କର୍ମମୟ ଜୀବନଯାପନ କରିବାକୁ ହେଲେ ଅସୀମର ସ୍ୱରୂପ ତଥା ବ୍ରହ୍ମଙ୍କୁ ଚିହ୍ନିବା ଆବଶ୍ୟକ । ସକଳ ଘଟ, ସକଳ କର୍ମରେ ସେହି ବ୍ରହ୍ମଙ୍କର ଆଶୀର୍ବାଦ ନିହିତ । ଏପରିକି "ଅସୀମର ପ୍ରରୋଚନାରେ ସବୁ ଧର୍ମର ସୃଷ୍ଟି । ଅସୀମର ଆହ୍ୱାନ ଚିରନ୍ତନ, ମଧୁର, ସାନ୍ତ୍ୱନାଦାୟକ, ଅଭୟକାରକ । ସେ ଆହ୍ୱାନ ଆମେ ଶୁଣିବା ନାହିଁ ?" (କ: ରଚନାବଳୀ, ୧ମ ଭାଗ, ପୃ ୨୧୨) ସମାଜର ପ୍ରତ୍ୟେକ ଲୋକ ବ୍ରହ୍ମର ଉପଲବ୍ଧି କରି କର୍ମମୟ ଜୀବନ ଯାପନ କରନ୍ତୁ—ଏହା ଥିଲା କପିଳେଶ୍ୱରଙ୍କ ଆଶା ଓ ବିଶ୍ୱାସ । ସମାଜର ପରିବର୍ତ୍ତନରେ ଉନ୍ନତ ସମାଜଗଠନ ହୋଇ ପାରିବାର ବିଶ୍ୱାସ ମଧ୍ୟ ତାଙ୍କର ଯଥେଷ୍ଟ ମାତ୍ରାରେ ରହିଥିଲା । ଏହିପରି ବିଚାର କଲେ ଲେଖକଙ୍କ ଅଧିକାଂଶ ପ୍ରବନ୍ଧରେ ସାମାଜିକ ବିଜ୍ଞାନର ରୂପରେଖଟି କିପରି ଅନ୍ତଃସଲିଳ ଫଲ୍‌ଗୁ ପରି ପ୍ରବାହିତ, ତାହା ଜାଣିହେବ ।

## (ଗ) ଦାର୍ଶନିକ ପ୍ରବନ୍ଧ :

ପୂର୍ବରୁ ଉଲ୍ଲେଖ କରିଅଛୁଁ ଯେ ବାସ୍ତବରେ କପିଳେଶ୍ୱର ଥିଲେ ଜଣେ ଦାର୍ଶନିକ । ଇଂରେଜୀ ଓ ଦର୍ଶନରେ ସେ ସେତେବେଳ ସମୟରେ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିଥିଲେ । ସେ ଥିଲେ ଗମ୍ଭୀର ପ୍ରକୃତିର ଜଣେ ମଣିଷ । ଏପରିକି ତାଙ୍କୁ ଦେଖିଲେ ଯେ କୌଣସି ବ୍ୟକ୍ତିର ମନରେ ସ୍ୱତଃ ସେ ଜଣେ ଦାର୍ଶନିକ ରୂପେ ପ୍ରତିଭାତ ହେଉଥିଲେ । ବସ୍ତୁତଃ ସେ ଥିଲେ ଚଳିତ ଶତକର ଚିନ୍ତାଶୀଳ ଓଡ଼ିଆ ବ୍ୟକ୍ତିତ୍ୱର ବୌଦ୍ଧିକ ଭାବମୂର୍ତ୍ତି । ଦୃଷ୍ଟାନ୍ତ ସ୍ୱରୂପ ତାଙ୍କର ଜୀବନ-ପ୍ରବାହ, ଅସୀମର

ଆହ୍ୱାନ, ସସୀମ ଓ ଅସୀମ, ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ ସକ୍ରେଟିସ୍, ଜୀବନ ଉପାସନା, ମିଳନ ମଣ୍ଡପ, ଚାର୍ବାକ, ପାଶ୍ଚାତ୍ୟ ମନସ୍ତତ୍ତ୍ୱ ଓ ଧର୍ମନୀତି ପ୍ରଭୃତି ପ୍ରବନ୍ଧ-ଗୁଡ଼ିକୁ ଅନୁଧ୍ୟାନ କଲେ କପିଳେଶ୍ୱରଙ୍କ ଦର୍ଶନଭିତ୍ତିକ ଚିନ୍ତାଶୀଳ ମାନସର ପରିଚୟ ସହଜରେ ମିଳିପାରିଥାଏ । ଏତାଦୃଶ ପ୍ରବନ୍ଧ ସମ୍ଭାରରେ ଲେଖକଙ୍କ ବୌଦ୍ଧିକ-ଦୀପ୍ତ ସୂକ୍ଷ୍ମ ଦାର୍ଶନିକ ଦୃଷ୍ଟିକୋଣକୁ ଯେ କୌଣସି ପାଠକ ଠଉରେଇ ପାରିବାରେ କୌଣସି ଅସୁବିଧା ନାହିଁ । 'ଜୀବନ-ପ୍ରବାହ' ସମ୍ପର୍କରେ ସେ କହନ୍ତି—'ଜୀବନ ପ୍ରବାହ ବହିଯାଉଛି । ଶୈଶବ, ତାରୁଣ୍ୟ, ଯୌବନ, ପ୍ରୌଢ଼ତା, ବାର୍ଦ୍ଧକ୍ୟ ମଧ୍ୟରେ ଗତି କରି ଜୀବନ ମରଣରେ ଅବସାନ ଲଭୁଛି । ମରଣ ପୁଣି ଅମୃତ ସୋପାନ ହୋଇ ଜୀବନ ଗଢ଼ୁଛି । ପ୍ରକୃତିର ଏ ନିୟନ୍ତ୍ରିତ ଅସରନ୍ତି ବିକାଶରେ ଜୀବନର ଗତି ନିରବଚ୍ଛିନ୍ନ ଭାବରେ ଚାଲିଛି । ସେହିପରି 'ଚାର୍ବାକ' ପ୍ରବନ୍ଧରେ ସେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନର ସମନ୍ୱିତ ରୂପକୁ ତାତ୍ତ୍ୱିକ ଅନୁଶୀଳନ କରି ଶେଷରେ ନିଜର ଦାର୍ଶନିକ ଦୃଷ୍ଟିକୋଣ ପ୍ରକାଶ କରିବାକୁ ଯାଇ ଉଲ୍ଲେଖ କରିଛନ୍ତି—''ଚାର୍ବାକ ଦର୍ଶନର ସମାଲୋଚନା ଏଠାରେ ଅଭିପ୍ରେତ ନାହିଁ । X X X ଜୀବନ କେବଳ ଆଧ୍ୟାତ୍ମିକ ବା ଆଧିଦୈବିକ ନୁହେଁ, କେବଳ ନ୍ୟାୟର ଶୃଙ୍ଖଳାରେ ରହିବା ପଦାର୍ଥ ନୁହେଁ । ପ୍ରବହମାନ ଦୈନନ୍ଦିନ ଜୀବନରେ ବସ୍ତୁବାଦର ଯଥାପ୍ରକାର ସନ୍ନିବେଶ ଓ ପ୍ରାଧାନ୍ୟ ରହିବ; ନଚେତ ଯେ କୌଣସି ଏକଦର୍ଶୀ, ତର୍କବହୁଳ, ଶସ୍ତା-ଦାଶନିକ, ପ୍ରବଞ୍ଚନାପୂର୍ଣ୍ଣ,ବିଳାସ-ବୈରାଗ୍ୟ-ଜଡ଼ିତ ପ୍ରଚାର ବିରୁଦ୍ଧରେ ଚିରକାଳ ଚାର୍ବାକୀ ଏପରି ନିର୍ଭୀକ ସମରଡାକ ଦେଉଥିବ । ଏହି ସମର ଡ଼ାକର ଠିକ୍ ଉତ୍ତର ଦେବାପାଇଁ ପ୍ରସ୍ତୁତ ହେବାରେ ହିଁ ମନୁଷ୍ୟ ସମଦର୍ଶୀ, ଗମ୍ଭୀର ଅନୁଭବସମ୍ପନ୍ନ, ନିଷ୍କପଟ ହେବାର ସମ୍ଭାବନା ଓ ଉଦ୍ଦୀପନା ରହେ । ନଚେତ ସେ ଶିଥିଳ, ନିର୍ଚ୍ଚିନ୍ତ, ଅଳପ ସନ୍ତୁଷ୍ଟ, ସଦ୍ୟ-ଲାଭ-ବ୍ୟବସାୟୀ, ଲକ୍ଷ୍ୟଭ୍ରଷ୍ଟ, ହେବାର ଆଶଙ୍କା ପଦେ ପଦେ ରହିଛି ।''ଏହିପରି ଚିନ୍ତାଧର୍ମୀ ପ୍ରବନ୍ଧ ରଚନାରେ ଲେଖକଙ୍କ ପ୍ରୟାସ ଅଧିକ । ମଣିଷର ଆଧ୍ୟାତ୍ମିକ, ବୈଷୟିକ, ଶିକ୍ଷାଗତ ଓ ମାନସିକ ଉନ୍ନତି ତଥା ଅଭିବୃଦ୍ଧି ସାଧନ ପାଇଁ ସେ ସର୍ବଦା ଚିନ୍ତା କରୁଥିଲେ । ଏପରିକି ନିଜର ସମସ୍ତ ଦାର୍ଶନିକ ଅନୁସନ୍ଧିତ୍ସାକୁ ଖଟାଇ ସେ ମଣିଷର ଉପକାର ସହ ବିଶ୍ୱଶାନ୍ତି କିପରି ସମ୍ଭବ ହୋଇପାରିବ, ସେ ଦିଗରେ ମୂଲ୍ୟବାନ ଉପଦେଶମାନ ପ୍ରଦାନ କରିଯାଇଛନ୍ତି । ସେ ଗୁଡ଼ିକୁ ଆମେ ଆଜି ଉପଲବ୍ଧି କରି ଯଦି ନିଜକୁ ଏବଂ ଦେଶକୁ ସଜାଡ଼ି ପାରିବା ତେବେ ତାଙ୍କ ଦର୍ଶନର ପ୍ରକୃତ ରହସ୍ୟକୁ ଜାଣିପାରିବା । ଉଦାହରଣ ସ୍ୱରୂପ ଜୀବନର ଉପାସନା ପାଇଁ ସେ ଯେଉଁ କଥା ଭାବିଛନ୍ତି, ତାହା କିପରି ଉଲ୍ଲେଖ କରିଛନ୍ତି ଦେଖନ୍ତୁ—''ଜୀବନଝଞ୍ଜା ଭିତରେ ଚିରନ୍ତନର ଚେତନା ଆଣିବାକୁ ହେଲେ କର୍ମଜ୍ଞାନ ଦ୍ୱାରା ସଂଯତ, ନିୟନ୍ତ୍ରିତ, ପରିଷ୍କୃତ ହେବା ଦରକାର । ପ୍ରତୀଚ୍ୟ ଆଜି କର୍ମମାର୍ଗରେ ଧାଇଁଛି । କିନ୍ତୁ ସେ କର୍ମ

ସ୍ୱାର୍ଥପର, ଅସଂଯତ, ଅବିଶ୍ରାନ୍ତ, କୁଟିଳ, ଅଧିକାର-ମୋହଗ୍ରସ୍ତ । ସେଥିପାଇଁ ଥରକୁ ଥର ଧରପୃଷ୍ଠରେ ପ୍ରଳୟର ଏ ଲୀଳା । + + ଏହିଠାରେ ହିଁ ଜୀବନରେ ନୀତିର ସ୍ଥାନ ବୁଝିହୁଏ । ଆମର ଆଧୁନିକ-ଶିକ୍ଷିତ ତରୁଣ ନୀତି ବୋଇଲେ ଚମକନ୍ତି । ବିଜ୍ଞାନ ହିଁ ସେମାନଙ୍କ ଦେବତା । କିନ୍ତୁ ବିଜ୍ଞାନ ଜୀବନ-ରହସ୍ୟକୁ ସଫା ବୁଝିପାରେ ନାହିଁ । ଶୁଷ୍କ ବୈଜ୍ଞାନିକ ବିଶ୍ଳେଷଣ ଜ୍ଞାନର ଉପଲବ୍ଧି ସ୍ଥଳରେ ପହଞ୍ଚିପାରେ ନାହିଁ । ତାହାର ଅନ୍ତର୍ଦୃଷ୍ଟିର ଅଭାବ । ଜୀବନର ଚରମ ଉଦ୍ଦେଶ୍ୟ କେବଳ ଅର୍ଥନୈତିକ ଯୋଜନା, ରାଜନୈତିକ କୌଶଳ ବା ସ୍ୱଚ୍ଛଳତା ଦ୍ୱାରା ପୂରଣ ହୁଏନାହିଁ ।" (କ : ରଚନାବଳୀ, ପୃ-୨୧୯) । ଦାର୍ଶନିକ ପ୍ରବନ୍ଧ ରଚନା କଲାବେଳେ କପିଳେଶ୍ୱର ମନ୍ତ୍ରାରୂଢ଼ ଜଣେ ଯୋଗୀପରି ତନ୍ମୟ ହୋଇପଡ଼ିଥାନ୍ତି । ତେବେ ତାଙ୍କର ତନ୍ମୟତା ଭିତରେ ମନ୍ମୟତା ଯେ ନାହିଁ, ତାହା ନୁହେଁ । ତାଙ୍କର ସମସ୍ତ ଦାର୍ଶନିକ ଅନୁଚିନ୍ତା ଯୁକ୍ତିନିଷ୍ଠ, ସତ୍ୟ ଓ ଅନୁଭବ ଉପରେ ପର୍ଯ୍ୟବସିତ ।

## (ଘ) ସାହିତ୍ୟିକ ପ୍ରବନ୍ଧ :

ସର୍ବୋପରି ସାହିତ୍ୟିକ ପ୍ରବନ୍ଧ ରଚନା କ୍ଷେତ୍ରରେ କପିଳେଶ୍ୱରଙ୍କ ଦକ୍ଷତାକୁ ଉପେକ୍ଷା କରଯାଇ ନପାରେ । ଦର୍ଶନକୁ ସାହିତ୍ୟ ମଧ୍ୟରେ ସେ ଏପରି ସମନ୍ୱିତ କରିପାରିଛନ୍ତି ଯେ, ତାହା ନଖ-ମାଂସର ସମ୍ପର୍କପରି ବୋଧ ହୋଇଥାଏ । ସେ ଥିଲେ ଜଣେ ସୌନ୍ଦର୍ଯ୍ୟଗ୍ରାହୀ ବ୍ୟକ୍ତି । ତାଙ୍କର ସୌନ୍ଦର୍ଯ୍ୟାନୁଭବ ଋଷିସୁଲଭ ଉଦାର ଚିନ୍ତାର ପରିଚାୟକ । କବିର କଳ୍ପନା, ଭାବୁକର ଭାବନା ଓ ଯୋଗୀର ସାଧନା ତାଙ୍କର ସମସ୍ତ ପ୍ରବନ୍ଧ ମଧ୍ୟରେ ପରିସ୍ଫୁଟିତ । ତେଣୁ ମତବ୍ୟକ୍ତ କରଯାଇପାରେ ଯେ ତାଙ୍କର ସମସ୍ତ ପ୍ରବନ୍ଧରେ ସାହିତ୍ୟିକ ସୌନ୍ଦର୍ଯ୍ୟ ଅକ୍ଷତ ଭାବରେ ରହିଛି । ଲେଖକ ନିଜେ "ଜୀବନ ଚିନ୍ତା" ଗ୍ରନ୍ଥ (ଖ୍ରୀ: ୧୯୫୨) ପ୍ରସ୍ତୁତ କଲାବେଳେ 'ସାହିତ୍ୟ ବିଭାଗ' ନାମରେ ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟିକରି ସେଥିରେ ସାହିତ୍ୟ ଓ ଜୀବନ (୧ମ ଓ ୨ୟ ଭାଗ) ସଂସ୍କୃତ ସାହିତ୍ୟର ଗୌରବ, ଭଞ୍ଜ ସାହିତ୍ୟରେ ରାଜ୍ୟପାଳନ, ଭଞ୍ଜ ସାହିତ୍ୟର କେତୋଟି ବିଭବ ଆଦି ପ୍ରବନ୍ଧକୁ ସଂଯୋଜିତ କରିଥିବା ପରିଦୃଷ୍ଟ ହୁଏ । ସେହିପରି ହନୁମାନ ରାୟଗୁରୁ ଓ ତଦୀୟ ପୁତ୍ର ଗୋବିନ୍ଦ ରାୟଗୁରୁଙ୍କ ଗ୍ରନ୍ଥାବଳୀର ମୁଖବନ୍ଧରେ କପିଳେଶ୍ୱର ତିରିଶି ପୃଷ୍ଠା ବ୍ୟାପୀ ଯେଉଁ ଭୂମିକା ଲେଖିଛନ୍ତି, ତାହା ସାହିତ୍ୟ ଆଲୋଚନା କ୍ଷେତ୍ରରେ ତାଙ୍କର ଅବଦାନକୁ ହିଁ ସୂଚାଇଥାଏ । ଏ ସମସ୍ତ ପ୍ରବନ୍ଧରୁ ସେ ଜଣେ ଉଚ୍ଚକୋଟିର ସାହିତ୍ୟିକ ତଥା ସମାଲୋଚକ ଥିବାର ପ୍ରମାଣ ମିଳେ । ପ୍ରକାଶଥାଉକି ଉପେନ୍ଦ୍ର ସାହିତ୍ୟ ପ୍ରତି କପିଳେଶ୍ୱରଙ୍କ ଏକ ଅହେତୁକ ମୋହ ରହିଥିଲା । ତେଣୁ ଭଞ୍ଜ ଆଲୋଚକ ତଥା ଅସଂଖ୍ୟ ଭଞ୍ଜପ୍ରେମୀଙ୍କ ଦୃଷ୍ଟିକୁ ଆକର୍ଷଣ କରିବାକୁ ଯାଇ ସେ ଭଞ୍ଜସାହିତ୍ୟର ଆଧୁନିକ ବିଶ୍ଳେଷଣମୂଳକ ଯୁଗୋପଯୋଗୀ ସମାଲୋଚନାର ଅଧ୍ୟାୟ

ଫିଟାଇବା ନିମନ୍ତେ ଉପର୍ଯ୍ୟୁକ୍ତ ପ୍ରବନ୍ଧଦ୍ୱୟ ରଚନା କରିଯାଇଛନ୍ତି । ସେ ପ୍ରଥମକରି ଭଞ୍ଜସାହିତ୍ୟରେ ଭୂଗୋଳଚର୍ଚ୍ଚା, ଗଜ୍ୟପାଳନ ଆଦି ବିଷୟରେ ସେତେବେଳେ ଲେଖନୀ ଗ୍ୱଳନା କରିଥିଲେ । ଯେଉଁମାନେ ଭଞ୍ଜଙ୍କୁ "ଶୃଙ୍ଗାରୀ" ବୋଲି କହି ନାସିକା କୁଞ୍ଚନ କରିଥାନ୍ତି, ସେମାନଙ୍କୁ ଉଚିତ ଶିକ୍ଷା ଦେବାପାଇଁ ସେ ନିମ୍ନମତେ ଉପଦେଶ ଦେଇଯାଇଛନ୍ତି—"କବି (ଉପେନ୍ଦ୍ର) ପରସ୍ୱାପହରଣ, ପରଦାର ସଂଭୋଗ, ସକଳଶାସ୍ତ୍ର, ଧର୍ମର ସନାତନ ଶିକ୍ଷାପ୍ରକାରେ ମହାପାପ ବୋଲି କହିବାରେ କୁଣ୍ଠିତ ହୋଇ ନାହାନ୍ତି । ବରଂ ମରଣ ତାହାଠାରୁ ଶ୍ରେୟସ୍କର ବୋଲି ବଜ୍ର ନିର୍ଘୋଷରେ କହିଛନ୍ତି । ବ୍ୟଭିଗ୍ୱର, ଉଚ୍ଛୃଙ୍ଖଳତା, ଚରିତ୍ର ଦୋଷର ସ୍ଥାନ ଏଠାରେ ରହିଲା କେଉଁଠାରେ ?" (କ: ର. ପୃ—୨୬୧) × × ଉପେନ୍ଦ୍ରଙ୍କ ଏ ବହୁମୁଖୀ ପ୍ରତିଭା ଦୃଷ୍ଟିରେ ସେ ଖାଲି ବୀଭତ୍ସ ଯୌନକ୍ରିୟା ବର୍ଣ୍ଣନାରେ ନିଜକୁ ଶେଷ କରିଛନ୍ତି, ଏହା ଯେଉଁମାନେ କହୁଛନ୍ତି, ତାଙ୍କର ଆଖି ଏବେହେଲେ ଫିଟିବ କି ? ପୃ-୨୬୭) । ତାଙ୍କର ଦୃଢ଼ମତ ଥିଲା ଯେ "ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ମଣ୍ଡଳୀରେ ଭଞ୍ଜ ସାହିତ୍ୟ ସମାଲୋଚନାର ନୂଆ ମାର୍ଗ ଫିଟିଲେ ସୁଖ ଓ ଉପକାର ହେବ" (କ: ର ପୃ-୨୬୦) ଏତଦ୍ ବ୍ୟତୀତ 'ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ, କାବ୍ୟ ଓ ନୀତି, ଇଚ୍ଛାପୁର କବି ସମ୍ମିଳନୀ, ବସ୍ତୁ ପ୍ରହରଣ" ଆଦି ଉନ୍ନତ ମାନର ସାହିତ୍ୟିକ ପ୍ରବନ୍ଧଗୁଡ଼ିକରୁ ତାଙ୍କର ସାହିତ୍ୟ ପ୍ରତି ରହିଥିବା ନିଷ୍ଠା ଓ ଆନ୍ତରିକତାର ପରିଚୟ ମିଳିଥାଏ ।

## (ଙ) ଅନ୍ୟାନ୍ୟ ପ୍ରବନ୍ଧ :

ଏତଦ୍ ବ୍ୟତୀତ ଭାରତୀୟ ସଂସ୍କୃତି ଏବଂ ପ୍ରାଚୀନ ଭାରତୀୟ ଶିକ୍ଷା ପଦ୍ଧତି ସମ୍ପର୍କରେ ପ୍ରାବନ୍ଧିକ ମହାଶୟ ବହୁ ଉନ୍ନତମାନର ପ୍ରବନ୍ଧ ସୃଷ୍ଟି କରିଯାଇଥିବା ପରିଦୃଷ୍ଟ ହୁଏ । ସେ ସବୁ ମଧ୍ୟରେ ସଂସ୍କୃତି ଓ ସମର, ଅତୀତ ଭାରତ, ବେଦାନ୍ତ ଓ ବିଶ୍ୱଶାନ୍ତି, ଉପନିଷଦରେ ଶିକ୍ଷା, ଭାରତୀୟ କଳା ଓ ସାହିତ୍ୟ ପରିଷଦ (୧ମ ଓ ୨ୟ ପ୍ରବନ୍ଧ), ସଂସାର ପ୍ରଭୃତି ପ୍ରଣିଧାନଯୋଗ୍ୟ । ଏ ସମସ୍ତ ପ୍ରବନ୍ଧରେ ସେ ଅତୀତ ସହିତ ବର୍ତ୍ତମାନ ଅଧଃପତିତ ଭାରତର ଅବସ୍ଥା ସମ୍ପର୍କରେ ତୁଳନାତ୍ମକ ସମୀକ୍ଷା ପ୍ରସ୍ତୁତ କରି କ୍ଷୋଭ ପ୍ରକାଶ କରିଯାଇଛନ୍ତି ।

ସେହିପରି ସମ୍ପାଦଧର୍ମୀ ପ୍ରବନ୍ଧ ଓ ଜୀବନ ଚରିତମୂଳକ ପ୍ରବନ୍ଧ ରଚନା କ୍ଷେତ୍ରରେ ତାଙ୍କର ସାଫଲ୍ୟ ବିସ୍ମୟକର ପ୍ରତିଭାତ ହୋଇଥାଏ । ଗ୍ରାମ୍ୟ ପରିବେଶରେ ଥିବା 'ଟିଙ୍ଗିଡିଖୋଲ'ରୁ "ଚନ୍ଦ୍ରକଳା" ନାମକ ଏକ ମାସିକ ପତ୍ରିକା ପ୍ରକାଶକରି ସେ ପ୍ରତ୍ୟେକ ସଂଖ୍ୟାର ସମ୍ପାଦକୀୟରେ ବହୁ ସମ୍ପାଦଧର୍ମୀ ପ୍ରବନ୍ଧ ସୃଷ୍ଟି କରିଯାଇଛନ୍ତି ।

ଏହାକୁ ଆଜିକାଲି କେହି କେହି ' ରିପୋତାଢ'' ବୋଲି ମଧ୍ୟ କହିଥାନ୍ତି । ଏହାଦ୍ୱାରା ସେ ସମୟର ବିଭିନ୍ନ ସମସ୍ୟା ବିଶ୍ଳେଷଣ ପୂର୍ବକ ପାଠକ ତଥା ସାହିତ୍ୟିକମାନଙ୍କ ମଧ୍ୟରେ ସାଧାରଣ ସଚେତନତା ସୃଷ୍ଟି କରିବା, ତାଙ୍କର ମୂଳଲକ୍ଷ୍ୟ ଥିଲା ବୋଲି କୁହାଯାଇପାରେ । ତନ୍ମଧ୍ୟରୁ ଅନୁଷ୍ଠାନ ଓ ଆଦର୍ଶ, ସାହିତ୍ୟ କାହିଁକି ? (ଚନ୍ଦ୍ରକଳା ୧ମ ସଂଖ୍ୟା), ଅତ୍ୟାଧୁନିକ ଇତିହାସରେ ସାହିତ୍ୟ (ଚନ୍ଦ୍ରକଳା, ୫ମ ସଂଖ୍ୟା), ସାହିତ୍ୟ ଓ ରାଜନୀତି (୬ଷ୍ଠ ସଂଖ୍ୟା) ଆଦିକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । ରଚନା ଶୈଳୀର ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ଆଧୁନିକ ପ୍ରବନ୍ଧ ସାହିତ୍ୟର ମୂଲ୍ୟବୋଧ ପର୍ଯ୍ୟାଲୋଚ୍ୟ । ଏବଂବିଧ ପ୍ରବନ୍ଧ ସମୂହର ସୂଚନା ମଧ୍ୟ ଏହି ଗ୍ରନ୍ଥର ଅନ୍ୟତ୍ର ପାଠକମାନଙ୍କ ଅବବୋଧ ନିମନ୍ତେ ପ୍ରଦାନ କରାଯାଇଛି ।

ଏତଦ୍‌ଭିନ୍ନ ଜୀବନଚରିତମୂଳକ ପ୍ରବନ୍ଧ ସୃଷ୍ଟି କ୍ଷେତ୍ରରେ ମଧ୍ୟ ସେ ଥିଲେ ଜଣେ ପ୍ରତିଷ୍ଠିତ ପ୍ରାବନ୍ଧିକ । ଜାତୀୟ ଚରିତ୍ର ଗଠନରେ ସହାୟକ ହେବା ନିମନ୍ତେ ସେ ବସ୍ତୁପ୍ରହରାଜଙ୍କ ଭଳି ଜଣେ ଯୋଗଜନ୍ମାଙ୍କ ଜୀବନୀକୁ ଭିତ୍ତିକରି ''ବସ୍ତୁ ପ୍ରହରାଜ'' ପ୍ରବନ୍ଧଟିକୁ ଉଲ୍ଲେଖ କରିଥିଲେ । ସେହିପରି କବିବର ସ୍ମୃତି, ପଣ୍ଡିତ ଗଣେଶ୍ୱର ରଥ ବାଚସ୍ପତି ଚିକିଟିର ଖ୍ୟାତନାମା ଶିକ୍ଷକ ଭରତ ବେହେରା, ଦୀନବନ୍ଧୁ ବେହେରା ଆଦି ମହାନ୍ ବ୍ୟକ୍ତିଙ୍କ ସମ୍ପର୍କରେ ପ୍ରବନ୍ଧମାନ ସୃଷ୍ଟି କରିଯାଇଛନ୍ତି ।

— ୩ —

ସର୍ବୋପରି ପ୍ରବନ୍ଧ ରଚନା କ୍ଷେତ୍ରରେ କପିଳେଶ୍ୱର ଏକ ସ୍ୱତନ୍ତ୍ର ଶୈଳୀର ପ୍ରବର୍ତ୍ତକ ଅଟନ୍ତି । ତାଙ୍କର ବିଷୟ ନିର୍ବାଚନ, ବଚନଭଙ୍ଗୀ ଓ ପରିବେଷଣ ପରିପାଟୀ ଅତ୍ୟନ୍ତ ଉଚ୍ଚକୋଟିର ଥିଲା । ସାଧାରଣ କଥାବସ୍ତୁକୁ ଉପସ୍ଥାପନା କଲାବେଳେ ସେ ଯୁକ୍ତିପ୍ରବଣତା ଓ ବୈଜ୍ଞାନିକ ବିଶ୍ଳେଷଣ ଦ୍ୱାରା ସ୍ୱୀୟ ଦୃଷ୍ଟିଭଙ୍ଗୀର ସ୍ୱତନ୍ତ୍ର ପରିଚୟ ଦେଇ ପାଠକକୁ ପ୍ରୀତ, ବିସ୍ମିତ ଓ ଆମୋଦିତ କରିପାରିଛନ୍ତି । ଏପରିକି ତାଙ୍କ ପ୍ରବନ୍ଧରେ ଆରମ୍ଭ (ଉପକ୍ରମ', ଅଭିବୃଦ୍ଧି ଓ ପରିଣତି ସର୍ବଦା ପରିଦୃଷ୍ଟ ହୁଏ । ପ୍ରତ୍ୟେକ ପ୍ରବନ୍ଧର ନାମକରଣ ଯାଥାର୍ଥ୍ୟକୁ ପ୍ରତିପାଦନ କରିବା ନିମନ୍ତେ ସେ ପ୍ରବନ୍ଧର ଉପକ୍ରମରୁ ହିଁ ପ୍ରୟାସ କରିଥିବା ଦେଖାଯାଏ । ଉପକ୍ରମର ଶେଷ ପଂକ୍ତିରେ ପ୍ରବନ୍ଧର ପରବର୍ତ୍ତୀ ପରିଚ୍ଛେଦଗୁଡ଼ିକର ଭାବ ବୀଜ ମଧ୍ୟ ନିହିତ ଥାଏ । ଉଦାହରଣ ରୂପେ ''ଅସୀମର ଆହ୍ୱାନ'' ପ୍ରବନ୍ଧର ଉପକ୍ରମଟିକୁ ଗ୍ରହଣ କରାଯାଇପାରେ । ''ମୁକ୍ତି ପାଇଁ ପ୍ରେରଣା ମନୁଷ୍ୟର ଅନ୍ତର୍ନିହିତ । ସସୀମର ଅସୀମରେ ପହଞ୍ଚିବା ହିଁ ମୁକ୍ତି । ଅସୀମ ଆମର ଅତି ପରିଚିତ, ଅତି ନିକଟ, ଅତି ଘନିଷ୍ଠ; ତଥାପି ଅତି ଦୂର ଅତି ଅପରିଚିତ । X X X (ଶେଷ ପଂକ୍ତି) ''ତଥାପି ମନେହୁଏ, ଅସୀମ ଯେପରି କୌଣସି ଦୂରଗତ

ଅତିଥି, ସ୍ୱପ୍ନ-ପୁଷ୍ପର ମାୟା, ସ୍ୱର୍ଗ-ଲୋକର କଳ୍ପନା । ଏଠାରେ ହିଁ ସୃଷ୍ଟିର ବୈଚିତ୍ର୍ୟ, ଜୀବନର ରହସ୍ୟ" । (କ : ର. ପୃ-୨୦୭) ଉପକ୍ରମ ପରେ ଲେଖକ ବିଭିନ୍ନ ଯୁକ୍ତି ବଳରେ ବିଷୟବସ୍ତୁର ଉପସ୍ଥାପନା କରି ପରିଶେଷରେ ନିଜର ବକ୍ତବ୍ୟ ପ୍ରଦାନ କରିଥାନ୍ତି । ପ୍ରବନ୍ଧର ଅନୁଶୀଳନରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ସ୍ୱ-ମତ ଏହି ପର୍ଯ୍ୟାୟରେ ହିଁ ବ୍ୟକ୍ତ ହୋଇଥାଏ । ପାଠକୀୟ ଦୃଷ୍ଟି ଆକର୍ଷଣ ନିମନ୍ତେ ତାହାହିଁ ଉଦ୍ଦିଷ୍ଟ ଥାଏ । ଯଥା—"ଜୀବନ-ପ୍ରବାହ" ପ୍ରବନ୍ଧ ମଧ୍ୟରେ ଜୀବନର ସମସ୍ତ ସମସ୍ୟା କଥା କହି-ସାରିବା ପରେ ପରିଶେଷରେ ନିଜର ଶାଣିତ ବକ୍ତବ୍ୟ ପ୍ରଦାନ କରିବାକୁ ଯାଇ ସେ ଉଲ୍ଲେଖ କରିଛନ୍ତି—"ଆମେ ଏବେ ମଧ୍ୟ ସେହି ଧର୍ମର ସାରାଂଶକୁ ଠିକ୍ ଭାବରେ ଅଧୁନାତନ ପ୍ରକରଣରେ ଅବଲମ୍ବନ କଲେ ଆମର ଅନେକ ଅସାମଞ୍ଜସ୍ୟ ଓ ବିଘାତ ଦୂର ହୋଇଯିବ ବୋଲି ମୋର ଗଭୀର ବିଶ୍ୱାସ ।" (କ : ର ପୃ-୯) ।

ସେହିପରି କପିଳେଶ୍ୱରଙ୍କ ଗଦ୍ୟଶୈଳୀ ସ୍ୱସ୍ଫୁଟନିଷ୍ଠ, କାବ୍ୟଧର୍ମୀ ଓ ଦୀର୍ଘ ବାକ୍ୟ ସମନ୍ୱିତ ଅଟେ । ବାକ୍ୟର ପ୍ରତ୍ୟେକ ଶବ୍ଦ ପ୍ରାବନ୍ଧିକଙ୍କ ଭାବପ୍ରକାଶର ମାଧ୍ୟମ ଅଟନ୍ତି । ଅଯଥା ଶବ୍ଦର ପ୍ରୟୋଗ ଆଦୌ ନାହିଁ । କପିଳେଶ୍ୱର, ଆଧୁନିକ କବି ପରି ଶବ୍ଦ ଉପରେ ପ୍ରାଧାନ୍ୟ ଦେଉଥିଲେ । ତେଣୁ ତାଙ୍କର ଶବ୍ଦଚୟନ ପଦ୍ଧତି କୃତ୍ରିମ ଓ ଆୟାସସାଧ୍ୟ ପ୍ରତୀତ ହୋଇଥାଏ । ଯେଉଁଠି ସେ ଆବେଗଭରା କଣ୍ଠରେ ପାଠକକୁ କିଛି କହିବାକୁ ଚାହିଁଛନ୍ତି, ସେଠାରେ ତାଙ୍କର ଗଦ୍ୟଶୈଳୀ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ହୋଇ ଉଠିଛି । ମାତ୍ର ଲକ୍ଷ୍ୟ କରିବାର କଥା ଏହି ଯେ ତାଙ୍କ ପ୍ରବନ୍ଧରେ ଶବ୍ଦସମ୍ଭାର ବେଶ୍ ଭାବବାହୀ । ବେଳେ ବେଳେ ତତ୍ସମ ଶବ୍ଦ ସହିତ ଗ୍ରାମ୍ୟ ପ୍ରଚଳିତ ଶବ୍ଦକୁ ମଧ୍ୟ ସେ ପ୍ରୟୋଗ କରୁଥିଲେ । ଯଥା—ଥୁଆ ହୋଇଥିଲା, ମୋଟାମୋଟି, ବୋଲି ପିଲିପିଲି, କୁଣ୍ଡିପାତ, ଆଉ, କେହେ , ନିଶୁଣି, ଇଚ୍ଛାମୁତାବକ, ତୁଟିବା, ସମୟ ଉଣ୍ଡି ଉଣ୍ଡି, ରଫାନାମା, ଠେକିବା ବା ଠେକିଛନ୍ତି, ରଡିବା, ବୁହାଏ, ସଫା, ଟହୁଁ ପ୍ରଭୃତି । ଗ୍ରାମ୍ୟ ଜୀବନ ଅତିବାହିତ କରୁଥିବା ଏହି ଋଷିପ୍ରତିମ ସିଦ୍ଧସାଧକଙ୍କ ଚଳନ୍ତି ଶବ୍ଦମାନେ ହିଁ ପ୍ରବନ୍ଧରେ ସ୍ଥାନ ପାଇଛନ୍ତି । ତାଙ୍କର ବାକ୍ୟବିନ୍ୟାସର ପାଟବ ପାଠକୀୟ ଦୃଷ୍ଟି ଆକର୍ଷଣ କରିବାରେ ବେଶ ସମର୍ଥ । ସ୍ୱୀୟ ଗୁରୁଗମ୍ଭୀର ଭାବନାକୁ ଗଦ୍ୟରେ ପ୍ରକାଶ କଲାବେଳେ ସେ ମୁଖ୍ୟତଃ ଯୌଗିକ ଓ ଜଟିଳ ବାକ୍ୟର ହିଁ ଆଶ୍ରୟ ନେଇଛନ୍ତି । ତା' ବୋଲି ଯେ ତାଙ୍କ ପ୍ରବନ୍ଧରେ ସରଳ ବାକ୍ୟ ନାହିଁ, ତାହା ନୁହେଁ । ବସ୍ତୁତଃ ପ୍ରବନ୍ଧଗୁଡ଼ିକର ଭାବ ଓ ଭାଷା ଏପରି ଶକ୍ତିଶାଳୀ ଯେ, ତାହାକୁ ପାଠକଲେ ଯେ କୌଣସି ପାଠକ କପିଳେଶ୍ୱରଙ୍କ ସ୍ୱତନ୍ତ୍ର ଶୈଳୀଟିକୁ ସହଜରେ ଧରିପାରିବ । ଉଦାହରଣ ସ୍ୱରୂପ ଏହି ଗଦ୍ୟାଂଶଟିକୁ ଦେଖନ୍ତୁ । "ତାର ହୃଦୟ କନ୍ଦରରୁ ପ୍ରତିଧ୍ୱନିତ ହୁଏ—ଜୀବନ କି କ୍ଷଣଭଙ୍ଗୁର ନୁହେଁ ? ଅଖଣ୍ଡ ଓ ଅସୀମର ଆହ୍ୱାନ

କି ମତେ ଦିନଗତି ଅଥୟ କରୁନାହିଁ ? ମୁଁ ଜୀବନ-ମଧୁ ଗୁଖି ତାର ତିକ୍ତତା କି ଅନୁଭବ କରିନାହିଁ ? ସଂସାର ନିର୍ଝର ମୋ ପ୍ରତି କି ଶୁଖିଯାଇ ନାହିଁ ?'' (ଜୀବନ ପ୍ରବାହ, କ. ର. ପୃ-୭) । ଅସୀମ ଓ ସସୀମ,— ଏହି ଶବ୍ଦଦ୍ୱୟ କପିଳେଶ୍ୱରଙ୍କ ଅତ୍ୟନ୍ତ ପ୍ରିୟ ଶବ୍ଦ ଯାହାର ବହୁଳ ପ୍ରୟୋଗ ତାଙ୍କର ପ୍ରବନ୍ଧଗୁଡିକରୁ ଲକ୍ଷ୍ୟ କରାଯାଇପାରେ । ସ୍ୱୀୟ ବକ୍ତବ୍ୟକୁ ପାଠକର ମନରେ ସଞ୍ଚାର କରିବା ନିମନ୍ତେ, ସେ ସ୍ଥଳବିଶେଷରେ ଗ୍ରାମ୍ୟ ବୋଲି, ଉପମା, ରୂପକ ଏବଂ ଚିତ୍ରକଳ୍ପର ମଧ୍ୟ ବ୍ୟବହାର କରୁଥିଲେ । ଯଥା—'ଜୀବନ ପ୍ରବାହ' ପ୍ରବନ୍ଧର ପ୍ରାରମ୍ଭରେ ''ଯାହା ହୋଇନାହିଁ ବାଳୁତ କାଳେ/ତାହା ହେବ କି ପାଚିଲା ବାଳେ ?'' ପରି ''ବୋଲି''ର ପ୍ରୟୋଗକୁ ଗ୍ରହଣ କରାଯାଇପାରେ । ସେହିପରି ରୂପକଳ୍ପ ଓ ଉପମା ନିମନ୍ତେ ଯଥାକ୍ରମେ ଏହି ତିନୋଟିକୁ ଗ୍ରହଣ କରାଯାଇ ପାରେ । ବିକାଶ-ଗାଛ ତାହାର ଜୀବନ-କ୍ଷେତ୍ରରେ ଅଙ୍କୁରିତ ହୁଏ ।'' (ଜୀବନ ପ୍ରବାହ), କେଉଁ ଜଟାଧାରୀ ଆମକୁ ଏ ପାଠ ଶିଖାଇଛି'' (ସାହିତ୍ୟ ଓ ଜୀବନ, ପୃ-୨୪୪)—''ପ୍ରତିମା ପୂଜାଭଳି କଦାଗ୍ରହ ହିନ୍ଦୁଧର୍ମ ଛଡା ଅନ୍ୟ ଧର୍ମରେ ଦେଖିବାକୁ ମିଳେନାହିଁ'' । (ସଂସାର, ପୃ-୩୭) ଏ ରୂପେ ବିଚାର କଲେ କପିଳେଶ୍ୱରଙ୍କ ପ୍ରବନ୍ଧ ସୁଲଭ ଭାଷାବିନ୍ୟାସ, ଗଠନଶୈଳୀ ଓ ପ୍ରକାଶଭଙ୍ଗୀ ଓଡ଼ିଆ ପ୍ରବନ୍ଧ ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଦାବୀ କରିଥାଏ ।

—୪—

ପୁନଶ୍ଚ କପିଳେଶ୍ୱର ଜଣେ କବି, ଅନୁବାଦକ, ଆଲୋଚକ, ପତ୍ରିକା ସମ୍ପାଦକ, ସଂଗଠକ ଏବଂ ବକ୍ତାଭାବେ ମଧ୍ୟ ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । ସେ ପ୍ରବନ୍ଧ ଲେଖୁ ଲେଖୁ ପାଞ୍ଚଗୋଟି ଗୀତିକବିତା ମଧ୍ୟ ଲେଖି ଯାଇଛନ୍ତି ଯାହାକି ତାଙ୍କ ଜୀବଦ୍ଦଶାରେ ପ୍ରକାଶିତ 'ଜୀବନଚିନ୍ତା' ଗ୍ରନ୍ଥରେ ପଦ୍ୟ ବିଭାଗରେ ସନ୍ନିବେଶିତ ହୋଇଥିଲା । ସେଗୁଡ଼ିକ ଯଥାକ୍ରମେ ଉର୍ମିଳା, ଖୋଜୁଛୁ କାହାକୁ, ଭଞ୍ଜପୀଠ, ଉଠ ମା, ପଥକାହିଁ ନାମରେ ନାମିତ । ବିଷୟବିନ୍ୟାସ ଦୃଷ୍ଟିରୁ କବିତାଗୁଡ଼ିକ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ରାମାୟଣରେ ଉପେକ୍ଷିତା ଉର୍ମିଳାର ବିରହ ଜୀବନ ଦରଦୀ କବି କପିଳେଶ୍ୱରଙ୍କୁ ଯଥେଷ୍ଟ ଭାବେ ମୁହ୍ୟମାନ କରିଛି ଯାହାର ଅକ୍ଷରଲିପିହିଁ 'ଉର୍ମିଳା' କବିତା । ସେହିପରି 'ଖୋଜୁଛୁ କାହାକୁ ?' କବିତାରେ କବିଙ୍କ ଜୀବନ ପ୍ରତି ଦୃଷ୍ଟିକୋଣ,'ଭଞ୍ଜପୀଠ' କବିତାରେ କବି ଉପେନ୍ଦ୍ରଙ୍କ ପ୍ରତି ତାଙ୍କର ଯଥୋଚିତ ସମ୍ମାନ-ବୋଧ, 'ଉଠ ମା' କବିତାରେ ଭାରତମାତାଙ୍କ ଜୟଗାନ ତଥା ଗୌରବ ପ୍ରଖ୍ୟାପନ, ଏବଂ 'ପଥକାହିଁ' କବିତାରେ କବିଙ୍କ ଜିଜ୍ଞାସୁ-ମନ ବହୁବାଦ ବିସମ୍ବାଦ ମଧ୍ୟରେ ଆଲୋକର ସନ୍ଧାନ ପାଇଁ ଆର୍ତ୍ତ ଚିତ୍କାର କରିଥିବା ପରିଲକ୍ଷିତ ହୁଏ ।

ଯତିପାତ, ପ୍ରାନ୍ତଅକ୍ଷର ମିଳନ ଓ ଛନ୍ଦାନୁସାଗ୍ରୀ କବିତା ରଚନା କରି କପିଳେଶ୍ୱର ସ୍ୱୀୟ କବିତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଯାଇଛନ୍ତି । ଜୀବନର ପରବର୍ତ୍ତୀ ପର୍ଯ୍ୟାୟରେ କବି କବିତାକ୍ଷେତ୍ରରୁ ବୋଧହୁଏ ନିଜକୁ ଦୂରେଇଦେଇ କେବଳ ପ୍ରବନ୍ଧ ସୃଷ୍ଟି-ଦିଗରେ ମନୋନିବେଶ କରିଛନ୍ତି । ଯାହାଫଳରେ ତାଙ୍କର ଅନ୍ୟ କିଛି କବିତା ଥିବାର ପ୍ରମାଣ ଅଦ୍ୟାବଧି ମିଳିନାହିଁ ।

—୫—

ମାତ୍ର ପରେ ଓଡ଼ିଆ କବିତା ଓ ଇଂରେଜୀ କବିତାର ସଫଳ ଅନୁବାଦ କରି କପିଳେଶ୍ୱର ସ୍ୱୀୟ ଅନୁବାଦଜ୍ଞାନର ପରିଚୟ ଦେଇଯାଇଛନ୍ତି । ସ୍ୱ-ପ୍ରକାଶିତ 'ଚନ୍ଦ୍ରକଳା' ପତ୍ରିକାର ସମ୍ପାଦକୀୟରେ ସେ ଓଡ଼ିଆ ସାହିତ୍ୟର ପ୍ରାଚୀନ କବି ଦନାଇ ଦାସ, ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ଗୋପାଳକୃଷ୍ଣ ପ୍ରଭୃତିଙ୍କ ଅମର କାବ୍ୟ କବିତାର କିୟଦଂଶକୁ ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ କରିବା ଉଦ୍ଦେଶ୍ୟରେ ଇଂରେଜୀ ଭାଷାରେ ଅନୁବାଦ କରିଯାଇଛନ୍ତି । ପକ୍ଷାନ୍ତରେ ଇଂରେଜ କବି **Wordsworth, Shelly, Tennyson, Eliot** ପ୍ରଭୃତିଙ୍କ କବିତାକୁ ଓଡ଼ିଆରେ ଅନୁବାଦ କରି ଓଡିଆ ପାଠକଙ୍କ ଜ୍ଞାନକୁ ପରିବୃଦ୍ଧି କରିବା ପାଇଁ ପ୍ରୟାସ ଜାରି ରଖିଥିଲେ । ସେ ସମସ୍ତ ଏହି ଗ୍ରନ୍ଥରେ ସଂକଳିତ ନହୋଇ, ଦ୍ୱିତୀୟ ଭାଗରେ ପ୍ରଦାନ କରିବା ପାଇଁ ମନସ୍ଥ କରାଯାଇଛି ।

—୬—

ସେହିପରି ବିଭିନ୍ନ ପଣ୍ଡିତ ତଥା ଖ୍ୟାତିସମ୍ପନ୍ନ ବ୍ୟକ୍ତିଙ୍କ ଗ୍ରନ୍ଥକୁ ଅଧ୍ୟୟନ କରି, ତାର ସମାଲୋଚନା ଲେଖିବା କ୍ଷେତ୍ରରେ ସେ ଜଣେ ଗୁଣଗ୍ରାହୀ ଆଲୋଚକ ଥିଲେ । ହନୁମାନ ରାୟଗୁରୁ ଓ ଗୋବିନ୍ଦ ରାୟଗୁରୁଙ୍କ କବିତାକୁ ପାଠକରି ସେ ଯେଉଁ ପ୍ରବନ୍ଧ ରଚନା କରିଥିଲେ, ତାହା ପ୍ରକୃତରେ ଗ୍ରନ୍ଥ-ସମାଲୋଚନା କ୍ଷେତ୍ରରେ ଚିର-ସ୍ମରଣୀୟ ହୋଇ ରହିବ । ଏତଦ୍‌ବ୍ୟତୀତ ରାୟଗୁରୁ ଗ୍ରନ୍ଥାବଳୀର (ଖ୍ରୀ: ୧୯୬୬) ଭୂମିକା ଓ ଚିକିଲି ରାଜା ଶ୍ରୀ ଜଗନ୍ନାଥ ଦେବବର୍ମାଙ୍କ 'ଶିଳା ପ୍ରସ୍ତାର' (ଖ୍ରୀ: ୧୯୭୨) ଗ୍ରନ୍ଥର ମୁଖବନ୍ଧରେ ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥ-ସମୀକ୍ଷା, ଏବଂ 'ଚନ୍ଦ୍ରକଳା' ପତ୍ରିକାରେ "ପୁସ୍ତକ ପରିଚୟ" ଶୀର୍ଷକ ଏକ ସ୍ୱତନ୍ତ୍ର ବିଭାଗ କରି ସେଥିରେ ପ୍ରାୟ ୨୫/୩୦ ଖଣ୍ଡ ଗ୍ରନ୍ଥର ସମୀକ୍ଷା, ପ୍ରକୃତରେ ଓଡିଆ ସମାଲୋଚନା କ୍ଷେତ୍ରରେ ତାଙ୍କୁ ଜଣେ ଉଚ୍ଚଦରର ସମୀକ୍ଷକ ରୂପେ ପ୍ରତିଷ୍ଠିତ କରିପାରିଛି ।

—୭—

ସର୍ବୋପରି ପତ୍ରିକା ସମ୍ପାଦନା, ସାଂସ୍କୃତିକ ଅନୁଷ୍ଠାନ ସୃଷ୍ଟି କ୍ଷେତ୍ରରେ କପିଳେଶ୍ୱରଙ୍କ ଅବଦାନ ପ୍ରଣିଧାନଯୋଗ୍ୟ । ମାସିକ ପତ୍ରିକା ରୂପେ 'ଚନ୍ଦ୍ରକଳା'କୁ

ପ୍ରକାଶ କରିବା ପୂର୍ବରୁ ସେ 'ବୀଣା' ପତ୍ରିକା ପ୍ରକାଶନ ଦିଗରେ ରାଜା ଜଗନ୍ନାଥ ଦେବବର୍ମାଙ୍କୁ ସାହାଯ୍ୟ କରୁଥିଲେ । ଜୀବନର ଶେଷକାଳରେ ସେ 'ଚନ୍ଦ୍ରକଳା' ପତ୍ରିକାର ପ୍ରକାଶନଭାର ନିଜ କାନ୍ଧରେ ବହନ କରି, ତାହାକୁ ଏକବର୍ଷକାଳ ଚଳାଇଥିଲେ । ମାତ୍ର ଶେଷରେ ଏହା ଅର୍ଥାଭାବରୁ ବନ୍ଦହୋଇ ଯାଇଥିଲା । ଲକ୍ଷ୍ୟ କରିବାର କଥା ଏହି ଯେ ଏହି ପତ୍ରିକା ମାଧ୍ୟମରେ ସେ ଯେଉଁ ନୂତନ ସାହିତ୍ୟିକଙ୍କୁ ସୃଷ୍ଟି କରିଥିଲେ ଏବଂ ଲେଖନୀ ଚାଳନା କରିବା ପାଇଁ ପ୍ରେରଣା ଦେଇଥିଲେ, ତାହା କପିଳେଶ୍ୱରଙ୍କୁ ଜଣେ ଦାୟିତ୍ୱସମ୍ପନ୍ନ ସମ୍ପାଦକ ରୂପେ ପ୍ରତିଷ୍ଠିତ କରିପାରିଥିଲା । ନୂତନ ରଙ୍ଗ ଓ ନୂତନ ବିଷୟ ପରିବେଷଣ କରି 'ଚନ୍ଦ୍ରକଳା' ସେତେବେଳେ ଲୋକାଦୃତ ମଧ୍ୟ ହୋଇପାରିଥିଲା । ଚନ୍ଦ୍ରକଳାର ସମ୍ପାଦକୀୟକୁ ଆକର୍ଷଣୀୟ କରିବା ପାଇଁ ସେ ନିଜେ ଲେଖନୀ ଧାରଣ କରି ବିଚାର ଆଲୋଚନା ତଥା ଅନୁବାଦମାନ କରୁଥିଲେ । ଓଡ଼ିଆ ସାହିତ୍ୟର ଭୂୟୋବିକାଶ ନିମନ୍ତେ ତାଙ୍କର ପ୍ରୟାସ ଅତ୍ୟନ୍ତ ପ୍ରଶଂସନୀୟ । ଜୀବନର ଆଦ୍ୟଭାଗରେ 'ଇଚ୍ଛାପୁର କବି ସମ୍ମିଳନୀ'ର ଆୟୋଜନ, ତାଙ୍କର ସମଗ୍ର ଜୀବନ ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହ ନିଜକୁ ଜଡ଼ିତ ରଖିବାରେ ହିଁ ନିୟୋଜିତ ହୋଇଥିଲା । ସେ ଯେଉଁସ୍ଥାନକୁ ଚାକିରି କରିବା ପାଇଁ ଯାଇଛନ୍ତି, ସେଠାର ସାହିତ୍ୟପ୍ରିୟ ବ୍ୟକ୍ତିମାନଙ୍କୁ ସଙ୍ଗଠିତ କରି ବିଭିନ୍ନ ଅନୁଷ୍ଠାନମାନ ଗଢ଼ୁଥିଲେ । ତାହାର ମାଧ୍ୟମରେ ଗଞ୍ଜାମ ତଥା ଓଡ଼ିଶାର ଜନସାଧାରଣଙ୍କ ମନରେ ସାହିତ୍ୟ ଭାବନା ସୃଷ୍ଟି କରିଯାଇଛନ୍ତି । ମାନ୍ଦ୍ରାଜ ଓଡ଼ିଆ ସଭା, ଦକ୍ଷିଣ ଓଡ଼ିଆ ଯୁବକ ସମ୍ମିଳନୀ, ଜଉଗଡ଼ ଗବେଷଣା କେନ୍ଦ୍ର, ବସୁ ସାହିତ୍ୟ ପରିଷଦ, ବୁଦ୍ଧଗିରି ଗବେଷଣା କେନ୍ଦ୍ର, ବିରଞ୍ଚି ନାରାୟଣ ସାହିତ୍ୟ ପରିଷଦ, ଅଷ୍ଟଦୁର୍ଗ ସାଂସ୍କୃତିକ ପ୍ରତିଷ୍ଠାନ ଏବଂ ଗଞ୍ଜାମ ସାହିତ୍ୟ ସମ୍ମିଳନୀ ପ୍ରଭୃତି ତାହାର ପ୍ରକୃଷ୍ଟ ପ୍ରମାଣ ।

ସର୍ବୋପରି କପିଳେଶ୍ୱର ଥିଲେ ଜଣେ ଅପୂର୍ବ ବାଗ୍ମୀ । ଓଡ଼ିଶା, ଆନ୍ଧ୍ର ଓ ପଶ୍ଚିମବଙ୍ଗ ଆଦି ପ୍ରଦେଶର ବିଭିନ୍ନ ଶିକ୍ଷାନୁଷ୍ଠାନକୁ ଯାଇ ସେ ଯେଉଁ ଭାଷଣମାନ ପ୍ରଦାନ କରିଯାଇଛନ୍ତି, ତାହା ପ୍ରକୃତରେ ବିସ୍ମୟକର । ଭାଷଣ ଦେଲାବେଳେ ସେ ଜଣେ ଋଷିଭଳି ପ୍ରତୀୟମାନ ହେଉଥିଲେ, ଯାହାକି ମୁଁ ନିଜେ ଅନୁଭବ କରିଛି । ତାଙ୍କ ଭାଷଣର ପ୍ରତିଟି ଶବ୍ଦ ବୌଦ୍ଧିକ ଓ ଚିନ୍ତାଗର୍ଭକ ।

—୮—

ପରିଶେଷରେ ଏତିକି କୁହାଯାଇପାରେ ଯେ ପରିପୂର୍ଣ୍ଣ ଜୀବନାନୁଭୂତି ଓ ବୌଦ୍ଧିକ ଜୀବନବୋଧ ଉଭୟର ସମନ୍ୱୟରେ କପିଳେଶ୍ୱରଙ୍କ ରଚନାବଳୀ ପରିପୁଷ୍ଟ । କୌଣସି ଯଶ, ଗୌରବ, ପ୍ରତିଷ୍ଠା ବା ପୁରସ୍କାର ପ୍ରତି ମୋହାବିଷ୍ଟ ନ

ହୋଇ ସେ ରଚନା କରିଯାଇଛନ୍ତି ଅର୍ଦ୍ଧଶତାଧିକ ପ୍ରବନ୍ଧ । ସଙ୍ଗଠିତ କରିଯାଇଛନ୍ତି ବହୁ ଅନୁଷ୍ଠାନ । ଆଜି ତାଙ୍କର ପାର୍ଥିବ ଶରୀର ମାଟିରେ ମିଶିଯାଇଛି ସତ କିନ୍ତୁ କହିବା ବାହୁଲ୍ୟ ଅଦ୍ୟାବଧି କପିଳେଶ୍ୱର ଦକ୍ଷିଣ ଓଡ଼ିଶାର ସାହିତ୍ୟାକାଶରେ ଏକ ଅମଳିନ ପ୍ରେରଣାଦାୟୀ ଜ୍ୟୋତିଷ୍କ ରୂପେ ପ୍ରତିଭାତ ହେଉଛନ୍ତି ।

ଏହି ମହାନ୍ ସାହିତ୍ୟ ସାଧକ ଥିଲେ ମୋର ପୂଜ୍ୟ ଗୁରୁ । ତାଙ୍କର ପ୍ରେରଣା, ଆଦର୍ଶ ଓ ଆଶୀର୍ବାଦରେ ଏ ଜୀବନ ଗଢ଼ା । ପୁନଶ୍ଚ ତାଙ୍କର ହଜିଯିବାକୁ ବସିଥିବା ଅର୍ଦ୍ଧଶତାଧିକ ପ୍ରବନ୍ଧ ତଥା ଅନ୍ୟାନ୍ୟ ରଚନାବଳୀର ସଙ୍କଳନ ଦାୟିତ୍ୱ ମୋ ଉପରେ ନିହିତ ହେବାରୁ, ମୁଁ ସ୍ୱର୍ଗୀୟ ଗୁରୁଙ୍କ ଜୀବଦ୍ଦଶାର ଆଶା ଆକାଂକ୍ଷାକୁ ପୂରଣ କରିବା ନିମନ୍ତେ ଯତ୍‌କିଞ୍ଚିତ ପ୍ରୟାସ କରିଛି ମାତ୍ର । ଏଥିପାଇଁ ଅଗ୍ରଜ ପ୍ରତିମ ଗଣେଶ୍ୱର ଦାସ ତଥା ତାଙ୍କର ଧର୍ମପତ୍ନୀ, ପ୍ରକାଶିକା ଶ୍ରୀମତୀ ନିରୂପମା ଦାସଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଛି । ସେ ତାଙ୍କ ପିତାଙ୍କ ଜୀବଦ୍ଦଶାରେ ଅପୂର୍ଣ୍ଣଥିବା କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ପାଇଁ ପ୍ରଥମେ ଆଗଭର ହୋଇ ଏହି ଗ୍ରନ୍ଥ ସମ୍ପାଦନା କରିବା ପାଇଁ ମୋତେ ଅନୁରୋଧ କରିଥିଲେ । କେବଳ ସେତିକି ନୁହେଁ ତାଙ୍କ ନିକଟରେ ଥିବା ବହୁ ଦୁଷ୍‌ପ୍ରାପ୍ୟ ତଥ୍ୟ, ପ୍ରବନ୍ଧ ଓ ଫଟୋଚିତ୍ର ଆଦିକୁ ଯୋଗାଇବା ସଙ୍ଗେ ସଙ୍ଗେ ନିଜ କାନ୍ଧରେ ପ୍ରକାଶନ ଦାୟିତ୍ୱ ବହନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଛନ୍ତି ।

ମୋର ଅନୁରୋଧ ରକ୍ଷା କରି ପୂଜ୍ୟ ଗୁରୁଦେବ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ଏହି ଗ୍ରନ୍ଥର ଅଗ୍ରଲେଖ ଲେଖିଛନ୍ତି । ଏଥିପାଇଁ ମୁଁ ତାଙ୍କ ନିକଟରେ ଚିର କୃତଜ୍ଞ ।

କପିଳେଶ୍ୱର ନିଜର ଆତ୍ମଜୀବନୀ ଲେଖି ନ ଥିଲେ । ମାତ୍ର ବହୁ ଗବେଷକଙ୍କ ଅନୁରୋଧରେ ସ୍ୱୀୟ ଜୀବନର କିଛି ସ୍ମୃତିକୁ ପୁତ୍ର ଗଣେଶ୍ୱରଙ୍କୁ ଡ଼ାକି ଦେଇଥିଲେ ଯାହାକି ଏହି ସଙ୍କଳନରେ ସଂଯୋଗ କରାଯାଇଛି । ଆମର ସମସ୍ତ ଚେଷ୍ଟା ସତ୍ତ୍ୱେ ଗ୍ରନ୍ଥଟି ମୁଦ୍ରଣ ଜନିତ ଦୋଷରୁ ମୁକ୍ତ ହୋଇପାରିନାହିଁ । ଏଣୁ ପାଠକମାନଙ୍କ ନିକଟରେ ମୁଁ କ୍ଷମାପ୍ରାର୍ଥୀ ।

ଏତଦ୍‌ବ୍ୟତୀତ ଅନ୍ୟ ଯେଉଁମାନେ ଏହି ଗ୍ରନ୍ଥ ପ୍ରକାଶନ କାଳରେ ସାହାଯ୍ୟ କରି ଧନ୍ୟବାଦ ପାଇବାର ଯୋଗ୍ୟ ଅଟନ୍ତି, ତନ୍ମଧ୍ୟରେ ଅଛନ୍ତି ଏହି ଗ୍ରନ୍ଥର ମୁଦ୍ରକ ଶ୍ରୀ ଅଭିମନ୍ୟୁ ପାତ୍ରୀ, ଅଧ୍ୟାପକ ଶ୍ରୀ ଯୋଗାନନ୍ଦ ସାହୁ ଓ ଅଧ୍ୟାପିକା କୁମାରୀ

ଜ୍ୟୋତ୍ସ୍ନାରାଣୀ ପଟ୍ଟନାୟକ ଏବଂ ଓଡ଼ିଶା ରାଜ୍ୟ ଅଭିଲେଖାଗାର, ଭୁବନେଶ୍ୱରର କର୍ମକର୍ତ୍ତାଗଣ । ଏହି ଅବସରରେ ମୁଁ ସେମାନଙ୍କ ସାହାଯ୍ୟ ପାଇଁ ଆନ୍ତରିକ ସାଧୁବାଦ ଜଣାଉଛି ।

ଏହି ମହାନ ସାହିତ୍ୟିକଙ୍କ ବହୁ କୃତି ଅଦ୍ୟାବଧି ବିକ୍ଷିପ୍ତ ଅବସ୍ଥାରେ ଅତ୍ର ତତ୍ର ପଡ଼ିରହିଛି । ସେ ସବୁର ସଂକଳନ ନିତାନ୍ତ ଆବଶ୍ୟକ । ବ୍ରହ୍ମପୁର ବିଶ୍ୱ-ବିଦ୍ୟାଳୟ କିମ୍ବା ଓଡିଶା ସାହିତ୍ୟ ଏକାଡ଼େମୀର କର୍ମକର୍ତ୍ତାଗଣ ଏ ଦିଗରେ ଉଦ୍ୟମ କଲେ "କପିଳେଶ୍ୱର ଗ୍ରନ୍ଥାବଳୀ" ଅଚିରେ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇପାରନ୍ତା । ପରିଶେଷରେ ଏହି ସଂକଳନ ସୁଧୀମହଲରେ ଯଥୋଚିତ ଆଦର ପାଇବ—ଏହାହିଁ ସଙ୍କଳକର ଏକାନ୍ତ କାମ୍ୟ ।

ଦୁର୍ଗାମାଧବ ନନ୍ଦ

# ଅଗ୍ରଲେଖ

"ଶିକ୍ଷକ ନିଜେ ସତ୍ୟ-ଶିବ-ସୁନ୍ଦରରେ ମୂର୍ତ୍ତିମନ୍ତ ହୁଅନ୍ତୁ; ଦେଖିବେ ତଦ୍ଵାରା ଛାତ୍ରର ଜୀବନ ସ୍ୱତଃ ସାଧନାର ଉଚ୍ଚତର ସୋପାନକୁ ଉଠିଛି । ସେତେବେଳେ ବାଗାଡମ୍ବର ରହିବ ନାହିଁ; ତାଙ୍କ ପ୍ରତ୍ୟେକ କ୍ରିୟାରେ ଶିକ୍ଷାର ଜୀବନ୍ତ ଆଦର୍ଶ ଫୁଟିବ । ପେଟପୋଷିବା ପାଇଁ ଶିକ୍ଷା ଏକଆଡେ, ଜୀବନ ଅନ୍ୟଆଡ଼େ, ଏ ବୈଷମ୍ୟ ଶିକ୍ଷକର ସ୍ଥିତିକୁ କଦର୍ଯ୍ୟ ନକରୁ ।"

ଶିକ୍ଷକର ଏହି ମହନୀୟ ଆଦର୍ଶକୁ ଆଜୀବନ ପଦେ ପଦେ ଅନୁସରଣ କରି ଚାଲିଥିବା ସ୍ୱାଭିମାନୀ, ନିରଳସ, କର୍ମଠ, ଛାତ୍ର ଓ ବନ୍ଧୁବତ୍ସଳ, ଅମାୟିକ ବ୍ୟକ୍ତିତ୍ୱର ଅଧିକାରୀ ସ୍ୱର୍ଗତ କପିଳେଶ୍ୱର ଦାସ ଓଡ଼ିଶାର ଦକ୍ଷିଣ ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ ଥିଲେ ଜଣେ ଜାଗ୍ରତ ପ୍ରହରୀ । ତାଙ୍କ କାର୍ଯ୍ୟ, ଚିନ୍ତା ଓ ଜୀବନାଦର୍ଶ ଥିଲା ପରସ୍ପରର ପରିପୂରକ । ଇଂରେଜୀ ଓ ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଉପାଧି ଲାଭ କରିଥିବା ଯୁବକ କପିଳେଶ୍ୱରଙ୍କ ପାଇଁ ଉଚ୍ଚ ସରକାରୀ ଚାକିରୀଟିଏ ଯୋଗାଡ କରିବା ସେ ସମୟରେ ହୁଏତ କଷ୍ଟସାଧ୍ୟ ହୋଇନଥାନ୍ତା; କିନ୍ତୁ ସସୀମତାର ମୋହକୁ ଛିନ୍ନକରି ଅସୀମତାର ସନ୍ଧାନହିଁ ଥିଲା ତାଙ୍କର ଲକ୍ଷ୍ୟ । ତେଣୁ ସେ ଶିକ୍ଷକତାରୂପକ ସର୍ବତ୍ର କର୍ମମୟ ଜୀବନକୁ ଉଦ୍ଦାମ ଯୌବନରେ ସ୍ୱତଃ ଆଦରି ନେଇଥଲେ । ଇଚ୍ଛାପୁର ହାଇସ୍କୁଲଠାରୁ (ବର୍ତ୍ତମାନ ବିଚ୍ଛିନ୍ନାଞ୍ଚଳରେ) ଖଲ୍ଲିକୋଟର ରାମଚନ୍ଦ୍ର ମର୍ଦ୍ଦରାଜ ମହାବିଦ୍ୟାଳୟ ପର୍ଯ୍ୟନ୍ତ ତାଙ୍କ କର୍ମକ୍ଷେତ୍ର ପ୍ରଲମ୍ବିତ । ଦୀର୍ଘ ଚାଳିଶବର୍ଷ ସେ ଶିକ୍ଷକତା କରିଛନ୍ତି । ଜୀବନର ଶେଷନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ସେ ଥିଲେ ଜଣେ ଆଦର୍ଶ ଶିକ୍ଷକ । ଏ ସମ୍ପର୍କରେ ଗୋଟିଏ ଘଟଣା ଉଲ୍ଲେଖ କରାଯାଇପାରେ ।

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତା'ର ପ୍ରତିଷ୍ଠା ଦିବସରେ ଯେତେବେଳେ ଦକ୍ଷିଣ ଓଡ଼ିଶାର ବରପୁତ୍ରମାନଙ୍କୁ ଅଙ୍ଗବସ୍ତ୍ର ଦ୍ୱାରା ସମ୍ମାନିତ କରିବା ପାଇଁ ପଦକ୍ଷେପ ଗ୍ରହଣ କଲା, ସେତେବେଳେ କପିଳେଶ୍ୱର ଦାସଙ୍କୁ ପ୍ରଥମେ ସ୍ମରଣ କରାଯାଇଥିଲା । କିନ୍ତୁ ସେ ବାର୍ଦ୍ଧକ୍ୟ ଓ ଭଗ୍ନସ୍ୱାସ୍ଥ୍ୟ ଯୋଗୁଁ ଏହି ଉତ୍ସବରେ ଯୋଗଦାନ କରି ପାରିନଥିଲେ ।

ଏଣୁ ବିଶ୍ୱବିଦ୍ୟାଳୟର କୁଳସଚିବ ଡଃ କୋରଗୁନ୍ଦ ସାମନ୍ତରାୟ ଏବଂ ମୁଁ ମାନପତ୍ର ଓ ଅଙ୍ଗବସ୍ତ୍ର ନେଇ ତାଙ୍କୁ ତାଙ୍କ ବାସଗୃହଠାରେ ଦେବା ସ୍ଥିର କଲୁ । ଆମେ ଗ୍ରାମରେ ପହଞ୍ଚିଲା ବେଳକୁ ସେଠାରେ ଏକ ସଭାମଞ୍ଚ ବିଧିବଦ୍ଧଭାବେ ପ୍ରସ୍ତୁତ ହୋଇଥାଏ । ବେଦପାଠ, ପ୍ରାରମ୍ଭିକ ସଙ୍ଗୀତ ଗାନ, ସ୍ୱାଗତ ଭାଷଣ, ଅତିଥି ପରିଚୟ ମାନପତ୍ର ପ୍ରଦାନ, ମାନପତ୍ର ଗ୍ରହୀତାଙ୍କ ଭାଷଣ ଏବଂ ପରିଶେଷରେ ଧନ୍ୟବାଦାର୍ପଣ ପ୍ରଭୃତି କାର୍ଯ୍ୟକ୍ରମ ଯଥାରୀତିରେ ସମ୍ପାଦିତ ହେଲା । ଚିଙ୍ଗୁଡ଼ିଖୋଲର କିଛି ଗ୍ରାମବାସୀ, ତାଙ୍କ ପରିବାରର କିଛି ସଦସ୍ୟ ଏବଂ କିଛି ଛାତ୍ରଥିଲେ ସଭାଟିର ସହଯୋଗୀ ଓ ଶ୍ରୋତା । ସେ ବୟସରେ ଏ ପ୍ରକାର କଷ୍ଟ କାହିଁକି ସ୍ୱୀକାର କଲେ ବୋଲି ପଚାରିବାରୁ ସେ କହିଥିଲେ—"ଏପରି ନକଲେ ଯୁବକମାନେ ଧୀରେ ଧୀରେ ସାହିତ୍ୟିକ ଓ ସାଂସ୍କୃତିକ ସଭାର କାର୍ଯ୍ୟକ୍ରମ ଭୁଲିଯିବେ । ତେଣୁ ଏହି ପିଲାମାନଙ୍କୁ ଶିକ୍ଷାଦେବାପାଇଁ କେବଳ ମୁଁ ଟିକିଏ କଷ୍ଟ କରିଛି ।" ଏଥିରୁ ହିଁ ତାଙ୍କର ଶିକ୍ଷକ ସୁଲଭ ମନୋବୃତ୍ତିର ସାର୍ଥକ ପରିଚୟ ମିଳିପାରିବ ।

ଛାତ୍ରମାନଙ୍କୁ ଶ୍ରେଣୀଗୃହ ମଧ୍ୟରେ ଶିକ୍ଷାଦାନ କଲାପରେ ସେ ତାଙ୍କର କାର୍ଯ୍ୟ ଶେଷ ହେଲାବୋଲି ମନେକରୁନଥିଲେ । ସେମାନଙ୍କ ମନରେ ଦେଶ, ଜାତି ଓ ସାହିତ୍ୟ ପ୍ରତି ନିବିଡ଼ ମହତ୍ତ୍ୱବୋଧ ଜାଗ୍ରତ କରାଇବାଥିଲା ତାଙ୍କର ଲକ୍ଷ୍ୟ । ଏଣୁ ସେ ଯେଉଁ ଉଚ୍ଚବିଦ୍ୟାଳୟ ବା ମହାବିଦ୍ୟାଳୟକୁ ଯାଇଛନ୍ତି ସେଠାରେ ବର୍ଷର ବିଭିନ୍ନ ସମୟରେ ପ୍ରବନ୍ଧ, କବିତା, ବକ୍ତୃତା ପ୍ରତିଯୋଗିତାମାନ ଆୟୋଜନ କରିବା ସଙ୍ଗେ ସଙ୍ଗେ ସ୍ଥାନୀୟ ଉତ୍ସାହୀଯୁବକ ବନ୍ଧୁଙ୍କୁ ନେଇ ବହୁ ସାରସ୍ୱତ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ଏସବୁ ପ୍ରତିଷ୍ଠାନର ଲକ୍ଷ୍ୟ ହେଲା ସେହି ସେହି ଅଞ୍ଚଳର ବିସ୍ମୃତ ଐତିହାସିକ ଗୌରବର ପୁନରୁଦ୍ଧାର ଏବଂ ତା' ମାଧ୍ୟମରେ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି ପାଇଁ ଯୁବକମାନଙ୍କ ମନରେ ଆଗ୍ରହ ଓ ଅନୁରାଗ ସୃଷ୍ଟି । ତାଙ୍କ ପ୍ରେରଣା ଓ ଉଦ୍ୟମରେ ଉପାନ୍ତ ସହର ଇଚ୍ଛାପୁରଠାରେ ଯେଉଁ ନିଖିଳ ଉତ୍କଳ କବି ସମ୍ମିଳନୀ ତିନିଦିନଧରି ଅନୁଷ୍ଠିତ ହୋଇଥିଲା, ତାହା ସେ ସମୟରେ ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ଏକ ଚହଳ ସୃଷ୍ଟି କରିଥିଲା । ସେ ସମୟର ବିଶିଷ୍ଟ ସାହିତ୍ୟ ପତ୍ରିକା 'ସହକାର' ଏଥିପାଇଁ ଏକ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରିଥିଲା । ଟିକିଟିର ରାଜକବି ରାଧାମୋହନ ଗଜେନ୍ଦ୍ରଦେବ ଥିଲେ ସେହି ସମ୍ମିଳନୀର ସଭାପତି । କପିଳେଶ୍ୱରଙ୍କ ବାଗ୍ମୀତା ସେ ସମୟର ବରିଷ୍ଠ ସାହିତ୍ୟିକମାନଙ୍କୁ ମୁଗ୍ଧ କରିଥିଲା । ମାନ୍ଦ୍ରାଜ୍ ଓଡ଼ିଆ ସଭା, ଦକ୍ଷିଣ ଓଡ଼ିଆ ଯୁବକ ସମ୍ମିଳନୀ, ଆନ୍ଧ୍ରୋତ୍କଳ ସଂସ୍କୃତି ସଂସଦ, ଜଉଗଡ଼ ଗବେଷଣା କେନ୍ଦ୍ର, ବସ୍ତ୍ର ସାହିତ୍ୟ ପରିଷଦ, ବୁଦ୍ଧଗିରି ଗବେଷଣା କେନ୍ଦ୍ର, ବିରଞ୍ଚିନାରାୟଣ ସାହିତ୍ୟ ପରିଷଦ, ଅଷ୍ଟଦୁର୍ଗ ସାଂସ୍କୃତିକ ପ୍ରତିଷ୍ଠାନ ଏବଂ ଗଞ୍ଜାମ ସାହିତ୍ୟ ସମ୍ମିଳନୀ ତାଙ୍କ ସାଙ୍ଗଠନିକ ଦକ୍ଷତାର

କେତୋଟି ଅମ୍ଳାନ ସ୍ମାରକୀ । ଗଞ୍ଜାମ ସାହିତ୍ୟ ସମ୍ମିଳନୀର ପ୍ରଥମ ଅଧିବେଶନର ସ୍ମୃତି ଏବେସୁଦ୍ଧା ଆମମାନଙ୍କ ମନରୁ ତିରୋହିତ ହୋଇନାହିଁ ।

କେବଳ ଆଦର୍ଶ ଶିକ୍ଷକ, ପ୍ରଭବଶାଳୀ ବକ୍ତା କିମ୍ବା ନିଃସ୍ୱାର୍ଥପର ସଂଗଠକ ଭାବରେ ନୁହନ୍ତି, ଜଣେ ସୁସାହିତ୍ୟିକ ରୂପେ ମଧ୍ୟ ଓଡ଼ିଆ ସାହିତ୍ୟକ୍ଷେତ୍ରରେ ସେ ଛାଡ଼ିଯାଇଛନ୍ତି ତାଙ୍କର ଉଜ୍ଜ୍ୱଳ ପଦାଙ୍କ । ସେ ସମୟର ପ୍ରାୟ ସମସ୍ତ ବିଶିଷ୍ଟ ଓଡ଼ିଆ ଓ ଇଂରେଜୀ ପତ୍ରପତ୍ରିକାରେ ତାଙ୍କର ବହୁ ପ୍ରବନ୍ଧ ଓ ଅନୂଦିତ କବିତାମାନ ପ୍ରକାଶ ପାଉଥିଲା । ଏଗୁଡ଼ିକରେ ତାଙ୍କ ଦାର୍ଶନିକତା ଓ ସାରସ୍ୱତ ପ୍ରତିଭାର ଅପୂର୍ବ ସମନ୍ୱୟ ଏକାନ୍ତ ଉଲ୍ଲେଖଯୋଗ୍ୟ । କଠିନ ଓ ନିରସ ଦାର୍ଶନିକ ଚିନ୍ତା ଓ ତତ୍ତ୍ୱ ସମୂହକୁ ସାହିତ୍ୟର ସରସ ଆବରଣ ମଧ୍ୟରେ ପ୍ରକାଶ କରିବାର କୃତିତ୍ୱ ତାଙ୍କ ପ୍ରତିଭାର ବିଶେଷତ୍ୱ । ଏବେ ମଧ୍ୟ କେହି କେହି ଛାତ୍ର 'ଅସୀମର ଆହ୍ୱାନ' ପ୍ରବନ୍ଧକୁ ଅକ୍ଷରଶଃ ଆବୃତ୍ତି କରିପାରୁଥିବା କପିଳେଶ୍ୱରଙ୍କ ପାଇଁ କମ୍ ଗୌରବର କଥା ନୁହେଁ ।

ସାହିତ୍ୟିକ କପିଳେଶ୍ୱର ଥିଲେ ଉଭୟଭାଷା ପ୍ରବୀଣ । ଇଂରେଜୀ ଓ ଓଡ଼ିଆ ଉଭୟଭାଷାରେ ତାଙ୍କ ଲେଖନୀ ସମାନଭାବେ ସାହିତ୍ୟ ସୃଷ୍ଟି କରିପାରୁଥିଲା । କିନ୍ତୁ ଏ ଉଭୟର ଲକ୍ଷ୍ୟଥିଲା ସ୍ୱତନ୍ତ୍ର । ଇଂରେଜୀ ଭାଷା ମାଧ୍ୟମରେ ସେ ଓଡ଼ିଆ ସାହିତ୍ୟର ବୈଶିଷ୍ଟ୍ୟକୁ ବିଶ୍ୱବାସୀଙ୍କ ସମ୍ମୁଖରେ ଉପସ୍ଥାପନ କରିବାକୁ ଚାହୁଁଥିଲେ । ଓଡ଼ିଆ ସାହିତ୍ୟର ଏହି ଅଭାବଟି ପୂରଣ କରିବାପାଇଁ ସେ ତାଙ୍କ ପ୍ରବନ୍ଧ ମଧ୍ୟରେ ଓଡ଼ିଶାର ସାହିତ୍ୟ ସାଧକମାନଙ୍କୁ ଆହ୍ୱାନ ଦେବା ସଙ୍ଗେ ସଙ୍ଗେ ନିଜେ ପ୍ରଥମେ ସେ ଦିଗରେ ଉଦ୍ୟମ କରିଛନ୍ତି । କବିସୂର୍ଯ୍ୟ, ଗୋପାଳକୃଷ୍ଣ, ଉପେନ୍ଦ୍ରଭଞ୍ଜଙ୍କ ବହୁ କବିତା ଓ କାବ୍ୟାଂଶ ଇଂରେଜୀ ଭାଷାରେ ଅନୁବାଦିତ ହୋଇ ଭାରତର ବିଭିନ୍ନ ଇଂରେଜୀ ପତ୍ରିକାରେ ପ୍ରକାଶ ପାଇଛି । ତାଙ୍କ ସମ୍ପାଦିତ 'ଚନ୍ଦ୍ରକଳା' ପତ୍ରିକାରେ ଏଥିପାଇଁ ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରାଯାଇଥିଲା । ଏତଦ୍‌ବ୍ୟତୀତ କପିଳେଶ୍ୱରଙ୍କ ଇଂରେଜୀ ପ୍ରବନ୍ଧଗୁଡ଼ିକ ମଧ୍ୟ ଅତ୍ୟନ୍ତ ଉପାଦେୟ ଏବଂ ତାଙ୍କ ମନନଶୀଳତାର ପରିଚାୟକ ।

ଓଡ଼ିଆ ସାହିତ୍ୟରେ ସେ ଅନ୍ୟତମ ଯଶସ୍ୱୀ ପ୍ରାବନ୍ଧିକ ଭାବେ ସମ୍ମାନିତ । ଅସୀମର ଆହ୍ୱାନଠାରୁ ଭଞ୍ଜ ସାହିତ୍ୟ ପର୍ଯ୍ୟନ୍ତ ତାଙ୍କ ପ୍ରବନ୍ଧ ବିଷୟବସ୍ତୁର ଦିଗନ୍ତ ବିସ୍ତୃତ । ଶିକ୍ଷା, ସଂସ୍କୃତି, ଦର୍ଶନ, ସାହିତ୍ୟ, ଇତିହାସ, ଅର୍ଥନୀତି, ସ୍ୱାସ୍ଥ୍ୟ ଓ ସମୀକ୍ଷା ପ୍ରତ୍ୟେକଟି ବିଷୟରେ ସେ ତାଙ୍କର ସୁଚିନ୍ତିତ ମତାମତ ଏହି ପ୍ରବନ୍ଧଗୁଡ଼ିକରେ ଉପସ୍ଥାପନ କରିଛନ୍ତି । ଏସବୁ ତଥ୍ୟନିଷ୍ଠ ସତ, କିନ୍ତୁ ଲେଖକଙ୍କ ବିଶିଷ୍ଟ ପ୍ରକାଶନଭଙ୍ଗୀ ଏଗୁଡ଼ିକୁ ସାହିତ୍ୟ କୋଟୀକୁ ଉନ୍ନୀତ କରିପାରିଛି । ଶିକ୍ଷକ ସୁଲଭ ସ୍ୱଚ୍ଛତା, ଗବେଷକ ସୁଲଭ ଜିଜ୍ଞାସା, ଦାର୍ଶନିକ ସୁଲଭ ମନନଶୀଳତା ଏବଂ ସର୍ବୋପରି ସାହିତ୍ୟିକ ସୁଲଭ ସରସତା କପିଳେଶ୍ୱରଙ୍କ ପ୍ରବନ୍ଧ ରଚନାଗୁଡ଼ିକୁ କାଳଜୟୀ କରିପାରିଛି । ବିଷୟ

ବସ୍ତୁରେ ବିବିଧତା ଥିଲେ ସୁଦ୍ଧା ମାନବ 'ଜୀବନ'ର ବ୍ୟକ୍ତିଗତ, ପାରିବାରିକ, ସାମାଜିକ ଓ ଜାତୀୟ-ବିକାଶ ଓ ସମୃଦ୍ଧି ହିଁ ସମସ୍ତ ପ୍ରବନ୍ଧର ଭାବବସ୍ତୁ । ପ୍ରାୟ ଚାଳିଶ, ପଚାଶ ବର୍ଷ ପୂର୍ବେ ଲେଖାଯାଇଥିଲେ ସୁଦ୍ଧା ସାଂପ୍ରତିକ ସମୟରେ ପ୍ରବନ୍ଧଗୁଡ଼ିକର ଆବେଦନ ଓ ଉପାଦେୟତା ମନ୍ଦୀଭୂତ ହୋଇଛି ବୋଲି କୁହାଯାଇ ପାରିବ ନାହିଁ । ବରଂ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ ଅବସରରେ କପିଳେଶ୍ୱରଙ୍କ ଦୂରଦୃଷ୍ଟି ଏ ଦେଶର ବିଭ୍ରାନ୍ତ ନେତୃବୃନ୍ଦ ଓ ଜନତାକୁ ଉଚିତ ମାର୍ଗ ପ୍ରଦର୍ଶନ କରିପାରିବ ।

ସୁଖର କଥା, ସ୍ୱର୍ଗତ କପିଳେଶ୍ୱର ଦାସଙ୍କ ଓଡ଼ିଆ ରଚନାଗୁଡ଼ିକ ଏକତ୍ର ସଂକଳନ ହୋଇ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ବର୍ଷରେ ପ୍ରକାଶ ପାଉଛି । ତାଙ୍କ ଜୀବଦ୍ଦଶାରେ ସେ କେତେଗୁଡ଼ିଏ ପ୍ରବନ୍ଧ ଓ କବିତାକୁ 'ଜୀବନ ଚିନ୍ତା' (ଖ୍ରୀ: ୧୯୫୨) ଗ୍ରନ୍ଥରେ ସଙ୍କଳନ କରିଥିଲେ । କିନ୍ତୁ ଅନ୍ୟାନ୍ୟ ବହୁ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ବିକ୍ଷିପ୍ତ ଭାବେ ରହିଥିଲା । ସେଗୁଡ଼ିକର ଆହରଣ ଓ ସଙ୍କଳନ ନିଶ୍ଚିତ ଭାବେ ଏକ ଦୁରୂହ ବ୍ୟାପାର । ତାଙ୍କର ସୁଯୋଗ୍ୟ ପୁତ୍ର ଆୟୁଷ୍ମାନ୍ ଗଣେଶ୍ୱର ଦାସ ଏବଂ ପ୍ରିୟଛାତ୍ର ବିଦଗ୍ଧ ପାଠକ କଲ୍ୟାଣୀୟ ଡକ୍ଟର ଦୁର୍ଗାମାଧବ ନନ୍ଦ ବହୁ ଶ୍ରମସ୍ୱୀକାର ପୂର୍ବକ ବିଭିନ୍ନ ବ୍ୟକ୍ତିଗତ ଓ ସରକାରୀ ଗ୍ରନ୍ଥାଗାର ଆଲୋଡନ କରି ଏ କାର୍ଯ୍ୟସଂପନ୍ନ କରିପାରିଛନ୍ତି । ଏଥିପାଇଁ ଏ ଉଭୟେ ଧନ୍ୟବାଦାର୍ହ । କପିଳେଶ୍ୱର ଦାସଙ୍କ ସ୍ୱର୍ଗତ ଆତ୍ମା ସେମାନଙ୍କ ଜୀବନ-ସରଣୀକୁ ପୁଷ୍ପିତ କରିବ । ସଂଗ୍ରହ କରିଥିବା ଇଂରେଜୀ ରଚନାଗୁଡ଼ିକୁ ଯଥାଶୀଘ୍ର ପ୍ରକାଶ କରି ସେମାନେ ଏହି ଜାତୀୟ କାର୍ଯ୍ୟକୁ ପୂର୍ଣ୍ଣାଙ୍ଗ କରିବେ ବୋଲି ଆଶା ।

ପ୍ରଫେସର, ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ଦଶହରା—୧୯୯୭

ଡ଼: ସୁଦର୍ଶନ ଆଚାର୍ଯ୍ୟ

# ଆତ୍ମଚରିତ ନୁହେଁ : ଆତ୍ମକଥନ *

ଜନ୍ମ ତାରିଖ ୨୯-୬-୧୯୦୬ । ଗଞ୍ଜାମ ଜିଲ୍ଲା ଖଲ୍ଲିକୋଟ ତହସିଲ, କୋଦଳା ଥାନା, ଟିଙ୍ଗୁଡ଼ିଖୋଲ ଗ୍ରାମ ଜନ୍ମସ୍ଥାନ । ତାଙ୍କର ପରମ ଆରାଧ୍ୟ ପିତୃଦେବ ସ୍ୱର୍ଗତ ଆନନ୍ଦ ଦାସ ବଡଖେମୁଣ୍ଡି ରାଜସଭାରେ ପଣ୍ଡିତ ଥାଇ ସେଠାରୁ ଜ୍ୟୋତିଷ ଅଳଙ୍କାର ଓ ଖଲ୍ଲିକୋଟ ରାଜସଭାରେ ପଣ୍ଡିତ ଥାଇ ସେଠାରୁ ସାମନ୍ତରାୟ ପଦବୀ ପ୍ରାପ୍ତ ହୋଇଥିଲେ । ସେ ବିଭିନ୍ନ ଶାସ୍ତ୍ରନିପୁଣ ଶ୍ରୋତ୍ରିୟ ତଥା କର୍ମିଷ୍ଠ କବି ଥିଲେ । କପିଳେଶ୍ୱରଙ୍କ ପରମ ଆରାଧ୍ୟା ଜନନୀ ସ୍ୱର୍ଗତା କୁମାରୀ ଦେବୀ ନିକଟସ୍ଥ ଓଡ଼ନାଇ ଗ୍ରାମର ପ୍ରତିଷ୍ଠିତ କୀର୍ତ୍ତିଶାଳୀ ଆଚାର୍ଯ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେତେବେଳର ମାଟିବଂଶ ଅବଧାନ ନୃସିଂହଚରଣ ପଟ୍ଟନାୟକଙ୍କ ଶିକ୍ଷକତ୍ୱରେ ଗାଁ ପାଠଶାଳୀରେ, ସୁନିୟନ୍ତ୍ରିତ ଶିକ୍ଷାଲାଭ କରି କପିଳେଶ୍ୱର ବ୍ରହ୍ମପୁରକୁ ଉଚ୍ଚଶିକ୍ଷା ପାଇଁ ଗଲେ । କ୍ରମେ ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜରେ ଅଧ୍ୟୟନ କରି ସେତେବେଳର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ I.A. ପରୀକ୍ଷାରେ ଡ଼ିଷ୍ଟିଙ୍ଗ୍‌ଶନ୍ ସହିତ ପାଶ୍ କଲେ । ତହୁଁ ସେତେବେଳର ବିହାର ପାଟନା ବିଶ୍ୱବିଦ୍ୟାଳୟ ପରିଚାଳିତ କଟକ ରେଭେନ୍‌ସା କଲେଜରେ B.A. ଅଧ୍ୟୟନ କରି ଇଂରେଜୀ ଅନର୍ସ ସହିତ କଲେଜରେ ପ୍ରଥମ ସ୍ଥାନ ଓ ବିଶ୍ୱବିଦ୍ୟାଳୟରେ ତୃତୀୟ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହୋଇଥିଲେ । ତହୁଁ ଆନ୍ଧ୍ରପ୍ରଦେଶର ରାଜମହେନ୍ଦ୍ରୀ B.Ed କଲେଜରେ ଅଧ୍ୟୟନ କରି ସ୍ୱତନ୍ତ୍ର ଇଂରେଜୀ

---

* ଜୀବଦଶାର ଶେଷ ପର୍ଯ୍ୟାୟରେ ଯେତେବେଳେ ବହୁ ପ୍ରତିଷ୍ଠିତ ବ୍ୟକ୍ତି, ଗବେଷକ ଏବଂ ଆତ୍ମୀୟସ୍ୱଜନ ସାହିତ୍ୟିକ କପିଳେଶ୍ୱରଙ୍କୁ ଆତ୍ମଚରିତ ଲେଖିବା ପାଇଁ ଅନୁରୋଧ କଲେ ସେତେବେଳେ ସେ ଅତି ନମ୍ରତାର ସହ ସେ ସବୁକୁ ଏଡେଇଦେଇ, କେବଳ ନିଜ ସମ୍ପର୍କରେ ସୂଚନା ସ୍ୱରୂପ କିଛି, ପୁତ୍ର ଗଣେଶଙ୍କୁ ଡ଼ାକି ଦେଇଥିଲେ । ଏହାହିଁ ଥିଲା ଅନୁସନ୍ଧିତ୍ସୁ ଲୋକମାନଙ୍କ ପ୍ରତି ତାଙ୍କର ଆତ୍ମକଥନର ସ୍ୱରୂପ । ଏହାର ଶେଷ ପରିଚ୍ଛେଦରେ ଉଲ୍ଲେଖଥିବା ତାଙ୍କ ଦେହାନ୍ତ କଥା ଅଂଶଟି କେବଳ ପାଠକମାନଙ୍କ ଗୋଚରାର୍ଥେ ଯୋଗ କରାଯାଇଛି ମାତ୍ର ।—ସଂକଳକ

ପଦବୀ ସହିତ B.Edରେ ଉତ୍ତୀର୍ଣ୍ଣ ହୋଇଥିଲେ । ତହୁଁ କଲିକତା ବିଶ୍ୱବିଦ୍ୟାଳୟରେ ଇଂରେଜୀ M.Aରେ ଉଚ୍ଚସ୍ଥାନ ଲାଭ କରି ଉତ୍ତୀର୍ଣ୍ଣ ହୋଇଥିଲେ ଓ ଦର୍ଶନ M.A.ରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହିପରି ବିଭିନ୍ନ ବିଶ୍ୱବିଦ୍ୟାଳୟରେ ସ୍ୱକୀୟ ପ୍ରତିଭାବଳରେ ମେଧାବୀଛାତ୍ର ଭାବରେ ତାଙ୍କର ଗୌରବ ପ୍ରତିଷ୍ଠିତ ହୋଇଥିଲା ।

ଶିକ୍ଷା ସମାପନ ଉତ୍ତାରୁ ସେ ସରକାରୀ ସର୍ଭିସର ମୋହ ଛାଡ଼ି ବର୍ତ୍ତମାନର ଦକ୍ଷିଣ ବିଚ୍ଛିନ୍ନାଞ୍ଚଳ ଇଚ୍ଛାପୁରକୁ ନିଜ କର୍ମଭୂମି ରୂପେ ସ୍ଥିରକଲେ । ସେତେବେଳେ ଇଚ୍ଛାପୁର ହାଇସ୍କୁଲ ସୁରଙ୍ଗୀରାଜା ସ୍ୱର୍ଗତ ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ପରିଚାଳିତ ହେଉଥିଲା । ରାଜା ଚନ୍ଦ୍ରଚୂଡ଼ାମଣି ଇଚ୍ଛାପୁର ବାହୁଦା ନଦୀକୂଳରେ ରମ୍ୟ ଉଆସ ନିର୍ମାଣ କରି ସେଠାରେ ସ୍ଥାୟୀ ଭାବରେ ଅବସ୍ଥାନ କଲେ । ଏବେ ମଧ୍ୟ ପୁରୁଷାନୁକ୍ରମେ ତାଙ୍କ ଦାୟାଦମାନେ ସେଠାରେ ଅଛନ୍ତି । ସେହି ସୁରଙ୍ଗୀ ହାଇସ୍କୁଲରେ କପିଳେଶ୍ୱର ଦାସ ପ୍ରଥମେ ସହକାରୀ ଶିକ୍ଷକ ଓ କ୍ରମେ ପ୍ରଧାନଶିକ୍ଷକ ଭାବରେ ୨୨ ବର୍ଷ ବିତାଇଲେ । ରାଜା ଚନ୍ଦ୍ରଚୂଡ଼ାମଣି ବିଳାତ ଫେରନ୍ତା, ବହୁ ଗ୍ରନ୍ଥ ପ୍ରଣେତା, ଉତ୍କଳ ସମ୍ମିଳନୀର ସଭାପତି ଇତ୍ୟାଦି ଭାବରେ ସ୍ୱକୀୟ ଯଶ ପ୍ରତିଷ୍ଠା କରିଥିଲେ । କବିଶେଖର ଚିନ୍ତାମଣି ମହାନ୍ତି ତାଙ୍କ ରାଜସଭାରେ ଦୀର୍ଘକାଳ ରହି ବହୁଗ୍ରନ୍ଥ ପ୍ରଣୟନ କରି ଉତ୍କଳ ସାହିତ୍ୟ ଗଗନରେ ଏକ ରଶ୍ମିମନ୍ତ ଜ୍ୟୋତିଷ୍କ ଭାବରେ ବର୍ତ୍ତମାନ ପୂଜିତ । ବର୍ତ୍ତମାନର ଯଶସ୍ୱୀ ଖ୍ୟାତିମନ୍ତ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ନାଟ୍ୟ ଓ ସଙ୍ଗୀତ ସାଧନାର ପ୍ରଥମ ସୋପାନରେ ସେହି ସୁରଙ୍ଗୀ ରାଜ-ସଂସ୍ଥାରେ ହିଁ ଆନୁକୂଲ୍ୟ ଲାଭ କଲେ । ସୁରଙ୍ଗୀ ରାଜପ୍ରାସାଦରେ ଏକ ରଙ୍ଗମଞ୍ଚ ପ୍ରତିଷ୍ଠିତ ହୋଇଥିଲା । କପିଳେଶ୍ୱର ଦାସ ଏହି ସବୁଥିରେ ସକ୍ରିୟ ଅଂଶ ଗ୍ରହଣ କରି ନିଜଶିକ୍ଷା ଓ ସାହିତ୍ୟ ସାଧନାର ପ୍ରଥମ ଅଧ୍ୟାୟ ଆରମ୍ଭ କରିଥିଲେ । ଅଳ୍ପଦିନ ଭିତରେ ଚନ୍ଦ୍ରଚୂଡ଼ାମଣି ଇହଲୀଳା ସମ୍ବରଣ କଲେ । ତାଙ୍କର ଯୋଗ୍ୟପୁତ୍ର ପୂର୍ଣ୍ଣଚନ୍ଦ୍ର ଦେବ ସିଂହାସନାରୂଢ଼ ହେଲେ । ରାଜପରିବାର ସହିତ କପିଳେଶ୍ୱର ଦାସଙ୍କ ସମ୍ପର୍କ କ୍ରମେ କ୍ରମେ ଘନିଷ୍ଠ ହେଲା । ତାଙ୍କ ପ୍ରେରଣାରେ ରାଜା ପୂର୍ଣ୍ଣଚନ୍ଦ୍ର ଦେବଙ୍କ ସଭାପତିତ୍ୱରେ "ନିଖିଳ ଉତ୍କଳ କବି ସମ୍ମିଳନୀ" ସୁରଙ୍ଗୀ ରାଜପ୍ରାସାଦରେ ତିନିଦିନ ବ୍ୟାପୀ ମହା-ସମାରୋହରେ ଅନୁଷ୍ଠିତ ହୋଇଥିଲା । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏହାର ପ୍ରଧାନ ଉପଦେଷ୍ଟା ଥିଲେ । ପ୍ରଖ୍ୟାତ ସାହିତ୍ୟ ମାସିକ ପତ୍ର 'ସହକାର'ର ପ୍ରତିଷ୍ଠାତା ତଥା ସମ୍ପାଦକ ସ୍ୱନାମଧନ୍ୟ ବାଳକୃଷ୍ଣ କର, ଫକୀରମୋହନ ସେନାପତିଙ୍କ କନ୍ୟା ଶ୍ରୀମତୀ ସରୋଜିନୀ ଚୌଧୁରୀ, କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ ପ୍ରମୁଖ ଭୀଷ୍ମ, ଦ୍ରୋଣପରି ସାହିତ୍ୟ ରଥୀମାନେ ଏହି ସମ୍ମିଳନୀରେ ଅଂଶଗ୍ରହଣ କରିବା ଦ୍ୱାରା ସମ୍ମିଳନୀ ପୂର୍ଣ୍ଣାଙ୍ଗ

ସଫଳତା ଲାଭ କରିଥିଲା । ପ୍ରକୃତରେ ଏହି ସମ୍ମିଳନୀ କପିଳେଶ୍ୱର ଦାସଙ୍କ ପ୍ରଥମ ଦିଗ୍‌ଦର୍ଶନ । ଲବ୍‌ଧପ୍ରତିଷ୍ଠିତ ନାଟକ ଲେଖକ ଚିକିଟି ରାଜା ରାଧାମୋହନ ରାଜେନ୍ଦ୍ର ଦେବ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ପ୍ରସିଦ୍ଧ ଆନ୍ଧ୍ର ସଙ୍ଗୀତକାର ନାରାୟଣ ଦାସ ସଙ୍ଗୀତ ବିଭାଗ ପରିଚାଳନା କରିଥିଲେ । ସଙ୍ଗୀତ, ଚିତ୍ରକଳା ପ୍ରବନ୍ଧ, କବିତା ଇତ୍ୟାଦି ପ୍ରତିଯୋଗିତାରେ ପୁରସ୍କାର ବଣ୍ଟନ ବ୍ୟବସ୍ଥା ହୋଇଥିଲା । 'ସହକାର'ର ବିଶେଷ ସଂଖ୍ୟା ଏହି ଉପଲକ୍ଷେ ପ୍ରକାଶିତ ହୋଇଥିଲା । ସେତେବେଳକୁ କପିଳେଶ୍ୱର 'ସହକାର'ରେ ଧାରାବାହିକ ଭାବରେ ଲେଖା ଆରମ୍ଭ କଲେଣି । କ୍ରମେ କ୍ରମେ ନବଭାରତ, ଚତୁରଙ୍ଗ, ଝଙ୍କାର, ଶତାବ୍ଦୀ, ନବୀନ, ଆଲୋକ ଇତ୍ୟାଦି ପତ୍ରିକାମାନଙ୍କରେ ତାଙ୍କର ସାହିତ୍ୟ, ସଂସ୍କୃତି, ଇତିହାସ, ଦର୍ଶନ, ଧର୍ମ, ଶିକ୍ଷା, କବିତା ଇତ୍ୟାଦି ବିଭିନ୍ନ ବିଷୟରେ ଉଚ୍ଚକୋଟୀ ଲେଖାମାନ ପ୍ରାୟ ତିରିଶିବର୍ଷକାଳ ଧାରାବାହିକ ଭାବରେ ପ୍ରକାଶ ହେଲା । ତହିଁରୁ ଅଳ୍ପ କେତୋଟି ଚିକିଲି ରାଜା ଜଗନ୍ନାଥ ଦେବବର୍ମାଙ୍କ ଆନୁକୂଲ୍ୟରେ 'ଜୀବନଚିନ୍ତା' କ୍ଷୁଦ୍ରଗ୍ରନ୍ଥ ଆକାରରେ ପ୍ରକାଶିତ ହେଲା । ପ୍ରକାଶ ମାତ୍ରକେ ଏହି ଗ୍ରନ୍ଥ ସମଗ୍ର ଓଡ଼ିଶାରେ ଓ ଓଡ଼ିଶା ବାହାରେ ମଧ୍ୟ ବିଶେଷ ଆଦୃତ ହୋଇଥିଲା । ସଙ୍ଗେ ସଙ୍ଗେ ଉତ୍କଳ ବିଶ୍ୱବିଦ୍ୟାଳୟ ଏହାକୁ ଓଡ଼ିଆ M A ପାଠ୍ୟପୁସ୍ତକ ରୂପେ ଗ୍ରହଣ କଲେ । ଏବେ ମଧ୍ୟ ଉତ୍କଳ, ସମ୍ବଲପୁର, ବ୍ରହ୍ମପୁର ଇତ୍ୟାଦି ବିଶ୍ୱବିଦ୍ୟାଳୟମାନଙ୍କରେ ତହିଁର ଅଂଶ I. A., B. A. ଇତ୍ୟାଦିରେ ପାଠ୍ୟ ହୋଇ ରହିଛି ।

ଓଡ଼ିଆ ଲେଖା ପୂର୍ବରୁ କପିଳେଶ୍ୱରଙ୍କ ସେହିପରି ବିଭିନ୍ନ ବିଷୟକ ଉଚ୍ଚକୋଟୀ ଇଁରେଜୀ ପ୍ରବନ୍ଧମାନ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଇଁରେଜୀ ମାସିକ ପତ୍ର 'Prabuddha Bharata', 'Vedanta Keshari', 'Modern-Review', Educational India' ଇତ୍ୟାଦିରେ ପ୍ରକାଶିତ ହେଉଥିଲା । ସେତେବେଳେ ମାନ୍ଦ୍ରାଜରୁ ପ୍ରକାଶିତ ବିଖ୍ୟାତ Triveni ମାସିକ ପତ୍ରରେ ଭାରତର ସବୁଭାଷାମାନଙ୍କର ସାହିତ୍ୟ ବିଷୟରେ ଆଲୋଚନା ହେଉଥିଲା । ମାତ୍ର ତହିଁରେ ଓଡ଼ିଆ ଭାଷାର ସ୍ଥାନ ନଥିବା ଦେଖି କପିଳେଶ୍ୱର ସେହି ପତ୍ରିକାରେ "Beginnings of Oriya", Two Lyrics of Modern Oriya Literature ଇତ୍ୟାଦି ଲେଖା ଆରମ୍ଭ କଲେ । ସେହିପରି ଦୀର୍ଘ ତିରିଶିବର୍ଷ କାଳ ଏହି ଲେଖାସବୁ ଧାରାବାହିକ ଭାବରେ ପ୍ରକାଶିତ ହେଲା । Prabuddha Bharataରେ "Vedanta and World Peace", "Spiritual basis of Ramayan","The Quest of Godhead",Vedanta Kesharିରେ The four stages of life, Types and ways of devotion, ଶିକ୍ଷା ପତ୍ରିକାମାନଙ୍କରେ ଇତିହାସ ଓ ଅର୍ଥନୀତିର ତାତ୍ତ୍ୱିକ ବିଶ୍ଳେଷଣ, ଦିଲ୍ଲୀରୁ

ଶଙ୍କରଶର୍ମାଙ୍କ ସମ୍ପାଦନାରେ ପ୍ରକାଶିତ 'ଧର୍ମରାଜ୍ୟ', ଇଂରେଜୀ ସାପ୍ତାହିକ ପତ୍ରରେ Bhavabhuti on Sanatana Dharma ଇତ୍ୟାଦି ଲେଖା ବିଶେଷ ଆଦୃତ ହୋଇଥିଲା । ସେସବୁ ଲେଖା ସଂଗ୍ରହ କରି ପ୍ରକାଶ କଲେ ଏକ ମୂଲ୍ୟବାନ ଇଂରେଜୀ ଗ୍ରନ୍ଥାବଳୀ ହୋଇପାରନ୍ତା । ସେହିପରି ଓଡ଼ିଆ ଲେଖାଗୁଡିକୁ ସଂଗ୍ରହ କରି ପ୍ରକାଶ କଲେ ଏକ ମୂଲ୍ୟବାନ ଓଡିଆ ଗ୍ରନ୍ଥାବଳୀ ହୋଇପାରନ୍ତା । ଏହାହିଁ ତାଙ୍କର ଶ୍ରେଷ୍ଠ ସ୍ମୃତିଚିହ୍ନ ହୁଅନ୍ତା । ତାଙ୍କର ଦାୟାଦମାନଙ୍କର ଏହା ପରମ କର୍ତ୍ତବ୍ୟ ।

ଇଚ୍ଛାପୁର ରହଣିଠାରୁ ତାଙ୍କର ଦେଶ ମିଶ୍ରଣ ତଥା ନବଉତ୍କଳ ପ୍ରଦେଶ ଗଠନ ତଥା ଦକ୍ଷିଣ ବିଛିନ୍ନାଞ୍ଚଳରେ ଓଡ଼ିଆ ଜାତୀୟତା, ଭାଷା, ସାହିତ୍ୟ, ସଂସ୍କୃତି, ସଂରକ୍ଷଣ ଇତ୍ୟାଦି ବିଷୟରେ ସେ ଅଗ୍ରଣୀ ହୋଇଥିଲେ । ଇଚ୍ଛାପୁର, ସୋମପେଣ୍ଟ ଉଦ୍ୟାନଖଣ୍ଡ, ଜଳନ୍ତର, ବାରୁଆ ତରଳା, ମଞ୍ଜୁଷା, ଟିକିଲି ତଥା ପାରଳାରେ ସେ ଏହି ପ୍ରଗାଢ଼ ଉଦ୍ୟମ ସହକର୍ମୀମାନଙ୍କ ସହିତ କରିଥିଲେ । ମାନ୍ଦ୍ରାଜ ଓଡ଼ିଆ ସଭା ସ୍ଥାପନା କରି ଟିକିଲିର 'ବାଣୀ' ପତ୍ରିକା ସହିତ ସହଯୋଗକରି ଜଳନ୍ତର ଜନଗଣନା ସମ୍ମିଳନୀ, ପାଲ୍‌କୋଣ୍ଡା ଓଡ଼ିଆ ସମ୍ମିଳନୀ, ଦକ୍ଷିଣଓଡ଼ିଆ ଯୁବକ ସମ୍ମିଳନୀ କରାଇ ଏହି କର୍ମ ପ୍ରବାହକୁ କ୍ଷିପ୍ର କରାଇଥିଲେ । ସେତେବେଳେ ଆନ୍ଧ୍ର, ମହୀଶୂର, କେରଳ, କର୍ଣ୍ଣାଟକ ଇତ୍ୟାଦି ପ୍ରଦେଶମାନ ଗଠିତ ହୋଇନଥିଲା । ମାନ୍ଦ୍ରାଜ ପ୍ରଦେଶରେ ଏହି ସବୁ ଅନ୍ତର୍ଭୁକ୍ତ ଥିଲା । ତେଲୁଗୁ, ତାମିଲ, କନ୍ନଡ଼ି, ମାଲୟାଲମ, ହିନ୍ଦୀ, ଓଡ଼ିଆ, ଉର୍ଦ୍ଦୁ ଇତ୍ୟାଦି ଭାଷା ମାନ୍ଦ୍ରାଜ ଶିକ୍ଷା ବିଭାଗ ଦ୍ୱାରା ସବୁ ସ୍କୁଲ କଲେଜମାନଙ୍କରେ ପ୍ରଚଳିତ ହେଉଥିଲା । ହଠାତ୍ ଏହି ତାଲିକାରୁ ଓଡ଼ିଆଭାଷାକୁ ଉଠାଇ ଦେବାକୁ ସରକାରଙ୍କ ଆଦେଶ ଆସିଲା । ସଂଖ୍ୟାଗରିଷ୍ଠତା ଉପରେ ଓଡ଼ିଆ ସ୍ଥାନ କ୍ରମେ ଦୁର୍ବଳ ହେଉଥିବାବେଳେ ଏହି ଆଦେଶ ଓଡ଼ିଆ ଭାଷାର ମୃତ୍ୟୁଘଣ୍ଟା ବଜାଇଲା ବୋଲି କହିବାକୁ ହେବ । ସେତେବେଳେ ଓଡ଼ିଶା ନେତୃବର୍ଗଙ୍କ ପରାମର୍ଶକ୍ରମେ ଖଲ୍ଲିକୋଟ ରାଜବାହାଦୁର ସ୍ୱର୍ଗତ ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ, ସ୍ୱରଙ୍ଗୀରାଜା ସ୍ୱର୍ଗତ ପୂର୍ଣ୍ଣଚନ୍ଦ୍ର ଦେଓ, ଡ଼ାକ୍ତର R.M. Patra ଇତ୍ୟାଦିଙ୍କ ନେତୃତ୍ୱରେ ଏକ ବଳିଷ୍ଠ Deputation ମାନ୍ଦ୍ରାଜକୁ ଯାଇ ସେତେବେଳର ମୁଖ୍ୟମନ୍ତ୍ରୀ ରାମସ୍ୱାମୀ ରେଡିଆର ଓ ଶିକ୍ଷାମନ୍ତ୍ରୀ ମାଧବ ମେନନ୍‌ଙ୍କୁ ସାକ୍ଷାତକରି ଏକ ତଥ୍ୟପୂର୍ଣ୍ଣ ସଂଖ୍ୟା ସମ୍ବଳିତ ସ୍ମାରକ-ପତ୍ର ଦେବାରେ ଏହି ଆଦେଶ ସଙ୍ଗେ ସଙ୍ଗେ ସ୍ଥଗିତ ରହିଲା । ଏହା ମୂଳରେ କପିଳେଶ୍ୱରଙ୍କ ପରିଶ୍ରମ, ପ୍ରଗାଢ଼ ଉଦ୍ୟମ ସେହି ସ୍ମାରକପତ୍ର ପ୍ରଣୟନରେ ଅନ୍ତର୍ନିହିତ ଥିଲା । Philip-duff Committee, Odonal Committee, Wanchoo Committee ଓ ଶେଷରେ States reorganisation ଇତ୍ୟାଦିର କାର୍ଯ୍ୟକ୍ରମ ଭିତରେ ଓଡ଼ିଆଙ୍କ ସଂଖ୍ୟା ଠିକ୍ ରଖିବାକୁ ଓ ଓଡ଼ିଆ

ଜାତୀୟତା ରକ୍ଷା କରିବାକୁ କପିଳେଶ୍ୱରଙ୍କ ଉଦ୍ୟମ ପ୍ରକୃତରେ ଶ୍ଳାଘନୀୟ । ଏହିପରି ଭାବରେ ମାତୃହିତୈଷଣାରେ ସେ ସ୍ୱନାମଧନ୍ୟ ହୋଇପାରିଛନ୍ତି ।

୧୯୫୦ରେ ମାନ୍ଦ୍ରାଜ ଶିକ୍ଷାବିଭାଗ ଓ ଓଡ଼ିଶା ଶିକ୍ଷାବିଭାଗ ତଥା ଗଞ୍ଜାମ ଜିଲ୍ଲା ବୋର୍ଡ ଓ ବିଶାଖପାଟଣା ଜିଲ୍ଲାବୋର୍ଡ଼ ପରସ୍ପର ବୁଝାମଣାରେ କପିଳେଶ୍ୱର ଦକ୍ଷିଣରୁ ବଦଳି ହୋଇ ଗଞ୍ଜାମଜିଲ୍ଲା ପୁରୁଷୋତ୍ତମପୁର ନରସିଂହ ଦାସ ହାଇସ୍କୁଲକୁ ପ୍ରଧାନ ଶିକ୍ଷକ ଭାବରେ ଆସିଲେ । ଠିକ୍ ତତ୍‌ପୂର୍ବରୁ ନାରସେନାପେଣ୍ଠା ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବରେ କାର୍ଯ୍ୟକରି ସେଠାରେ ବହୁ ସଭା ସମିତିରେ ଇଂରେଜୀ ଭାଷାରେ ଉଦ୍‌ବୋଧନ ଦେଇ ସ୍ୱକୀୟ ଯଶ ସ୍ଥାପନ କରିଥିଲେ । ଆନ୍ଧ୍ରୋତ୍କଳ ସଂସ୍କୃତି ସଂସଦ ସ୍ଥାପନକରି ଦୁଇ ପଡ଼ୋଶୀ ପ୍ରଦେଶ ତଥା ଭାଷା ଇତ୍ୟାଦିର ମୈତ୍ରୀ ପ୍ରୀତି ଓ ସମନ୍ୱୟ ରକ୍ଷାରେ ବ୍ରତୀ ହୋଇଥିଲେ । ପୁରୁଷୋତ୍ତମ-ପୁର ଆସି ସେ ଜଉଗଡ଼ ଗବେଷଣା କେନ୍ଦ୍ର, ବସ୍ତୁ ସାହିତ୍ୟ ପରିଷଦ, ତାରିଣୀ ସଂସ୍କୃତି ପୀଠ ଇତ୍ୟାଦି ସ୍ଥାପନ କରିଥିଲେ । ଜଉଗଡ଼ର ଇତିହାସ ସମ୍ବନ୍ଧେ ସେ ଇଂରାଜୀ ପୁସ୍ତିକା ପ୍ରକାଶ କରି ସମ୍ମିଳନୀ କରାଇ ଡ଼କ୍ଟର ହରେକୃଷ୍ଣ ମହତାବ, ସେତେବେଳର ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ମୁଖ୍ୟ ଦର୍ଶନ ଅଧ୍ୟାପକ ତଥା ମହାନ୍ ଲେଖକ T· M P. Mahadevan ପ୍ରମୁଖଙ୍କ ସହଯୋଗ ଲାଭ କରିପାରିଥିଲେ । 'ବସ୍ତୁ ପ୍ରକ୍ରିୟା', 'ରାଘବ ଯାଦବୀୟ', 'ମୁକ୍ତାନାଟିକା' ଇତ୍ୟାଦି ଗ୍ରନ୍ଥ ପ୍ରଣେତା, ମହାନ୍ ସଂସ୍କୃତ ପଣ୍ଡିତ, ଯାଜ୍ଞିକ ତଥା ଧର୍ମ ସଂସ୍ଥାପକ ବସ୍ତୁପ୍ରହରାଜଙ୍କ ଜୀବନୀ ଓ ଗ୍ରନ୍ଥ ପ୍ରକାଶ କରିବା 'ବସ୍ତୁସାହିତ୍ୟ ପରିଷଦ'ର ମୂଳ ଲକ୍ଷ୍ୟଥିଲା ।

ପୁରୁଷୋତ୍ତମପୁର ଠାରୁ ସେ ବୁଗୁଡା ଜନତା ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ବଦଳି ହେଲେ । ସେଠାରେ ପାଞ୍ଚବର୍ଷ ରହଣି ଭିତରେ ସେ ବୁଦ୍ଧଗିରି ଗବେଷଣା କେନ୍ଦ୍ର, ବିରଞ୍ଚିନାରାୟଣ ସାହିତ୍ୟ ପରିଷଦ ଇତ୍ୟାଦି ଅନୁଷ୍ଠାନମାନ ଗଢ଼ିଥିଲେ । ବହୁଧର୍ମ ସମନ୍ୱିତ ଓ ବହୁ ଆରଣ୍ୟକ ସମ୍ପଦପୂର୍ଣ୍ଣ ବୁଦ୍ଧଖୋଲର ଗବେଷଣା ସଙ୍ଗେ କଳାପାହାଡର ଆକ୍ରମଣରେ କୋଣାର୍କ ଅବସାନ ଉତ୍ତାରୁ ଦ୍ୱିତୀୟ ଅର୍କକ୍ଷେତ୍ର ବିରଞ୍ଚିନାରାୟଣ ମନ୍ଦିରର ଇତିହାସ ତଥ୍ୟ ପ୍ରକାଶ—ବିରଞ୍ଚି-ନାରାୟଣ ସାହିତ୍ୟ ସଂସଦର ମୁଖ୍ୟ ଲକ୍ଷ୍ୟ ଥିଲା । ଏହି ବୁଗୁଡ଼ାରେ ତାଙ୍କ ଜୀବନର ଆଉ ଏକ ଦିଗ୍‌ଦର୍ଶନ ସ୍ୱରୂପ ଗଞ୍ଜାମ ସାହିତ୍ୟ ସମ୍ମେଳନ ସେ ପ୍ରତିଷ୍ଠା କରିଥିଲେ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଏଥିକୁ ଏକସହସ୍ର ଟଙ୍କା ଦାନ କରିଥିଲେ । ଏହି ସମ୍ମିଳନୀର ପ୍ରାଚୀନ ସାହିତ୍ୟ ଓ ଆଧୁନିକ ସାହିତ୍ୟ ଆଲୋଚନା, କୃଷ୍ଣସିଂହ ଓ ଉତ୍କଳ ସାହିତ୍ୟକୁ ଗଞ୍ଜାମର ଦାନ ଇତ୍ୟାଦି ପ୍ରବନ୍ଧ ପ୍ରତିଯୋଗିତା ସହ ଗଞ୍ଜାମର ସେତେବେଳର ପଣ୍ଡିତ, ସାହିତ୍ୟିକ, ନାଟ୍ୟକବି, ସଙ୍ଗୀତ ଓ ଚିତ୍ରକଳା ଶିଳ୍ପୀମାନଙ୍କୁ

ଅଭିନନ୍ଦନ ଜଣାଇବା ସହ ବିପୁଳ ସମ୍ବର୍ଦ୍ଧନା ମଧ ଦିଆଯାଇଥିଲା । ଓଡ଼ିଶା ତଥା ବାହାରେ ଏପରିକି ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ସହସ୍ର ସହସ୍ର ମାନ୍ୟଗଣ ସାହିତ୍ୟ-ସଂସ୍କୃତି-ରଥୀମାନେ ଏଥିରେ ଯୋଗ ଦେଇଥିଲେ । 'ଉପେନ୍ଦ୍ରଭଞ୍ଜ' ନାଟକ ସୁନ୍ଦର ଭାବେ ଅଭିନୀତ ହୋଇଥିଲା । ପ୍ରକୃତରେ ଏହି ସମ୍ମିଳନୀ ବିପୁଳ ଉତ୍ସାହ ଓ ଜନସମୂହର ଅପୂର୍ବ ଉତ୍ସାହରେ ରୋମାଞ୍ଚକର ହୋଇଥିଲା । ଏଥିରେ ବୁଗୁଡା ଜନତା ହାଇସ୍କୁଲର ସହଯୋଗ ଉଲ୍ଲେଖଯୋଗ୍ୟ । ଏହି ଉପଲକ୍ଷ୍ୟେ ଏକ ତଥ୍ୟପୂର୍ଣ୍ଣ ସ୍ମରଣିକା ପ୍ରକାଶିତ ହୋଇଥିଲା । ତାହା ପରବର୍ଷ ପୋଲସରାଠାରେ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ସେହିପରି ଖ୍ୟାତିମନ୍ତ ଭାବରେ ଅନୁଷ୍ଠିତ ହୋଇଥିଲା । ସେହି ଉପଲକ୍ଷ୍ୟେ ଏକ ଉପାଦେୟ ସ୍ମରଣିକା ପ୍ରକାଶିତ ହୋଇଥିଲା । ସେହିଦିନଠାରୁ ଗଞ୍ଜାମ ସାହିତ୍ୟ ସମ୍ମେଳନ ନିରବଚ୍ଛିନ୍ନ ଭାବରେ ସକ୍ରିୟ ହୋଇ ଆସୁଛି । ଏହି ସମ୍ମେଳନରେ ବୁଗୁଡା 'ଶ୍ରୀକରନଗର' ନାମରେ ନାମିତ ହୋଇ ଘୁମୁସର ଧର୍ମପ୍ରାଣ ରାଜା ଶ୍ରୀକରଭଞ୍ଜଙ୍କ କୀର୍ତ୍ତି ଘୋଷଣା କରି ଆସୁଛି । ବୁଗୁଡ଼ା ରହଣିବେଳେ ପ୍ରଧାନ ଶିକ୍ଷକ ରୂପେ ଶିକ୍ଷାଦାନ ଇତ୍ୟାଦି କୃତିତ୍ୱଲାଗି କପିଳେଶ୍ୱର ଓଡ଼ିଶା ରାଜ୍ୟ ପୁରସ୍କାର (State Award) ପ୍ରାପ୍ତ ହୋଇଥିଲେ ।

ବୁଗୁଡାଠାରୁ କପିଳେଶ୍ୱର ଖଲ୍ଲିକୋଟରେ ନବପ୍ରତିଷ୍ଠିତ ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ କଲେଜରେ ପ୍ରଥମ ଅଧ୍ୟକ୍ଷରୂପେ ଯୋଗଦେଇ ପ୍ରାୟ ଚାରିବର୍ଷ ସେହି ଦାୟିତ୍ୱ ତୁଲାଇ ଅବସର ଗ୍ରହଣ କରିଥିଲେ । ଅବସରପ୍ରାପ୍ତି ପରେ ତାଙ୍କର କାର୍ଯ୍ୟଧାରା ପୂର୍ବପରି ଜୀବନ୍ତ ରହିଥିଲା । ଆଉ ଏକ ସାହିତ୍ୟିକ ଓ ସାଂସ୍କୃତିକ 'ଅଷ୍ଟଦୁର୍ଗ ସାଂସ୍କୃତିକ ପ୍ରତିଷ୍ଠାନ' ସେ କୋଦଳା (ଯଦୁମଣିନଗର)ଠାରେ ଗଠନ କରିଥିଲେ । ବିଭିନ୍ନ ବିଷୟକ ଆଲୋଚନାଚକ୍ର, ବିଭିନ୍ନ ଋତୁଉତ୍ସବ ଓ ଉଦ୍‌ବୋଧନ ଏହି ଅନୁଷ୍ଠାନକୁ ସରସ, ସୁନ୍ଦର ଓ ଶିକ୍ଷଣୀୟ କରିପାରିଥିଲା । ପ୍ରତିଷ୍ଠାନର ବସନ୍ତ ଉତ୍ସବ ଦୁଇଦିନ ବ୍ୟାପୀ ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ସେତେବେଳର ଓଡ଼ିଶା ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ, କୃଷିମନ୍ତ୍ରୀ ଶ୍ରୀଯୁକ୍ତ ଅନନ୍ତ ନାରାୟଣ ସିଂହଦେଓ ପ୍ରମୁଖ ଏଥିରେ ଯୋଗ ଦେଇଥିଲେ । ଅଧ୍ୟାପକ ଉମାଚରଣ ଦାସଙ୍କ କୃତିତ୍ୱରେ ଏକ ଉପାଦେୟ ସ୍ମରଣିକା ପ୍ରକାଶିତ ହୋଇଥିଲା । ବସ୍ତୁ ପ୍ରହରାଜଙ୍କ ସଂକ୍ଷିପ୍ତ ଜୀବନୀ, କବିଚନ୍ଦ୍ରଙ୍କ ସଂକ୍ଷିପ୍ତ ଜୀବନୀ, କବିସୂର୍ଯ୍ୟଙ୍କ ପ୍ରତିଭା, ଉତ୍କଳ ସାହିତ୍ୟକୁ ଅଷ୍ଟଦୁର୍ଗର ଦାନ ଇତ୍ୟାଦି ବିଷୟରେ ଲେଖାମାନ ତହିଁରେ ପ୍ରକାଶିତ ହୋଇଥିଲା ।

ଆରମ୍ଭରୁ କପିଳେଶ୍ୱର ସଂସ୍କୃତ ଶିକ୍ଷାରେ ତଥା ପ୍ରାଥମିକ ଶିକ୍ଷାରେ ବିଶେଷ ଶ୍ରଦ୍ଧାବାନ ଥିଲେ । ସେତେବେଳେ ସଂସ୍କୃତଟୋଲ ତଥା ପଣ୍ଡିତବର୍ଗଙ୍କ ଉନ୍ନତି ସମ୍ବନ୍ଧେ ଯୋଜନା ପ୍ରସ୍ତୁତ କରି ପଣ୍ଡିତମାନଙ୍କ ଗହଣରେ କପିଳେଶ୍ୱର ସେତେବେଳର ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ସତ୍ୟପ୍ରିୟ ମହାନ୍ତିଙ୍କୁ ଭେଟି ଏକ ତଥ୍ୟପୂର୍ଣ୍ଣ ସ୍ମାରକପତ୍ର

ଦେଇଥିଲେ । ବିଭିନ୍ନ ପ୍ରାଥମିକ ଶିକ୍ଷକ ସଭସମିତିରେ ଯୋଗ ଦେଇ ସେ ଉଦ୍‌ବୋଧନ ଦେଉଥିଲେ । ଖଲ୍ଲିକୋଟଠାରେ ଅନୁଷ୍ଠିତ ଗଞ୍ଜାମ ଜିଲ୍ଲା ପ୍ରାଥମିକ ଶିକ୍ଷକ ସମ୍ମିଳନୀ ତାଙ୍କ ପରିଚାଳନାରେ ମହାସମାରୋହରେ ଦୁଇଦିନ ବ୍ୟାପୀ ହୋଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ପ୍ରମୁଖ ଏଥିରେ ଯୋଗ ଦେଇଥିଲେ ।

କପିଳେଶ୍ୱର ଦାସଙ୍କ ଆଉ ଏକ ଦିଗ୍‌ଦର୍ଶନ ହେଉଛି ଉଚ୍ଚକୋଟୀ ସାହିତ୍ୟ ମାସିକ ପତ୍ର 'ଚନ୍ଦ୍ରକଳା' ସମ୍ପାଦନା ଓ ପ୍ରକାଶ, କବିସୂର୍ଯ୍ୟଙ୍କ ଅପୂର୍ଣ୍ଣ କାବ୍ୟ 'ଚନ୍ଦ୍ରକଳା'ର ଅନ୍ୟବିଧ ପୂର୍ଣ୍ଣାଙ୍ଗ ପ୍ରେରଣାରେ ଗଞ୍ଜାମ ସାହିତ୍ୟ ସମ୍ମେଳନର ମୁଖପତ୍ର ରୂପେ 'ସୁନ୍ଦରମେବ ଜୟତେ' ଆଦର୍ଶରେ ସେ ବର୍ଷେକାଳ ପ୍ରଗାଢ଼ ଅଧ୍ୟବସାୟ କ୍ରମେ ଏପରିକି ନିଜ ଖର୍ଚ୍ଚାନ୍ତରେ ଚଳାଇଥିଲେ । ଏଥିରେ କବିତା ଓ ପ୍ରବନ୍ଧ ସହ ପୁସ୍ତକ ପରିଚୟ, ସମୀକ୍ଷା ଓ ସମାଚାର, ଇଂରେଜୀରୁ ଓଡ଼ିଆ ଓ ଓଡ଼ିଆରୁ ଇଂରେଜୀ, ଉତ୍କଳ ତଥା ଇଂରେଜୀ ସାହିତ୍ୟର ଶ୍ରେଷ୍ଠାଂଶମାନ ଅନୁବାଦ, ସ୍ୱାଧୀନ ବଳିଷ୍ଠ ତାତ୍ପର୍ଯ୍ୟପୂର୍ଣ୍ଣ ସାହିତ୍ୟର ମୁଖ୍ୟ ବିଶ୍ଳେଷଣ ସମେତ ସମ୍ପାଦକୀୟ ଇଂରେଜୀରେ—Modern Review ଭଳି ଓଡ଼ିଶା ଓ ଓଡ଼ିଶା ବାହାରେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଅନୁବାଦ ଅଂଶ ଓ ସମ୍ପାଦକୀୟ କପିଳେଶ୍ୱରଙ୍କ ନିଜସ୍ୱ ବୈଶିଷ୍ଟ୍ୟ ଥିଲା । ଆର୍ଥିକ ଅଭାବ ଯୋଗୁଁ ଏହା ବନ୍ଦ ହୋଇଥିଲା । ଏବେ ମଧ୍ୟ ଏହାର ପୁନଃ ପ୍ରକାଶ ପାଇଁ ଆଗ୍ରହ ଦେଖାଯାଏ ।

କପିଳେଶ୍ୱର ଥିଲେ ଅପୂର୍ବ ବାଗ୍ମୀ । ଓଡିଶା, ଆନ୍ଧ୍ର ଓ ବଙ୍ଗ ଇତ୍ୟାଦିର ବିଭିନ୍ନ ଶିକ୍ଷାନୁଷ୍ଠାନ ତଥା ସାଂସ୍କୃତିକ ଅନୁଷ୍ଠାନରେ ତାଙ୍କର ଭାଷଣ ଅଦ୍ୟାବଧି ସମସ୍ତଙ୍କ ଲୋଭନୀୟ ହୋଇ ରହିଛି । ପ୍ରକୃତରେ ସେ ଏକ ବ୍ୟକ୍ତି ନଥିଲେ, ସେ ଥିଲେ ଏକ ଅନୁଷ୍ଠାନ । ତାଙ୍କର ପ୍ରେରଣା ତଥା ସାହାଯ୍ୟ ସହଯୋଗରେ ବହୁ ନୂଆ ନୂଆ ଲେଖକ ଲେଖିକା ସାହିତ୍ୟ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି । ଦକ୍ଷିଣ ବିଚ୍ଛିନ୍ନାଞ୍ଚଳ ଟିକିଲି ରଜା ଜଗନ୍ନାଥ ଦେବ ବର୍ମା ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ବହୁ କାବ୍ୟ, କବିତା, ଗଳ୍ପ, ପ୍ରବନ୍ଧ ଇତ୍ୟାଦି ପୁସ୍ତକ ରଚନା କରି ତଥା ବେହେଲା ଯନ୍ତ୍ର ସଙ୍ଗୀତରେ ଉତ୍କଳ ତଥା ଆନ୍ଧ୍ରରେ ସେ ଅପୂର୍ବ ଯଶ ଲଭ କରି ପ୍ରତିଷ୍ଠିତ ହୋଇଛନ୍ତି । ସହସ୍ର ସହସ୍ର ଛାତ୍ରଛାତ୍ରୀ ତଥା ଶିଷ୍ୟବର୍ଗଙ୍କ ମଧ୍ୟରେ ରଜା ଜଗନ୍ନାଥଙ୍କ ସ୍ଥାନ ବହୁ ଉଚ୍ଚରେ । ଗଞ୍ଜାମ ସାହିତ୍ୟ ସମ୍ମେଳନ ତଥା 'ଚନ୍ଦ୍ରକଳା'ରେ ଅଂଶଗ୍ରହଣ କରି ଶ୍ରୀମତୀ ସୁବାସିନୀ ମିଶ୍ର, ଶ୍ରୀମତୀ ସୁଖଦା ପଟ୍ଟନାୟକ, ଶ୍ରୀମତୀ କୁନ୍ତଳାକୁମାରୀ ଦାସ, କୁମାରୀ ସ୍ୱର୍ଣ୍ଣଲତା ମହାନ୍ତି ପ୍ରମୁଖ ପ୍ରତିଷ୍ଠିତ ହୋଇ ପାରିଛନ୍ତି । କବିଚନ୍ଦ୍ର ହନୁମାନ ରାୟଗୁରୁ ତଦୀୟ ପୁତ୍ର ଗୋବିନ୍ଦ ରାୟଗୁରୁ ଉଭୟଙ୍କ ବିରଟ ଗ୍ରନ୍ଥାବଳୀ ବହୁ ଅଭାବ ମଧ୍ୟରେ ତାଙ୍କର ସୁଯୋଗ୍ୟ ଦାୟାଦ ସ୍ୱର୍ଗତ ସତ୍ୟନାରାୟଣ ଦାସଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । କିନ୍ତୁ ଏହି ଗ୍ରନ୍ଥାବଳୀର ସଂଶୋଧନ ଓ ମୁଖବନ୍ଧରେ ଚିରିଶି ପୃଷ୍ଠା ବ୍ୟାପୀ ମୌଳିକ ଆଲୋଚନା ଲେଖିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ

କପିଳେଶ୍ୱର ତାଙ୍କର ପରାମର୍ଶ, ଉପଦେଶ ଓ ଉତ୍ସାହ ବିନା ଏହି ଗ୍ରନ୍ଥ ପ୍ରକାଶ ପାଇନଥାନ୍ତା । ଏହି ମୁଖବନ୍ଧ ଉତ୍କଳ ସାହିତ୍ୟକୁ ଏକ ଅମୂଲ୍ୟ ଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱର୍ଗତ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ ସଙ୍ଗୀଭବରେ ତାଙ୍କ ଅନୁଷ୍ଠାନ "କଳିଙ୍ଗ ଭାରତୀ"ରେ ସେ (କପିଳେଶ୍ୱର) ଏକାଧିକ ଥର ଯୋଗ ଦେଇ ଉଦ୍‌ବୋଧନ ଦେଇଥିଲେ । ଓଡିଶା ସାହିତ୍ୟ ଏକାଡେମୀ, କଳା ବିକାଶ କେନ୍ଦ୍ର, ଯଦୁମଣି ସାହିତ୍ୟ ସଂସଦ, ଦକ୍ଷିଣ ଓଡ଼ିଆ ସମ୍ମିଳନୀ ଇତ୍ୟାଦି ବହୁ ଅନୁଷ୍ଠାନ ଦ୍ୱାରା ସେ ଅଭିନନ୍ଦିତ ତଥା ସମ୍ବର୍ଦ୍ଧିତ ହୋଇଛନ୍ତି ।

ମାନ୍ଦ୍ରାଜ ଆନ୍ଧ୍ର ବିଶ୍ୱବିଦ୍ୟାଳୟ, ମାନ୍ଦ୍ରାଜର ମାଧ୍ୟମିକ ଶିକ୍ଷାବୋର୍ଡ, ଉତ୍କଳ ବିଶ୍ୱବିଦ୍ୟାଳୟ ତଥା ଓଡିଶା ମାଧ୍ୟମିକ ଶିକ୍ଷାବୋର୍ଡ ଇତ୍ୟାଦିରେ ସେ ବହୁକାଳ ପରୀକ୍ଷକ, ନିରୀକ୍ଷକ, ସମୀକ୍ଷକ ଇତ୍ୟାଦି ରହି ଖ୍ୟାତିମନ୍ତ ହୋଇଥିଲେ । ଏହି ଅବକାଶରେ ଉତ୍କଳ ଭାଷା ତଥା ସଂସ୍କୃତିର ପ୍ରତିଷ୍ଠା ସେ ବିଶାଖପାଟଣା, ମାନ୍ଦ୍ରାଜ, ହାଇଦ୍ରାବାଦ ଇତ୍ୟାଦି ଦୂରସ୍ଥଳୀମାନଙ୍କରେ ପ୍ରତିପନ୍ନ କରିଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ ବିରାଟ ଗ୍ରନ୍ଥ 'କୌଟଲ୍ୟ ଅର୍ଥଶାସ୍ତ୍ର' ସେ ସମୀକ୍ଷା କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରକାଶିତ ବିରାଟ ଗ୍ରନ୍ଥ 'ନେପୋଲିୟନ'ର ମଧ୍ୟ ସେ ସମୀକ୍ଷକ ଥିଲେ । ଭାରତର ଜ୍ଞାନସୂର୍ଯ୍ୟ Dr. Radhakrishnanଙ୍କ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ସର୍ବପ୍ରଥମ ଅଧ୍ୟାପକ ନିଯୁକ୍ତି ବେଳେ ସେ ତାଙ୍କଠାରୁ ଶିକ୍ଷା ଲାଭ କରିଥିଲେ । ରାଜମହେନ୍ଦ୍ରୀ ଅବସ୍ଥାନବେଳେ ସେ ପ୍ରଖ୍ୟାତ ତେଲୁଗୁ କବି ଓ ଔପନାସିକ ଚିଲକମୂର୍ତ୍ତି ଲକ୍ଷ୍ମୀନୃସିଂହମ୍‌ଙ୍କ ସଂସ୍ପର୍ଶରେ ଆସିଥିଲେ । ଛାତ୍ର ଜୀବନରୁ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠାତା ମଧୁସୂଦନ ଦାସଙ୍କ ଠାରୁ ସେ ପ୍ରେରଣା ଲାଭ କରିଥିଲେ । ପୁଣ୍ୟଶ୍ଳୋକ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ପ୍ରମୁଖଙ୍କ ଉପଦେଶ ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ମଞ୍ଜୁଷା ଉତ୍କଳ ସମ୍ମିଳନୀରେ ସେ ସକ୍ରିୟ ଅଂଶ ଗ୍ରହଣ କରି ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଦାବୀକୁ ବଳବତ୍ତର କରିଥିଲେ । ସ୍ୱର୍ଗତ ଶଶୀଭୂଷଣ ରଥଙ୍କ ଆନୁକୂଲ୍ୟରେ ସେ ତାଙ୍କ ପ୍ରକାଶିତ ଦୈନିକ ଆଶା, New Orissa, Vaitarani ଇତ୍ୟାଦି ପତ୍ରିକାମାନଙ୍କରେ ବଳିଷ୍ଠ ଲେଖାମାନ ପ୍ରକାଶ କରି ସେହି ସମୟର ମାନ୍ଦ୍ରାଜ ମୁଖ୍ୟମନ୍ତ୍ରୀ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀ ବ୍ରହ୍ମପୁରଠାରେ ତାଙ୍କ ସହଯୋଗରେ ପ୍ରଥମେ ହୋଇଥିଲା । ସ୍କୁଲ କଲେଜମାନଙ୍କରେ ସାଂସ୍କୃତିକ ସପ୍ତାହ ତଥା ବାର୍ଷିକୋତ୍ସବ ସରସ ସୁନ୍ଦର ଭାବରେ ଅନୁଷ୍ଠିତ କରିବାରେ ତାଙ୍କର ଆଦର୍ଶ ସମସ୍ତଙ୍କର ଅନୁକରଣୀୟ ଥିଲା । ଏହିପରି ଭାବରେ ତାଙ୍କର ପ୍ରତିଷ୍ଠା ବଢ଼ି ଯାଇଥିଲା ।

ବର୍ତ୍ତମାନ ସେ ଅତି ଦୁର୍ବଳ, ଦୃଷ୍ଟିଶକ୍ତି ଓ ଚଳତ୍‌ଶକ୍ତିହୀନ ଜୀବନର ଶେଷ ପର୍ଯ୍ୟାୟରେ ଅବସ୍ଥିତ । ଦେଶବାସୀ ତାଙ୍କର ଉପଯୁକ୍ତ ସ୍ମୃତିରକ୍ଷା କରିବେ ବୋଲି ଆଶା ।

ଏହି ମହାନ୍ ପ୍ରବାଦପୁରୁଷଙ୍କ ମହାପ୍ରୟାଣ ତା ୦୫-୦୩-୧୯୯୦ ରିଖରେ ହୋଇଥିଲା

●



ପୁତ୍ର କନ୍ୟାଙ୍କ ଗହଣରେ ଲେଖକ

ବାମରୁ ଦକ୍ଷିଣ

୧ମ ଧାଡ଼ି — ଜ୍ୟେଷ୍ଠା କନ୍ୟା ପଦ୍ମାଳୟା ମିଶ୍ର | ଲେଖକ | କନିଷ୍ଠା କନ୍ୟା ବସନ୍ତ ମଞ୍ଜରୀ ଦାଶ

ପଛ ଧାଡ଼ି — କନିଷ୍ଠ ପୁତ୍ର ଗଣେଶ୍ୱର | ଜ୍ୟେଷ୍ଠ ପୁତ୍ର ଦଣ୍ଡପାଣି

<u>ଲେଖକଙ୍କ ହସ୍ତଲିପି</u>

# ରଚନା ଓ ପ୍ରକାଶନ କାଳ

## ଜୀବନ ଚିନ୍ତା : ପ୍ରଥମ ସଂସ୍କରଣ, ୧୯୫୨

ରାଜା ଜଗନ୍ନାଥ ଦେବ ବର୍ମା, ଟିକିଲି (ଶ୍ରୀକାକୁଳମ୍ ଜିଲ୍ଲା)

| ସୃଷ୍ଟି | ପ୍ରକାଶିତ ପତ୍ରିକା | ପ୍ରକାଶନ କାଳ |
|---|---|---|
| **ପ୍ରବନ୍ଧ ବିଭାଗ** | | |
| ୧) ଅସୀମର ଆହ୍ୱାନ | | |
| ୨) କଳାର ସ୍ୱରୂପ | | |
| ୩) ଜୀବନ ଉପାସନା | | |
| ୪) ମିଳନ ମଣ୍ଡପ | | |
| ୫) ସଂସ୍କୃତି ଓ ସମର | ସହକାର, ୨୩ ଭାଗ/୧୧ ସଂଖ୍ୟା | ଫାଲ୍‌ଗୁନ, ୧୩୫୦ |
| **ପଦ୍ୟ ବିଭାଗ** | | |
| ୬) ଊର୍ମିଳା | | |
| ୭) ଖୋଜୁଛି କାହାକୁ ? | | |
| ୮) ଭଞ୍ଜପାଠ | | |
| ୯) ଉଠ-ମା ! | | |
| ୧୦) ପଥ କାହିଁ ? | | |
| **ସାହିତ୍ୟ ବିଭାଗ** | | |
| ୧୧ ସାହିତ୍ୟ ଓ ଜୀବନ (୧ମ ଭାଗ) | ସହକାର, ୧୯/୫ | ଭାଦ୍ରବ, |
| ୧୨) ସାହିତ୍ୟ ଓ ଜୀବନ (୨ୟ ଭାଗ) | ସହକାର | |
| ୧୩) ସଂସ୍କୃତ ସାହିତ୍ୟର ଗୌରବ | ସହକାର, ୨୧/୮ମ ଓ ୯ମ ଭାଗ | ମାର୍ଗଶୀ[illegible] |
| ୧୪) ଭଞ୍ଜ ସାହିତ୍ୟରେ ରଜ୍ୟପାଳନ | | |
| ୧୫) ଭଞ୍ଜ ସାହିତ୍ୟର କେତୋଟି ବିଭବ | | |

| ସୃଷ୍ଟି | ପ୍ରକାଶିତ ପତ୍ରପତ୍ରିକା | ପ୍ରକାଶନ କାଳ |
|---|---|---|
| **ଇତିହାସ ଓ ଦର୍ଶନ ବର୍ଗ** | | |
| ୧୬) ଅତୀତ ଭାରତ | ସହକାର, ୧୨/୮ | ମାର୍ଗଶୀର, ୧୩୩୯ |
| ୧୭) ପାଶ୍ଚାତ୍ୟ ରାଜନୀତି ଓ ଆଧୁନିକ ଭାରତ | ସହକାର, ୨୧/୧୧ | ଫାଲ୍‌ଗୁନ, ୧୩୪୮ |
| ୧୮) ଚାର୍ବାକ | ସହକାର, ୨୪/୨ | ଜ୍ୟେଷ୍ଠ, ୧୩୫୦ |
| ୧୯) ପାଶ୍ଚାତ୍ୟ ମନସ୍ତତ୍ତ୍ୱ ଓ ଧର୍ମନୀତି | ଚତୁରଙ୍ଗ, ୨ୟ ବର୍ଷ/୫ମ ସଂଖ୍ୟା | |
| ୨୦) ରସେଶ୍ୱର | | |

## କପିଳେଶ୍ୱର ରଚନାବଳୀ •

| | | |
|---|---|---|
| ୧) ଜୀବନ ପ୍ରବାହ | ଝଙ୍କାର, ୬ଷ୍ଠ ବର୍ଷ, ୭ମ ସଂଖ୍ୟା | ୧୯୫୩-୫୪ |
| ୨) ସସୀମ ଓ ଅସୀମ | ସହକାର, ୨୨/୭ମ ଓ ୮ମ ସଂଖ୍ୟା | କାର୍ତ୍ତିକ, ମାର୍ଗଶୀର, ୧୩୪୯ |
| ୩) ଆତ୍ମସମର୍ପଣ | ସହକାର, ୧୯/୪ | ଶ୍ରାବଣ, ୧୩୪୫ |
| ୪) ସ୍ନେହର ସେତୁବନ୍ଧ | ସହକାର, ୨୪/୩ | ଆଷାଢ଼, ୧୩୫୦ |
| ୫) ବିପ୍ଳବ | ସହକାର, ୧୨/୩ | ଆଷାଢ଼, ୧୩୩୮ |
| ୬) ସଂସାର | ସହକାର, ୧୨/୫ | ଭାଦ୍ରବ, ୧୩୩୮ |
| ୭) ବେଦାନ୍ତ ଓ ବିଶ୍ୱଶାନ୍ତି | ଝଙ୍କାର, ୬ଷ୍ଠ ବର୍ଷ/୧୦ମ ସଂଖ୍ୟା | ୧୯୫୩-୫୪ |
| ୮) ଉପନିଷଦ୍‌ରେ ଶିକ୍ଷା | ଝଙ୍କାର, ୫/୧୦ମ | ଜାନୁୟାରୀ-୧୯୫୨ |
| ୯) ଇତିହାସ ଶିକ୍ଷା | ନବଭାରତ, ୬ଷ୍ଠ ବର୍ଷ/୬ଷ୍ଠ ସଂଖ୍ୟା | ୧୩୪୭ ସାଲ |
| ୧୦) ସାମାଜିକ ଇତିହାସ | ଝଙ୍କାର, ୬ଷ୍ଠ ବର୍ଷ/୪ର୍ଥ ସଂଖ୍ୟା | ଜୁଲାଇ, ୧୯୫୩ |
| ୧୧) ସେକେଣ୍ଡରି ଶିକ୍ଷାର ପୁନର୍ଗଠନ | ସହକାର ୨୨/୩ୟ ଓ ୪ର୍ଥ | ଆଷାଢ଼/ଶ୍ରାବଣ, ୧୩୪୮ |
| ୧୨) କାବ୍ୟ ଓ ନୀତି | ନବଭାରତ | ମିଥୁନ, ୧୩୪୯ |

• ଯଦିଓ ଏହି ଗ୍ରନ୍ଥର ପରର୍ଦ୍ଧରେ 'ଜୀବନ-ଚିନ୍ତା' ସଂକଳିତ ତଥାପି ପୁନରାବୃତ୍ତିକୁ ଏଡ଼େଇବା ପାଇଁ, ତାହା ଉଲ୍ଲେଖ କରାଯାଇ ନାହିଁ ।

| ସୃଷ୍ଟି | ପ୍ରକାଶିତ ପତ୍ରିକା | ପ୍ରକାଶନ କାଳ |
|---|---|---|
| ୧୩) ଇତିହାସର ଆର୍ଥନୀତିକ ଅନୁଶୀଳନ | ନବଭାରତ, ୭ମ ବର୍ଷ/୧ମ ସଂଖ୍ୟା | ମିଥୁନ, ୧୩୪୮ |
| ୧୪) ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ ସକ୍ରେଟିସ | ସହକାର, ୨୨/୧ | ବୈଶାଖ, ୧୩୪୮ |
| ୧୫) ପ୍ରାଚୀନ ଭାରତରେ ସ୍ୱାସ୍ଥ୍ୟରକ୍ଷା | ସହକାର, ୨୩/୧ | ବୈଶାଖ, ୧୩୪୯ |
| ୧୬ ବିଶାଖପାଟଣା ଓଡ଼ିଆ ସମସ୍ୟା | ନବଭାରତ ୨୦/୨ | କୁମ୍ଭ, ୧୨୪୬ |
| ୧୭) ହନୁମାନ କବିଚନ୍ଦ୍ରଙ୍କ କବିତା | ସହକାର, ୨୦/୨ | ଜ୍ୟେଷ୍ଠ, ୧୩୪୬ |
| ୧୮) ଗୋବିନ୍ଦ ରାୟଗୁରୁଙ୍କ କବିତା | ସହକାର, ୨୦/୧୧ | ଫାଲଗୁନ୍, ୧୩୪୭ |
| ୧୯) ଇଚ୍ଛାପୁର କବି ସମ୍ମିଳନୀ | ସହକାର, ୧୩/୧୧ | ଫାଲଗୁନ, ୧୩୪୦ |
| ୨୦) ଭାରତୀୟ କଳା ଓ ସାହିତ୍ୟ ପରିଷଦ—୧ମ ଭାଗ | ସହକାର, ୨୨/୯-୧୦ | ପୌଷ, ମାଘ, ୧୩୪୯ |
| ଭାରତୀୟ କଳା ଓ ସାହିତ୍ୟ ପରିଷଦ—୨ୟ ଭାଗ | ସହକାର, ୨୨/୧୧-୧୨ | ଫାଲଗୁନ-ଚୈତ୍ର ୧୩୪୯ |
| ୨୧) ଇତିହାସର ଶିକ୍ଷଣୀୟତା | ସହକାର, ୨୧/୭ | କାର୍ତ୍ତିକ, ୧୩୪୮ |
| ୨୨) ସାମାଜିକ ଇତିହାସ | ସହକାର, ୨୨/୨ | ଜ୍ୟେଷ୍ଠ, ୧୩୪୮ |
| ୨୩) ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ | ସହକାର, ୧୯/୭ | କାର୍ତ୍ତିକ, ୧୩୪୬ |
| ୨୪) ବସ୍ତୁ ପ୍ରହରାଜ | ସ୍ମରଣିକା (ଅଷ୍ଟ ଦୁର୍ଗ ସାଂସ୍କୃତିକ ପ୍ରତିଷ୍ଠାନ, ଫାଶୀ) | ୧୯୭୧ |
| ୨୫) କବିବର ସ୍ମୃତି | ସହକାର, ୨୪/୧ | ବୈଶାଖ, ୧୩୫୦ |

## ଅନ୍ୟାନ୍ୟ ପ୍ରବନ୍ଧ

(ସଂକଳନ ଅପେକ୍ଷାରେ ରହିଥିବା ପ୍ରବନ୍ଧାବଳୀ)

| | | |
|---|---|---|
| ୧) ଭାରତର ଅନ୍ନସଂସ୍ଥାନ ସମସ୍ୟା (୧ମ) | ସହକାର, ୧୧/୫ | ଭାଦ୍ରବ, ୧୩୩୭ |
| ୨) ଭାରତର ଅନ୍ନସଂସ୍ଥାନ ସମସ୍ୟା (୨ୟ) | ସହକାର, ୧୧/୮ | କାର୍ତ୍ତିକ, ୧୩୩୮ |
| ୩) ଭାରତର ଅନ୍ନସଂସ୍ଥାନ ସମସ୍ୟା (୩ୟ | ସହକାର, ୧୧/୧୧ | ଫାଲଗୁନ, ୧୩୩୮ |
| ୪) ଭାରତର ଅନ୍ନସଂସ୍ଥାନ ସମସ୍ୟା (୪ର୍ଥ) | ସହକାର, ୧୨/୨ | ଜ୍ୟେଷ୍ଠ, ୧୩୩୮ |
| ୫) ଇତିହାସ ଉପରେ ନୌଶକ୍ତିର ପ୍ରଭାବ | ସହକାର, ୧୧/୩ | ଆଷାଢ଼, ୧୩୩୭ |
| ୬) କବିଚନ୍ଦ୍ର ହନୁମାନ ରାୟଗୁରୁ ଓ ଗୋବିନ୍ଦ ରାୟଗୁରୁ | ସହକାର, ୧୯/୧ | ବୈଶାଖ, ୧୩୪୫ |

# ରଚନା ଓ ପ୍ରକାଶନ କାଳ

## ଜୀବନ ଚିନ୍ତା : ପ୍ରଥମ ସଂସ୍କରଣ, ୧୯୫୨

ରାଜା ଜଗନ୍ନାଥ ଦେବ ବର୍ମା, ଟିକିଲି (ଶ୍ରୀକାକୁଳମ୍ ଜିଲ୍ଲା)

| ସୃଷ୍ଟି | ପ୍ରକାଶିତ ପତ୍ରିକା | ପ୍ରକାଶନ କାଳ |
|---|---|---|
| **ପ୍ରବନ୍ଧ ବିଭାଗ** | | |
| ୧) ଅସୀମର ଆହ୍ୱାନ | | |
| ୨) କଳାର ସ୍ୱରୂପ | | |
| ୩) ଜୀବନ ଉପାସନା | | |
| ୪) ମିଳନ ମଣ୍ଡପ | | |
| ୫) ସଂସ୍କୃତି ଓ ସମର | ସହକାର, ୨୩ ଭାଗ/୧୧ ସଂଖ୍ୟା | ଫାଲ୍‌ଗୁନ, ୧୩୫୦ |
| **ପଦ୍ୟ ବିଭାଗ** | | |
| ୬) ଊର୍ମିଳା | | |
| ୭) ଖୋଜୁଛି କାହାକୁ ? | | |
| ୮) ଭଞ୍ଜପୀଠ | | |
| ୯) ଉଠ-ମା ! | | |
| ୧୦) ପଥ କାହିଁ ? | | |
| **ସାହିତ୍ୟ ବିଭାଗ** | | |
| ୧୧ ସାହିତ୍ୟ ଓ ଜୀବନ (୧ମ ଭାଗ) | ସହକାର, ୧୯/୫ | ଭାଦ୍ରବ, ୧୩୪୫ |
| ୧୨) ସାହିତ୍ୟ ଓ ଜୀବନ (୨ୟ ଭାଗ) | ସହକାର | |
| ୧୩) ସଂସ୍କୃତ ସାହିତ୍ୟର ଗୌରବ | ସହକାର, ୨୧/୮ମ ଓ ୯ମ ଭାଗ | ମାର୍ଗଶୀର-ପୌଷ ୧୩୪୮ |
| ୧୪) ଭଞ୍ଜ ସାହିତ୍ୟରେ ଗଦ୍ୟପାଳନ | | |
| ୧୫) ଭଞ୍ଜ ସାହିତ୍ୟର କେତୋଟି ବିଭବ | | |

| ସୃଷ୍ଟି | ପ୍ରକାଶିତ ପତ୍ରପତ୍ରିକା | ପ୍ରକାଶନ କାଳ |
|---|---|---|
| ଇତିହାସ ଓ ଦର୍ଶନ ବିଭାଗ | | |
| ୧୬) ଅତୀତ ଭାରତ | ସହକାର, ୧୨/୮ | ମାର୍ଗଶୀର, ୧୩୩୯ |
| ୧୭) ପାଶ୍ଚାତ୍ୟ ରାଜନୀତି ଓ ଆଧୁନିକ ଭାରତ | ସହକାର, ୨୧/୧୧ | ଫାଲ୍‌ଗୁନ, ୧୩୪୮ |
| ୧୮) ଗୁର୍ବାକ | ସହକାର, ୨୪/୨ | ଜ୍ୟେଷ୍ଠ, ୧୩୫୦ |
| ୧୯) ପାଶ୍ଚାତ୍ୟ ମନସ୍ତତ୍ତ୍ୱ ଓ ଧର୍ମନୀତି | ଚତୁରଙ୍ଗ, ୨ୟ ବର୍ଷ/୫ମ ସଂଖ୍ୟା | |
| ୨୦) ରସେଶ୍ୱର | | |

## କପିଳେଶ୍ୱର ରଚନାବଳୀ •

| | | |
|---|---|---|
| ୧) ଜୀବନ ପ୍ରବାହ | ଝଙ୍କାର, ୬ଷ୍ଠ ବର୍ଷ, ୭ମ ସଂଖ୍ୟା | ୧୯୫୩-୫୪ |
| ୨) ସସୀମ ଓ ଅସୀମ | ସହକାର, ୨୨/୭ମ ଓ ୮ମ ସଂଖ୍ୟା | କାର୍ତ୍ତିକ, ମାର୍ଗଶୀର, ୧୩୪୯ |
| ୩) ଆତ୍ମସମର୍ପଣ | ସହକାର, ୧୯/୪ | ଶ୍ରାବଣ, ୧୩୪୫ |
| ୪) ସ୍ନେହର ସେତୁବନ୍ଧ | ସହକାର, ୨୪/୩ | ଆଷାଢ଼, ୧୩୫୦ |
| ୫) ବିପ୍ଳବ | ସହକାର, ୧୨/୩ | ଆଷାଢ଼, ୧୩୩୮ |
| ୬) ସଂସାର | ସହକାର, ୧୨/୫ | ଭାଦ୍ରବ, ୧୩୩୮ |
| ୭) ବେଦାନ୍ତ ଓ ବିଶ୍ୱଶାନ୍ତି | ଝଙ୍କାର, ୬ଷ୍ଠ ବର୍ଷ/୧୦ମ ସଂଖ୍ୟା | ୧୯୫୩-୫୪ |
| ୮) ଉପନିଷଦ୍‌ରେ ଶିକ୍ଷା | ଝଙ୍କାର, ୫/୧୦ମ | ଜାନୁୟାରୀ-୧୯୫୨ |
| ୯) ଇତିହାସ ଶିକ୍ଷା | ନବଭାରତ, ୬ଷ୍ଠ ବର୍ଷ/୬ଷ୍ଠ ସଂଖ୍ୟା | ୧୩୪୭ ସାଲ |
| ୧୦) ସାମାଜିକ ଇତିହାସ | ଝଙ୍କାର, ୬ଷ୍ଠ ବର୍ଷ/୪ର୍ଥ ସଂଖ୍ୟା | ଜୁଲାଇ, ୧୯୫୩ |
| ୧୧) ସେକେଣ୍ଡାରି ଶିକ୍ଷାର ପୁନର୍ଗଠନ | ସହକାର ୨୨/୩ୟ ଓ ୪ର୍ଥ | ଆଷାଢ଼/ଶ୍ରାବଣ, ୧୩୪୮ |
| ୧୨) କାବ୍ୟ ଓ ନୀତି | ନବଭାରତ | ମିଥୁନ, ୧୩୪୯ |

---

• ଯଦିଓ ଏହି ଗ୍ରନ୍ଥର ପରାର୍ଦ୍ଧରେ 'ଜୀବନ-ଚିନ୍ତା' ସଂକଳିତ ତଥାପି ପୁନରାବୃତ୍ତିକୁ ଏଡ଼େଇବା ପାଇଁ, ତାହା ଉଲ୍ଲେଖ କରାଯାଇ ନାହିଁ ।

| ପୃଷ୍ଟି | ପ୍ରକାଶିତ ପତ୍ରିକା | ପ୍ରକାଶନ କାଳ |
|---|---|---|
| ୧୩) ଇତିହାସର ଆର୍ଥନୀତିକ ଅନୁଶୀଳନ | ନବଭରତ, ୭ମ ବର୍ଷ/୧ମ ସଂଖ୍ୟା | ମିଥୁନ, ୧୩୪୮ |
| ୧୪) ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ ସକ୍ରେଟିସ | ସହକାର, ୨୨/୧ | ବୈଶାଖ, ୧୩୪୮ |
| ୧୫) ପ୍ରାଚୀନ ଭରତରେ ସ୍ୱାସ୍ଥ୍ୟରକ୍ଷା | ସହକାର, ୨୩/୧ | ବୈଶାଖ, ୧୩୪୯ |
| ୧୬ ବିଶାଖପାଟଣା ଓଡ଼ିଆ ସମସ୍ୟା | ନବଭରତ ୨୦/୨ | କୁମ୍ଭ, ୧୨୪୬ |
| ୧୭) ହନୁମାନ କବିଚନ୍ଦ୍ରଙ୍କ କବିତା | ସହକାର, ୨୦/୨ | ଜ୍ୟେଷ୍ଠ, ୧୩୪୬ |
| ୧୮) ଗୋବିନ୍ଦ ରଥଗୁରୁଙ୍କ କବିତା | ସହକାର, ୨୦/୧୧ | ଫାଲ୍ଗୁନ, ୧୩୪୭ |
| ୧୯) ଇଛାପୁର କବି ସମ୍ମିଳନୀ | ସହକାର, ୧୩/୧୧ | ଫାଲଗୁନ, ୧୩୪୦ |
| ୨୦) ଭରତୀୟ କଳା ଓ ସାହିତ୍ୟ ପରିଷଦ—୧ମ ଭଗ | ସହକାର, ୨୨/୯-୧୦ | ପୌଷ, ମାଘ, ୧୩୪୯ |
| ଭରତୀୟ କଳା ଓ ସାହିତ୍ୟ ପରିଷଦ—୨ୟ ଭଗ | ସହକାର, ୨୨/୧୧-୧୨ | ଫାଲଗୁନ-ଚୈତ୍ର ୧୩୪୯ |
| ୨୧) ଇତିହାସର ଶିକ୍ଷଣୀୟତା | ସହକାର, ୨୧/୭ | କାର୍ତ୍ତିକ, ୧୩୪୮ |
| ୨୨) ସାମାଜିକ ଇତିହାସ | ସହକାର, ୨୨/୨ | ଜ୍ୟେଷ୍ଠ, ୧୩୪୮ |
| ୨୩) ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭବ | ସହକାର, ୧୯/୭ | କାର୍ତ୍ତିକ, ୧୩୪୬ |
| ୨୪) ବସ୍ତୁ ପ୍ରହରଜ | ସ୍ମରଣିକା (ଅଷ୍ଟ ଦୁର୍ଗ ସାଂସ୍କୃତିକ ପ୍ରତିଷ୍ଠାନ, ଫାଶୀ) | ୧୯୭୧ |
| ୨୫) କବିବର ସ୍ମୃତି | ସହକାର, ୨୪/୧ | ବୈଶାଖ, ୧୩୫୦ |

## ଅନ୍ୟାନ୍ୟ ପ୍ରବନ୍ଧ

(ସଂକଳନ ଅପେକ୍ଷାରେ ରହିଥିବା ପ୍ରବନ୍ଧାବଳୀ)

| | | |
|---|---|---|
| ୧) ଭରତର ଅନ୍ନସଂସ୍ଥାନ ସମସ୍ୟା (୧ମ) | ସହକାର, ୧୧/୫ | ଭଦ୍ରବ, ୧୩୩୭ |
| ୨) ଭରତର ଅନ୍ନସଂସ୍ଥାନ ସମସ୍ୟା (୨ୟ) | ସହକାର, ୧୧/୮ | କାର୍ତ୍ତିକ, ୧୩୩୮ |
| ୩) ଭରତର ଅନ୍ନସଂସ୍ଥାନ ସମସ୍ୟା (୩ୟ | ସହକାର, ୧୧/୧୧ | ଫାଲଗୁନ, ୧୩୩୮ |
| ୪) ଭରତର ଅନ୍ନସଂସ୍ଥାନ ସମସ୍ୟା (୪ର୍ଥ) | ସହକାର, ୧୨/୨ | ଜ୍ୟେଷ୍ଠ, ୧୩୩୮ |
| ୫) ଇତିହାସ ଉପରେ ନୌଶକ୍ତିର ପ୍ରଭବ | ସହକାର, ୧୧/୩ | ଆଷାଢ଼, ୧୩୩୭ |
| ୬) କବିଚନ୍ଦ୍ର ହନୁମାନ ରଥଗୁରୁ ଓ ଗୋବିନ୍ଦ ରଥଗୁରୁ | ସହକାର, ୧୯/୧ | ବୈଶାଖ, ୧୩୪୫ |

| ସୃଷ୍ଟି | ପ୍ରକାଶିତ ପତ୍ରିକା | ପ୍ରକାଶନ କାଳ |
|---|---|---|
| ୭) ମୁଖବନ୍ଧ ଗୟଗୁରୁ ଗ୍ରନ୍ଥାବଳୀ) | ଗୟଗୁରୁ ସ୍ମୃତି କୁଟୀର, ବ୍ରାହ୍ମଣଗୁଇ, ଗଞ୍ଜାମ | ୨୦.୧.୧୯୬୬ |
| ୮) ମୁଖବନ୍ଧ (ଶ୍ରୀ ଜଗନ୍ନାଥ ଦେବ ବର୍ମାଙ୍କ ଶିଳାପ୍ରସ୍ତାର ଗ୍ରନ୍ଥର ଆଲୋଚନା) | ଶିଳାପ୍ରସ୍ତାର, ୧୯୭୨ | ୩୧-୧୨-୧୯୭୧ |
| ୯) ସ୍ମରଣେ (ଦୀନବନ୍ଧୁ ବେହେରଙ୍କ ମୃତ୍ୟୁ ଉଦ୍ଦେଶ୍ୟରେ) | ଦୈନିକ ଆଶା | ୨୯-୩-୧୯୮୩ |
| ୧୦) ସ୍ମରଣେ 'ଭରତ ବେହେରଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ଉପଲକ୍ଷ୍ୟେ) | ସ୍ମରଣିକା, ଚିକିଟି | ୧୯୭୮ |
| ୧୧) ପଣ୍ଡିତ ଗଣେଶ୍ୱର ରଥ ବାଚସ୍ପତି (ଦ୍ୱାଦଶାହ ଉପଲକ୍ଷ୍ୟେ) | ସମାଜ, କଟକ | ୧୧-୧-୮୪ |

## ଇଂରେଜୀ ଭାଷାରେ ରଚିତ ପ୍ରବନ୍ଧ

| | | | |
|---|---|---|---|
| 1) Types and ways of Vedanta Keshari Devotion | | Vol. 26 | Feb, 1940 |
| 2) The Quest of Godhead | -do- | Vol. 27 | Jan, 1941 |
| 3) Causality and continuity | -do- | Vol 29 | March, 1943 |
| 4) The four stages of Man | -do- | Vol 30 | May, 1943 |
| 5) The finite and infinite | -do- | Vol. 30 | July, 1943 |
| 6) Religion in Practice | -do- | Vol 32 | April, 1946 |
| 7) The spiritual basis of Ramayana Part-I | Prabuddha Bharata | Vol. 40 | July, 1935 |
| 8) The spiritual basis of Ramayana Part-II | -do- | Vol. 40 | Aug, 1935 |
| 9) Fundamental Problems of Life | -do- | Vol. XLI | Nov, 1939 |
| 10) From Nature to God | -do- | Vol. 45 | Nov, 1940 |

| ସୃଷ୍ଟି | ପ୍ରକାଶିତ ପତ୍ରିକା | ପ୍ରକାଶନ କାଳ |
|---|---|---|
| 11) A glance at our past | -do- Vol. XLVI | Oct. 1941 |
| 12) Vedanta & World Peace | -do- Vol. XLVI | Dec. 1941 |
| 13) Where all contradictions harmonise | -do- Vol. 47 | Jan. 1942 |
| 14) War in ancient India | -do- Vol. 51 | Mar. 1946 |
| 15) Two Modern Lyrics | Triveni, Vol.XIV, No-1 | Jan March, 1942 |
| 16) Labour Legislation in ancient India | Modern Review, Vol LXVII, No. 2 | Aug. 1940 |
| 17) Bhavabhuti on Sanatana Dharma | Dharmarajya | X X |

ପତ୍ରିକା ସଂପାଦନା : ଚନ୍ଦ୍ରକଳା (ଗଞ୍ଜାମ ସାହିତ୍ୟ ସମ୍ମେଳନର ମୁଖପତ୍ର)
ଦିଗ୍‌ଡ଼ିଖୋଲ, ଗଞ୍ଜାମ

୧ମ ବର୍ଷ, ୧ମ ସଂଖ୍ୟା ଜୁଲାଇ, ୧୯୬୮ ସମ୍ପାଦକୀୟ-
ପ୍ରବନ୍ଧ - କ) ଅନୁଷ୍ଠାନ ଓ ଆଦର୍ଶ
ଖ) ସାହିତ୍ୟ କାହିଁକି,
ଅନୁବାଦ, ସମାଚ୍ଚର

୧ମ ବର୍ଷ, ୨ୟ ସଂଖ୍ୟା ଅଗଷ୍ଟ, ୧୯୬୮ ସମ୍ପାଦକୀୟ-
ପ୍ରବନ୍ଧ—କ) ଲୋକହିତ
ଖ) ଆମଧର୍ମ
ଅନୁବାଦ ଓ ସମାଚ୍ଚର

୧ମ ବର୍ଷ, ୩ୟ ସଂଖ୍ୟା ସେପ୍‌ଟେମ୍ବର, ୧୯୬୮ ସମ୍ପାଦକୀୟ-
ପ୍ରବନ୍ଧ – କ) ଚାତୁର୍ମାସ୍ୟ
ଖ) ପ୍ରାଚୀନ ଆଧୁନିକ
ଅନୁବାଦ, ସମାଚ୍ଚର

ସୃଷ୍ଟି ପ୍ରକାଶିତ ପତ୍ରିକା ପ୍ରକାଶନ କାଳ

୧ମ ବର୍ଷ, ୪ର୍ଥ ସଂଖ୍ୟା, ଅକ୍ଟୋବର, ୧୯୬୮ ସମ୍ପାଦକୀୟ-
ପ୍ରବନ୍ଧ—ଦୁର୍ଗାଦୁର୍ଗତିନାଶିନୀ
ଅନୁବାଦ, ସମାଗ୍ରର

୧ମ ବର୍ଷ, ୫ମ ସଂଖ୍ୟା ନଭେମ୍ବର, ୧୯୬୮ ସମ୍ପାଦକୀୟ-
ପ୍ରବନ୍ଧ—କ) ଅତ୍ୟାଧୁନିକ
ଖ) ଇତିହାସରେ ସାହିତ୍ୟ
ଅନୁବାଦ, ସମାଗ୍ରର

୧ମ ବର୍ଷ ୬ଷ୍ଠ ସଂଖ୍ୟା ଡ଼ିସେମ୍ବର, ୧୯୬୮ ସମ୍ପାଦକୀୟ-
ପ୍ରବନ୍ଧ—କ) ତରୁଣ ଓ ବୃଦ୍ଧ
ଖ) ସାହିତ୍ୟ ଓ ରାଜନୀତି
ଅନୁବାଦ ଓ ସମାଗ୍ରର

୧ମ ବର୍ଷ, ୭ମ/୮ମ ଜାନୁୟାରୀ/ଫେବୃୟାରୀ ସମ୍ପାଦକୀୟ
ସଂଖ୍ୟା ୧୯୬୯
ପ୍ରବନ୍ଧ—କ) ଋତୁ ପରିକ୍ରମା
ଖ) ସମନ୍ୱୟ
ଅନୁବାଦ, ସମାଗ୍ରର

୧ମ ବର୍ଷ, ୯ମ ଓ ୧୦ମ ଜୁଲାଇ, ୧୯୬୯ ସମ୍ପାଦକୀୟ-
ସଂଖ୍ୟା
ପ୍ରବନ୍ଧ—କ) ପ୍ରଗତି ଓ ପରମ୍ପରା
ଖ) ସାମ୍ୟବାଦ
ଅନୁବାଦ, ସମାଗ୍ରର

୧ମ ବର୍ଷ, ୧୧ଶ ଓ ୧୨ଶ ଅକ୍ଟୋବର, ସମ୍ପାଦକୀୟ-
୧୯୬୯
ପ୍ରବନ୍ଧ—ସାହିତ୍ୟ ଓ ଜୀବନ
ଅନୁବାଦ, ସମାଗ୍ରର



# ପରିବର୍ଦ୍ଧିତ ନୂତନ ସଂସ୍କରଣର ଅବତରଣିକା

ଏକଥା ଆଶା ହିଁ ନଥିଲା ଯେ, କପିଳେଶ୍ୱର ରଚନାବଳୀ ପ୍ରଥମ ଭାଗ (ଖ୍ରୀ: ୧୯୯୭) ପୁନଃ ପ୍ରକାଶ ପାଇବ । ବୋଧହୁଏ ଏହାର ପ୍ରଚାର ଓ ପ୍ରସାର ନିମନ୍ତେ ଗୁରୁଦେବ ଚାହିଁଲେ । ଯଥା ସମୟରେ ବହିଟି ବଜାରରୁ ବିଦାୟ ନେଇନିଛି । ଏଥିରୁ ଏତକ ସ୍ପଷ୍ଟ ଯେ ଓଡ଼ିଶାରେ ଗ୍ରାହକତାର ଦାରୁଣ ଦୁର୍ଭିକ୍ଷ ଅଦ୍ୟାବଧି ପଡ଼ିନାହିଁ । ବହିଟି ଯଥାର୍ଥରେ ତା'ର ଗ୍ରାହକ ଖୋଜି ପାଇଛି । କପିଳେଶ୍ୱର-ପ୍ରବନ୍ଧ-ପ୍ରେମୀ ପାଠକଗଣ ବହିଟିକୁ ଲୋଡ଼ିଛନ୍ତି । କହିବା ବାହୁଲ୍ୟ ପାଠକବର୍ଗ ତାଙ୍କର ଅନ୍ୟ କିଛି ନ ପଢ଼ିଥିଲେ ମଧ୍ୟ, 'ଅସୀମର ଆହ୍ୱାନ'କୁ ଶୁଣିଛନ୍ତି ଓ ଏବେ ମଧ୍ୟ ଶୁଣୁଛନ୍ତି ।

ଏ କଥା ସର୍ବବାଦୀସମ୍ମତ ଯେ ଊନବିଂଶ ଶତାବ୍ଦୀର ତୃତୀୟ ଦଶକ ପରେ ଯେଉଁ କେତେଜଣ ପ୍ରବନ୍ଧ ସ୍ରଷ୍ଟା ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଭୂୟୋବିକାଶ ଦିଗରେ ଯତ୍‌ପରୋନାସ୍ତି ପ୍ରୟାସ ଜାରିରଖି ଫଳବତୀ ହୋଇଥିଲେ ତନ୍ମଧ୍ୟରେ କପିଳେଶ୍ୱର ଦାସ ଥିଲେ ଅନ୍ୟତମ । କଠିନ ଓ ନିରସ, ଦାର୍ଶନିକ ଚିନ୍ତା ଓ ତତ୍ତ୍ୱ ସମୂହକୁ ସାହିତ୍ୟର ସରସ ଆବରଣ ମଧ୍ୟରେ ପ୍ରକାଶ କରିବାର କୃତିତ୍ୱ ତାଙ୍କ ପ୍ରତିଭାର ବିଶେଷତ୍ୱ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶଗୁଡ଼ିକରେ ରହିଥିବା ମୌଳିକ ସମସ୍ୟାଗୁଡ଼ିକୁ ସେ ଅନାୟାସରେ ସମାଧାନ କରିବାକୁ ଉଦ୍ୟମ କରିଥିଲେ । ତାଙ୍କର ବିଚାର ବିଶ୍ଳେଷଣରେ ତ୍ରୁଟି ବିଚ୍ୟୁତି ଆଦୌ ନଥିଲା । ତାଙ୍କର ମତ ଓ ସିଦ୍ଧାନ୍ତ ଏବେ ଏକବିଂଶ ଶତାବ୍ଦୀରେ ମଧ୍ୟ କୌଣସି ଗୁରୁତ୍ୱ ହରାଇ ନାହିଁ ।

ଏ ମଧ୍ୟରେ କପିଳେଶ୍ୱର ସ୍ମୃତିସଂସଦ ତରଫରୁ ଓ ମତ୍‌କର୍ତ୍ତୃକ ସଂକଳିତ କପିଳେଶ୍ୱର ରଚନାବଳୀ, ଦ୍ୱିତୀୟ ଭାଗ (ଖ୍ରୀ. ୧୯୯୯) ଓ ଇଂରାଜୀ ପ୍ରବନ୍ଧ ସଂକଳନ 'REFLECTIONS' (୧୯୯୯), ଗ୍ରନ୍ଥଦ୍ୱୟକୁ ଲୋକାର୍ପଣ କରାଯାଇଛି । ରିଫ୍ଲେକ୍‌ସନର ମୁଖବନ୍ଧରେ ପ୍ରାଜ୍ଞ ଚନ୍ଦ୍ରଶେଖର ରଥ କପିଳେଶ୍ୱରଙ୍କ ସମ୍ପର୍କରେ ଯେଉଁ ଅଭିମତ ପ୍ରଦାନ କରିଛନ୍ତି ତାହା ସମସ୍ତଙ୍କ ପ୍ରଣିଧାନ ଯୋଗ୍ୟ । "Kapileswar Das is a name to be remembered in Odia literature for the unforgettable essays like 'The call of infinity' and the sublimity and profundity of their content. But his equally powerful Essays in

English open up an extradimension to Kapileswar's genius as a thinker, a scholar and a writer par excellence."

ମାତ୍ର ଦୁଃଖର କଥା ଏହି ଯେ ଆମର ସମସ୍ତ ଚେଷ୍ଟା ସତ୍ତ୍ୱେ ଏ ଯାବତ୍ ଏହି କୃତବିଦ୍ୟ ପ୍ରାବନ୍ଧିକଙ୍କ ବହୁ ଓଡ଼ିଆ ଓ ଇଂରଜୀ ପ୍ରବନ୍ଧ ଯଥାକ୍ରମେ ଓଡ଼ିଶା ଓ ଭାରତ ବର୍ଷର ବିଭିନ୍ନ ଅଞ୍ଚଳର ପତ୍ରପତ୍ରିକାଗୁଡିକରେ ଲୁପ୍ତପ୍ରାୟ ପଡ଼ିରହିଛି । ତନ୍ମଧ୍ୟରୁ 'ସହକାର' ପତ୍ରିକା ମଧ୍ୟରେ ରହିଥିବା "ଇତିହାସ ଉପରେ ଅର୍ଥନୀତିର ପ୍ରଭାବ" ପ୍ରବନ୍ଧଟିକୁ କଲ୍ୟାଣୀୟା ଅଧ୍ୟାପିକା ଜ୍ୟୋତ୍ସ୍ନାରାଣୀ ପଟ୍ଟନାୟକ ସଂଗ୍ରହ କରି ଆମକୁ ପ୍ରଦାନ କରିଛନ୍ତି ଯାହାକି ଆଲୋଚ୍ୟ ଗ୍ରନ୍ଥର ଶେଷଭାଗରେ ସଂକଳିତ । ଏଥିପାଇଁ ସେ ଧନ୍ୟବାଦାର୍ହ । ସେହିପରି ସହକାର, ୧୧।୩, ଆଷାଢ଼ ୧୩୩୭ ସାଲରେ ପ୍ରକାଶିତ "ଇତିହାସ ଉପରେ ନୌଶକ୍ତିର ପ୍ରଭାବ" 'ଶୀର୍ଷକ ପ୍ରବନ୍ଧଟି ଅଦ୍ୟାବଧି ଆମର ସଂଗୃହୀତ ହୋଇପାରି ନାହିଁ । କ୍ଷୋଭର କଥା ଯେ ଆଲୋଚ୍ୟ ପ୍ରବନ୍ଧଟିର ନାମ ତତ୍କାଳୀନ ପୁରୁଣା ସହକାର' ପତ୍ରିକାର ସୂଚୀପତ୍ରରେ ସ୍ଥାନିତ ହୋଇଥିଲେ ମଧ୍ୟ ଅସଲ ପ୍ରବନ୍ଧଟି କୌଣସି ମନ୍ଦ ବୁଦ୍ଧିସମ୍ପନ୍ନ ପାଠକଙ୍କ ହାତ ସଫେଇ କାର୍ଯ୍ୟରେ ବିନିଯୋଗ ହୋଇଯାଇଛି । ତଥାପି ଆମର ଅନୁରୋଧ ଭବିଷ୍ୟତରେ ସେହି ପ୍ରବନ୍ଧ ବା ଅନ୍ୟ ପ୍ରବନ୍ଧ ଯଦି କୌଣସି ସହୃଦୟ ବ୍ୟକ୍ତିଙ୍କ ଦୃଷ୍ଟିପଥାରୂଢ଼ ହୁଏ, ତେବେ ଆମକୁ ଜଣାଇ ଏ ଦିଗରେ ଉତ୍ସାହିତ କରିବା ହେବେ ।

କପିଳେଶ୍ୱରଙ୍କ ବହୁ ବନ୍ଧୁ, ବିଦଗ୍ଧ ପାଠକ ଓ ଶିଷ୍ୟଗଣ ବହିଟିର ପୁନଃମୁଦ୍ରଣ ଚାହୁଁଥିଲେ । ଏବେ କପିଳେଶ୍ୱରସ୍ମୃତିସଂସଦ ତରଫରୁ କପିଳେଶ୍ୱରଙ୍କ ପୁତ୍ରବଧୂ ଶ୍ରୀମତୀ ନିରୁପମା ଦାସ ଓ ପୁତ୍ର ଗଣେଶ୍ୱର ଦାସ ବଡ ଆଗ୍ରହରେ ବହିଟିର ପ୍ରକାଶନ ଭାର ଗ୍ରହଣ କରିଛନ୍ତି; ସଂକଳକ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଜ୍ଞାପନ କରୁଛି । ସନ୍ତୋଷ ପ୍ରିଣ୍ଟର୍ସର ରୁଚିଶୀଳ କର୍ତ୍ତା ଶ୍ରୀ ଅଭିମନ୍ୟୁ ପାତ୍ରୀ ଏହାକୁ ନିଷ୍ଠାର ସହ ବି ଛାପିଛନ୍ତି, ତାଙ୍କୁ ମଧ୍ୟ ଏହି ଅବସରରେ ଆନ୍ତରିକ ଧନ୍ୟବାଦ ଜଣାଉଛି । ଗ୍ରନ୍ଥଟିକୁ ପୂର୍ବପରି ସୁଧୀବୃନ୍ଦ ଶ୍ରଦ୍ଧା ଓ ସହାନୁଭୂତି ସହକାରେ ଗ୍ରହଣ କରିବେ ବୋଲି ଆଶା କରଯାଉଛି ।

ନବବର୍ଷ – ୨୦୦୧ | ଦୁର୍ଗାମାଧବ ନନ୍ଦ
ଭୁବନେଶ୍ୱର | ୧-୧-୨୦୦୧

# ସୂଚୀପତ୍ର

## ଜୀବନ ଚିନ୍ତା : ଦ୍ୱିତୀୟ ସଂସ୍କରଣ



## ପଦ୍ୟ ବିଭାଗ





# ଜୀବନ ପ୍ରବାହ

ଜୀବନ ପ୍ରବାହ ବହିଯାଉଛି । ଶୈଶବ, ତାରୁଣ୍ୟ, ଯୌବନ, ପ୍ରୌଢ଼ତା, ବାର୍ଦ୍ଧକ୍ୟ ମଧ୍ୟରେ ଗତି କରି ଜୀବନ ମରଣରେ ଅବସାନ ଲଭୁଛି । ମରଣ ପୁଣି ଅମୃତ ସୋପାନ ହୋଇ ଜୀବନ ଗଢ଼ୁଛି । ପ୍ରକୃତିର ଏ ନିର୍ଦ୍ଧାରିତ ଅସରନ୍ତି ବିକାଶରେ ଜୀବନର ଗତି ନିରବଚ୍ଛିନ୍ନ ଭାବରେ ଚାଲିଛି । ଶୈଶବ ଜୀବନର ମୂଳଦୁଆ—ତାରୁଣ୍ୟ ଜୀବନ ଗଠନର ଉତ୍କୃଷ୍ଟ ସମୟ; ସେଥିପାଇଁ 'ବୋଲି' ଅଛି—

'ଯାହା ହୋଇ ନାହିଁ ବାଳୁତ କାଳେ
ତାହା ହେବ କି ପାଚିଲା ବାଳେ ?'

ଶିଶୁର ଗ୍ରହଣ ଶକ୍ତି ବାସ୍ତବିକ ଯେପରି ତୀକ୍ଷ୍ଣ, ବାହ୍ୟ ଜଗତର ପ୍ରେରଣା ପ୍ରତି ତାହାର ପ୍ରତିକ୍ରିୟା ସେପରି ବଳିଷ୍ଠ । ମନସ୍ତତ୍ତ୍ୱ-ଭାଷାରେ କହିଲେ, ଜାଜ୍ୱଲ୍ୟ-ମାନ, ଶବ୍ଦାୟମାନ, ଭ୍ରାମ୍ୟମାନ, ଜଗତପ୍ରତି, ପ୍ରବହମାନ ଜୀବନର ବହୁମୁଖୀ ଧାରା ପ୍ରତି, ଶିଶୁ ସଦା ଆଗ୍ରହ ସହକାରେ, ବିସ୍ମୃତ ଭାବରେ, ଉନ୍ମୁଖ । ବିଭିନ୍ନ ଦିଗରୁ ସେ ଇନ୍ଦ୍ରିୟବୋଧ—ବିଷୟ ସଂଗ୍ରହ କରେ ସେଗୁଡ଼ିକୁ ଶ୍ରେଣୀଭୁକ୍ତ କରେ, ତା' ଉପରେ ନିଜର ଅଭିମତ ଗଠନ ଓ ପ୍ରକାଶ କରେ । ଏ ଗ୍ରହଣ ଓ ଗଠନର ଧାରା ପାରମ୍ପରିକ ସଂସ୍କାର କ୍ରମେ ଫିଟେ ସତ; ତଥାପି ଶିକ୍ଷାର କର୍ତ୍ତୃତ୍ୱରେ ତାହା ଅନେକ ଦୂର ରୂପାୟିତ ହୋଇପାରେ । ସେଥିପାଇଁ ଶୈଶବ ଓ ତାରୁଣ୍ୟ ଶିକ୍ଷାର ଉତ୍କୃଷ୍ଟ ସମୟ —ଏ କଥା ଅନାଦି କାଳରୁ ସିଦ୍ଧ ହୋଇ ଆସିଛି । ଶିକ୍ଷାତତ୍ତ୍ୱର ଏ ମୌଳିକ ନୀତି ଉପରେହିଁ ହିନ୍ଦୁ ଚିନ୍ତା ଅଧ୍ୟୁଷିତ 'ବ୍ରହ୍ମଚର୍ଯ୍ୟ' ପ୍ରତିଷ୍ଠିତ । ଶିକ୍ଷା ପାଇଁ ଶିଷ୍ୟ ଗୁରୁଙ୍କ ସମ୍ମୁଖରେ ଉପସ୍ଥିତ ହୁଏ । 'ବର୍ଣ୍ଣ'ରୁ ଗୁରୁ ତାହାର ମନୋବୃତ୍ତି ଓ ଯୋଗ୍ୟତା ସମ୍ବନ୍ଧେ ଗୋଟାଏ ମୋଟାମୋଟି ଧାରଣା କରନ୍ତି । ସେଥିପାଇଁ 'ବର୍ଣ୍ଣାଶ୍ରମ' ହିନ୍ଦୁ ଚିନ୍ତାର ଅପରିହାର୍ଯ୍ୟ ବିଭବ । ଗୁରୁଙ୍କ ଏ ପ୍ରାଥମିକ ଧାରଣା କେବଳ ଗୋଟାଏ କଳ୍ପନା, ସିଦ୍ଧାନ୍ତ ପାଇଁ ଯଥେଷ୍ଟ ନୁହେ । ସେଥିପାଇଁ ଶିଷ୍ୟକୁ ଅନେକ ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼େ । କ୍ରମେ ଶିଷ୍ୟର ସାମର୍ଥ୍ୟ ବା ଦୁର୍ବଳତା, ତାହାର ଜୀବନର ଲକ୍ଷ୍ୟ ତଥା ସାମାଜିକ ଓ ପାରିପାର୍ଶ୍ୱିକ ଅବସ୍ଥାକୁ ବିଚାର କରି ତାହାର ପଠିତବ୍ୟ ବିଷୟ ତଥା ଶିକ୍ଷା ପ୍ରଣାଳୀ ଗୁରୁ ସ୍ଥିର କରନ୍ତି । ଏହିପରି ବିକାଶ-ବୀଜ ତାହାର ଜୀବନ-କ୍ଷେତ୍ରରେ ଅଙ୍କୁରିତ ହୁଏ । ସେଥିସଙ୍ଗେ ଶିଷ୍ୟର ଏ ଦୈହିକ, ମାନସିକ,

ନୈତିକ ଅଭିବୃଦ୍ଧି ଯେପରି ନାଶାଭିମୁଖୀ ହୋଇ ଧ୍ୱଂସ ସାଧନ ନ କରେ ସେଥିପାଇଁ ତାକୁ କଠୋର ସଂଯମରେ ରଖାଯାଏ ।

ସେଥିପାଇଁ ଆମ ପ୍ରାଚୀନ ଶିକ୍ଷା-ପଦ୍ଧତିରେ ବ୍ରହ୍ମଚର୍ଯ୍ୟ ଉପରେ ଏତେ ପ୍ରାଧାନ୍ୟ ଦିଆଯାଉଥିଲା । ଶାସ୍ତ୍ର ଅଧ୍ୟୟନ ଓ ବୋଧ, ଜ୍ଞାନ ଆହରଣ, ସଦାଚାର, ଆତ୍ମସଂଯମ, ଶୁଦ୍ଧି, ସଦଗୁଣ, ସଦିଚ୍ଛା ଦ୍ୱାରା ଶିଷ୍ୟ ଜୀବନୀ ଶକ୍ତି ସଞ୍ଚୟ ଓ ସୁଦୃଢ଼ କରୁଥିଲା—କାରଣ, ବଢ଼ିବାର ପ୍ରଥମ ଅବସ୍ଥାରେ ହିଁ ଯଦି ତରୁ ଜୀବନୀ ଶକ୍ତି ହରାଏ, ତେବେ ତାହା ପୁଷ୍ପ-ଫଳ ଭରନତ ହେବ କିପରି ? କିନ୍ତୁ ଏଥିରୁ ବୁଝିବାର କଥା ନୁହେ ଯେ ଜୀବନକୁ ଏଥିଦ୍ୱାରା କ୍ଷୁଣ୍ଣ ଓ ସଙ୍କୁଚିତ କରାଯାଉଥିଲା । ଏହାହିଁ ଆଧୁନିକ ବୁଝାମଣାର ଗୋଟାଏ ବିଷମ ଭ୍ରମ । ଆତ୍ମନିର୍ଭରଶୀଳତା, ସାହସ, ଭରସା, କର୍ମ-କୁଶଳତା-ସମ୍ପାଦନ ସେହି ଶିକ୍ଷାର ପ୍ରଧାନ ଆଭିମୁଖ୍ୟ ଥିଲା । କଠୋର ବାସ୍ତବ ଜୀବନ ଯାପନରେ ବ୍ରହ୍ମଚାରୀ ପ୍ରବର୍ତ୍ତ ଥିଲେ । ଆଶ୍ରମର ଗବାଦି ପଶୁପାଳନ, ଆଶ୍ରମ-ବାସୀଙ୍କ ଜୀବନ ଧାରଣ ସହାୟକ ଦ୍ରବ୍ୟ ସଂଗ୍ରହ ଓ ସହଯୋଗ, ଦୈନିକ ହୋମାଦି ପାଇଁ ସମିଧ ଇତ୍ୟାଦି ପଦାର୍ଥ ସଂଗ୍ରହ ଶିଷ୍ୟର ଦୈନିକ କର୍ତ୍ତବ୍ୟ ଥିଲା । କାୟିକ ଶ୍ରମର ମର୍ଯ୍ୟାଦା ଓ ଉପଯୋଗ ଏହାଠାରୁ ଅଧିକ ଭାବରେ ଶିଖିବାର କୌଣସି ଶିକ୍ଷା-ପଦ୍ଧତିରେ ଦିଶେ ନାହିଁ । ଆମର ବର୍ତ୍ତମାନ 'ଧୋବ ଧାଉଳିଆ ଜାତିରେ ତ ଆଦୌ ନାହିଁ—ବରଂ ତାକୁ ଘୋଷା କରି ପ୍ରତାରଣା କରଯାଉଛି ମାତ୍ର । କାୟିକ ଶ୍ରମ ସଙ୍ଗେ ବିଜ୍ଞାନ ଓ ଶିଳ୍ପକଳାରେ ଶିଷ୍ୟ ଗଭୀର ଜ୍ଞାନ ଅର୍ଜନ କରୁଥିଲା । ସେଥି-ସଙ୍ଗେ ସମାଜକୁ ଆଲୋକ—ରାଜ୍ୟରେ ଉପଗତ କରିବାର ଆଦର୍ଶ ଅଭ୍ରାନ୍ତ ଭାବରେ ତାହା ଆଗରେ ଥୁଆ ଯାଉଥିଲା । ସେଥିପାଇଁ ବ୍ରହ୍ମଚର୍ଯ୍ୟ ଆଶ୍ରମର ସଙ୍କେତ ଥିଲା 'ଦଣ୍ଡ'—ଦୃଢ଼ପ୍ରତିଜ୍ଞା, ସାମାଜିକ ହିତ ସାଧନ ପାଇଁ ତ୍ୟାଗ, ଅଭୟ, ଜୀବନକୁ କୃତାର୍ଥ ଓ କଲ୍ୟାଣପ୍ରଦ କରିବାର ଉଦ୍ୟମର ପ୍ରତୀକ ।

ଏ ପୁଷ୍ପିତ ଚିତ୍ରରେ ଅତୀତର ସ୍ୱର୍ଣ୍ଣାଭ କିଞ୍ଚିତ୍ ପ୍ରତିବିମ୍ବିତ ହୋଇ ଥାଇ-ପାରେ କିନ୍ତୁ ମନେ ରଖିବାର କଥା, ସମୟ ଥିଲା ଯେତେବେଳେ ଏହା ସ୍ୱପ୍ନ ବା ସୁଖବୋଧ କଳ୍ପନାରେ ପର୍ଯ୍ୟବସିତ ନ ଥିଲା । ଆମର ପ୍ରଚଳିତ ଶିକ୍ଷା ପଦ୍ଧତିର ସକଳ ଅଭାବ ଅଭିଯୋଗ ମଧ୍ୟରେ ପ୍ରାଚୀନ 'ଗୁରୁକୁଳ'ର ଆହ୍ୱାନ କେତେ କ୍ଷୀଣ ହେଲେ ମଧ୍ୟ ଆଜି ଆମ କାନରେ ବାଜୁଛି । ସରଳ ଜୀବନ, ଉନ୍ନତ ଚିନ୍ତା, ସାଂସ୍କୃତିକ ଭୂମିକା, ଗୁରୁ-ଶିଷ୍ୟ ମଧୁର ସମ୍ପର୍କ, ତରୁ-ଲତା ପତ୍ରପୁଷ୍ପର ଅପୂର୍ବ ସମ୍ଭାର, ଶୀତଳ ନିର୍ଝରର କୁଳୁନାଦ ଘେନି ଆଜି ମଧ୍ୟ 'ତପୋବନ ଶ୍ରୀ' ଯୁଗ ଯୁଗର ଭେଦ ନ ମାନି ଆମ ଆଖି ଆଗରେ କେତେ ଅସ୍ପଷ୍ଟ ହେଲେ ମଧ୍ୟ ନାଚୁଛି । ଆମର ବର୍ତ୍ତମାନ ଶିକ୍ଷା

ପଦ୍ଧତିରେ ଦେଖା ଯାଉଥିବା ନୈତିକ ବଳରେ ନିଃସାରଣ, ପ୍ରତିଯୋଗୀ ମନୋଭବ, ଅନ୍ତର୍ନିହିତ ସଂଘର୍ଷ, କର୍ମହୀନତା, ଯାନ୍ତ୍ରିକ ଅନୁକରଣ, ଗୌଣ ମନୋବୃତ୍ତି ଦେଖି ତପୋବନର ସ୍ନିଗ୍ଧ ସୁଷମା ତଥା ଶାନ୍ତ ସୌନ୍ଦର୍ଯ୍ୟର ସ୍ମୃତି-ଆକର୍ଷଣ ଏବେ ମଧ୍ୟ ଆମେ କାଟି ପାରୁନାହୁଁ ।

ଶିକ୍ଷାର୍ଥୀର ଶିକ୍ଷା ଶେଷହୁଏ । ଗୁରୁ-ପାଦରେ ବିନୀତ ଦକ୍ଷିଣା ଓ ପ୍ରଣତି ଢ଼ାଳି, ତାଙ୍କର ବିଦାୟକାଳୀନ ଆଶିଷ ଓ ଉଦ୍ଦୀପନାରେ ଉତ୍ସାହିତ ଓ ପ୍ରସନ୍ନ ହୋଇ, ସେ ଘରକୁ ବାହୁଡେ । ବିବାହ କରି ଘର, ଗୋଷ୍ଠୀ, ସମାଜର କର୍ତ୍ତବ୍ୟ ସାଧନରେ ବ୍ରତୀ ହୁଏ । ଅଳ୍ପ କେତେଜଣ ଅପୂର୍ବ ପ୍ରତିଭା ଓ ଆଧ୍ୟାତ୍ମିକ ଶକ୍ତିସମ୍ପନ୍ନ ଶିଷ୍ୟ ଅବିବାହିତ ରହି ଗୁରୁବାସରେ ଜୀବନ କଟାନ୍ତି—ତପସ୍ୟା, ତୀର୍ଥାଟନ, ଶାସ୍ତ୍ରଅଧ୍ୟୟନ, ବିଦ୍ୟାଭ୍ୟାସ, ବିଦ୍ୟାଦାନ, ଲୋକ ସଂଗ୍ରହରେ ନିଯୁକ୍ତ ରହନ୍ତି । ଜଗତର କ୍ଷଣିକତା ଓ ଅସାରତା ସେମାନେ ହୃଦୟଙ୍ଗମ କରି ସାରିଥାନ୍ତି – ଗୃହସ୍ଥ ଅନୁଭୂତି ସେମାନଙ୍କର ଆଉ ଆପେକ୍ଷିକ ହୁଏ ନାହିଁ । କିନ୍ତୁ ସଂଖ୍ୟାଧିକଙ୍କ ପାଇଁ ଗୃହସ୍ଥ ଧର୍ମ ଆଚରଣ ଅନିବାର୍ଯ୍ୟ ହୁଏ ।

— ୨ —

ଇଂରେଜିରେ ଅଛି, Charity begins at home—ବଦାନ୍ୟତା ଘରେ ଆରମ୍ଭ ହୁଏ । ଆତ୍ମଶକ୍ତିର ପ୍ରତିବିମ୍ବ ତଥା ପ୍ରତିନିଧି ଭାବରେ ବ୍ୟକ୍ତି ବା ପଦାର୍ଥ ଆମର ପ୍ରିୟ ହୁଏ । ଜୀବନର ପ୍ରଥମ ସ୍ତରରେ ଜୀବ ଅନ୍ୟ ସମସ୍ତଙ୍କ ଠାରୁ ଭିନ୍ନ, ସ୍ୱ-ଯଥେଷ୍ଟ ବୋଲି ଭାବେ । କିନ୍ତୁ ଯେତେଦୂର ସେ ଅଗ୍ରସର ହୁଏ, ବିଭିନ୍ନ କ୍ଷେତ୍ରରେ ତାର ପ୍ରୟୋଜନ ମେଣ୍ଟାଉଥିବା ବିଭିନ୍ନ ବ୍ୟକ୍ତି ଓ ପ୍ରକୃତି ସହିତ ନିଜକୁ ସେ ସଂଯୋଜିତ କରେ । ଏପରି ଭାବରେ କ୍ରମେ ସେ କୁଟୁମ୍ବ, ଗୋଷ୍ଠୀ, ଜାତି, ରାଜ୍ୟ, ଆନ୍ତର୍ଜାତିକ ଅନୁଷ୍ଠାନ ତଥା ବିଶ୍ୱର ଅଖଣ୍ଡ ସଂଶ୍ଳେଷଣ ଅନୁଭବ କରେ । ଏ ଅନୁଭୂତିର ପ୍ରଥମ ଅଭିନୟ ଘରର ପରିସରରେ ହିଁ ହୁଏ । ପିତା ମାତା, ପତି ବା ପତ୍ନୀ, ଭାଇ-ଭଉଣୀ ପିଲପିଲି, ବନ୍ଧୁ-କୁଟୁମ୍ବଙ୍କ ପାଇଁ ସେ କିଛି ତ୍ୟାଗ କରିବାକୁ ପଡ଼େ ଓ ବିନିମୟରେ ସେମାନଙ୍କଠାରୁ ଯଥାଯଥ ସ୍ନେହ ଓ ସେବା ପାଏ । ଏହିପରି ପରସ୍ପର ବିଶ୍ୱାସ ଓ ବୁଝାମଣାର ବାଟ ଫିଟେ । କର୍ମ-ସାଧନାର ତାଲିମ କେନ୍ଦ୍ର ବାସ୍ତବିକ୍ ଘର । ଧର୍ମ ସାଧନାର ମାର୍ଗ ଦ୍ୱିବିଧ-ପ୍ରବୃତ୍ତି ଓ ନିବୃତ୍ତି । ପୁଣି ଧର୍ମ ଜୀବନର ମୂଳ, ଅୟମାରମ୍ଭ । ତହିଁରୁ ଗତି କରି ଅର୍ଥ ଓ କାମକୁ ଅନୁସରି ଜୀବ ମୋକ୍ଷରେ ପହଞ୍ଚେ । ମୋକ୍ଷ ସାଧନାର ଅନ୍ତିମ ପରିଣତି ।

ବଦାନ୍ୟତା ଘରେ ଆରମ୍ଭ ହୁଏ ସତ—କିନ୍ତୁ ସେତିକିରେ ଶେଷ ହୋଇଯିବା ଉଚିତ ନୁହେଁ; କାରଣ ଆରମ୍ଭ ଯଦି ଶେଷ ହୁଏ, ବିକାଶ ଓ ଉନ୍ନତିର ସମ୍ଭାବନା ରହିବ କେଉଁଠୁ ? କାମନା ପୂରଣ କରିବାକୁ ହେବ ସତ ତଥାପି ତାହା ସୁସ୍ଥ, ସଂଯତ, ଉଚ୍ଚାଭିମୁଖୀ ହେବାକୁ ହେବ । ବ୍ରହ୍ମଚର୍ଯ୍ୟର ଠିକ୍ ପାଳନରେ ଏହା ସମ୍ଭବ ହୁଏ । ପ୍ରକୃତ ବ୍ରହ୍ମଗୃହସ୍ଥ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ସରଣୀରେ ସାଂସାରିକ ବିଷୟ ଅନୁଭୋଗ କରେ ସତ—ତଥାପି ଏହାଦ୍ୱାରା ଇନ୍ଦ୍ରିୟ-ପ୍ରବଳ ବତାସରେ ସଞ୍ଚାଳିତ ହୋଇ ସଂସାର-ସାଗରର ଉତ୍ତାଳ ତରଙ୍ଗମାଳାରେ ସେ ଭଙ୍ଗା ନୌକା ଭଳି ବିକ୍ଷିପ୍ତ ହେବାର ଅବକାଶ ରହେ ନାହିଁ, କାରଣ, ପ୍ରଥମ ଆଶ୍ରମରୁ ହିଁ ସେ ସତ୍‌ପନ୍ଥାର ନିର୍ଭୀକ ଓ ଅକ୍ଳାନ୍ତ ପଥଗାମୀ ହୋଇଥାଏ । ଗୃହସ୍ଥ ଏହି ଦୃଢ଼ ମୂଳଦୁଆ ଉପରେ ଛିଡା ହୋଇ ବିଷୟ ଅନୁଭୋଗ କଲେ ମଧ୍ୟ ତହିଁର ବନ୍ଧନରେ ପଡେ ନାହିଁ—ଯେହେତୁ ସେ ଦୃକ୍ ଦୃଶ୍ୟ, ମାର୍ଗ, ଲକ୍ଷ୍ୟର ପ୍ରଭେଦ ଭଲ ଭାବରେ ବୁଝିଥାଏ । ଅନ୍ୟ ପକ୍ଷରେ ବାଧ୍ୟବାଧକ ତଥା ଅପ୍ରାକୃତ ଭାବରେ ଆବଶ୍ୟକୀୟ ଅନୁଭୂତିରୁ ବଞ୍ଚିତ ହୋଇ ସେ ପୂର୍ଣ୍ଣତାର ଛଳନା କରେ ନାହିଁ । ଏହିପରି ଜୀବନ ଗିରିର ଉଭୟ ପାର୍ଶ୍ୱସ୍ଥିତ ଧ୍ୱଂସ ଓ ଛଳନା ରୂପକ ଗଭୀର ଖାତ ଏଡ଼ି ଗୃହସ୍ଥ ବିଶ୍ୱରବନ୍ତ ଭାବରେ କ୍ରମୋନ୍ନତ ପଥରେ ଚାଲି ଚାଲି ପୂର୍ଣ୍ଣତାର ଉଚ୍ଚତମ ଶିଖରରେ ପଦାର୍ପଣ କରେ ।

କୌଣସି ଛଳନାମୂଳକ ଦୁର୍ବୋଧ 'ରହସ୍ୟବାଦ' ନାମରେ କର୍ମର ମୁଖ୍ୟତାକୁ ଅବମାନନା କରିବାର, କଠୋର ସାଧନା ବ୍ୟତିରେକେ 'ଧର୍ମ' ନାମରେ ବଡ ବଡ କଥା କହିବାର ଗୋଟାଏ ଅସ୍ୱାସ୍ଥ୍ୟକର ମନୋବୃତ୍ତି ଆଧୁନିକ ଜଗତରେ ଦେଖାଯାଉଛି । ମନେ ରଖିବାକୁ ହେବ, ସାଧନାର ଶେଷ ସ୍ତରରେ ମଧ୍ୟ କର୍ମ ଅପରିହାର୍ଯ୍ୟ । ଜୀବନ୍ମୁକ୍ତ ମଧ୍ୟ କର୍ମର ବନ୍ଧନୀରୁ ପୂର୍ଣ୍ଣ ମୁକ୍ତ ନୁହେଁ । ମହାନ୍ ତ୍ୟାଗର ପାଉଁଶରେ ମଧ୍ୟ ଅହମିକାର ଶେଷ ନିଆଁ ଝୁଲ ଅଲିଭ ରହିଥାଏ । ସେଥିପାଇଁ ଗୀତାରେ କୁହାଯାଇଛି—କର୍ମ ନକରି ବାଟ ନାହିଁ; ପ୍ରାଣୀ କର୍ମ ବନ୍ଦ କରିବାର ଉପକ୍ରମ କଲେ ମଧ୍ୟ, ତାହାର ପ୍ରକୃତି ତାକୁ କର୍ମମାର୍ଗରେ ଅନ୍ତରାଳ କରିବ । ତଥାପି କର୍ମ ବିଧିପୂର୍ବକ ହେବାକୁ ହେବ । ହିନ୍ଦୁ ଚିନ୍ତାରେ କର୍ମର ତ୍ରିବିଧ ବିଭାଗ ଶାସ୍ତ୍ରୀୟ—କାମ୍ୟ, ନୈମିତ୍ତିକ, ନିତ୍ୟ । ଏହି ସବୁ କର୍ମ ମନୁଷ୍ୟକୁ ଦାସ କରିପାରେ ବା ମୁକ୍ତ କରିପାରେ, ଦିବ୍ୟଲୋକକୁ ଟେକି ନେଇପାରେ ବା ଇନ୍ଦ୍ରିୟ ଲାଳସାରେ ଘାଣ୍ଟି ରସାତଳକୁ ଖସାଇ ଦେଇପାରେ । ଆନ୍ତରିକତା ଉପରେ ତାହା ନିର୍ଭର କରେ । ଯେଉଁ କର୍ମ ତ୍ୟାଗ ଓ ଉଦାରତା ମନ୍ତ୍ରରେ ଦୀକ୍ଷିତ ହୋଇ କଲେ ବିଶ୍ୱ ଜୀବନରେ ମନୁଷ୍ୟକୁ ଭାଗୀ କରାଏ, ସେହି କର୍ମ ହିଁ ସଙ୍କୀର୍ଣ୍ଣ ସ୍ୱାର୍ଥ ଓ ଶୋଷଣ ଦୃଷ୍ଟିରୁ କଲେ

ତାହାକୁ ସକଳ ଦୁଃଖ କଷ୍ଟରେ ପକାଏ । ଗୃହସ୍ଥାଶ୍ରମ ଗୃହସ୍ଥକୁ ସମୁଚିତ ଦୃଷ୍ଟିରୁ କଠୋର ପରିଶ୍ରମ କରି ପୂର୍ଣତା ଆଡ଼କୁ ପଦେ ପଦେ ଅଗ୍ରସର ହେବାର ପ୍ରେରଣା ଯୋଗାଏ, ସୁବର୍ଣ୍ଣ ସୁଯୋଗ ଦିଏ ।

ବ୍ୟାପକ ଧ୍ୱଂସାଭିମୁଖୀ ଦ୍ୱନ୍ଦ୍ୱଗ୍ରସ୍ତ ବର୍ତ୍ତମାନ ପୃଥିବୀରେ ଗୋଟାଏ ପ୍ରଧାନ ସମସ୍ୟା ଭବରେ ଦେଖା ଦେଇଥିବା ହିଂସା-ଅହିଂସାର ଦ୍ୱନ୍ଦ୍ୱ ସମାଧାନ ଲଗି ଗୃହସ୍ଥାଶ୍ରମ ସମୁଚିତ ପନ୍ଥା ଦେଖାଏ । ସ୍ଥାନୀୟ ସଭ-ସମିତିଠାରୁ ଆରମ୍ଭ କରି ଆନ୍ତର୍ଜାତିକ ସଂସ୍ଥା ପର୍ଯ୍ୟନ୍ତ କଥା କଥାକେ ଶାନ୍ତି 'ଅହିଂସା' ଉଚାରି ଧରିତ୍ରୀରେ ପ୍ରଳୟ ଘଟାଇବା ପାଇଁ ଆଣବିକ ଓ ଉଦ୍‌ଯାନ ବୋମା ଆବିଷ୍କାର କରିବାର ଶଠତାର ବର୍ତ୍ତମାନ ଅଭବ ନାହିଁ; 'ମୈତ୍ରୀ' 'ବିଶ୍ୱଭ୍ରାତୃତ୍ୱ'ର ଆଦର୍ଶ ବାଡ଼ି ରଣସଜ୍ଜା ବଢ଼ାଇବାର ପ୍ରବଞ୍ଚନାର ଅଭବ ନାହିଁ । ପୁଣି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ—କାରଣ, ଏସବୁ କଥାକୁହା ରାଜନୈତିକ ଓ କୂଟନୈତିକ ଦୃଷ୍ଟିଭଙ୍ଗୀରୁ ହେଉଛି ସିନା, ବାସ୍ତବ ବ୍ୟକ୍ତିଗତ ଜୀବନ ତଥା ଦୈନନ୍ଦିନ ଅନୁଭୂତିକୁ ଆଲୋଡ଼ନ କରୁ ନାହିଁ । ଏ ଦ୍ୱନ୍ଦ୍ୱ ସମାଧାନରେ ଗୃହସ୍ଥାଶ୍ରମର ଶିକ୍ଷା ତାତ୍ପର୍ଯ୍ୟପୂର୍ଣ୍ଣ । ଅହିଂସା ଆଦର୍ଶ—ଏଥିରେ ମତଦ୍ୱୈଧ ଥାଇ ନପାରେ । ତଥାପି ମନେ ରଖିବାର କଥା, ସାଂସାରିକ ଜୀବନ ଯାପନରେ କୌଣସି ନା କୌଣସି ପ୍ରକାର ହିଂସା ପ୍ରତ୍ୟକ୍ଷ ବା ପରୋକ୍ଷ ଭବରେ କାର୍ଯ୍ୟ କରିଥାଏ । ଆଧୁନିକ ବିଜ୍ଞାନରୁ ହିଁ ଆମେ ଶିଖୁଛୁଁ—ଧାତୁ, ଉଦ୍ଭିଦ, ପ୍ରାଣୀ ଓ ମନୁଷ୍ୟର କ୍ରମୋଚ୍ଚ ସ୍ତର ନିମ୍ନସ୍ତରମାନଙ୍କ ଉପରେ ବର୍ଦ୍ଧିତ ହୁଏ । ପାଶ୍ଚାତ୍ୟ ଦର୍ଶନ କ୍ରମ ବିକାଶ, ଜୀବନସଂଗ୍ରାମ, ଯୋଗ୍ୟତମର ଅବସ୍ଥାନ (Survival of the fittest), ପ୍ରାକୃତିକ ନିରୂପଣ (Natural Selection) ଇତ୍ୟାଦି ବଢ଼ାଉଛି, ଏହା ସମ୍ପୂର୍ଣ୍ଣ ସତ୍ୟ ହୋଇ ନପାରେ; ତଥାପି ତହିଁରେ ସତ୍ୟର ଯେଉଁ ସତ୍ତା ଅଛି, ତାହା ଉପେକ୍ଷିତ ହୋଇ ନ ପାରେ । ସୃଷ୍ଟିର ଏକ ବିଭଗରୁ ବିବର୍ଦ୍ଧନରେ ଅନ୍ୟ ଅନେକ ବିଭଗ ବ୍ୟବହୃତ ଓ ଉପଭୁକ୍ତ ହୁଏ । ଗୃହସ୍ଥ ଧର୍ମ ଜୀବ-ସୃଷ୍ଟିର ଏ ପ୍ରାଥମିକ ସତ୍ୟ ଉପଲବ୍ଧି କରି ତାକୁ ସଂଯତ ସାଧନାର ପର୍ଯ୍ୟାୟରେ ଶୃଙ୍ଖଳାବଦ୍ଧ କରେ । ଗୃହସ୍ଥ ନିଜର ଦୈନନ୍ଦିନ ଗୃହ ଚ୍ଚଳନାରେ—ନିଆଁ ଜାଳିବାରେ, ପାଣି କାଢ଼ିବାରେ, ଖାଦ୍ୟ ପ୍ରସ୍ତୁତ କରିବାରେ, କାଠ ହାଣିବାରେ, ଏପରିକି ଅଚେତନ ନିଃଶ୍ୱାସ-ପ୍ରଶ୍ୱାସ ପ୍ରକ୍ରିୟାରେ ଅସଂଖ୍ୟ ଜୀବ ଉପରେ ଆଘାତ ଆଣେ; ତଦ୍ୱାରା ଅପରିହାର୍ଯ୍ୟ ପାତକ କରେ । ଏହି ପାତକରୁ ନିସ୍ତାର ପାଇଁ ସମାଜର ତଥା ଜଗତର କଲ୍ୟାଣ ସାଧନ ସରଣୀରେ ସେ ତାର ନିତ୍ୟକର୍ମ ପଦ୍ଧତି ବିହିତ ଶାସ୍ତ୍ରସିଦ୍ଧ ପଞ୍ଚଯଜ୍ଞ କରେ—ଶାସ୍ତ୍ର ଅଧ୍ୟୟନ, ଶାସ୍ତ୍ରବିଧି-ପାଳନ ସମେତ ଋଷିଯଜ୍ଞ, ଅଗ୍ନିହୋତ୍ର ସମେତ ଦେବଯଜ୍ଞ; ପଶୁ ପକ୍ଷୀଙ୍କୁ ଖାଦ୍ୟଦାନ ତଥା ବୈଶ୍ୱ ଦେବ ସମେତ ଭୂତଯଜ୍ଞ; ଅତିଥି-ଅଭ୍ୟାଗତ

ତଥା କୁଟୁମ୍ବର ସେବକ—ନିର୍ଭରଶୀଳମାନଙ୍କ ସହାର ସମତେ ନୃଯଜ୍ଞ; ପୂର୍ବ-ପୁରୁଷ ତୃପ୍ତି ବିଧାନ ପାଇଁ ଶ୍ରାଦ୍ଧ-ତର୍ପଣ ସମେତ ପିତୃଯଜ୍ଞ ।

ଏହିପରି ସାମାଜିକ ଅଭିବୃଦ୍ଧି ଓ ସାମାଜିକ ସମ୍ପଦର ସମୁଚିତ ବଣ୍ଟନର ଗୃହସ୍ଥ ଜୀବନର କର୍ମମାର୍ଗ ଆରମ୍ଭରୁ ଶେଷଯାଏଁ ଗୋଟାଏ ସୁନ୍ଦର ଯୋଜନା-ମୂଳକ ବ୍ୟବସ୍ଥା । ଏହି ସଯୋଜନା ହିଁ ଗୃହସ୍ଥ ଜୀବନର ବୀଜମନ୍ତ୍ର; ସଙ୍ଘବଦ୍ଧ ଜୀବନ-ଭିତ୍ତିର ମୂଳ ପ୍ରସ୍ତର । ଏହାଦ୍ୱାରା ତ୍ୟାଗ ଓ ସେବାର ଉତ୍ସର୍ଗରେ ଗୃହସ୍ଥାଶ୍ରମ ହିଁ ଆମକୁ ଆଧୁନିକ ଇତିହାସ ପୃଷ୍ଠାକୁ ବିଭୀଷିକାଗ୍ରସ୍ତ କରୁଥିବା ଏକଛତ୍ର ବା କମ୍ୟୁନିଷ୍ଟବାଦର ଉତ୍କଟତା ଓ ବୈଷମ୍ୟରୁ ଉଦ୍ଧାର କରିପାରେ । ଅଧିକାରରୁ ଦାୟିତ୍ୱକୁ ଘୁଞ୍ଚାଇ ଗୃହସ୍ଥାଶ୍ରମ ଶକ୍ତି, ସଂସ୍କୃତି, ସଦିଚ୍ଛାର ମାର୍ଗ ସୁଗମ କରେ । ଏହି ଶିକ୍ଷା ବଳରେ ଗୃହସ୍ଥ ଦୈବ ନିବନ୍ଧନମୂଳକ କର୍ମଚକ୍ର ଉପରେ ସରଳ ବିଶ୍ୱାସ ସ୍ଥାପନ କରି ଦିନ କଟାଏ । ସେ ଶିକ୍ଷାକରେ—ବିନୟ ହିଁ ଉତ୍‌ଥାନର ପନ୍ଥା, ତାହାର ବୋଲି କିଛି ନାହିଁ—ସମସ୍ତଙ୍କ ମଙ୍ଗଳ ସକାଶେ ବ୍ୟବହାର କରିବା ପାଇଁ ତାକୁ ଯାହା କିଛି ଦିଆଯାଇଛି । ଦେବତାଙ୍କୁ ସବୁ ସେ ସମର୍ପଣ କରେ—ତାହାର ଖାଦ୍ୟ ଦେବ ପ୍ରସାଦ । ପ୍ରାଚୀନ ଭାରତୀୟ ଜୀବନର ଉଦାରତା, ପ୍ରସାରିତ ଦୃଷ୍ଟି, ଅହିଂସା, ଆଧ୍ୟାତ୍ମିକ ଗାମ୍ଭୀର୍ଯ୍ୟର କଷଟି ଏହିଠାରେ । ସେଥିପାଇଁ ବାଇବେଲ୍‌ରେ ମଧ୍ୟ କୁହାଯାଇଛି—ଯେ ନିଜକୁ ନମ୍ର କରେ ସେ ଐଶ୍ୱର୍ଯ୍ୟଶାଳୀ ହୁଏ । ସେଥିପାଇଁ ବୋଧହୁଏ ପ୍ରାଚୀନ ଭାରତରେ କଠୋର ଆଇନ ସମ୍ବଳିତ ପାଶ୍ଚାତ୍ୟ-ଭିକ୍ଷୁକ-ସମସ୍ୟାର ପ୍ରତିରୂପ ଦେଖା ଯାଇନଥିଲା । ପୁଣି ସେଥିପାଇଁ ବୋଧହୁଏ ଗୋଷ୍ଠୀ, ଶ୍ରେଣୀ ତଥା ଜାତି ସଂଘର୍ଷ ପ୍ରାଚୀନ ଭାରତରେ କ୍ୱଚିତ ଦେଖା ଯାଉଥିଲା ।

ଆମ ଶାସ୍ତ୍ରରେ ଗୃହସ୍ଥାଶ୍ରମର ପ୍ରଶସ୍ତି ଅବିଦିତ ନାହିଁ । ସାମାଜିକ ସଂଗଠନର ବାସ୍ତବିକ୍ ତାହାହିଁ ମେରୁଦଣ୍ଡ । ତାହା ବିନା ସମାଜ ଭାଙ୍ଗି ପଡ଼ିବ—ତାର ସ୍ଥିତି ଅସମ୍ଭବ ହେବ । ଗୃହସ୍ଥ ବିନା କିଏ ବ୍ରହ୍ମଚାରୀ, ସନ୍ନ୍ୟାସୀ, ଦରିଦ୍ର ଓ ଅସହାୟଙ୍କୁ ଖାଦ୍ୟ ଯୋଗାଇବ ? କିଏ ଅର୍ଥ ଉତ୍ପାଦନ କରିବ ? ଶାସକଙ୍କୁ କିଏ କର ଦେବ ? ରାଜଶକ୍ତି କିପରି ପ୍ରବର୍ତ୍ତିବ ? ଏଣୁ ଠିକ୍‌ଭାବରେ ଚାଳିତ ହେଲେ ଗୃହସ୍ଥ ଜୀବନ ଯେ ବିଶ୍ୱ-ମଙ୍ଗଳ-ବେଦୀରେ ଅନୁଷ୍ଠିତ ଶ୍ରେୟ-ହୋମର ପବିତ୍ର ଆହୁତି ସ୍ୱରୂପ କାର୍ଯ୍ୟକାରୀ, ଏକଥା ବୁଝିବାରେ ସଂଶୟ ରହେ ନାହିଁ ।

ଗୃହସ୍ଥ ନିର୍ଦ୍ଦିଷ୍ଟ ଜୀବନ ଯାପନ କରି ପ୍ରୌଢ଼ତାରେ ପହଞ୍ଚେ । ବ୍ରହ୍ମଚର୍ଯ୍ୟ ଆଶ୍ରମରେ ସେ ଯାହା ଶିକ୍ଷା କରିଥାଏ, ତାକୁ ଦୈନନ୍ଦିନ କର୍ମମୟ ଜୀବନରେ ପରୀକ୍ଷା କରେ । ତାର ସନ୍ତାନ ସନ୍ତତି ଜନ୍ମ ହୋଇ କ୍ରମେ ବଡ ହୁଅନ୍ତି । ଆର୍ଥିକ

ତଥା ସାମାଜିକ ସଂସ୍ଥା ସଂରକ୍ଷଣରେ କ୍ରମେ ସେମାନେ ଉତ୍ତରାଧିକାର ପ୍ରାପ୍ତ ଓ ସମର୍ଥ ହୁଅନ୍ତି । ତାର ଦାୟିତ୍ୱ ଅନ୍ୟମାନେ କ୍ରମେ ବହନ କରିବାରୁ ସାମାଜିକ ବନ୍ଧନରୁ ଶିଥିଳତା ସେ ବୋଧକରେ । ନଶ୍ୱରରୁ ଚିରନ୍ତନ ପ୍ରତି ଦୃଷ୍ଟି ଫେରାଇବାରେ ସମୟ ପହଞ୍ଚିଯାଏ । ତାର ହୃଦୟ କନ୍ଦରରୁ ପ୍ରତିଧ୍ୱନିତ ହୁଏ— ଜୀବନ କି କ୍ଷଣଭଙ୍ଗୁର ନୁହେଁ ? ଅଖଣ୍ଡ ଓ ଅସୀମର ଆହ୍ୱାନ କି ମତେ ଦିନରାତି ଅଥୟ କରୁନାହିଁ ? ମୁଁ ଜୀବନ-ମଧୁ ଶୁଖି ତାର ତିକ୍ତତା କି ଅନୁଭବ କରିନାହିଁ । ସଂସାର ନିର୍ଝର ମୋ ପ୍ରତି କି ଶୁଖି ଯାଇନାହିଁ ? ମୁମୁକ୍ଷୁତାର ପ୍ରବଳ ତୃଷା ମୋତେ କି ଅଥୟ କରୁନାହିଁ ? ନା, ଗାଁ, ଯଶ ଖ୍ୟାତି, ଧନ ଜନ କି ସ୍ୱପ୍ନ ନୁହେଁ ? ମର ଜଗତର ପୂର୍ଣ୍ଣତା କାହିଁ ? ଅଖଣ୍ଡ ସୁଖ କାହିଁ ? ତାକୁ ଖୋଜି ଖୋଜି ମୁଁ କି ନିରର୍ଥକ ହୋଇନାହିଁ ? ମୃଗତୃଷ୍ଣା ପଛରେ ଧାଇଁନାହିଁ ? ସ୍ୱପ୍ନକୁ କୁଣ୍ଢେଇ ପାତି ନାହିଁ ? ତହୁଁ ସେ ଚମକି ଉଠି ବୁଝେ — ନା, ତାହା ବାହାରେ ନାହିଁ — ଭିତରେ ଅଛି । ତହୁଁ ସେ ସେହି ଭିତରକୁ ବୁଡ଼ିଯିବା ପାଇଁ ଉତ୍କଣ୍ଠିତ ହୁଏ; ସଂସାର-ପଥରୁ ନିବୃତ୍ତ ହୁଏ । ସଂକ୍ଷେପରେ କହିଲେ, ସେ ବାନପ୍ରସ୍ଥ ଆଶ୍ରମ ଅବଲମ୍ବନ କରେ ।

କ୍ରମେ ବାନପ୍ରସ୍ଥୀ ସକଳ ମୋହମାୟା ପରିତ୍ୟାଗ କରେ; ସାଂସାରିକ ବସ୍ତୁ ପ୍ରତି ଅନାସକ୍ତ ହୁଏ । ନଦୀତଟ, ପର୍ବତ-କନ୍ଦର, ତୀର୍ଥସ୍ଥଳ – ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ବନ ଶ୍ରୀ ବିମଣ୍ଡିତ ଶାନ୍ତ ନିର୍ଜନ କୌଣସି ସ୍ଥାନରେ ସେ ଦିନ କଟାଏ । ମୌନତା ଅବଲମ୍ବନ କରି ଧ୍ୟାନ ତଥା ଗଭୀର ତତ୍ତ୍ୱ ଦର୍ଶନରେ ବ୍ରତୀ ହୁଏ । ତାର ସଂସାର-କ୍ଷତ ହୃଦୟରେ ସତ୍ୟ-ସନ୍ଧାନ-ଜନିତ ଶାନ୍ତି ଓ ପ୍ରସନ୍ନତାର ବିଶଲ୍ୟକରଣୀ ପ୍ରଲେପିତ ହୁଏ । ନିର୍ଜନତାରେ ବାସ କରି, କୌଣସି କଥାରେ ସ୍ପୃହା ବା ଉଦ୍ୟମ ନ ରଖି, କେବଳ ପରମ ପ୍ରାପ୍ତିରେ ନିବିଡ ଓ ସମାହିତ ରହି ଜାଗତିକ କୌଣସି ସଂଘର୍ଷ ବା ଉତ୍କଣ୍ଠିତ ଅବକାଶ ଜୀବନରେ ରଖେନାହିଁ । ଅନୁଦ୍ଦିଷ୍ଟ ପର୍ଯ୍ୟଟନ କ୍ରମେ ଅନାୟାସରେ ସେ ଶିଳୋଞ୍ଛ ବୃତିଦ୍ୱାରା ନିଜର ସ୍ୱଳ୍ପ ଆବଶ୍ୟକୀୟ ଖାଦ୍ୟ ପାଏ । ବାହ୍ୟ ଓ ଅନ୍ତର ଇନ୍ଦ୍ରିୟ ସଂଯମନ ଦ୍ୱାରା, ଜୀବନର ତାତ୍ପର୍ଯ୍ୟ ସମ୍ବନ୍ଧେ ଗଭୀର ଆଲୋଚନା ଦ୍ୱାରା ତାହାର ଅନ୍ତରକୁସୁମ ଦିବ୍ୟାଲୋକର କନକ କିରଣରେ ଉଦ୍ଭାସିତ ହୁଏ । କାମର ପ୍ରବଳ ଲାଳସା, ଇନ୍ଦ୍ରିୟର ଦୁର୍ଦ୍ଦମନୀୟ ଆକର୍ଷଣ ତାକୁ ଆଉ ଉତ୍କ୍ଷିପ୍ତ କରେନାହିଁ । ମନୁଷ୍ୟ ଓ ଈଶ୍ୱରଙ୍କ ପ୍ରତି ତାର ସ୍ନେହ ଓ ଭକ୍ତି ଦୃଢ ପ୍ରତିଷ୍ଠିତ ହୁଏ; ଆସ୍ତିକତାର ତୃପ୍ତି ଓ ଉଜ୍ଜ୍ୱଳତାରେ ତାର ହୃଦୟ ପ୍ରସନ୍ନ ହୁଏ । ପରଂପରାର ରହସ୍ୟ-ଯବନିକା ଉତ୍ତୋଳନ କରିବା ପାଇଁ ସେ ଉଦ୍‌ଗ୍ରୀବ ହୁଏ । ଜୀବନର ନୂତନ ଓ ପବିତ୍ର ଅନୁଭୂତି ରାଜ୍ୟରେ ସ୍ୱଚ୍ଛନ୍ଦ ବିଚରଣ କରେ । ରାଜ-ମୁକୁଟ ଠାରୁ ଜଗତର ଠୂଳ ସମ୍ପଦଠାରୁ ଆହୁରି ମୂଲ୍ୟବାନ୍ ଦ୍ରଷ୍ଟାର ଦିବ୍ୟଦୃଷ୍ଟିରେ ସେ ତତ୍ତ୍ୱଦର୍ଶୀ ହୁଏ । ଏହିପରି ସେ ଶେଷ ଆଶ୍ରମ ସନ୍ନ୍ୟାସରେ ପ୍ରବେଶ କରେ ।

—୩—

କାମନାର ଶେଷ ସତ୍ତା ସନ୍ୟାସୀ ଠାରେ ଲୁପ୍ତ ହୁଏ । ଇହ ବା ପରଲୋକର ସୁଖ ଓ ସମ୍ପଦ ପ୍ରତି ପ୍ରଲୋଭନ ତାହାର ଆଦୌ ରହେନାହିଁ । ଯୋଗସିଦ୍ଧି ଲାଭରେ ତାର ଗର୍ବ ହୁଏନାହିଁ କିମ୍ବା ଯୌଗିକ ରହସ୍ୟ ଲୋକ ସମକ୍ଷରେ ଉଦ୍‌ଘାଟନ କରିବା ପାଇଁ ସେ ଲାଳାୟିତ ହୁଏ ନାହିଁ । ସରଳ ସାବଲୀଳ ଗତିରେ ସେ ସଂସାର ପରିହାର କରେ । ଆତ୍ମବଳରେ ସେ ବଳୀୟାନ୍ ହୁଏ—ତଥାପି ତ୍ୟାଗ ଶକ୍ତି, ସିଦ୍ଧି, ଜ୍ଞାନ ବା ନୈତିକତାର ଅହଙ୍କାର ତାର ହୃଦୟକୁ ଲେଶ ସ୍ପର୍ଶ କରେନାହିଁ । ହୃଦୟରେ ହିଂସା ଦ୍ୱେଷର କିଞ୍ଚିତ୍ ଛାୟାପାତ ମଧ୍ୟ ହୁଏନାହିଁ । ତାହାର ନିଜର କିଛି ରହେନାହିଁ ବା କିଛି ରଖିବାକୁ ସେ ଇଚ୍ଛା ବା ଚେଷ୍ଟା କରେନାହିଁ । କେବଳ ଆବଶ୍ୟକ ଅନୁମତ ସାମୟିକ ମାଧୁକର୍ଯ୍ୟ ବ୍ରତ ଅବଲମ୍ବନରେ ସେ ଭିକ୍ଷାଟନ କରେ । ବାସ୍ତବିକ୍ ତା' ପକ୍ଷରେ ବସୁଧା ଏକ କୁଟୁମ୍ବ ହୁଏ ।

ସନ୍ୟାସୀର ଜୀବନ ପ୍ରବାହ ଚିନ୍ମୟ ଜ୍ୟୋତିରେ ଭାସ୍ୱର ହୋଇଉଠେ । ଆନନ୍ଦ, ଅମୃତ, ପ୍ରେମ, ଶାନ୍ତିର ଲୀଳ-ବିଳାସରେ ସେ ପ୍ରବାହ ତରଙ୍ଗାୟିତ ହୁଏ । ଶାଶ୍ୱତ ସ୍ୱର୍ଗରାଜ୍ୟର ସେ ହୁଏ ଅଧିକାରୀ—ଅଶେଷ ସମ୍ପଦର ସେ ହୁଏ ଅଧିକାରୀ—କିଛି ନ ଥାଇ ତାର ସବୁ ଥାଏ । ସୀମାହୀନ ଭୂମାର ଉତ୍ସଙ୍ଗରେ ପରମ ପରିତୃପ୍ତି ସମ୍ଭୂତ କ୍ରୀଡ଼ାରେ ରତ ହୋଇ ସେ ହୁଏ ବିରାଟ, ମହୀୟାନ୍ । ଜ୍ଞାନ, ଭକ୍ତି ଓ ଯୋଗର ଅପୂର୍ବ ସମ୍ମେଳନ, ମଧୁମୟ ସଂଯୋଗ ତାହାର ଜୀବନରେ ହିଁ ପୂର୍ଣ୍ଣମାତ୍ରାରେ ପ୍ରଭାବିତ ହୁଏ ।

—୪—

ବିଶ୍ୱ-କବିମାନେ ଜୀବନ-ପ୍ରବାହର ଚତୁର୍ବିଧ ଅବସ୍ଥାକୁ ବର୍ଷର ପ୍ରଧାନ ଋତୁ ସଙ୍ଗେ ତୁଳନା କରିଛନ୍ତି । ଜୀବନର ବସନ୍ତ—ଶୈଶବ ଓ ତାରୁଣ୍ୟ—ବର୍ଣ୍ଣ-ବିଭବ, ସଙ୍ଗୀତ, ଶୁଭ୍ରତା, ସ୍ପନ୍ଦନ, ଛନ୍ଦ ଓ ସୋହାଗରେ ମଧୁମୟ । ଗ୍ରୀଷ୍ମ ପରି ଯୌବନ ପ୍ରଖର, ଜୀବନ୍ତ, ଜ୍ୱଳନ୍ତ । ତହୁଁ ଶାନ୍ତ ଶରତ୍ ଆସେ ଉଜ୍ଜ୍ୱଳ ଚନ୍ଦ୍ରମା ଶ୍ୟାମଳ ପୃଥିବୀ, ନିର୍ମଳ ନୀଳ ଆକାଶ, ପ୍ଲାବିନୀ ନଦୀ, ମାତୃପୂଜାର ସମ୍ଭାର ଘେନି । ଶେଷରେ ଆସେ ଶୀତ—ମରଣର ପ୍ରଚ୍ଛନ୍ନ ହସ୍ତର ସ୍ପର୍ଶ ଭଳି । ପ୍ରକୃତିର ଏହି ଯୋଜନା । ବୁଦ୍ଧି ପୂର୍ବକ ତାହା ଅବଲମ୍ବନ କରି ଆଧ୍ୟାତ୍ମିକ ମାନବ ତାହାର ଊର୍ଦ୍ଧ୍ୱକୁ ଉଠିବାରେ ସମର୍ଥ । ମନୁଷ୍ୟ ପକ୍ଷରେ ପ୍ରକୃତି ବନ୍ଧନ ଅଥଚ ମୁକ୍ତିର ଉପାୟନ । ଅପରା ପ୍ରକୃତିର ଉଦ୍ଦାମ ଆବେଗରେ ଇତସ୍ତତଃ ହୋଇ ପାଶବିକ ପ୍ରବୃତ୍ତିର ବଶବର୍ତ୍ତୀ ହେଲେ ଶୈଶବ ଓ ତାରୁଣ୍ୟରୁ ହିଁ ମନୁଷ୍ୟ ତାହାର ଓଜ, ବୀର୍ଯ୍ୟ, ତେଜ ହରାଏ । ଏପରି ତାରୁଣ୍ୟରୁ ଯୌବନକୁ ଆସି ସେ ବିବେକବାନ୍ ସଂଯତମନା ହୁଏନାହିଁ— ବରଂ ସଂସାରର ହୀନ ଅସାରତାକୁ ହିଁ ଜାବୁଡ଼ି ଧରେ । ସେପରି ଲୋକର ବୃଦ୍ଧାବସ୍ଥା ମୂଲ୍ୟହୀନ ଗ୍ଳାନିକର ଧ୍ୱଂସାବଶେଷ ଛଡ଼ା କଅଣ ହୋଇପାରେ ? କ୍ଷୀଣ,

ଦୁର୍ବଳ, ମାୟାଛନ୍ନ, ସାମାନ୍ୟ କ୍ଷତିରେ କାତର ହେବା ଛଡା କଅଣ ହୋଇପାରେ ? ମାର୍ଗ ଠିକ୍ ନ ରହିଲେ, ଲକ୍ଷ୍ୟ-ପୂର୍ଣ୍ଣତା କିପରି ଆଶା କରଯାଇପାରେ । ଏହି ଧ୍ୱଂସ ଓ ବ୍ୟର୍ଥତାକୁ ଏଡାଇ ପର ପ୍ରକୃତିର ଅବଲମ୍ବନରେ ଜୀବନକୁ ପୂର୍ଣ୍ଣ ଓ ସମୃଦ୍ଧ କରିବାର ଶିକ୍ଷା ଦିଏ ଆଶ୍ରମ ଧର୍ମ ।

ଆଧୁନିକ ଯୁଗରେ ଦେଖାଯିବା ଆଉ ଗୋଟାଏ ଦ୍ୱନ୍ଦ୍ୱ ସମାଧାନର ସଙ୍କେତ ମଧ୍ଯ ଆଶ୍ରମ ଧର୍ମ ଦିଏ । ପ୍ରାଚୀନ ଓ ନବୀନ, ଯୁବକ ଓ ବୟସ୍କ ମଧ୍ୟରେ ଆଜି ଗୋଟାଏ ସଂଘର୍ଷ ଦେଖୁଛୁଁ । ଆଜି ଯୁବକ ବୟସ୍କର ସଂକୀର୍ଣ୍ଣତା, ଅଚଳନ୍ତି ମନୋଭବ, ଜୀର୍ଣ୍ଣ ପ୍ରଥା ଅନୁଷ୍ଠାନ-ଚିନ୍ତା ପ୍ରତି ଅନୁରକ୍ତି ବିରୁଦ୍ଧରେ ଖଡ୍ଗହସ୍ତ । ଆଜି ଯୁବକ ନିଜକୁ ଦେଶ ଓ ଜାତିର ଆଶା-ଭରସା ବୋଲି ଘୋଷଣା କରି ସକଳ ଭେଦ, ଅସୂୟା, ପ୍ରତିବନ୍ଧକ ଦୂରକରି ନବୀନ ମାନବିକତାର ସୃଷ୍ଟି ପାଇଁ ଅଗ୍ରସର । ଅନ୍ୟ ପକ୍ଷରେ, ବୃଦ୍ଧ ଏଥିକୁ ବିଦ୍ରୂପ କରି ପଚାରେ—ଏ ଆନ୍ଦୋଳନରେ କି ଗମ୍ଭୀର ଚିନ୍ତା ବା ବାସ୍ତବ ବିଚାର ଅଛି ? ତାହା କି କ୍ଷଣିକ ଉତ୍ତେଜନା ନୁହେଁ ? ଏ ଉଚ୍ଛୃଙ୍ଖଳ ନାସ୍ତିକ ମନୋବୃତ୍ତି ଜନିତ ପ୍ରାଚୀନ ଧର୍ମ-ବିଶ୍ୱାସ ତଥା ଅନୁଷ୍ଠାନର ଭଙ୍ଗ କି ସମାଜର ଅନୁକୂଳ ? ପ୍ରାଚୀନ କୁସଂସ୍କାରକୁ ଆକ୍ରମଣ କରୁଥିବା ଯୁବକର ଆଧୁନିକ ବୈଜ୍ଞାନିକ କୁସଂସ୍କାର କଅଣ କମ୍ ଆତ୍ମଘାତୀ ? କିନ୍ତୁ ପ୍ରକୃତରେ ଏ ପରସ୍ପର ଅବିଶ୍ୱାସ ଓ ତାଚ୍ଛଲ୍ୟର ଆଦୌ ଆବଶ୍ୟକତା ନାହିଁ । ଯଦି ପ୍ରୌଢ଼ତା ଯୌବନର ହିଁ ଅଭିବୃଦ୍ଧି, ସୃଜନମୂଳକ କ୍ରମବିକାଶର ଅବିରମ ଗତିରେ ଯଦି ନବୀନ ପ୍ରାଚୀନର ହିଁ ବହମାନ ଧାରା, ବୃଦ୍ଧହିଁ ତ ତେବେ ଯୁବକର ପ୍ରେରଣା-ଦାତା, ପଥପ୍ରଦର୍ଶକ; ସେହି ମହତ୍ କର୍ମ ସଂପାଦନରେ ବୃଦ୍ଧ ସନ୍ତୁଷ୍ଟ ହେବା କଥା । ପୁଣି ଯୁବକ ଏ ପଥ-ପ୍ରଦର୍ଶନ ପାଇଁ ବିନମ୍ର, କୃତଜ୍ଞ ରହିବା କଥା । ଏହି ସଂଯୋଜନାରେ ଜଣକର ଅବାସ୍ତବ ଧ୍ୱଂସମୁଖୀ-ଆନ୍ଦୋଳନ ଯେପରି ପରିତ୍ୟଜ୍ୟ, ଅନ୍ୟର ମୁମୂର୍ଷୁ ନିରୁତ୍ସାହ ସେପରି । ଆଶ୍ରମ ଧର୍ମ ଏହି ସମନ୍ୱୟର ବିଶାଳ ପରିସର; ଆମର ଆବହମାନ ସାଂସ୍କୃତିକ ସମ୍ପଦର ମୂଲ୍ୟ ନିରୂପଣ ପାଇଁ ଆଶ୍ରମ ଧର୍ମ ହିଁ ନିକଷ । ଜୀବନର ଅନ୍ତର୍ନିହିତ ଶକ୍ତି, ସମ୍ଭାବନା, ସୃଜନ କ୍ରିୟାକୁ ବିଭିନ୍ନ ଅବସ୍ଥାରେ ଗୋଟାଏ ନିରୁପଦ୍ରବ କଳାବନ୍ତ ପର୍ଯ୍ୟାୟ ଓ ପ୍ରକରଣରେ ଅନ୍ତର୍ଭୁକ୍ତ କରି ଫୁଟାଇବାର ଶିକ୍ଷଣୀୟ ପନ୍ଥାହିଁ ଆଶ୍ରମ ଧର୍ମ । ଆମେ ଏବେ ମଧ୍ଯ ସେହି ଧର୍ମର ସାରାଂଶକୁ ଠିକ୍ ଭବରେ ଅଧୁନାତନ ପ୍ରକରଣରେ ଅବଲମ୍ବନ କଲେ ଆମର ଅନେକ ଅସାମଞ୍ଜସ୍ୟ ଓ ବିଘାତ ଦୂର ହୋଇଯିବ ବୋଲି ମୋର ଗମ୍ଭୀର ବିଶ୍ୱାସ । ତାହା ହେଲେ ଆମର ଜୀବନ ପ୍ରବାହରେ ଏବେ ଦେଖା ଦେଇଥିବା ଅବରୁଦ୍ଧି ଅନେକ ଦୂର ଘୁଞ୍ଚିଯାଇ ତାହା ସ୍ୱଚ୍ଛଳ, ଗତିଶୀଳ, ପୂର୍ଣ୍ଣକାମ ହେବ ବୋଲି ମୋର ଏକାନ୍ତ ବିଶ୍ୱାସ ।

# ସସୀମ ଓ ଅସୀମ

ମୁଁ ଅବସ୍ଥିତ । ମୋ ପରି ଅସଂଖ୍ୟ ଚେତନ ଅଚେତନ ବ୍ୟଷ୍ଟି-ସମଷ୍ଟି ଅବସ୍ଥିତ । ତହିଁରୁ ପ୍ରତ୍ୟେକ ସହିତ ମୋର ଅସଂଖ୍ୟ ସମ୍ବନ୍ଧ । ବିଶାଳ ସଂସାର ଅବସ୍ଥିତ । ସେପରି ଅସଂଖ୍ୟ ସଂସାର ଖଚିତ ବିରାଟ ବିଶ୍ୱ ଅବସ୍ଥିତ । ଅନନ୍ତ କାଳସ୍ରୋତ ଅବିଚ୍ଛିନ୍ନ ରୂପେ ପ୍ରବାହିତ । ଅଶେଷ ପରିବର୍ତ୍ତନ ମଧ୍ୟରେ ସୃଷ୍ଟିଲୀଳା ନିରବଧି । ହକ୍‌ସଲେ ଓ ସ୍ପେନସର୍‌ଙ୍କ ଅର୍ଥପୂର୍ଣ୍ଣ ଭାଷାରେ ଅପେକ୍ଷାକୃତ ସ୍ଥିରତା ମଧ୍ୟରେ ସୂକ୍ଷ୍ମ, ସ୍ଥୂଳ, ଏକ ଅନେକର ବିବର୍ତ୍ତନ ପଥ ଅନୁସରଣ କରି ବିଶ୍ୱ-ଶକ୍ତି ଚିର ଆନ୍ଦୋଳିତ । ଭବଗୁରୁ କେଣ୍ଡିଏନ୍ ଭାଷାରେ କହିଲେ, ଯାହା ଗୋଟାଏ ନୂତନ ସଂସାରରେ ବିକଶିତ ହେବା ପାଇଁ ନିୟନ୍ତ୍ରିତ, ତାହା ଠିକ୍ ସେହି ଭାଗ୍ୟ-ନିୟନ୍ତ୍ରଣ କ୍ରମେ ଆଉ ଗୋଟାଏ ପ୍ରାଚୀନ ଅଦୃଷ୍ଟ ସଂସାରର ଅବଶେଷ ହୋଇଥିବ, ଏହା ସ୍ୱାଭାବିକ । କିନ୍ତୁ ଏ ସବୁ ବିସ୍ତୃତି, ବିଶାଳତା, ଅଖଣ୍ଡ, ଅଭେଦ ଏକର ତୁଳନାରେ ପୁଣି 'ସୀମାବଦ୍ଧ, ସଂକୀର୍ଣ୍ଣ, କ୍ଷୁଦ୍ର । ସତ୍ୟଜ୍ଞାନ ଅନ୍ୟର ଆଗରେ ତାହା ଗୋଟାଏ ଛାୟା, ମାୟାର ମରୀଚିକା । ଐକାନ୍ତିକ ସମ୍ମୁଖରେ ଆପେକ୍ଷିକର ସର୍ବଦା ଏହା ହିଁ ଦଶା । ଛାନ୍ଦୋଗ୍ୟ କହିଛି, ଐକାନ୍ତିକରେ ଦେଖିବାର, ଶୁଣିବାର, ବୋଧ କରିବାର ଆଉ କିଛି ନାହିଁ; ତାହା ଅସୀମ । ଆପେକ୍ଷିକରେ ଦେଖିବାର, ଶୁଣିବାର, ବୋଧ କରିବାର ଯାହା କିଛି ଅଛି, ତାହା ସସୀମ । ସସୀମ ମର; ଅସୀମ ଅମର ।

କିନ୍ତୁ ଏ ଦୁଇଟି କି ସଂପୂର୍ଣ୍ଣ ପୃଥକ୍, ପରସ୍ପର ଭିନ୍ନ ? ଜୀବନ ଏକ କ୍ରମ । ତହିଁରେ କୌଣସି ଅହେତୁକ ଭ୍ରଂଶ ନାହିଁ; ସେତୁବନ୍ଧ ତିଆରି ହୋଇ ନ ପାରିବା ଭଳି ଅନୁଭୂତିରେ କୌଣସି ବ୍ୟବଧାନ ନାହିଁ । ସସୀମ ଓ ଅସୀମର ନିଶ୍ଚୟ ସମ୍ବନ୍ଧ ଅଛି, କିନ୍ତୁ କିପରି ? ଏ ଗୂଢ଼ତମ ସମସ୍ୟାର ସମାଧାନ ପ୍ରୟାସରେ ଆଦ୍ୟରୁ ମହାମନୀଷୀଙ୍କ ଗଭୀର ନିବିଷ୍ଟ ଚିନ୍ତା ପ୍ରାଚ୍ୟ ଓ ପ୍ରତୀଚ୍ୟ ଦର୍ଶନ-ପୃଷ୍ଠାକୁ ସଞ୍ଜୀବିତ କରିଛି । ବାସ୍ତବିକ ମନୁଷ୍ୟର ଏହା ହିଁ ଏକମାତ୍ର ଚିରନ୍ତନ ପ୍ରଶ୍ନ । ଏହାର ଉତ୍ତରରେ ଭାରତୀୟ ଚିନ୍ତା ଯେଉଁ ପ୍ରଧାନ ମାର୍ଗମାନଙ୍କରେ ଆଲୋଚନା କରିଛି, ତହିଁର କିଞ୍ଚିତ୍ ଆଭାସ ଦେବା ଏ କ୍ଷୁଦ୍ର ପ୍ରବନ୍ଧର ବିଷୟ ।

— ୨ —

ସସୀମ କ୍ଷୁଦ୍ରରୁ କ୍ଷୁଦ୍ର, ବୁଦ୍‌ବୁଦ ପରି ଅଚିର, ସ୍ୱପ୍ନ ପରି ପରିବର୍ତ୍ତନଶୀଳ, ବିଦ୍ୟୁଲ୍ଲତା ପରି ଚଞ୍ଚଳ । ଆଉ ଅସୀମ କେଡ଼େ ମହାନ୍, ବିରାଟ, ମହତ୍, ଅକ୍ଷୟ,

ଅବ୍ୟୟ ! ବାସ୍ତବିକ ଏ ଦୁଇଟିର ବାସ୍ତବ ଆଦର୍ଶ ଭବ ବିନା ଅନ୍ୟ କୌଣସି ମିଳନ କ୍ଷେତ୍ର, ସଂଯୋଜନା ସୂତ୍ର ରହି ନ ପାରେ । 'ମହିମ୍ନ'ର ଭଷାରେ କହିଲେ, କ୍ଳେଶବଶ କୃଶ ପରିଣତ ଚେତନା କେଉଁଠାରେ ? ଆଉ ଗୁଣସୀମା-ଅତିରିକ୍ତ ଶାଶ୍ୱତ ବିଭବ, କେଉଠାରେ ? ଗୋଟାଏ କେବେେ ଅନ୍ୟଟି ହୋଇପାରିବ ନାହିଁ । 'ଅତତ୍ତ୍ୱମ୍ ଅସି ।' ସମୀମ କେବେେ ଅସୀମ ନୁହେଁ ଏହାହିଁ ଆମର ପୂର୍ଣ୍ଣ ଦ୍ୱୈତବାଦୀ ନୈୟାୟିକର ଦୃଷ୍ଟି ।

କିନ୍ତୁ ଆଦ୍ୟୋପାନ୍ତ, ଆମୂଳଚୂଳ ଏପରି ଦ୍ୱୈବିଧ କି ରହିପାରେ ? ସେପରି ହେଲେ ଜୀବନ ତମସାଛନ୍ନ, ଅବୋଧ ହେବ ନାହିଁ କି ? ସସୀମ କ୍ଷଣ-ଭଙ୍ଗୁର ହୀନ, ତୁଚ୍ଛ, କଦର୍ଯ୍ୟ—ଏ ଭବ ଅନୁଭୂତିର କେବଳ ଗୋଟିଏ ଅଂଶର ନିର୍ଣ୍ଣୟ; କିନ୍ତୁ ଏହି ଆପାତଯାତନା, ହୀନତା, ନଗଣ୍ୟତା, ପରିବର୍ତ୍ତନଶୀଳତାର ଅନ୍ତରାଳରେ, ଗଭୀର ଅନ୍ତଃସ୍ଥଳରେ, ଅସୀମର ଆନନ୍ଦ-ପ୍ରସ୍ରବଣ ଅଶେଷ ଝରୁଛି, ଏ କଥାର ପୂର୍ଣ୍ଣ ଅନୁଭୂତି ଦେଖାଏ । ସସୀମର ଅଗଣିତ ସୋପାନରେ ଅସୀମର ନିଶୁଣି ଚଢ଼ା ଅନେକ ଏକରେ ଛନ୍ଦା । କିନ୍ତୁ ଏ ଛନ୍ଦ କେଉଁ ଧରଣର, କି ପ୍ରକାରର ? ତଦ୍ୱାରା କି ଏକର ଏକତା ନଷ୍ଟ ହୁଏ ନାହିଁ ? ଅନେକର ଅନେକତ୍ୱ ଭ୍ରଷ୍ଟ ହୁଏ ନାହିଁ ?

ଅସୀମ ପକ୍ଷରେ ପ୍ରଭୁତା, ଅଧୀନତାର ଦାବୀ ପ୍ରତିଗ୍ରହ ଓ ସସୀମ ପକ୍ଷରେ ତ୍ୟାଗ, ନିବେଦନ, ଆତ୍ମସମର୍ପଣ ଏ ଛନ୍ଦର ଗ୍ରନ୍ଥି । ଏକରେ ଅନେକଙ୍କର ନିବାସ । ଏକ ପାଇଁ ଅନେକଙ୍କର ସୃଷ୍ଟି । ଏକର ସେବାରେ ନିଜ ନିଜକୁ ନିଯୋଜିତ କରିବା ଅନେକଙ୍କର ଧର୍ମ । ଏକ ସ୍ୱାମୀ; ଅନେକ ସେବକ । ଅନେକଙ୍କର ଆଶା-ଭରସା, ରକ୍ଷାପାଳନର ସ୍ଥଳ ଏକ । ଏକକୁ ସର୍ବସ୍ୱ ଦାନ ଓ ଏକର ସେ ଦାନ-ପ୍ରତିଗ୍ରହରେ ଅନେକଙ୍କର ସାର୍ଥକତା । ତସ୍ମିନ୍ ତ୍ୱମ୍ ଅସି, ତସ୍ମୈ ତ୍ୱମ ଅସି, ତସ୍ୟ ତ୍ୱମ୍ ଅସି । ବହୁଗୁଣିତ ବିରାଟ ଜଗତ୍‌ର କଠୋର ସତ୍ୟ କେବେ ସନ୍ଦେହ କରିବାର ନୁହେ । ସେଥି ସଙ୍ଗେ ପୁଣି ତାର ଆଦ୍ୟ-ମଧ୍ୟ-ପ୍ରାନ୍ତ ଏକ ସମ୍ବନ୍ଧରେ ମଧ୍ୟ କେବେ ସଂଶୟ କରାଯାଇପାରେ ନାହିଁ । ଉଭୟ ସତ୍ୟ । ଏକ ମୌଳିକ ତତ୍ତ୍ୱ ଅନେକଙ୍କର ଅନ୍ତର୍ଯ୍ୟାମୀ ପରିପୂରକ ସୃଷ୍ଟି-ସ୍ଥିତି-ସଂହାରର ନିୟାମକ ଏକ ଲୋକ-ପ୍ରକାଶକ ଓ ଲୋକାତୀତ ମଧ୍ୟ । ପଦାର୍ଥର ପ୍ରତ୍ୟେକ ଅଣୁରେ, ଚେତନ-ଜଗତର ପ୍ରତ୍ୟେକ ବ୍ୟଷ୍ଟି-କେନ୍ଦ୍ରରେ ପୁଣି ଏ ଉଭୟର ପ୍ରତ୍ୟେକ କ୍ରିୟା-ପ୍ରତିକ୍ରିୟାରେ ଏକ ବିଦ୍ୟମାନ । ତଥାପି ତାହା ଏ ସବୁର ପରପାରରେ । ଅନେକ ଏକ ଦ୍ୱାରା ବଶୀଭୂତ । ଆକାର ରୂପରେ ଏହି ମୁହୂର୍ତ୍ତରେ ସଂଯୋଗ ପୁଣି ଅନ୍ୟ ମୁହୂର୍ତ୍ତରେ ବିଯୋଗର ଅନ୍ୟ ନାମ ହିଁ ପରିବର୍ତ୍ତନ । କିନ୍ତୁ ତଦ୍ୱାରା ଆତ୍ମିକ ପଦାର୍ଥର କ୍ଷୟ-ବୃଦ୍ଧି କିଛିନାହିଁ । ଅନେକଙ୍କର ମୂକ୍ତି ସର୍ବେସର୍ବା

ଏକର ଧ୍ୟାନରେ; କିନ୍ତୁ ତହିଁର ନିର୍ବାଣ ବା ବିଲୟରେ ନୁହେ । ସସୀମର ସୀମାବଦ୍ଧ ପ୍ରତିହତ ଇଚ୍ଛା-କ୍ରିୟା-ଜ୍ଞାନ ଶକ୍ତି କେବେ ଅସୀମର ସର୍ବଦର୍ଶୀ ଅବାଧ ଶକ୍ତିର ସ୍ତରକୁ ଉଠି ନ ପାରେ । ସୌନ୍ଦର୍ଯ୍ୟ-ଆଲୋକ-ବିକାଶର ଚରମ ସ୍ଥିତିରେ ମଧ୍ୟ ସସୀମ-ଅସୀମର ଏ ଭେଦ ରହିବ । ବାସ୍ତବିକ ଏ ଭେଦ ଓ ତଜ୍ଜନିତ ପ୍ରେମ-ଭକ୍ତିର ପରକାଷ୍ଠାରେ ହିଁ ଜୀବନର ମୂଲ୍ୟ । ନିଜେ ମଧୁର ହୋଇଯିବା ଅପେକ୍ଷା ମାଧୁର୍ଯ୍ୟ ଆସ୍ୱାଦନ ହିଁ ପ୍ରୀତିପ୍ରଦ । ଅସୀମର ଅଗାଧ ଜଳରାଶିରେ ନିମଜ୍ଜନ, ସତ୍ତାଲୋପ ଅପେକ୍ଷା ସତ୍-ଚିତ୍-ଆନନ୍ଦର ଅଲୌକିକ, ଅନିର୍ବଚନୀୟ ସୃଷ୍ଟି ରହସ୍ୟରେ ଚମତ୍କୃତ, ବିସ୍ମିତ ହୋଇ ସେହି ରହସ୍ୟ ଆଗରେ ନିଜର ସବୁ ଅହଙ୍କାର, ଦମ୍ଭ, ଅଭିମାନ ଭସାଇଦେଇ ଥରେ ସେହି ବିଶ୍ୱବନ୍ଦ୍ୟ, ବିଶ୍ୱପ୍ରାଣ, ବିଶ୍ୱାତ୍ମକ ବିଶ୍ୱେଶଙ୍କ ଚରଣ-ଧୂଳି ତଳେ ନୀରବ ଅର୍ଚ୍ଚନାରେ ମସ୍ତକ ନତ କରିବା କେଡ଼େ ସ୍ପୃହଣୀୟ । କିଏ ଜାଣେ ଅବ୍ୟକ୍ତିରେ ଅନୁଭୂତି ସମ୍ଭବ କି ନା ? ପରମ-ପୁରୁଷାର୍ଥ ସାଧନ ଲାଗି ଭକ୍ତି ହିଁ ମାର୍ଗ । ନିୟତ-ଚଞ୍ଚଳା କ୍ରିୟମାଣ ପ୍ରକୃତି ସ୍ୱଭାବରୁ କର୍ମ-ସନ୍ନ୍ୟାସ ଏକାବେଳେକେ ଅବଲମ୍ବନ କରାଯାଇ ନ ପାରେ । ଶାସ୍ତ୍ରବିହିତ ପୁଣ୍ୟ-କର୍ମ ବାହ୍ୟ ଆନ୍ତରିକ ଶୁଦ୍ଧି ନିମନ୍ତେ ଆବଶ୍ୟକ ମଧ୍ୟ ହୋଇଥାଏ । ନିତ୍ୟାନିତ୍ୟ ବିବେଚନା ପାଇଁ ଜ୍ଞାନର ଆଲୋକ ମଧ୍ୟ ଅପରିହାର୍ଯ୍ୟ । ତଥାପି ଭକ୍ତି-ପୀୟୂଷ ବିନା, ଆତ୍ମ-ନିବେଦନ ବିନା କର୍ମର ବନ୍ଧନୀ, ଜ୍ଞାନର ଶୁଷ୍କ ବ୍ୟାଖ୍ୟାନ ଓ ଆତ୍ମବଡ଼ିମା ଏଡ଼ାଇବା ସହଜ ନୁହେ । ଯେତେହେଲେ ମଧ୍ୟ ସସୀମ ସର୍ବଦା ସସୀମ । ଅସୀମର ଅନୁକମ୍ପା, ଅପାର କରୁଣା ହିଁ ତାହାର ସଦ୍‌ଗତି ବିଧାୟକ । ଅସୀମ ନିଜ ଇଚ୍ଛାମୁତାବକ ସସୀମର ଦ୍ୱାରରେ କରାଘାତ କରେ । ମନ-ବଚନ-କର୍ତ୍ତବ୍ୟରେ ସେ ଆହ୍ୱାନକୁ ପ୍ରତି ନିମିଷରେ ଅପେକ୍ଷା କରି ତାକୁ ଶୁଣି ସର୍ବାଧାର ସୃଷ୍ଟିଜନଙ୍କର ନିକଟସ୍ଥ ହୋଇ ତାର ମହନୀୟ ମହିମାରେ ଗୌରବାନ୍ୱିତ ହେବା ସସୀମର ପରମ ଶ୍ରେୟଃ । ଆମ ବେଦାନ୍ତ-ଦ୍ୱୈତବାଦର ଏହାହିଁ ଦୃଷ୍ଟି । ଏ ଦୃଷ୍ଟି ଆଦର୍ଶକୁ ନ ହରାଇବା ସଙ୍ଗେ ବାସ୍ତବ ଉପରେ ଉଚିତ ପ୍ରାଧାନ୍ୟ ଦେବା ପାଇଁ ଏକ ପକ୍ଷରେ ନିର୍ବିଷୟ ଓ ଅନ୍ୟ ପକ୍ଷରେ ଅଜ୍ଞାତ ନାସ୍ତିକବାଦରୁ ନିଜକୁ ସୁଧାରି ବାଟ କାଟିବା ପାଇଁ ଚେଷ୍ଟା କରିଛି ।

ସସୀମ ଅସୀମଠାରୁ ଭିନ୍ନ । କିନ୍ତୁ ଏ ଭିନ୍ନତା କେବଳ ତାର ପୃଥକ୍ ଓ ଅଧୀନ ସ୍ଥିତିରେ ହିଁ ପ୍ରକଟିତ ହୁଏ । ତଥାପି ତାର ସ୍ୱାଧୀନ ସ୍ଥିତିର ଅସମ୍ଭବତା ଦୃଷ୍ଟିରେ ତାହା ଅସୀମଠାରୁ ଅଭିନ୍ନ । ସସୀମର ନିଜ ଇଚ୍ଛାଧୀନ ସ୍ଥିତି ନାହିଁ । କେନ୍ଦ୍ରରୁ ଅସଂଲଗ୍ନ ହୋଇ ତାର କୌଣସି ସ୍ୱାତନ୍ତ୍ର୍ୟ, ସ୍ୱରାଜ୍ୟ ନାହିଁ । ତାର ଅଧୀନତା ଗୁଣ ଉପରେ ଯେତିକି ଯେତିକି ଜୋର ଦିଆ ହେଉଥାଏ, ସେତିକି ସେତିକି ତାର ଭିନ୍ନ ପ୍ରକରଣ ବୁଝାଯାଉଥାଏ । କିନ୍ତୁ ପୂର୍ଣ୍ଣର ପ୍ରକରଣରେ ତାର ସୀମା-ରେଖା ଅଦୃଶ୍ୟ ହୋଇ କ୍ରମେ ଦୂରରୁ ଦୂରକୁ ଘୁଞ୍ଚୁଥାଏ । କ୍ଷୁଦ୍ର କ୍ରମେ ବୃହତ୍‌ରୁ ବୃହତ୍ତର

ହୋଇ ଶେଷରେ ବୃହତ୍ତମରେ ମିଳିତ ହୁଏ । କିନ୍ତୁ ଗୋଟିଏ ବସ୍ତୁରେ ଏକ ସମୟରେ ଭିନ୍ନ-ଅଭିନ୍ନ ଏପରି ଦୁଇଟି ବିପରୀତ ସ୍ୱଭାବ କିପରି ଆରୋପ କରାଯିବ ? ଏ ପ୍ରଶ୍ନର ଉତ୍ତରରେ ସୃଷ୍ଟି ଆରମ୍ଭରୁ ସେହି ଏକ କଥା କୁହାହୋଇ ଆସୁଛି, ଜଗତ୍ ବାସ୍ତବ; କିନ୍ତୁ ଜ୍ୟୋତିରୂପ ସନାତନ ସତ୍ୟରୁ ତାର ବାସ୍ତବତା ପ୍ରତିଷ୍ଠିତ ହେଉଛି, ତାହା ଧାରଣାର ଅତୀତ, ବାକ୍ୟ-ମନର ଅଗୋଚର, ନିର୍ଦ୍ଦେଶ-ଶୂନ୍ୟ । ଧାରଣାର ସୀମାକୁ, ବୋଧ-ରାଜ୍ୟକୁ ତାକୁ ଆଣିବା ଚେଷ୍ଟା କଲେ ତାର ନାନାରୂପର ବିଭିନ୍ନ ଅବସ୍ଥାର ଏପରି ବିପରୀତ ଚିତ୍ରହିଁ ଆମ ଆଖି ଆଗରେ ନାଚେ । ଏ ବିଗ୍ରହ ଆମ ଭେଦାଭେଦବାଦୀଙ୍କର ।

ଏ ବିଗ୍ରହକୁ ବିଶ୍ଳେଷଣ କରି ଆଚାର୍ଯ୍ୟ ବଲ୍ଲଭ କହନ୍ତି, ଏସବୁ ଚକ୍ର-ତର୍କ କାହିଁକି ? ବିଷୟର ଠିକ୍ ସିଧା ବିଚାର କରାହେଉ, ମୂଳଗ୍ରନ୍ଥି କରାଯାଉ । ଏକହିଁ ଏକ; ତହିଁରୁ ସମସ୍ତର ଉତ୍ପତ୍ତି । ତତ୍ତ୍ୱମସି । ବୃଥା କଳ୍ପନା କରି ପ୍ରୟୋଜନ କଅଣ ? ଜଗତ୍ ବାସ୍ତବ । ସସୀମ ଓ ଅସୀମ ଠିକ୍ ସବୁ ବିଷୟରେ ଏକ । ଉଭୟର ତିଳେହେଲେ ପ୍ରଭେଦ ନାହିଁ । ମାୟା ବା ଅନ୍ୟ କୌଣସି ତତ୍ତ୍ୱର ଅବତାରଣା ଏ ସମ୍ପର୍କରେ ନିଷ୍ପ୍ରୟୋଜନ । ଏଥିରେ ସ୍ୱାଧୀନ—ଅଧୀନ ସଦୃଶ—ବିସଦୃଶ, ଉପାଦାନ କାରଣ ବା ନିମିତ୍ତ କାରଣ ଇତ୍ୟାଦି ପ୍ରସଙ୍ଗ ଉଠୁ ନାହିଁ । ଅଗ୍ନିରୁ ସ୍ଫୁଲିଙ୍ଗ ଜାତହେଲା ପରି ସସୀମ ଅସୀମର ଠିକ୍ ଶାରୀରିକ ଭାବରେ ମଧ୍ୟ ଗୋଟାଏ ଅଂଶ ।

କିନ୍ତୁ ମନୁଷ୍ୟର ଦୃଷ୍ଟି କେବେ ଭ୍ରମଶୂନ୍ୟ, ଦୋଷଶୂନ୍ୟ ହୋଇ ନ ପାରେ । ମାନବୀୟ ସମାଧାନ ଯେତେ ସନ୍ତୋଷଜନକ ହେଲେ ମଧ୍ୟ ତହିଁରେ ଅସଙ୍ଗତି ନ ଥାଇ ନାହିଁ । ଜୀବନର ବିଚିତ୍ର ରହସ୍ୟ ସହଜରେ ଉଦ୍‌ଭେଦ କରାଯାଇ ନ ପାରେ । ଜୀବନରେ ସହଜୀୟ ପନ୍ଥା ( Made Easy ) ବୋଲି କିଛି ନାହିଁ । ସାଧନାରେ କୌଣସି ପାଖବାଟ ( Short-cut ) ନାହିଁ । ନିଗଟ ଅନୁଭୂତି ଆଗରେ ଶବ୍ଦଜାଳ ତୃପ୍ତି ଦେଇପାରେ ନାହିଁ । ଜଗତ୍ ସମ୍ପୂର୍ଣ୍ଣ ସ୍ୱାଧୀନ ଓ ସ୍ୱତନ୍ତ୍ର ନୁହେ । ପରମ ସତ୍ତାରେ ବିଭିନ୍ନ ପ୍ରକାରରେ ତା'ର ଅବସ୍ଥିତି ଓ ଅଧୀନତା, ଏ କଥା ସନ୍ଦେହ ନ ଥାଇ ବୋଧ କରାହୁଏ । କିନ୍ତୁ ସସୀମ ଅସୀମର ଶାରୀରିକ ଖଣ୍ଡ ହେଲେ, ଉଭୟର ସ୍ୱଭାବରେ ଏତେ ବିରୋଧ କାହିଁକି ? ସସୀମର ଏ କ୍ଳେଶ, ବାଧା, ଯାତନା କାହିଁକି ? ବିଶ୍ୱପିତା ପ୍ରେମମୟ, କରୁଣା ସାଗର, ଉତ୍ତମ ହେଲେ ଜଗତର ଏ ଅନ୍ୟାୟ, ବୀଭତ୍ସତା ନୈତିକ ଓ ଦୈହିକ ଗ୍ଲାନି, ବିଭ୍ରାଟ କାହିଁକି ? ଯୁଗ ଯୁଗାନ୍ତରରେ କବି ଏ କଥା ଗାଇଛନ୍ତି, ନୀତିଜ୍ଞ ଏ ପ୍ରଶ୍ନ ଉଠାଇଛନ୍ତି । କେବେ ତୃପ୍ତିକର ଉତ୍ତର ମିଳି ନାହିଁ, କେବଳ ଦୈହିକ ଅଭିବୃଦ୍ଧିରେ କି ଏସବୁ ସମାଧାନ

ହୋଇଯିବ ? ନା, ଆହୁରି ଗଭୀରକୁ ଯିବା ଆବଶ୍ୟକ । ମହତ୍‌ପ୍ରାଣ ରାମାନୁଜ ଓ ଶଙ୍କର ସେପରି ଯିବାକୁ ଚେଷ୍ଟାକରି ବିଶିଷ୍ଟାଦ୍ୱୈତ ଓ ମାୟାବାଦ ଦର୍ଶନ ସିଦ୍ଧ କରିଛନ୍ତି ।

—୩—

ବିଶିଷ୍ଟାଦ୍ୱୈତ କହନ୍ତି, ଜଗତ୍ ସତ୍ୟ; କିନ୍ତୁ ଅସୀମର ତାହା ଖଣ୍ଡେ ? ଏପରି ବାସ୍ତବ ଅର୍ଥରେ ବୁଝିବା ଭ୍ରମ । ଶରୀର ଓ ଆତ୍ମାର ଯେଉଁ ସମ୍ବନ୍ଧ, ଚରାଚର ବିଶ୍ୱ ସହିତ ଅସୀମର ସେହି ସମ୍ବନ୍ଧ । ବ୍ୟକ୍ତିତ୍ୱରେ ଯେପରି ଜୀବାତ୍ମା ସସୀମ ସହିତ ନିଜର ସମୀକରଣ ଅଥଚ ଭିନ୍ନତା ରକ୍ଷା କରେ, ସେପରି ଅସୀମ ମଧ୍ୟ ଏ ବିଶ୍ୱ ସହିତ ଏକ ଅଥଚ ପୃଥକ୍ । ଅସୀମ କେବଳ ଐକାନ୍ତିକ (Absolute) ନୁହେଁ, ଐକାନ୍ତିକ ଚିନ୍ତା ରାଜ୍ୟର ଗୋଟାଏ ବ୍ୟବସ୍ଥା । ପୁଣି ତାହା ଦୃଶ୍ୟମାନ ଜଗତ୍‌ର ସମଷ୍ଟି ମଧ୍ୟ ନୁହେଁ । ଅସୀମ ଅଗଣିତ ସଦ୍‌ଗୁଣ, ଅପରିମିତ ଶକ୍ତିର ଆଧାର ପୁରୁଷୋତ୍ତମ । ସମଗ୍ର ଜଗତ୍ ସେ ପୁରୁଷର ସୃଷ୍ଟି ଶକ୍ତିରେ ସୃଷ୍ଟିତଶକ୍ତ । ବିଭିନ୍ନ ଜାଗତିକ ତତ୍ତ୍ୱ ତାର ପ୍ରକାର । କୁହାଯାଇଛି, ଏ ଉଭୟର ସମ୍ବନ୍ଧ ସମୁଦାୟ ଓ ଅଂଶର ନୁହେ—ଶରୀର ଓ ଆତ୍ମାର । ତେଣୁ ସସୀମର ଦୁଃଖ, ବନ୍ଧନ, ବେଦନା ଅସୀମକୁ ସ୍ପର୍ଶ କରେ ନାହିଁ । ଅସୀମ ସସୀମକୁ ଠିକ୍ ପଥରେ ଚାଳନ କରି ପୂର୍ଣ୍ଣତା ଆଡ଼କୁ ନେଉଥାଏ । ଏ ପୂର୍ଣ୍ଣତା ଶୂନ୍ୟରେ ବିଲୀନ ନୁହେ, ପ୍ରକୃତିପର ବିଧାତାର କରୁଣାଦତ୍ତ ଦିବ୍ୟଦୃଷ୍ଟି, ଚିରନ୍ତନ ସୁଖରେ । ଏ ଦିବ୍ୟଦୃଷ୍ଟି ଶାନ୍ତ ସୌମ୍ୟଭାବ ବିଶ୍ୱଧାରକଙ୍କ ସାନ୍ନିଧ, ସାଯୁଜ୍ୟ, ସାରୂପ୍ୟ, ସାଲୋକ୍ୟ ଇତ୍ୟାଦି ବିଭିନ୍ନ ବିକଶିତ ଅମୃତ ସୋପାନକୁ ପ୍ରାଣୀକୁ ଉଠାଏ । ସସୀମ ଅସୀମ ଦ୍ୱାରହିଁ ସୃଷ୍ଟ, ପାଳିତ, ଧ୍ୱଂସୀଭୂତ, ତାହାର ବାହୁଚ୍ଛାୟାଶ୍ରିତ । ଉଭୟର ଭେଦ କିନ୍ତୁ ଚିରକାଳ ରହେ ।

ମାୟାବାଦ କିନ୍ତୁ ଏ ଚିରକାଳ ଭେଦ, ଅସୀମର ପୁରୁଷାକାରମାନେ ନାହିଁ । ତତ୍ତ୍ୱମସି ଜୀବ ବ୍ରହ୍ମ । ବ୍ରହ୍ମସତ୍ୟ । ଜଗତ୍ ମିଥ୍ୟା । କିନ୍ତୁ ଐକାନ୍ତିକର ଏ ମାନଣାରେ ଆଚାର୍ଯ୍ୟ ନିମ୍ବାର୍କ ଓ ଶଙ୍କରଙ୍କ ମଧ୍ୟରେ ପ୍ରଭେଦ ଅଛି । ଶଙ୍କରଙ୍କ ଜୀବ ସିଧା ସିଧା ବ୍ରହ୍ମନୁହେଁ । ଆଦ୍ୟା ମାୟା, ପ୍ରଥମା ଅବିଦ୍ୟାରୁ ନିଷ୍କୃତି ଲଭିଲେ ହିଁ ଉଭୟ ଏକୀଭୂତ ହୁଅନ୍ତି । ମାୟା ବିଶ୍ୱବ୍ୟାପିକା, ଅବିଦ୍ୟା ଜୀବମୂଳିକା । ଉଭୟର ଅପସାରଣରେ ହିଁ ସସୀମ ଅସୀମ ହୁଏ । କଥାରେ ଏପରି କୁହାହୁଏ, କିନ୍ତୁ ଏ ହେବାରେ କାଳଗତ ପରିଣତି କିଛି ନାହିଁ । ସସୀମ ବାସ୍ତବିକ ଅସୀମ, ସବୁବେଳେ ଅସୀମ, କେଭେଁ ସସୀମ ନୁହେ । କୁହାହୋଇଛି, ମାୟା ଓ ଅବିଦ୍ୟାରୁ ହିଁ ତାହା ନିଜକୁ ସସୀମ ବୋଲି ଭ୍ରମରେ ଭାବୁଥାଏ, କହୁଥାଏ । ଏ ଭ୍ରାନ୍ତ ଭାବନା, କଳନା ଦୂର ହେଲେ

ଅନେକ ଭେଦରହିତ ଏକହିଁ ହୁଏ । ଐକାନ୍ତିକ ଲକ୍ଷଣ ଶୂନ୍ୟ, କାଳ-ଦେଶ-କାରଣ କ୍ରମରହିତ ଅଦ୍ୱୈତ । ପୌରୁଷ କେତେ ଗମ୍ଭୀର, ଉର୍ଦ୍ଧ୍ୱଗ, ମହାନ୍ ହେଲେ ମଧ୍ୟ ତାର କିଞ୍ଚିତ୍ ସ୍ପର୍ଶମାତ୍ରକେହିଁ ଐକାନ୍ତିକତାରେ ଲକ୍ଷଣ ନିର୍ଦ୍ଦିଷ୍ଟ ହୁଏ, ସୀମା-ରେଖା ଟଣାହୁଏ । କୁହାହୋଇଛି, ସ୍ୱପ୍ରକାଶ ଶୁଦ୍ଧ ଚୈତନ୍ୟ ମାନସିକ, ବାଚିକ, ଗୌଣ-କ୍ରିୟାର ପରପାରରେ । ସ୍ୱତେଜରେ ପରମ ଚିରଭାସ୍ୱର, ଆପେକ୍ଷିକ (Relative) ଦୃଷ୍ଟିରୁ, କିନ୍ତୁ ସାଧନାର ଆବଶ୍ୟକତା ନଥାଇ ନାହିଁ । ଏ ସାଧନା ମାର୍ଗରେ ପୁଣି ଜ୍ଞାନହିଁ ଏକମାତ୍ର ଅବଲମ୍ବନ । ଏଠାରେ ମଧ୍ୟ ଚିତ୍ତଶୁଦ୍ଧି ସକାଶେ କର୍ମ ଅପରିହାର୍ଯ୍ୟ ହୋଇପାରେ । ସତ୍‌ପଦାର୍ଥରେ ବିଶ୍ୱାସ-ବୀଜକୁ ଫଳବନ୍ତ ବୃକ୍ଷରେ ବଢ଼ାଇବାକୁ ହେଲେ ଭକ୍ତିର ମଧ୍ୟ ନିତାନ୍ତ ପ୍ରୟୋଜନ, କିନ୍ତୁ ଜ୍ଞାନର ସୂକ୍ଷ୍ମଦର୍ଶନ ବିନା କର୍ମ ଯେପରି ମମତା ବଢ଼ାଏ, ଭକ୍ତି ମଧ୍ୟ ସେପରି ବାତୁଳ ଭାବପ୍ରବଣତାରେ ପଡ଼ି ନିର୍ମଳା ଅଚଳା ହୋଇପାରେ ନାହିଁ ।

—୪—

ବେଦ କହିଛି ସତ୍ୟ ଏକ, ବିପ୍ରମାନେ ତାକୁ ବହୁତ ପ୍ରକାରରେ କହନ୍ତି । ବିଭିନ୍ନ ଦୃଷ୍ଟିକୋଣରୁ ଜୀବନର ଅନୁଭୂତିକୁ ତନ୍ନ ତନ୍ନ ଆଲୋଡ଼ନ କରି ଆମର ମହାମନା ଆର୍ଯ୍ୟମାନେ ଏପରି ବିଭିନ୍ନ ତତ୍ତ୍ୱ ଦେଖାଇଛନ୍ତି । ଠିକ୍ ବୁଝାମଣା, ଅନୁପାତରେ ମିଳାଇ ଦେଖିଲେ ସେସବୁ ନାନା ରଙ୍ଗରଞ୍ଜିତ ଗୋଟିଏ ଛବିରୂପେ, ଗୋଟିଏ ଜୀବନ୍ତ ଅନୁଷ୍ଠାନର ଅଙ୍ଗପ୍ରତ୍ୟଙ୍ଗରୂପେ, ଗୋଟିଏ ସଂଶ୍ଳିଷ୍ଟ ସମବାୟର ଭାଗରୂପେ ପ୍ରତୀୟମାନ ହେବ । ସମନ୍ୱୟ ସୂତ୍ରରେ ସ୍ୱାଧୀନ ଚିନ୍ତା ଫୁଟିବା ଆବଶ୍ୟକ । ଅର୍ଜିତ ଅନୁଭୂତି ଗୋଟାଏ ମୁକ୍ତ ଗବାକ୍ଷ । ସେ ଗବାକ୍ଷ ପଥରେ ଅନୁଭବୀ ଚାହେଁ ଆଗରେ ଅସୀମ ପୂର୍ଣ୍ଣଦଶଦିଗ ବିସ୍ତାରିତ, ତାର ସୀମା ନାହିଁ । ନିଉଟନଙ୍କ ଭଳି ପ୍ରାଜ୍ଞ ଏଥିପାଇଁ ପରା କହିଥିଲେ, ସ୍ୱାର୍ଜିତ ଜ୍ଞାନ ତୀରଦେଶର କେତୋଟି ଉପଲଖଣ୍ଡମାତ୍ର, ସମ୍ମୁଖରେ ଅଜ୍ଞାତ ବିଷୟର ବିଶାଳ ବାରିଧି ପଡ଼ିଛି । ଏ ଅଗାଧ ରତ୍ନାକରର ତରଙ୍ଗାକୁଳ ବକ୍ଷ ଉପରି ଗୋଟାଏ ଅତି ଛୋଟ କୋଣରେ ଆମେ ଆମର ଜୀର୍ଣ୍ଣ ତରୀ କଷ୍ଟେମଷ୍ଟେ ବାହିନେଉଁ । ପୂର୍ବ ସଂସ୍କାର, ଜନ୍ମ, ପରିପାର୍ଶ୍ୱ, ଶିକ୍ଷା, ଦୀକ୍ଷା, ମାନସିକ ଅବସ୍ଥା ଅନୁସାରେ ଯାହା କିଛି ଅତ୍ୟଳ୍ପ ଜ୍ଞାନ ସଞ୍ଚୟ କରୁ, ଅତି ସାମାନ୍ୟ ବିଷୟ କିଛି ଗ୍ରହଣ କରିବାରେ ଅଧିକାରୀ ହେଉଁ । ତହିଁରେ ପୁଣି ଗର୍ବିତ, ଦୃପ୍ତ ହୋଇ କହୁ, ଆମେ ସର୍ବଜାଣ, ସର୍ବଶକ୍ତି ସମନ୍ୱିତ । ସର୍ବଜ୍ଞତାର ଏତେ ସହଜ ମାପ ନ ରହୁ । ସେଥିପାଇଁ ପରା ଉପନିଷଦ୍ ଲଳିତ-ଗମ୍ଭୀର ସ୍ୱରରେ ସତର୍କବାଣୀ ଶୁଣାଇଛି । ପଣ୍ଡିତମ୍ମନ୍ୟତା ବଡ ଭୀଷଣ, ଅନ୍ଧଦ୍ୱାରା ଅନ୍ଧନୀୟମାନ

ନ ହେଉ । ବାସ୍ତବିକ ଅପରିପକ୍ୱ ସଙ୍କୀର୍ଣ୍ଣ ସ୍ୱମତ ପୋଷଣର ଏତେ ଗର୍ବ ହୁଙ୍କାର ନ ଉଠୁ । ଶେଷ କଥା ଆୟତ୍ତ ହୋଇଛି । (Dogma of finality) ଏ ଭାବ ତୁଟିଯାଉ । ଜୀବନ-ନିକଷରେ ମତାମତର କାଚମଣି ତାରତମ୍ୟ ପରଖ ହେଉ । ଜୀବନର ଦିଗ୍‌ଦର୍ଶନ ଉଚ୍ଚତର, ବିଶାଳତର ପରିଧି ଆବର୍ତ୍ତ କରୁ ।

ସମୂହରେ ଦୃଷ୍ଟିକୋଣ, ଠିକ୍ କହିଲେ ଅଦୃଷ୍ଟିକୋଣରୁ ବୁଝିଲେ, ସସୀମ ଓ ଅସୀମର ଅବ୍ୟବଚ୍ଛେଦ୍ୟ ସମ୍ମିଶ୍ରଣରେ, ଏକକୀକରଣରେ ହିଁ ଜୀବନଗଢ଼ା । ଅସୀମ ସସୀମ ଭାବରେ ଇହଲୋକରେ ଦେଖାଦେଲେ ସସୀମ ହିଁ ଲୋକାତୀତ ଅସୀମର ଇଙ୍ଗିତ ଦିଏ, ସୂଚନା ପ୍ରକାଶ କରେ । ନଶ୍ୱରରେ ଅବିନଶ୍ୱରର ସଙ୍କେତ ପାଇବା ବୁଦ୍ଧିମତ୍ତା । କୁହାଯାଇଛି, ଜୀବନ ବିଭିନ୍ନ ଧାରାଯୁକ୍ତ ଏକ କ୍ରମାନ୍ୱୟ । ସମୂହ-ବୋଧ ପର୍ଯ୍ୟନ୍ତ ଏ ଅନ୍ୱୟର ସଞ୍ଚାର । ପୂର୍ଣ୍ଣରେ ବିରୋଧ ନାହିଁ । ତାର ବିସ୍ତୃତ ଅଙ୍ଗରେ ଅଛିଦ୍ର, ଅତ୍ୟନ୍ତ ସମୃଦ୍ଧ, ଆତ୍ମିକ ଭାବରେ ସବୁ ବିରୋଧ ମିଳନର ମାଧୁର୍ଯ୍ୟରେ ସରସ ସୁନ୍ଦର ହୋଇଉଠେ । ସେହିପରି ଜ୍ଞାନ, କର୍ମ, ଭକ୍ତିର ମଧ୍ୟ ନ୍ୟୂନାଧିକ୍ୟ ସେତେବେଳେ ରହେନାହିଁ । ଉପଯୁକ୍ତ ମାତ୍ରାରେ ମିଳିତ ହୋଇ ସାଧନାର ଏ ତିନୋଟି ମାର୍ଗ ମନୁଷ୍ୟର ଏକମାତ୍ର ଚିରନ୍ତନ ପ୍ରଶ୍ନର ଉତ୍ତର ଦେବାରେ ସେତେବେଳେ ପ୍ରବୃତ୍ତ ହୁଅନ୍ତି ।



# ଆତ୍ମ-ସମର୍ପଣ

ମନୁଷ୍ୟ ଯେତେବେଳେ ଗହ୍ୱର ବା ବୃକ୍ଷ ଶାଖାରେ ବାସ, ଅପକ୍ୱ ମାଂସ ଓ ବନ୍ୟ ଫଳମୂଳ ଭକ୍ଷଣ ତୀକ୍ଷ୍ଣ ପ୍ରସ୍ତରଖଣ୍ଡରେ ବନ୍ୟ ପଶୁ ବଧ କରୁଥିଲା ଏବଂ ସଂସ୍କୃତି ଓ ସଭ୍ୟତାର ନିମ୍ନତମ ସ୍ତରରେ ରହିଥିଲା, ସେହି କୁହେଳିକାବୃତ କୌତୂହଳମୟ, ସରଳ ସହଜ ପ୍ରାଗୈତିହାସିକ ଯୁଗଠାରୁ ଆରମ୍ଭ କରି ସଭ୍ୟତା ଆଲୋକ ଉଦ୍‌ଭାସିତ ଅଥଚ ଜଟିଳ, କୁଟିଳ ଆଧୁନିକ ଯୁଗ ପର୍ଯ୍ୟନ୍ତ ପରିବର୍ତ୍ତନ, ପରିବର୍ଦ୍ଧନ, ଉତ୍‌ଥାନ ପତନ ଓ ଅନୁଭୂତି ମାର୍ଗରେ ମାନବିକ ପ୍ରଗତି ପରିଣତି ସ୍ତରକୁ ଚାଲି ଆସିଅଛି । ଅର୍ବାଚୀନ ବିଜ୍ଞାନର ଆବିଷ୍କାର ଓ ଜୀବନର ନାନା କ୍ଷେତ୍ରରେ ତହିଁର ଉପଲବ୍‌ଧି ଜଗତକୁ ସ୍ତମ୍ଭୀଭୂତ କରିଅଛି । ନିତ୍ୟ ନୂତନ ଘଟଣା ସଂଘଟିତ ହେଉଅଛି, ନିବିଡ କାନନ ନିର୍ମୂଳ ହେଉଅଛି । ସମୁଦ୍ର ଶୁଷ୍କ ହୋଇଅଛି, ବାଲୁକାମୟ, ଜନଶୂନ୍ୟ, ମରୁପ୍ରାନ୍ତ ଶ୍ୟାମଳ ତରୁଲତା ଶୋଭିତ ନନ୍ଦନକାନନରେ ପରିଣତ ହୋଇଅଛି । ସଭ୍ୟତା ଉତ୍କର୍ଷର ନିଦର୍ଶନ ସ୍ୱରୂପ ବିପୁଳ ନଗରମାନ ସ୍ଥାପିତ ହୋଇଅଛି । ବେତାର, ବୈଦ୍ୟୁତିକଯନ୍ତ୍ର, ବ୍ୟୋମଯାନ ଇତ୍ୟାଦି ଦେଶ ଓ କାଳକୁ ସଂକ୍ଷେପରୁ ସଂକ୍ଷେପତମ କରୁଅଛି । ବର୍ତ୍ତମାନ ସମସ୍ତ ଜଗତ ଗୋଟିଏ ଘନିଷ୍ଠ, ନିବନ୍ଧନମୟ କ୍ଷୁଦ୍ର ପଦାର୍ଥ । ସେହେତୁ ମନୁଷ୍ୟ ସମାଜରେ ଅସାଧାରଣ ଭାବରେ ଅସଂଖ୍ୟ ଗୋଷ୍ଠୀ, ଦଳ, ଜାତି, ସଂପ୍ରଦାୟ, ସମୁଚ୍ଚୟର ବାହ୍ୟ ଓ ଅଭ୍ୟନ୍ତର କ୍ରିୟା ଏବଂ ଚିନ୍ତାର ପରସ୍ପର ବିନିମୟରେ କୌଣସି ଅସୁବିଧା ରହୁ ନାହିଁ । ଆଜି ମନୁଷ୍ୟ ଆକାଶମାର୍ଗରେ ବିହଙ୍ଗ ସୁଲଭ ଗତିରେ ଉଡ଼ି ଯାଉଅଛି, ସାଗରର ଅତଳ ଜଳରାଶି ମଧ୍ୟରେ ପ୍ରବେଶ କରୁଅଛି, ବ୍ୟୋମ-ମାର୍ଗରେ ଇତସ୍ତତଃ ଅସମ୍ଭାବିତ ବେଗରେ ସଂଚାର କରୁଅଛି । ବର୍ତ୍ତମାନ ଆନ୍ତର୍ଜାତିକ ସହଯୋଗ କଥାଟା ବହୁଳ ଭାବରେ କଥିତ ଓ ଶ୍ରୁତ । ଶିଳ୍ପ ଓ ବ୍ୟବସାୟ ବିଭାଗରେ ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ପ୍ରକାଣ୍ଡ କଳକାରଖାନାମାନଙ୍କରେ ସ୍ତୂପୀକୃତ ଅଗଣିତ ଜିନିଷ ତିଆରି କରାଯାଉଅଛି । ଏହି ଅର୍ଥନୈତିକ ସଂଗଠନ ଯୋଗୁଁ ଦରିଦ୍ର ଶ୍ରେଣୀର ଲୋକେ ଆଉ ଦରିଦ୍ର ନ ହୋଇ, ବିଳାସ ଓ ବିଭବର ଉପାଦାନ ପାଇ ଜୀବନକୁ ସରସ, ସୁନ୍ଦର ଓ ସୁଖମୟ କରିବେ ବୋଲି ଆଶା ଦିଆଯାଉଅଛି । ଐତିହାସିକ ଗବେଷଣା ସୂତ୍ରରେ ଆମ୍ଭେମାନେ କ୍ରମବୃଦ୍ଧି ଗତିରେ ବିଭିନ୍ନ ମନୁଷ୍ୟଗୋଷ୍ଠୀର ବିଭିନ୍ନ ଦେଶରେ ପ୍ରସାର, ନିବାସ, ସମାଜ ଗଠନ, ଆଚାର ବ୍ୟବହାରର ନିୟନ୍ତ୍ରଣ, ଶିକ୍ଷା ଇତ୍ୟାଦି ଜାଣିପାରୁ । ଉତ୍ପାଦନ, ବଣ୍ଟନ ଓ ବ୍ୟବହାର ବିଭାଗରେ ବାଣିଜ୍ୟ ଓ ବ୍ୟବସାୟର ଅଭିବୃଦ୍ଧି ପାଇଁ ଅର୍ଥ-ବିଜ୍ଞାନ ବଦ୍ଧପରିକର । ସାମାଜିକ ବିଜ୍ଞାନର ତ ଇୟତ୍ତା ନାହିଁ । ରୁଚିରେ, ବୈଚିତ୍ର୍ୟରେ, ନୀତି ଓ ପନ୍ଥାର ବୈବିଧ୍ୟରେ ଭିନ୍ନ ଭିନ୍ନ ମତ ପ୍ରଚାର ହେଉଅଛି । ବିଗତ ଶତାବ୍ଦୀର ସାମ୍ରାଜ୍ୟବାଦ୍ ଆଜି ସାମ୍ୟବାଦ ଦ୍ୱାରା ଆକ୍ରାନ୍ତ ହୋଇଅଛି । ରାଜନୈତିକ ଚିତ୍ର ଆଜି ବିଶେଷ ଭାବରେ ଶାଦ୍ୱଳିତ । ବିଭିନ୍ନ ସାମୟିକ

ପରିସ୍ଥିତି, ବିଭିନ୍ନ ଦେଶ ଓ ଜାତିର ମାନସିକ, ଶାରୀରିକ ଓ ଭୌଗୋଳିକ ଅବସ୍ଥାର ଆବଶ୍ୟକତା ଯୋଗେ ରାଜତନ୍ତ୍ର, ଶ୍ରେଣୀତନ୍ତ୍ର, ପ୍ରଜାତନ୍ତ୍ର ଇତ୍ୟାଦି ବିଭିନ୍ନ ଶାସନ-ତନ୍ତ୍ରର ପ୍ରଚଳନ ରାଜନୀତି ବିଜ୍ଞାନକୁ ବିକଶିତ କରିଅଛି । ପ୍ରାକୃତିକ ଉପାଦାନ ଉପରେ ମନୁଷ୍ୟର ଅଧିକାରକୁ ଦୃଢତର କରି, ମନୁଷ୍ୟର ଜ୍ଞାନ-ସୀମାକୁ ପ୍ରସାରିତ କରି ଶାରୀରିକ, ପ୍ରାକୃତିକ ଓ ମାନସିକ ବିଜ୍ଞାନଗୁଡିକ ପ୍ରତିଷ୍ଠିତ ହୋଇଅଛି । ବର୍ତ୍ତମାନ ବିଜ୍ଞାନର ଯୁଗ । ମାନବିକକ୍ରିୟା ଓ ଚିନ୍ତାସଂଶ୍ଳିଷ୍ଟ ଏପରି କୌଣସି ପରିସର ନାହିଁ, ଯହିଁରେ କି ବିଜ୍ଞାନର ନିର୍ମଳ ଆଲୋକ ବିଚ୍ଛୁରିତ ହୋଇନାହିଁ । ପାର୍ଥିବ ଜଗତର ଅସଂଖ୍ୟବସ୍ତୁ ଓ ତତ୍ସଂକ୍ରାନ୍ତ ଘଟଣାବଳୀର ନିୟନ୍ତ୍ରଣ ନିର୍ଣ୍ଣୟ, ଅନୁଶୀଳନ ଏହି ସବୁ ବିଜ୍ଞାନର ମୁଖ୍ୟ ଉଦ୍ଦେଶ୍ୟ । ଉଦାହରଣ ସ୍ୱରୂପ ଜୀବ-ବିଜ୍ଞାନ, ପଦାର୍ଥ-ବିଜ୍ଞାନ, ଉଦ୍ଭିଦ-ବିଜ୍ଞାନ, ପ୍ରାଣୀ-ବିଜ୍ଞାନ ଯଥାକ୍ରମେ ନିଆଯାଇପାରେ । ଭାଷାବିଜ୍ଞାନ ଧ୍ୱନି, ଛନ୍ଦ, ଶବ୍ଦ, ଅର୍ଥ, ପ୍ରତ୍ୟୟ, ବ୍ୟାକରଣ ଇତ୍ୟାଦି ପର୍ଯ୍ୟାୟରେ ଭାଷାର ଅଭିବୃଦ୍ଧି ନିର୍ଦ୍ଦେଶ କରୁଅଛି । ଇଚ୍ଛା, କ୍ରିୟା ଓ ଜ୍ଞାନର ସମ୍ମେଳନରେ ମନୁଷ୍ୟ ମନର ନାନାବିଧ ଭାବ ଓ ଚିନ୍ତା ମନୋବିଜ୍ଞାନ ପରୀକ୍ଷା କରୁଅଛି । ତଦୁପରି ସତ୍ୟ, ଶିବ ଓ ସୁନ୍ଦରଙ୍କ ଅନୁସନ୍ଧାନରେ ମନୁଷ୍ୟ କଳା ଓ ସାହିତ୍ୟର ବିଭବ ସୃଷ୍ଟି କରିଅଛି ।

ସର୍ବୋପରି ନିତ୍ୟ, ଶାଶ୍ୱତ, ଅଖଣ୍ଡ ଆନନ୍ଦ ଅନୁଭୂତି ପାଇଁ ସୂକ୍ଷ୍ମଚିନ୍ତା-ସମନ୍ୱିତ ବିଭିନ୍ନ ଦର୍ଶନର ସୃଷ୍ଟି ହୋଇଅଛି । ଏହା ସବୁ ମନୁଷ୍ୟର କର୍ମ ପ୍ରବୃତ୍ତିର ଚରିତାର୍ଥତା । ଆଦର୍ଶ ଅବବୋଧ ପାଇଁ ମନୁଷ୍ୟର ସାମର୍ଥ୍ୟ ଓ ଅଭ୍ୟୁନ୍ନତିର ଏହା ମହତ୍‌କୀର୍ତ୍ତି । ସେଥିପାଇଁ ପରା ମନୁଷ୍ୟ ସ୍ୱଭାବର ବିଚକ୍ଷଣ ସମାଲୋଚକ ସେକ୍‌ସପିୟର କହିଥିଲେ, "ଅହୋ ! ମନୁଷ୍ୟ କି ଅଦ୍ଭୁତ ସୃଷ୍ଟି ! ଗଠନ, ଚଳନ, ଶକ୍ତିରେ ସେ କି ବିଚିତ୍ର, ଅପରିସୀମ, ପ୍ରକାଶମାନ ! ତତ୍ତ୍ୱ ଅବଧାରଣରେ ସେ ପରମପୁରୁଷ ସଦୃଶ ।"

କିନ୍ତୁ ଏହିସବୁ ସତ୍ତ୍ୱେ ଆମ୍ଭେମାନେ କି ନିର୍ଦ୍ଦିଷ୍ଟ ସ୍ଥଳରେ ଉପନୀତ ହୋଇଅଛୁ ? ମନୁଷ୍ୟ ସୃଷ୍ଟି କରିଅଛି, ସେହି ପରିମାଣରେ ଧ୍ୱଂସ କରିଅଛି । ଶେଷରେ ସେ ଦେଖିଅଛି, ସେ 'ଯେଉଁ ତିମିରେ, ସେହି ତିମିରେ ।' ଲକ୍ଷ୍ୟରୁ ବହୁ ଦୂରରେ, କବି ଟେନିସନ୍‌ଙ୍କ ଚିତ୍ରିତ ନାୟକ ୟୁଲିସିସି ଙ୍କ ଦୃଷ୍ଟିପଥରୁ ଧୂମାୟିତ ଦିଗ୍‌ବଳୟ ଦୂରକୁ ଅପସାରିତ ହେଲପରି ଅସୀମ ଅନନ୍ତ, ପରମ, ପୂର୍ଣ୍ଣଚେତନ, କୃଶପରିଣତିଚେତା ମନୁଷ୍ୟ ବୁଦ୍ଧିର ଅଗମ୍ୟ ହୋଇଅଛି । ଏକ ଦିଗରେ ପ୍ରକୃତି ଉପରେ ଅଧିକାରୀ ବୋଲି ଆମ୍ଭେମାନେ ଗର୍ବ କରୁଅଛୁଁ, ନିଜର ସୁଖ, ସୁବିଧା, ସ୍ୱାଚ୍ଛନ୍ଦ୍ୟ ସକାଶେ ପ୍ରାକୃତିକ ଶକ୍ତି ନିଚୟକୁ ପ୍ରୟୋଗ କରିଅଛୁଁ । ଅନ୍ୟ ଦିଗରେ କ୍ରିୟମାଣା, ନିତ୍ୟ-ନୂତନା, ନିତ୍ୟ ଚଞ୍ଚଳା ପ୍ରକୃତିର ଆକସ୍ମିକ ରୋଷାକଷାୟିତ ଅପାଙ୍ଗର ଧ୍ୱଂସଲୀଳା

ଜଗତକୁ କୋଳାହଳମୟ କରୁଅଛି । ବନ୍ୟା, ଦୁର୍ଭିକ୍ଷ, ଭୂକମ୍ପର ବିଭୀଷିକାରେ ଆମ୍ଭେମାନେ ତ୍ରସ୍ତ । ଏକ ଦିଗରେ ସାମ୍ୟ, ମୈତ୍ରୀ, ସ୍ୱାଧୀନତା, ବିଶ୍ୱପ୍ରେମ, ବସୁଧୈବ କୁଟୁମ୍ବକତାର ସୁଶ୍ରାବ୍ୟ ସଙ୍ଗୀତ, ଅନ୍ୟଦିଗରେ ସ୍ୱାର୍ଥପର, ଘୃଣାବ୍ୟଞ୍ଜକ, ସଙ୍କୀର୍ଣ୍ଣ ଜାତୀୟତା ସଂରକ୍ଷଣର ପ୍ରବଳ ଉଦ୍ୟମ —ବିଷାକ୍ତ ବାୟୁ, ମୃତ୍ୟୁରଶ୍ମି, ବିଦ୍ୟୁତ୍ ପ୍ରୟୋଗ, ଆକାଶ ରଣସଜ୍ଜା ଯୋଗୁଁ ଯୁଦ୍ଧ ଆଜି ଭୀଷଣ ହୋଇଛି । ଯୁଦ୍ଧ ଆଜି ବିଜ୍ଞାନର ବ୍ୟାପାର, ବିଳାସ ବ୍ୟସନ । ବର୍ତ୍ତମାନ ଧନୀ, ଦରିଦ୍ର, ଉଚ୍ଚ, ନୀଚ, କୋଟିପତି, ଶ୍ରମିକ, ଶ୍ୱେତକାୟ, କୃଷ୍ଣକାୟ ମଧ୍ୟରେ ଭୀଷଣ ସଂଗ୍ରାମ ଚାଲିଛି । ଯନ୍ତ୍ରର ଅତିଶୟ ପ୍ରଚଳନରେ ଅକର୍ମ ସମସ୍ୟା ଜଗତ୍‌ବ୍ୟାପୀ ହୋଇ କୋଟି କୋଟି ଲୋକଙ୍କୁ ଦାରିଦ୍ର୍ୟ କଷାଘାତରେ ନିପୀଡ଼ିତ କରୁଅଛି । ଯନ୍ତ୍ରଯୁଗ ଫଳରେ ମନୁଷ୍ୟର କର୍ମନୈପୁଣ୍ୟ ଆଜି ମୃତପ୍ରାୟ । ଅର୍ଥନୀତିଜ୍ଞମାନେ କହନ୍ତି, ବର୍ତ୍ତମାନ ଶସ୍ୟାଦି ଜିନିଷ ଯଥେଷ୍ଟ ଉତ୍ପନ୍ନ ଓ ପ୍ରସ୍ତୁତ ହେଉଅଛି; କିନ୍ତୁ ସେଥିସଙ୍ଗେ ମନୁଷ୍ୟ ଅନ୍ନ ମୁଠାଏ ପାଉ ନାହିଁ । ଭାଗ୍ୟର ଏ ବିଚିତ୍ର ବିଧାନ ! ଚତୁର୍ଦ୍ଦିଗରେ ଜଳରାଶି; କିନ୍ତୁ ଏକବିନ୍ଦୁ ପାନ କରିବାର ଆୟତ୍ତ ନାହିଁ । ଆଜି ସୁଦ୍ଧା ପାର୍ଥକ୍ୟ, ଲାଞ୍ଛନା, ଦମନ, ନିଷ୍ପେଷଣ, ଦୁର୍ବଳ ଉପରେ ଅତ୍ୟାଚାର, ନାଗରିକତାର ନ୍ୟୂନତମ ଦାବୀର ଉପେକ୍ଷା, ପ୍ରବଳର ଜିଘାଂସା ବହୁଳ ଭାବେ ଦୃଷ୍ଟିଗୋଚର ହୁଏ । ଆଜି ବିଜ୍ଞାନ ପ୍ରହେଳିକାମୟ ମୃଗ-ତୃଷ୍ଣାରେ ପରିଣତ ହୋଇଅଛି । ବିଜ୍ଞାନର ସୀମା ଅଙ୍କିତ ହୋଇ ସାରିଲଣି । ଦେଶ, କାଳ, କାର୍ଯ୍ୟ, କାରଣଦ୍ୱାରା ସୀମାବଦ୍ଧ ବୁଦ୍ଧିର ପ୍ରୟୋଗରେ ବିଜ୍ଞାନ କେବଳ ପାର୍ଥିବ ଜଗତର କେତେକ ବିଚ୍ଛିନ୍ନାଂଶ ଅନୁଶୀଳନ କରିପାରେ; କିନ୍ତୁ ସର୍ବତୋଭାବେ ନୁହେ । 'ଅନ୍ଧେନୈବନୀୟମାନା ଯଥାନ୍ଧାଃ' ଯନ୍ତ୍ର ଜୀବନର ଅବାଧ ଚଞ୍ଚଳ ଗତିକୁ ବୁଝାଇ ପାରିବ ନାହିଁ । ଦର୍ଶନ ମଧ୍ୟ କୌଣସି ସିଦ୍ଧାନ୍ତରେ ଉପନୀତ ହେଲପରି ଦିଶୁ ନାହିଁ । ଜଣେ ଦାର୍ଶନିକ ଯାହା ପ୍ରତିପାଦନ କରୁଅଛି, ଅପର ତାହା ମିଥ୍ୟା ବୋଲି ସ୍ଥିର କରୁଅଛି । ନାନା ମୁନିଙ୍କ ନାନାମତ; ତତ୍ତ୍ୱ ମାୟାଚ୍ଛନ୍ନ । ଅପ୍ରକାଶର କିପରି କଳ୍ପନା କରାଯାଇ ପାରେ ? ଆମ୍ଭେମାନେ କି ପ୍ରକୃତରେ ସୁଖୀ ? ମୃତ୍ୟୁର ବିକଟତା ଅଦ୍ୟାପି ଜୀବନକୁ ଆଚ୍ଛନ୍ନ କରି ରଖିଅଛି । ଜୀବନର ରହସ୍ୟ, ସୃଷ୍ଟିର ତତ୍ତ୍ୱ, ପରପାରର ଆବରଣ, ମାୟାର ଜଟିଳ ଜାଲ ଭେଦ କରିବା ପାଇଁ ଆମ୍ଭେ ଚେଷ୍ଟାକରୁଁ ସତ୍ୟ; କିନ୍ତୁ ବୃଥାଆଶା । ଅଦ୍ୟାପି ପିତା ପୁତ୍ର, ବନ୍ଧୁ ବାନ୍ଧବ, ପତି ପତ୍ନୀ କାଳ ସ୍ରୋତରେ ବିଲୀନ ହୋଇ ଯାଉଛନ୍ତି । ଜରାବସ୍ଥା ଶରୀରକୁ ଆକ୍ରମଣ କରୁଅଛି । ଆଶାର ସୀମା ନାହିଁ । ଅମର କବି •ସେଲିଙ୍କ ଭାବପ୍ରବଣ ଭାଷାରେ କହିବାକୁ ଗଲେ ଆମ୍ଭେମାନେ ଅତୀତ ଓ ଭବିଷ୍ୟତ୍ ପ୍ରତି ଦୃଷ୍ଟି ନିକ୍ଷେପ କରୁଁ ଏବଂ ବର୍ତ୍ତମାନର ଅଭାବରେ ମୁହ୍ୟମାନ ହେଉଁ । ଆମ୍ଭେମାନେ ଜୀବନର କଣ୍ଟକାକୀର୍ଣ୍ଣ ପଥରେ ଚାଲି ଚାଲି କ୍ଷତ ବିକ୍ଷତ ରୁଧିରାକ୍ତ ହେଉଁ । ପ୍ରତିହତ ଆଶାର ବିଷାଦଭରା

କରୁଣ ସଙ୍ଗୀତ ଆମ୍ଭର ମଧୁର ସଙ୍ଗୀତ । ଅହେତୁକ ଭବରେ ପବନ ସ୍ରୋତରେ ଭସିଭସି ଆମ୍ଭେମାନେ କିଏ, କେଉଁଠାରୁ ଆସିଅଛୁ, କେଉଁଠାକୁ ଯାଉଅଛୁଁ, ତାହାର କ୍ଷୀଣତମ ସୂଚନା ଏ ପର୍ଯ୍ୟନ୍ତ ପାଇନାହୁଁ ।

ଏହାହିଁ ମାୟା । ସମାଧାନ ଅସମ୍ଭବ ଜଟିଳ ଜାଲ, ଅହେତୁକ ଅତର୍କିତ ରହସ୍ୟ । ଏହି ଗୂଢ଼ତମ ବୈଚିତ୍ର୍ୟର ଆବରଣ ଉନ୍ମୋଚନ, ତତ୍ତ୍ୱ ଭେଦ କରିବା ପାଇଁ ଚିରଦିନ ମନୁଷ୍ୟ ଉଦ୍ଦୀପିତ ହୋଇଅଛି । କିନ୍ତୁ ମାୟାସୃଷ୍ଟ ମନୁଷ୍ୟ ପକ୍ଷରେ କି ତାହା ସମ୍ଭବ ? କାୟା ନିଜ ଛାୟାକୁ ପରିହାର କରିବା ବୁଦ୍‌ବୁଦ ନିଜ ଜଳାସ୍ତରଣରୁ ଅନ୍ତର ହେବାର ପ୍ରୟାସ ଭଳି ମନୁଷ୍ୟର ଏହି ଯତ୍ନ । ମନୁଷ୍ୟ ସସୀମ । ଦେହ, ଇନ୍ଦ୍ରିୟ ଓ ମନଦ୍ୱାରା ଆବଦ୍ଧ । ଶରୀର ସଙ୍ଗେ ବ୍ୟାଧି, ଯନ୍ତ୍ରଣା, ଜରାବସ୍ଥା, କ୍ଷୟ ଜଡ଼ିତ । ମନୁଷ୍ୟ ଅନାଦି ଅବିଦ୍ୟାଦ୍ୱାରା ପରିଚାଳିତ ହୋଇ ଅନାତ୍ମ କେବଳ ବୋଲି ବୋଧ କରେ । ବୁଭୁକ୍ଷୁ, ପିପାସୁ ଇନ୍ଦ୍ରିୟଗଣ ସର୍ବଦା ସୁଖଲାଳସୀ । ସେମାନଙ୍କୁ ସଂଯତ କରିବା ଦୁରୂହ ବ୍ୟାପାର । ଦୁର୍ବାର ଇନ୍ଦ୍ରିୟପ୍ରବୃତ୍ତିର ଅପ୍ରତିହତ ଗତିରୋଧ କରିବା ବହୁ ଆୟାସସାପେକ୍ଷ । ଏଥିପାଇଁ ମହାଭାରତରେ ଜୀବ ଗୋଟିଏ ଗୋଟିଏ ଇନ୍ଦ୍ରିୟଦ୍ୱାରା ପରିଚାଳିତ ହୋଇ କିପରି ଧ୍ୱଂସମୁଖୀ ହୁଏ, ତହିଁର ଶିକ୍ଷଣୀୟ ଦୃଷ୍ଟାନ୍ତ ଅଛି । ମଦୋତ୍କଟ ବିପୁଳବପୁ ଦ୍ୱିରଦ ସ୍ପର୍ଶ-ସୁଖାକୃଷ୍ଟ ହୋଇ ଜାଲରେ ପଡେ । ପତଙ୍ଗ ରୂପବୋଧ ପ୍ରବୃତ୍ତି ଚରିତାର୍ଥ କରିବାରେ ଅନଳରେ ଦଗ୍ଧୀଭୂତ ହୁଏ । ଫଣୀ ଶବ୍ଦେନ୍ଦ୍ରିୟ-ବିଷୟ ମୁଗ୍ଧ ହୋଇ ବନ୍ଧନ ଦଶାଗ୍ରସ୍ତ ହୁଏ । ଗଭୀର ଜଳତଳ ନିବାସୀ ମତ୍ସ୍ୟ ରସାକୃଷ୍ଟ ହୋଇ ମୃତ୍ୟୁକୁ ବରଣ କରେ । ବାୟୁ-ପ୍ରବାହଚଞ୍ଚଳ ମୃଗ ନିଜ ଅଙ୍ଗସ୍ଥିତ କସ୍ତୁରୀର ସୌଗନ୍ଧାମୋଦ ଅନ୍ୱେଷଣରେ ଇତସ୍ତତଃ ଧାବମାନ ହୋଇ ଗିରି-ଉପତ୍ୟକା ଅତିକ୍ରମ କରି ବ୍ୟାଧର କରାଳ କବଳରେ ପତିତ ହୁଏ । ଏକୈକ ଇନ୍ଦ୍ରିୟାବିଷ୍ଟ ହୋଇ ଜୀବର ଗତି ଏପରି ଭୀଷଣ ହେଲେ, ଶ୍ରେଷ୍ଠ ଇନ୍ଦ୍ରିୟ ମନର ଉଚ୍ଛୃଙ୍ଖଳତାରେ ପୁଣି ଦେଶ, କାଳ, କାର୍ଯ୍ୟର କାରଣ ନିର୍ଦ୍ଦିଷ୍ଟ ସସୀମ ବୁଦ୍ଧିର ଇଙ୍ଗିତରେ ଉତ୍କ୍ଷିପ୍ତ ଓ ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚ ଜ୍ଞାନେନ୍ଦ୍ରିୟ ସନ୍ନିବିଷ୍ଟ ମନୁଷ୍ୟ ପକ୍ଷରେ କି ଆଶା କରଯାଇପାରେ ? ବାସ୍ତବିକ ମନୁଷ୍ୟ ଭାଗ୍ୟର ଉଜ୍ଜ୍ୱଳତା ସର୍ବଦା ଅସମ୍ଭବ ବୋଲି ପ୍ରତୀୟମାନ ହୁଏ । ପ୍ରାଥମିକ ଅଜ୍ଞାନ, ଆଦ୍ୟ ଅବିଦ୍ୟାର ଦୃଢ଼, ବନ୍ଧନରୁ ନିସ୍ତାର ଅଛି କି ? ଏହିସବୁ ବିଚାର କଲେ ମନୁଷ୍ୟ ଗୋଟିଏ ଅଦୃଷ୍ଟ, ଅଭୂତ, ଲକ୍ଷ୍ୟହୀନ, ବିଶାଳ ଯନ୍ତ୍ରବିଶେଷର କ୍ଷୀଣ, ଦୁର୍ବଳ ଅଂଶ ପରି ବୋଧ ହୁଏ । ତାହାର କୌଣସି ସ୍ୱାଧୀନତା, ମୁକ୍ତି, ସ୍ୱାତନ୍ତ୍ର୍ୟ ଥିଲାପରି ଜଣାଯାଏ ନାହିଁ । ମାୟାର ତ୍ରିଗୁଣାତ୍ମକ ରଜ୍ଜୁରୁ ମନୁଷ୍ୟର ରକ୍ଷା ଅଛି କି ? ତାହାର ବ୍ରହ୍ମପଦ ପ୍ରାପ୍ତି, ଅଖଣ୍ଡ ଆନନ୍ଦ ଲାଭର ପ୍ରୟାସ ବାତୁଳତା ଛଡ଼ା ଆଉ କଣ ? ସକଳ ସୂକ୍ଷ୍ମ ବିଚାର, ତତ୍ତ୍ୱ ଜିଜ୍ଞାସା, ଦାର୍ଶନିକ ବ୍ୟୁତ୍ପତ୍ତିର ପ୍ରୟୋଜନ କଣ ? ଜୀବନ ଭଙ୍ଗୁର, ପରିବର୍ତ୍ତନଶୀଳ,

ବାରିତରଙ୍ଗ ଚଞ୍ଚଳତର, ବିଦ୍ୟୁଚ୍ଛିଭ କ୍ଷଣସ୍ଥାୟୀ । ପ୍ରତ୍ୟକ୍ଷ ହିଁ ଏକମାତ୍ର ପ୍ରମାଣ । ଭୋଗ କରିବାରେ ବିଳାସ ବ୍ୟସନରେ, କ୍ରୀଡା କୌତୁକରେ କାଳ ଶେଷ ହେଉ। ପର ପାର କହ ? ତହିଁର ଅସ୍ତିତ୍ୱ କିପରି ଅବଧାରଣ କରାଯାଇ ପାରେ ? ଭସ୍ମୀ-ଭୂତ ଦେହର ପୁନରାଗମନ କେଉଁଠାରେ ? ଭଜନାଳୟରେ ବୃଥା ସମୟ ବ୍ୟୟ ନକରି ସାଙ୍ଗସୁଖରେ ଦିନ ଯାଉ । ଚିନ୍ତା ସୂତ୍ରରତ ଏହି ଅବଲମ୍ବନରେ ସମ୍ଭବତଃ ସୃଷ୍ଟିର ଆରମ୍ଭ ଦିବସରୁ ଜଡ଼ବାଦ ଏପରି ଭାବରେ ମନୁଷ୍ୟର କଳ୍ପନା ଶକ୍ତିକୁ ବେଷ୍ଟନ କରି ରଖିଅଛି । ଯଦି କୌଣସି ଯୁଗରେ, କୌଣସି ଦେଶ ଓ କାଳଜନିତ ସଭ୍ୟତାର ରୁଚି ପ୍ରବର୍ତ୍ତନରେ, ଜଣେ ଚର୍ବାକ୍, ଏପିକ୍ୟୁରସ୍ କିମ୍ବା ଓମାରଖୟାମ୍ ସେହି ପ୍ରକୃତିକୁ ତତ୍ତ୍ୱ କିମ୍ବା କାବ୍ୟ ପ୍ରେରଣାରେ ଅଭିବ୍ୟଞ୍ଜିତ ଓ ସମର୍ଥିତ କରିଅଛନ୍ତି, ତେବେ ତାହା ସ୍ୱାଭାବିକ । ତଦ୍ଦ୍ୱାରା ବହୁଜନ ଅନୁସୃତ ପନ୍ଥାର ନିୟନ୍ତ୍ରଣ ଓ ବିଶଦୀ-କରଣ କରାଯାଇଅଛି ମାତ୍ର । ପ୍ରତିକୂଳ ଅବସ୍ଥାରେ ଯେତେବେଳେ ମନୁଷ୍ୟ କୌଣସି ଆଶ୍ରୟ ଅନୁସନ୍ଧାନ କରି ପାଏ ନାହିଁ; ଯେତେବେଳେ ଆଶାର କ୍ଷୀଣ ଜ୍ୟୋତି ସୁଦ୍ଧା ତାହାର ତମସାବୃତ ମାନସ ଦିଗ୍‌ବଳୟରେ ପ୍ରକାଶ ପାଏ ନାହିଁ, ବିବେଚନାରେ କିଞ୍ଚିତ୍ ସୂଚନା ଯେତେବେଳେ ଦେଖାଯାଏ ନାହିଁ, ପ୍ରତ୍ୟେକ ଦେଶ, ଜାତି କିମ୍ବା ବ୍ୟକ୍ତିବିଶେଷରେ ଐତିହାସିକ ଜୀବନର ଏଭଳି ସନ୍ଧିସ୍ଥଳରେ ଜଡବାଦ ତାହାର ପ୍ରଭାବ ବିସ୍ତାର କରିବାକୁ ପ୍ରକୃଷ୍ଟ କ୍ଷେତ୍ର ପାଏ ।

କିନ୍ତୁ ଅବସ୍ଥା ସଂଘଟିତ ଏତାଦୃଶ ଭାବ କି ଚିରନ୍ତନ ? ପ୍ରକୃତରେ ମନୁଷ୍ୟର ମୁକ୍ତି ଆକାଙ୍କ୍ଷା କି ଗୋଟାଏ ବିଭ୍ରାନ୍ତିକା, ଭ୍ରମ ? ଜୀବନ କି ଗୋଟାଏ ଯନ୍ତ୍ରଚାଳିତ କିମ୍ଭୂତକିମାକାର ବସ୍ତୁ ? ଜଡବାଦ ପ୍ରାଚୀନମାନଙ୍କ ଦ୍ୱାରା ଅନେକ ଥର ପରାସ୍ତ ଲାଭ କରିଅଛି । ବିଶେଷ ପକ୍ଷରେ ପ୍ରେୟ ବାସ୍ତବିକ ଶ୍ରେୟ ନୁହେ; ଏ କଥା ବାରମ୍ବାର କୁହାଯାଇଅଛି । ମାର୍ଗ ନିର୍ଦ୍ଦେଶ ଥିଲେ, ଲକ୍ଷ୍ୟ ନିଶ୍ଚୟ ଅଛି । ଶେଷ ଶୂନ୍ୟ ନୁହେ, ପୂର୍ଣ୍ଣ । ମନୁଷ୍ୟ ପ୍ରକୃତିର ବଦ୍ଧମୂଳ ଅନ୍ତର୍ନିହିତ ବିଶ୍ୱାସ ଅକ୍ଷୁଣ୍ଣ ରହିଅଛି ଯେ, ଦୃଶ୍ୟମାନ ଜଗତର ପରିବର୍ତ୍ତନଶୀଳତାର ଅନ୍ତରଙ୍ଗ ହୋଇ ଦୃକ୍ ଶକ୍ତି ଚିରସାକ୍ଷୀ, ଅପରିବର୍ତ୍ତନୀୟ, ଶାଶ୍ୱତ ଚିତ୍ ପୁରୁଷ କେନ୍ଦ୍ର ସ୍ୱରୂପ ଅବସ୍ଥିତ । ବିଶ୍ୱ ସେହି ସତ୍ତାରୁ ଭିନ୍ନ ବୋଲି ପ୍ରତୀୟମାନ ହେଲେ ମଧ୍ୟ ତହିଁରୁ ଅଭିନ୍ନ । ସେହି ସତ୍ତାରେ ହିଁ ତାହାର ସ୍ଥିତି, କ୍ରିୟା ଓ ଗତିର ସାର୍ଥକତା ଉପଲବ୍ଧ ହୁଏ । ପୂର୍ଣ୍ଣରୁ ଭିନ୍ନ କଣ ଅଛି ? ଚେତନା ବ୍ୟତୀତ ମନୁଷ୍ୟର କ୍ରିୟା-କଳାପ ଭାବସମୂହ ଅର୍ଥଶୂନ୍ୟ । ପରମ ଜ୍ଞାନର ପଥ ପ୍ରଦର୍ଶନ ବ୍ୟତୀତ ବିଶ୍ୱ କେବଳ ଗୋଟାଏ ସ୍ତୂପୀକୃତ ବିଶୃଙ୍ଖଳତାରେ ପରିଣତ ହେବ । ସୃଷ୍ଟିର ସକଳ ବିଭାଗୀୟ ଅସଂଖ୍ୟ ସ୍ରୋତର ସମ୍ମିଶ୍ରଣ ସେହି ମହିମୋଜ୍ଜ୍ୱଳ ଶାନ୍ତିମୟ ସୌନ୍ଦର୍ଯ୍ୟ ରତ୍ନାକରର ବିଶାଳ ଗର୍ଭ । ଶ୍ରୁତିରେ ଅଛି ତାହା

ଛଡା ଅଧିକ ହୋଇ, କି ତହିଁକି ସାନ ହୋଇ ଅନ୍ୟ କିଛି ନାହିଁ । ଏହି କାରଣରୁ ମନୁଷ୍ୟ ବିରାଟ ବିଶ୍ୱରୂପ ସମ୍ମୁଖରେ ନିଜକୁ ନିତାନ୍ତ ଅସହାୟ ଓ ନଗଣ୍ୟ ବୋଧ-କରି ସୃଷ୍ଟି ଆରମ୍ଭରୁ ଏହି ମହୀୟାନ୍ ଶକ୍ତି, ତେଜ, ପ୍ରାଣ, ଜ୍ଞାନ, ଚେତନା ତତ୍ତ୍ୱ, ସତ୍ୟ କିମ୍ବା ଯାହା ବୋଲ, ଶ୍ରଦ୍ଧାନ୍ୱିତ ହୋଇ ତହିଁର ଉପାସକ ହୋଇଅଛି । ଏହି ଆବାହନ, ସଂସ୍ଥାପନ, ସକଳୀକରଣ ହିଁ ଭକ୍ତିମାର୍ଗର ଆଦ୍ୟ, ମଧ୍ୟ ଓ ପ୍ରାନ୍ତ । ବିଶ୍ୱନିୟନ୍ତାଙ୍କ ନିୟନ୍ତ୍ରଣରେ ନିଜକୁ ସାନନ୍ଦ ସଂଯୋଜନା କରିବା, ଦୈବର ବିମଳ ଆଲୋକ ବିକୀରଣ ନିମନ୍ତେ ହୃଦୟ ବନ୍ଧକୁ ଉନ୍ମୁକ୍ତ ରଖିବା, ସାମାନ୍ୟ ସମ୍ପତ୍ତି, ସାମର୍ଥ୍ୟ, ଯଶର ଦୂରଭିମାନ ପରିତ୍ୟାଗ କରି ଅସୀମ ଓ ନିତ୍ୟର ପ୍ରେରଣାରେ ସ୍ପନ୍ଦିତ ହେବା ପ୍ରକୃତ ଭକ୍ତିର ପରିଚୟ । ଅତି କ୍ଷୁଦ୍ର କ୍ଷଣିକ ବୁଦ୍‌ବୁଦ ହେବା ଅପେକ୍ଷା ସାଗରର ଅଗାଧ ଜଳରାଶି ମଧ୍ୟରେ ବିଳାସ ଓ ପ୍ରସାର, ଛାୟା ହେବା ଅପେକ୍ଷା କାୟା ହେବା କି ଶ୍ରେୟସ୍କର ନୁହେ ?

ବିପଦସଙ୍କୁଳ ବନ୍ଧୁର କ୍ଲିଷ୍ଟ ଜୀବନପଥରେ ପଦେ ପଦେ ସ୍ଖଳିତ ହୋଇ ଆଘାତପ୍ରାପ୍ତ ହୋଇ, ପୁଣି ଉଠି, ଧାଇଁ, ସଙ୍ଗେ ସଙ୍ଗେ ତହିଁର ତାତ୍ପର୍ଯ୍ୟ ଭୁଲିଯାଇ ପୁରୁଷାର୍ଥକୁ ହୀନତର କରିବା ଦମ୍ଭ ମନୁଷ୍ୟର ବାସ୍ତବିକ ଭୟାବହ । ଆପାତରମଣୀକୁ ଆନନ୍ଦର ଆଧାର ବୋଲି ସେ କି ଲୋଭ ପରବଶ ନ ହୁଏ । ପ୍ରକୃତି କି ନିଷ୍ଠୁର ଭାବରେ ତାହାର ମୁଦ୍ରିତ ଚକ୍ଷୁକୁ ଉନ୍ମୋଚନ ନ କରେ ! ମନୁଷ୍ୟର ମୁହୁର୍ମୁହୁ ଅସତ୍ ଆଚରଣର ହିସାବ କରିବସିଲେ, ପ୍ରତ୍ୟେକ ଅଧର୍ମ ସକାଶେ ମନୁଷ୍ୟର ପ୍ରାୟଶ୍ଚିତ୍ତ କରି ବସିଲେ ଶତକୋଟିସଂଖ୍ୟକ ଜନ୍ମ ତାହା ପକ୍ଷରେ ଅଣ୍ଟିବ ନାହିଁ; ସେହି ପାପ କ୍ଷାଳିତ ହେବ ନାହିଁ । କିନ୍ତୁ ପରମ ପଦାର୍ଥର ସତ୍ତା ଅନୁଭୂତି ତାହାକୁ ଅତି ଶୀଘ୍ର ନିସ୍ତାର ଆଣି ଦିଏ । ଯେହେତୁ ତହିଁର ଅବବୋଧରେ ସେ ନିଜର ସଂକୀର୍ଣ୍ଣ ବ୍ୟକ୍ତିତ୍ୱ ଭୁଲିଯାଏ । ସେତେବେଳେ ଅନିର୍ବଚନୀୟ ମାୟାର ଆଚରଣ ଭେଦ କରିବାକୁ ସେ ସମର୍ଥ ହୁଏ, ସଂଶୟାବର୍ତ୍ତ ସଂସାରର-ସାଗରରୁ ନିଜକୁ ଉଦ୍ଧାର କରେ । ଜ୍ଞାନୋ-ଦୟରେ ବନ୍ଧନ ଶିଥିଳ ହୁଏ । ସ୍ୱତନ୍ତ୍ର ଓ ଆନନ୍ଦମୟ ହେବାପାଇଁ, ମୁକ୍ତି ପାଇବା ପାଇଁ, ଆତ୍ମ-ପଦାର୍ଥର ସମ୍ପୂର୍ଣ୍ଣ ଜ୍ଞାନ ଜନ୍ମିବା ଆବଶ୍ୟକ । ବିରାଟ ବିଶ୍ୱରୂପ ସମ୍ମୁଖରେ ନିଜକୁ ଗୀତାରେ ନଗଣ୍ୟ ବୋଧକରି ସୃଷ୍ଟି ଆମେ ଜ୍ଞାନଶକ୍ତି, ତେଜ, ପ୍ରାଣ, ଜ୍ଞାନ, କେବଳ ଯାହା ବୋଲ, ଶ୍ରଦ୍ଧାନ୍ୱିତ ପ୍ରଦାନ ଉପାସକ ହୋଇଅଛି । ଏହି ଆବାହନ ସଂସ୍ଥାପନ ସକଳୀକରଣ ହିଁ ଭକ୍ତିମାର୍ଗର ଆଦ୍ୟ, ବିଶ୍ୱନିୟନ୍ତାଙ୍କ ନିୟନ୍ତ୍ରଣରେ ନିଜକୁ ସାନନ୍ଦ କରିବା ଦୈବର ବିମଳ ଆଲୋକ ନିମନ୍ତେ ହୃଦୟ-ବନ୍ଧକୁ ଉନ୍ମୁକ୍ତ ରଖି ସମ୍ପତ୍ତି, ସାମର୍ଥ୍ୟ, ଯଶର ଦୂରଭିମାନ ପରିତ୍ୟାଗ କରି ଅସୀମ ଓ ନିତ୍ୟର ପ୍ରେରଣାରେ ସ୍ପନ୍ଦିତ ହେବା ପ୍ରକୃତ ଭକ୍ତିର ପରିଚୟ । ଅତି କ୍ଷୁଦ୍ର ବୁଦ୍‌-

ବୁଦ୍‌ ହେବା ଅପେକ୍ଷା ସାଗରର ଅବାଧରେ ବିକାସ ଓ ପ୍ରସାର, ଗ୍ରୟା ହେବା କି ଶ୍ରେୟସ୍କର ନୁହେ ?

ସ୍ମୃତିରେ ଅଛି, ଯେ ମୁକ୍ତି ଦିଏ ସେ କେବଳ ବିଦ୍ୟା, ଯେ ବନ୍ଧନ ନ କରେ ସେ କେବଳ କର୍ମ । ଅନ୍ୟ କର୍ମ କେବଳ ଆୟାସପ୍ରଦ ଓ ଅନ୍ୟ ବିଦ୍ୟା କେବଳ ଶିଳ୍ପ ନୈପୁଣ୍ୟ । ଏହି ଆତ୍ମଜ୍ଞାନ ପାଇବାକୁ ହେଲେ, ଗୁଣାତୀତ ହେବାକୁ ହେଲେ ପରମ ପଦରେ ଆତ୍ମୋତ୍ସର୍ଗ ଏକାନ୍ତ ଆବଶ୍ୟକ । ବିଧିନିଷେଧ-ପାଳନ, ତପସ୍ୟା, ଦାନ ଇତ୍ୟାଦି କର୍ମ-କାଣ୍ଡ ଭକ୍ତି ବ୍ୟତିରେକେ କର୍ମୀକୁ ଅଧିକ ଆବଦ୍ଧ କରେ । ଯେହେତୁ ଈଶ୍ୱରାଧୀନ ନ ହେଲେ ଅନାତ୍ମ ବ୍ୟକ୍ତିତ୍ୱର ଚପଳତା ବୃଦ୍ଧି ପ୍ରାପ୍ତ ହୁଏ । ଭକ୍ତିଦ୍ୱାରା ନିଷ୍କାମ୍ୟ ଆସେ । ନିଜେ ଯେତେବେଳେ କାୟମନୋବାକ୍ୟରେ ଉତ୍ସୃଷ୍ଟ, ନିବେଦିତ ତେବେ ନିଜର ହୋଇ ଯାଚଞ୍ଚା କରିବା ପାଇଁ, ଭ୍ରମିହେବା ପାଇଁ କଣ ରହିପାରେ ?

ଭକ୍ତିମାର୍ଗ ସମସ୍ତଙ୍କ ପକ୍ଷେ ପ୍ରଶସ୍ତ ଓ କାର୍ଯ୍ୟକାରୀ ଜ୍ଞାନ ବ୍ୟତିରେକେ କର୍ମ ମାର୍ଗ ଅଧିକ ବନ୍ଧନ ଦଶାକୁ ଦିଏ । ଅନ୍ୟ ପକ୍ଷରେ ଜ୍ଞାନମାର୍ଗ ଗହନ, କଠୋର ବୈରାଗ୍ୟ ଓ ସର୍ବସ୍ୱ ତ୍ୟାଗର ପରାକାଷ୍ଠାରେ ପିଚ୍ଛିଳ । ବ୍ରହ୍ମ-ବିଦ୍ୟା ବାସ୍ତବିକ ରହସ୍ୟମୟ ଓ ଅତି ଅଳ୍ପଙ୍କୁ ଗୋଚର । କିନ୍ତୁ ମନୁଷ୍ୟ ଥରେ ଜାଗତିକ ତୁଷ୍ଟି ଓ ପୁଷ୍ଟିର କ୍ଷୀଣତା, ଭିତ୍ତିଶୂନ୍ୟ ନିଜ ଦମ୍ଭ-ପ୍ରାସାଦର ନିୟତ ପତନୋନ୍ମୁଖତା ଅନୁଭବ କଲେ, ଈଶ୍ୱର ଭକ୍ତିପରାୟଣ ହେବା ପାଇଁ ପ୍ରେରଣା ପାଏ । ଜଡ ଓ କ୍ରିୟମାଣ ପ୍ରକୃତି ଶକ୍ତିର ପ୍ରକୃତ ପ୍ରକାଶ ସ୍ତ୍ରୀ, ତାମସ ଗୁଣବିଶିଷ୍ଟ ଶୂଦ୍ର ସୃଷ୍ଟିର ନିମ୍ନତମ ସ୍ତରରେ ଅବସ୍ଥିତ ଯେ କୌଣସି ବ୍ୟକ୍ତି ପକ୍ଷରେ ମଧ୍ୟ ଭକ୍ତିମାର୍ଗ ଉନ୍ମୁକ୍ତ । ଜ୍ଞାନ, ସଦାଚାର ଅବଲମ୍ବନ, ଜ୍ଞାନୋଦୟ, ଦୀକ୍ଷା, ଉପଯୁକ୍ତ ଗୁରୁ ପ୍ରାପ୍ତି, ଶାସ୍ତ୍ରଚର୍ଚ୍ଚା ଇତ୍ୟାଦି ଅନେକ ଅନୁକୂଳ ବିଷୟସାପେକ୍ଷ; କିନ୍ତୁ ସମସ୍ତେ ଭକ୍ତିମାର୍ଗ ଅବଲମ୍ବୀ ହେବାପାଇଁ ଅସାଧ୍ୟ କିଛି ନାହିଁ ।

ସର୍ବ ଜ୍ଞାନମୟ, ସର୍ବ ଶକ୍ତିମୟଙ୍କ ଆରାଧନା ଯୋଗରେ ଇନ୍ଦ୍ରିୟାଦିର ତୀବ୍ର ଆବେଗ ସଂଯମିତ ହୁଏ । ମନୁଷ୍ୟର କ୍ଷୀଣ ବିବେକ, ବୁଦ୍ଧି, ଚିତ୍ତର ତାହା କରିପାରେ ନାହିଁ । ପ୍ରକୃତ ଭକ୍ତ ପକ୍ଷରେ ଇନ୍ଦ୍ରିୟ ବିଷୟର ବାହ୍ୟ କିମ୍ବା ଆନ୍ତରିକ କ୍ରିୟାର ନିବନ୍ଧନ ରହେ ନାହିଁ । ଈଶ୍ୱରେଚ୍ଛା, ଭଗବତ୍ ଶରଣର ହିଁ ତାହାକୁ ଅଚିନ୍ତ୍ୟ ଶକ୍ତି-ସମ୍ପନ୍ନ କରେ । ଏଥିପାଇଁ ପରା ଭକ୍ତକବି ସୁର୍‌ଦାସ୍‌ ଗାଇଅଛନ୍ତି—

ଯୋ ଯାକେ ଶରଣ ଲିଏ ସୋ ରଖେ ତାକେ ଲଜ୍‌
ଉଲ୍‌ଟା ଜଲେ ମଛଲି ଚଲେ ବହ୍‌ଯାୟ ଗଜଗଜ୍‌

ଅବିଦ୍ୟା-ତିମିରକୁ ଜ୍ଞାନ-ମିହିର ଉଦ୍ଦୀପନ କରେ । ଭକ୍ତ ସେହି ଆଲୋକରେ ଉଦ୍‌ଭାସିତ ହୋଇ ମୂର୍ଖତା ପରିହାର କରେ । ସେ ମୁକ୍ତ, ସେ ଆନନ୍ଦୀ ।

# ସ୍ନେହର ସେତୁବନ୍ଧ

ମିଃ ଅର୍ଥର୍ ମି ଜଣେ ପ୍ରସିଦ୍ଧ ଇଂରେଜି ଗ୍ରନ୍ଥାକର, ସାମ୍ବାଦିକ, ଏକାଧିକ ପତ୍ରପତ୍ରିକାର ପ୍ରତିଷ୍ଠାତା ଓ ସମ୍ପାଦକ ※ । 'ସେତୁ ନିର୍ମାତା' ଶୀର୍ଷକ ଗୋଟିଏ ପ୍ରବନ୍ଧରେ ଗତ ମହାଯୁଦ୍ଧ ବେଳେ ଅପୂର୍ବ ସାହସ ସହକାରେ ତିଆର ହୋଇଥିବା ସେତୁବନ୍ଧ କେତୋଟିର ଦୃଷ୍ଟାନ୍ତ ଦେଇ ସେ ଲେଖିଛନ୍ତି, 'କିନ୍ତୁ ଆଉ ଗୋଟିଏ ରକମ ସେତୁବନ୍ଧ ତିଆର ଲାଗିଛି, ଯହିଁରେ ମଧ୍ୟ ଅତୁଳନୀୟ ନିଷ୍ଠା ଦେଖାଯାଉଛି । ତାହା ହେଉଛି ମନୁଷ୍ୟ ଜାତି ଜାତି ମଧ୍ୟରେ ସ୍ନେହ ଓ ବୁଝାମଣାର ସେତୁବନ୍ଧ । ପୃଥିବୀର ସବୁ ସ୍ଥାନରେ କୃଷ୍ଣକାୟ ଓ ପୀତକାୟ ଭିତରେ ଆମ ଲୋକେ ଅଛନ୍ତି । ଅନାଦର ଓ ସନ୍ଦେହ, ତାଚ୍ଛଲ୍ୟ ଓ ଘୃଣା ରୂପକ ଅନ୍ତରୀପ ଉପରେ ସେଭଳି ସେତୁବନ୍ଧ ନିର୍ମାଣ, ବଳବତ୍ତର ବା ସମ୍ପ୍ରସାରଣ କରିବା ସେମାନଙ୍କର ଏକମାତ୍ର ଉଦ୍ଦେଶ୍ୟ; କାରଣ, ଲୋକେ ବର୍ଣ୍ଣଭାଷା ବ୍ୟବହାରଗତ ଗଭୀର ଭେଦ ଯୋଗେ ବିଭକ୍ତ ।' କ୍ରମରେ ସେ ଲେଖିଛନ୍ତି, 'କୌଣସି ଜାତି ଉତ୍କୃଷ୍ଟ ବା ନିକୃଷ୍ଟ ନୁହେଁ । ଆମେ ଭିନ୍ନଭିନ୍ନ ତଥାପି ଏକ ମାନବିକତାର ଅନ୍ତର୍ଭୁକ୍ତ । ଏହି କଥାକୁ ଭଲରୂପେ ଚିହ୍ନିଲେ ଜଗତ ଉନ୍ନତି ଆଡ଼କୁ ଗତି କରିବ । ଗୌରବ ଓ ସଦିଚ୍ଛା ଦ୍ୱାରହିଁ ପୃଥିବୀରେ ଶାନ୍ତି ସ୍ଥାପିତ ହୋଇପାରିବ ।' ଉପସଂହାରରେ ଲେଖକ ସୂଚାଇଛନ୍ତି, 'ସେଥିପାଇଁ ଏ ପ୍ରକାର ସେତୁ ନିର୍ମାଣକଙ୍କ ଆବଶ୍ୟକତା ବେଶି । ତହିଁର ଉପାଦାନ ଇଟାମାଟି, କାଠ, ପଥର, ଲୁହା, ଟିଣ ନୁହେ, କିନ୍ତୁ ସ୍ନେହପୂର୍ଣ୍ଣ କାର୍ଯ୍ୟ ଓ ସାହାଯ୍ୟ ତତ୍ପରହସ୍ତ । ଏହି ସାହସିକ ଉପକାରୀ କାର୍ଯ୍ୟରେ ଯଥାଯଥ ଭାଗ ନେବାଠାରୁ ଆଉ କଅଣ ମହତ୍ତର କର୍ମ ସେହି ଆଶା କରିପାରେ ?'

ଏହି ଚିନ୍ତାପୂର୍ଣ୍ଣ ଧାଡ଼ି କେତୋଟିରେ ସଂକ୍ଷେପରେ ଆଧୁନିକ ମନୁଷ୍ୟର ହୃଦୟକୁ ଆଘାତ କରୁଥିବା ସବୁ ସମସ୍ୟାର ସୂଚନା ଦିଆଯାଇଛି । ତହିଁରେ ସୂଚିତ ହୋଇଥିବା ଆଦର୍ଶକୁ ଆମେ ଆଗ୍ରହ ସହକାରେ ଗ୍ରହଣ କରୁଅଛୁଁ । ତଥାପି ଯେଉଁ ସ୍ନେହ ଓ ବୁଝାମଣା ପାଇଁ ଲେଖା ଉଦ୍ଦିଷ୍ଟ, ଠିକ୍ ସେହି ସ୍ନେହ ଓ ବୁଝାମଣାର

---

※ My magazine, The Children's Newspaper, The Book of knowledge, The Children's Encyclopaedia, The Harmsoorth Self Educator, ଇତ୍ୟାଦି ।

ପ୍ରତିବନ୍ଧକ କେତୋଟି ଅବୁଝାମଣା କଥା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ତନ୍ମିରେ ଦେଖାଯାଉଛି । ତହିଁର ସଂକ୍ଷିପ୍ତ ଆଲୋଚନା କରିବା ଏଠାରେ ଅଭିପ୍ରାୟ ।

ଲେଖକ ସବୁ ଜାତି ତଥା ଗୋଷ୍ଠିର ସମାନତା ମାନିଛନ୍ତି, ଅଥଚ ଟିକିଏ ଆତ୍ମଶ୍ଳାଘା ପ୍ରଦୀପ୍ତ ହେଲପରି ଦୃଢ ଭାବରେ କହିଛନ୍ତି, ତାଙ୍କର ଶ୍ୱେତକାୟ ଲୋକେ ସବୁ ଦେଶରେ ବର୍ଣ୍ଣିତ ଲୋକ (Coloured races)କୁ ବିଶ୍ୱାସ-ମୈତ୍ରୀ-ଭ୍ରାତୃତ୍ୱର ପାଠ ଶିଖାଇବାକୁ ବ୍ୟାପିଛନ୍ତି । ଆମେ ଏଠାରେ ବିନୀତ ଭାବରେ ପଗ୍ରୁ, ଶ୍ୱେତ ପ୍ରଗ୍ରରକଙ୍କର ତେବେ ଏହା କରିବାର ଆବଶ୍ୟକତା କଅଣ ? ଯଦି ସଂସ୍କୃତି ବା ସାମର୍ଥ୍ୟ କୌଣସି ନିର୍ଦ୍ଦିଷ୍ଟ ଜାତିର ଏକାଙ୍ଗ ସମ୍ପତ୍ତି ନୁହେଁ, ଯଦି ତାହା ବିଭିନ୍ନ ରୂପରେ ନ୍ୟୂନାଧିକ ମାତ୍ରାରେ ସମସ୍ତଙ୍କଠାରେ ଦେଖାଯାଏ, ତେବେ ସାଂସ୍କୃତିକ ସଙ୍ଗଠନ ପରସ୍ପର ଆଦାନପ୍ରଦାନ ଉପରେ ନିର୍ଭର କରିବ । ତେବେ ପ୍ରଗ୍ରରକ-ପ୍ରଗ୍ରରିତ ଏ ନିର୍ଦ୍ଦିଷ୍ଟ ବିଭକ୍ତି କାହିଁକି ? ପୁଣି ବିମୁଖ ଓ ସଂଶୟ, ଦ୍ୱେଷ ଓ ବୈରିତା କି କେବଳ ବା ଲୋକଙ୍କ ଅର୍ଜନ ? ପୃଥିବୀର ଶ୍ୱେତାଂଶ କି ଏପରି ନିର୍ମଳ ତଥା ନିରଞ୍ଜନ ଯେ ତହିଁରେ ଏ ଅସଦ୍‌ଗୁଣଗୁଡ଼ିକର କିଞ୍ଚିତ୍ ରେଖାପାତ ମଧ୍ୟ ହୋଇନାହିଁ । ଏ ପ୍ରଶ୍ନର ଉତ୍ତର ପାଇଁ ଅପେକ୍ଷା କରିବାକୁ ପଡିବ ନାହିଁ । ଆମ ଆଖି ଆଗରେ ଅଭିନୀତ ହେଉଥିବା ମୃତ୍ୟୁ ଓ ଧ୍ୱଂସ, ରକ୍ତ ଓ ଅଶ୍ରୁର ବିପ୍ଳାର୍ଷିକା ଓ ପ୍ରବାହ ତହିଁର ନିଃସନ୍ଦେହର ଉତ୍ତର । ଯେଉଁଠାରେ ସ୍ନେହ ଓ ବୁଝାମଣା ଅଛି, ସେଠାରେ ସମରର କଦାପି ସ୍ଥାନ ରହି ନ ପାରେ । ବିଂଶ ଶତାବ୍ଦୀର ଅଧେ କାଳ ପୂରିନାହିଁ, ଇତିମଧ୍ୟରେ ଦୁଇଟି ଭୟଙ୍କର ଯୁଦ୍ଧ ଯୋଗୁଁ ବସୁନ୍ଧରା ସନ୍ତପ୍ତ ଟଳମଳ । ପୁଣି ଅପରେ କିଂ ଭବିଷ୍ୟତିଃ । ପୁଣି ଏହା ସର୍ବସମ୍ମତ, ଶ୍ୱେତ-ପବିତ୍ର ଭୂମି ପ୍ରତୀଚ୍ୟହିଁ ଏ ବିଡମ୍ବନାର ଉତ୍ପାଦକ, ଲୀଳାସ୍ଥଳୀ । ବାସ୍ତବିକ୍, ମନାନ୍ତର ଓ ଅସୂୟା, ଈର୍ଷା ଓ ଶତ୍ରୁତା ଯେ ଆଜି ଶ୍ୱେତ ପାଶ୍ଚାତ୍ୟ ପ୍ରାଣକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରୁଛି, ତାହାର ବସ୍ତୁତନ୍ତ୍ର ସଭ୍ୟତାର ସମାଧି ଗଢ଼ୁଛି, ଜଗତକୁ ଥରକୁଥର ଏପରି ଭୀଷଣ ସଙ୍କଟର ଭୟାବହ ଗର୍ଭକୁ ନିକ୍ଷେପ କରୁଛି, ତାହାର ଆଉ ଅନ୍ୟ ପ୍ରମାଣ କି ଲୋଡା ? ବାସ୍ତବିକ୍, ଏବେ ଶ୍ୱେତ ପ୍ରଗ୍ରରକମାନେ ଆମ ନିକଟକୁ ଆସିବାର ଦରକାର ନାହିଁ, ଅଧ୍ୟାତ୍ମଆଲୋକଦୀପ୍ତ ଭାରତ ତଥା ପ୍ରାଚ୍ୟର ବିଶିଷ୍ଟ ପ୍ରତିନିଧିମାନେ ଆଜି ଶ୍ୱେତାଙ୍ଗ ପ୍ରସ୍ତୁତ ରଣଚିତା ବହ୍ନିର ନିର୍ବାପନ ପାଇଁ, ଉତ୍କଟ ସମର ରୋଗର ଶାନ୍ତି ଉପଶମ ପାଇଁ, କ୍ଷତବିକ୍ଷତ କଳେବରରେ ବାଧା ନିବାରଣ ସୁଧା ବିଲେପନ ପାଇଁ ଶ୍ୱେତ-ରାଜ୍ୟକୁ ଯିବାର ଅଧିକ ଆବଶ୍ୟକ ହୋଇ ପଡିଛି । ଏପରି ଯିବାର ନୂତନ ନୁହେ । ପ୍ରାଗ୍ଐତିହାସିକ ବୈଦିକ ଯୁଗରେ ଆର୍ଯ୍ୟାବର୍ତ୍ତରୁ ମୁନିଋଷିଙ୍କ ଚିନ୍ତାଧାରା ଦୂରରୁ ଦୂରତରକୁ ବହିଥିଲା । ସେପରି ଭାବରେ ସିନ୍ଧୁ ସଭ୍ୟତା ବେବିଲୋନିଆ, ଏସିରିଆ,

ଇଜିପ୍ଟ, ଚେଲଦିଆ, ଗ୍ରଇନା, ଗ୍ରୀକ୍, ରୋମ୍ ଇତ୍ୟାଦି ସଭ୍ୟତାର ପରିପୋଷକ ହୋଇଥିଲା । ପରେ ପରେ ପୁଣ୍ୟଭୂମି ଭାରତରୁ ଭିକ୍ଷୁ ଓ ଭକ୍ତ, ସନ୍ନ୍ୟାସୀ ଓ ପରିବ୍ରାଜକ, ଯୋଗୀ ଓ ସଂସ୍କାରକ ପୂର୍ବ ଓ ପଶ୍ଚିମ ପଟରେ ଦେଶଦେଶାନ୍ତର ଭ୍ରମଣ କରି ଶାନ୍ତି ଓ ସନ୍ତୋଷ, ଶୃଙ୍ଖଳା ଓ ପୂର୍ଣ୍ଣତା, ଆଲୋକ ଓ ମାଧୂର୍ଯ୍ୟ, ପ୍ରଗତି ଓ ସଂସ୍କାରର ମନ୍ତ୍ର ମନ୍ଦ୍ରଧ୍ୱନିରେ ଉଚ୍ଚାରଣ କରିଥିଲେ । ନବଯୁଗର ରାମମୋହନ, ବିବେକାନନ୍ଦ, ରବୀନ୍ଦ୍ରନାଥ, ଗାନ୍ଧିଜୀ, ସରୋଜିନୀ, ଜବାହରଲାଲ ପ୍ରମୁଖ ଯଶୋବନ୍ତ ଯଶୋବନ୍ତୀ ନେତୃବର୍ଗ ସେହି ପନ୍ଥା ଅବଲମ୍ବନ କରି ନିର୍ବାପିତ ଦୀପକୁ ଜଳାଇଛନ୍ତି । ସେଇ ଦୀପର ସ୍ତିମିତ ଆଲୋକକୁ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର କରି ଚତୁର୍ଦ୍ଦିଗ ଆଲୋକିତ କରିବାହିଁ ଆମର ପ୍ରଥମ କର୍ତ୍ତବ୍ୟ ।

ହଁ ଶ୍ୱେତ ପ୍ରଚାରକଗଣ ଆମ ଦେଶକୁ ଆସିଲେ । ସେମାନଙ୍କ ମଧ୍ୟରୁ କେତେଜଣ ପ୍ରକୃତରେ ଉଦାରଚରିତ ଓ ମହନୀୟ । ତାଙ୍କରି ସଂସର୍ଗରେ ଏ ଦେଶ-ବାସୀଙ୍କ ହୃତସ୍ମୃତି ପୁଣି ଜାଗ୍ରତ ହୋଇ ଉଠିଲା । ସେଥିପାଇଁ ଆମେ କୃତଜ୍ଞ; କିନ୍ତୁ ଦୁଃଖରେ କହିବାକୁ ହୁଏ, ମୋଟ ଉପରେ ସାଧାରଣ ନିମ୍ନଶ୍ରେଣୀୟ ଶ୍ୱେତସଂଶ୍ରବ ଫଳରେ ଏ ଦେଶରେ ପୂର୍ବୋକ୍ତ ସେତୁବନ୍ଧ ଗଠିତ, ଶକ୍ତ ବା ସଂପ୍ରସାରିତ ହେବା ଦୂରରେ ଥାଉ, ଆଗରୁ ଥିବାର ସେତୁ ଭାଙ୍ଗିଦିଆଗଲା, ନଚେତ୍ କ୍ଷୀଣ ବା ସଙ୍କୁଚିତ କରାହେଲା । ନଥିବା ବ୍ୟବଧାନର ଅନ୍ତରୀପ ସୃଷ୍ଟି କରାଗଲା ବା ଥିବାର ସଂକୀର୍ଣ୍ଣ ଅନ୍ତରୀପକୁ ବଢାଇ ଦିଆଗଲା । ଏହାର ପୂର୍ବ ଓ ପରବର୍ତ୍ତୀ ଘଟଣା ଜଣାଶୁଣା । ପତାକା ଜାହାଜ; ଧର୍ମଗ୍ରନ୍ଥ ଓ କମାଣ ଗୋଟିକ ପରେ ଗୋଟିଏ ପହଞ୍ଚିଲା । ନିପଟ ସାମ୍ରାଜ୍ୟବାଦର ଦୁର୍ଦ୍ଦମନୀୟ ବୁଭୁକ୍ଷା ପ୍ରଜ୍ଜ୍ୱଳିତ ହେଲା । ସୁବିଧାବାଦୀ ଅଧିକାରର ସାଙ୍ଗୋପାଙ୍ଗ ନଗ୍ନ ରୂପ ପ୍ରକଟିତ ହେଲା । ଅତ୍ୟାଚାରର ନିଷ୍ଠୁର ରଥଚକ୍ର ଘୋର ଘର୍ଘର ଶବ୍ଦରେ ମାଡ଼ିଚାଲିଲା । ପରଂପରା ଛିନ୍ନ ହେଲା, ମନୋମାଳିନ୍ୟ ବଢ଼ିଲା । ସାମ୍ପ୍ରଦାୟିକ ମତଭେଦ ଜାଣି ଜାଣି ଶାସନତନ୍ତ୍ର ଯୋଗେ ଭର୍ତ୍ତି କରାଗଲା । ଏ ଦେଶବାସୀଙ୍କ ରାଜନୈତିକ, ଆର୍ଥିକ, ସାମାଜିକ, ନୈତିକ ଅଧୋଗତିର ଅଧ୍ୟାୟ ଫିଟିଲା । ଶ୍ୱେତାଙ୍ଗର ରକ୍ଷକତା (White man's trusteeship)ର ଘୋଷା ଉଦ୍‌ଗୀତ ହେଲା । ଶାସିତଙ୍କ ଏକତାର ଅଭାବ ଓ ପଶ୍ଚାତ୍‌ପଦତା ଛାତ ଉପରୁ ଘୋଷଣା କରାଗଲା । ଜାଣି ଜାଣି ସେମାନଙ୍କର ସଂସ୍କୃତିକୁ ନିନ୍ଦା ଉପହାସ ଅର୍ଥାନ୍ତର ବା ବିକଳାଙ୍ଗ କରାଗଲା । ସେମାନେ ମଧ୍ୟ କୌଣସି ଅହେତୁକ ଯାଦୁକରୀ ନିଶ୍ଚେଷ୍ଟତାର ନିର୍ମମ ଦୁର୍ମୋଚନ କାଳପାଶରେ ମୋହଗ୍ରସ୍ତ, ଜଡ, ମୃତକଳ୍ପ ହୋଇ ରହିଲେ । ସାମ୍ୟ, ସ୍ୱାଧୀନତା, ଯୁକ୍ତି-ମୁକ୍ତି ସମ୍ପର୍କୀୟ ବଡ ବଡ କଥା ପବନରେ ଉଡ଼ିଗଲା । ଖ୍ରୀଷ୍ଟବ୍ୟକ୍ତି ସଦୁପଦେଶ ସେହି ଧର୍ମର ଆଗତକୁହା ଅବଲମ୍ବୀଙ୍କ ଦ୍ୱାରାହିଁ ମୃତାକ୍ଷରରେ ପରିଣତ ହେଲା ଏବଂ ଏ ସବୁର ଏକମାତ୍ର କାରଣ ହେଲା ପ୍ରଭୁତ୍ୱ

ସଂପାଦନ ଧନ ଲୋଭ । ଏ କାଳିମାଛନ୍ନ ଛବିର ଗ୍ଲାୟାକୁ ବଢ଼ାଇବାରେ ପ୍ରୟୋଜନ ନାହିଁ ।

ସେ ଯାହାହେଉ, କାଳର ଗତିରେ, ଅନୁଭୂତିର ନିକଷରେ ଆଜି ରୋଗର ନିଦାନ ଜଣାପଡ଼ିଛି । କଥାଅଛି—ସବୁବେଳେ ସବୁ ଲୋକ, ଠିକ ହୋଇ ପାରନ୍ତି ନାହିଁ । ତଥାକଥିତ ଶ୍ୱେତ-ସଭ୍ୟତା ଉତ୍କର୍ଷର ଭିତ୍ତିଶୂନ୍ୟ ଅଟ୍ଟାଳିକା ଆଜି ଭଙ୍ଗି ପଡ଼ିଛି । ତଥାପି ଶ୍ୱେତାଙ୍ଗ ଆଜି ସେହି ଉତ୍କର୍ଷ ଛଳନାରେ ଅନ୍ଧ । ବାସ୍ତବିକ ମୂର୍ଖର ଗଣ୍ଠି ଦୃଢ଼ ପରି ଅବୁଝାମଣା ବଡ଼ କଷ୍ଟରେ ଲୋପ ପାଏ । ଏଣୁ ମି· ମିଙ୍କୁ ଆମର ଏକାନ୍ତ ନିବେଦନ, ପ୍ରଥମେ ସେ ତାଙ୍କର ଘର ସାମ୍ମୁଖ୍ୟ (Home front) ଓ ପ୍ରତିବେଶୀ ୟୁରୋପ ଭୂଖଣ୍ଡରେ ଏ ଅମୂଳକ ଅନ୍ୟଥା ଭାବରେ ଦୂରୀକରଣରେ ଯତ୍ନବାନ୍ ହୁଅନ୍ତୁ ।

ବର୍ଣ୍ଣ-ଭାଷା-ବ୍ୟବହାରଗତ ପାର୍ଥକ୍ୟ ବାକ୍ୟ ତ ସର୍ବଦା ରହିବ; କିନ୍ତୁ ସେଥିରେ କ୍ଷୁବ୍ଧ ହେବାର କାରଣ କଅଣ ଅଛି ? ସେ ପ୍ରଭେଦ ସ୍ୱାଭାବିକ, ପ୍ରାକୃତିକ ନୈସର୍ଗିକ, ତାତ୍ପର୍ଯ୍ୟ ବୁଝିଲେ, ବୈବିଧ୍ୟକୁ ସଂଯୋଗର ସ୍ୱର୍ଣ୍ଣମୟ ସୂତ୍ରରେ ଗୁନ୍ଥି ଜାଣିଲେ, ସେ ପ୍ରଭେଦହିଁ ଜୀବନର ସମ୍ପଦ । ବୈଚିତ୍ର୍ୟହିଁ ଜୀବନକୁ ସରସ ସୁନ୍ଦର ରୁଚିକର କରେ । ବାସ୍ତବିକ୍ ସବୁ ପଦାର୍ଥକୁ ଗୋଟିଏ ନୀରସ ନିଷ୍ପ୍ରାଣ ଧରାବନ୍ଧା ଛାଞ୍ଚରେ ଢ଼ାଳିବା (Soulless standardization) ଆଧୁନିକ ସଭ୍ୟତାର ଅଭିଶାପ ଏହାର ସତ୍ୟତା ଉପଲବ୍ଧ କରି ପୂର୍ବକାଳରୁ ଭାରତର ଦ୍ରଷ୍ଟା ଅନେକରେ ଏକର ସୂକ୍ଷ୍ମ ତତ୍ତ୍ୱ ଦର୍ଶାଇଛନ୍ତି । ବିଜ୍ଞାନ ଉଦ୍ଭାବନ-ଦୃପ୍ତ ଯନ୍ତ୍ରକୌଶଳ-ସମ୍ପନ୍ନ ଅଥଚ ଅତୃପ୍ତ ପାଶ୍ଚାତ୍ୟ ଏହି ତତ୍ତ୍ୱ ଅବଧାରଣ କଲେହିଁ ଆନନ୍ଦ ମିଳିବ । ମିଃ ମି. ସବୁ ଜାତିର ସମାନତା ଉଲ୍ଲେଖ କରିଛନ୍ତି । ଠିକ୍ କଥା; ସମାଲୋଚନା ନିଷ୍ପ୍ରୟୋଜନ, ସେପରି ହେଉ । ପ୍ରଥମେ ତାଙ୍କରି ଜାତି ଗୋଷ୍ଠୀ ସବୁ ଶ୍ୱେତକାୟ ଲୋକେ ଭାରତୀୟ ଆଦର୍ଶର ଏ ମଥାମଣି, ଶ୍ୱେତସଭ୍ୟତା-କାଳର ବହୁ ପୂର୍ବରୁ ଆବିଷ୍କୃତ ଜୀବନର ଏ ଏକତା, ଏକ କୁଟୁମ୍ବ ବସୁଧାର ସାର୍ବଜନୀନତା, ଏକ ସତ୍ୟ-ଶିବ-ସୁନ୍ଦରର ଉପଲବ୍ଧ କରନ୍ତୁ । ଉତ୍ପୀଡ଼କ ପ୍ରଥମେ ଶାନ୍ତି-ସଦିଚ୍ଛା-ଯୁଗର ସୂତ୍ରପାତ କରୁ । ନ ହେଲେ ଲାଞ୍ଛିତ, ପଦଦଳିତ, ଅବହେଳିତ, ବିପନ୍ନ ଅସହାୟ ଲୋକେ ପ୍ରଥମେ ଏ ଦିଗରେ କଣ କରିପାରିବେ ? ନୀରବରେ ଅଥଚ ଉଦ୍‌ବେଗରେ ସେମାନେ ଅନାଇଛନ୍ତି, ସମର୍ଥ ଲୋକେ ଅସମର୍ଥଙ୍କୁ, ସବଳ ଲୋକେ ଦୁର୍ବଳ ଲୋକଙ୍କୁ, ଧନବନ୍ତ ଲୋକେ ଦରିଦ୍ରଙ୍କୁ, ବିଦ୍ୱାନ୍ ଲୋକେ ନିରକ୍ଷରଙ୍କୁ, ଶିକ୍ଷିତ ଲୋକେ ଅଶିକ୍ଷିତଙ୍କୁ, ଚତୁର ଲୋକେ ଅଚତୁରଙ୍କୁ, କ୍ଷମତାପନ୍ନ ଲୋକେ ଶ୍ରମିକ-କୃଷକଙ୍କୁ, ସମ୍ଭ୍ରାନ୍ତ ଲୋକେ ଅସ୍ପୃଶ୍ୟଙ୍କୁ, ସୁସ୍ଥ ଭାଗ୍ୟବନ୍ତ ଲୋକେ ଦୁଃସ୍ଥ ଦୁରତଙ୍କୁ, ଅଧିକାରୀ ଲୋକେ ଅଧିକୃତଙ୍କୁ,

ବିଜୟୀ ଲୋକେ ବିଜିତଙ୍କୁ କିଭଳି ନ୍ୟାୟ ଦେବେ । ବହୁବାର ଭଙ୍ଗ ପ୍ରତିଶ୍ରୁତି (Oft-broken pledges) କିପରି ରକ୍ଷିତ ହେବ ।

ହଁ, ଉପରୋକ୍ତ ସେତୁ ନିର୍ମାଣକଙ୍କର ଆବଶ୍ୟକତା ବିଶେଷତଃ ଏ ଘଡ଼ିସନ୍ଧି ବେଳେ ଆସନ୍ନ ଓ ଅତ୍ୟନ୍ତ ଆବଶ୍ୟକ, ଏଥିରେ ସନ୍ଦେହ ନାହିଁ । ଏହି କାର୍ଯ୍ୟରେ ନିଜ ଶକ୍ତି ଅନୁଯାୟୀ ଯୋଗଦାନ କରିବାଠାରୁ ବଳି ମାଙ୍ଗଳିକ କ୍ରିୟା କିଛି ଥାଇନପାରେ । ଏଥିରେ ମଧ୍ୟ ସନ୍ଦେହ ନାହିଁ । ପୁଣି ଏହି ଯୋଗଦାନ ଅନୁପାତରେ ହିଁ ଜୀବନର ମୂଲ୍ୟ ନିର୍ଦ୍ଧାରିତ ହେବ; କିନ୍ତୁ ଏ ଯୋଗଦାନ ଖାଲି କଥାରେ ନୁହେ, ଆଗମ-ଚଉକୀ ଲେଖାରେ ନୁହେ, ସେବା ଓ ସଂଯମରେ, ତ୍ୟାଗ ଓ ତପସ୍ୟାରେ, ସମସ୍ତଙ୍କ କଲ୍ୟାଣ ସାଧନରେ ନିଜକୁ ତିଳେ ତିଳେ ଉତ୍ସର୍ଗ କରିବାରେ ଫୁଟି ଉଠିବାକୁ ହେବ । ଏଠାରେ ବାରମ୍ବାର ଆମର ଅନୁରୋଧ, ପ୍ରଥମେ ଯେଉଁମାନେ ସେତୁବନ୍ଧ ଭାଙ୍ଗିଥିଲେ, ପରର ସର୍ବସ୍ୱ ଅପହରଣ କରିଥିଲେ, ସେମାନେ ହିଁ ଏ କାର୍ଯ୍ୟରେ ଆଗେ ବ୍ରତୀ ହୁଅନ୍ତୁ । ନିଜର ଆନ୍ତରିକତା ଦେଖାନ୍ତୁ । ନିଜର ଦାୟିତ୍ୱ ପରକାନ୍ଧକୁ ଖସାଇ ବକ୍ତୃତା ଦାନରେ, ମିଠା ସଜଡା ଚମତ୍କାର କଥା କହି କର୍ତ୍ତବ୍ୟ ଶେଷ କରନ୍ତୁ ନାହିଁ । ତଥା ଶାସକ-ଜାତିଙ୍କୁ ଆମର ଏକାନ୍ତ ନିବେଦନ । ଏ ସଦିଚ୍ଛା ଶସ୍ତା କଥାରେ, ସ୍ୱାର୍ଥପର କୂଟନୀତିକଙ୍କ ସମୟ ଉଣ୍ଡି ଉଣ୍ଡି କଥା କହିବାରେ, ରାଜନୀତିକଙ୍କ ରଫାନାମାରେ ମୋଟ ଉପରେ ବାକ୍-ଜାଲରେ ଶେଷ ନ ହେଉ । ବିଧାତା କରନ୍ତୁ, ସମସ୍ତଙ୍କ ପକ୍ଷରେ ଗମ୍ଭୀର ସତ୍ୟ ନିର୍ଭର ଆତ୍ମ-ସଂଶୋଧନ ହେଉ । ବାଚନିକ ପ୍ରତିଜ୍ଞା ସହସା ଅବିଚ୍ଛିନ୍ନ ଉନ୍ନତ ତୃପ୍ତିକର ପ୍ରୀତିପ୍ରଦ କାର୍ଯ୍ୟରେ ପ୍ରକାଶ ପାଉ । ଭାରତକେଶରୀ ଆଜି ସୁପ୍ତ; ତଥାପି ଆତ୍ମିକ ଶକ୍ତିରେ ଶକ୍ତିମାନ୍ । ଇତିହାସ ସ୍ରୋତରେ ସହସ୍ର ସହସ୍ର ଘଡିସନ୍ଧି ଆସିଛି, ଭାରତ ସେ ସବୁ ଅବଲୀଳା କ୍ରମେ ଅତିକ୍ରମ କରିଛି । ଏବର ଘଡିସନ୍ଧି ମଧ୍ୟ ସେହିପରି ବିଶାଳ ବିକ୍ରମରେ ଅତିକ୍ରମ କରିବ । ଇତିମଧ୍ୟରେ କିନ୍ତୁ ଭାରତ ଖୋଜୁଁଛି ଯେଉଁମାନେ ଏ ଘଡ଼ିସନ୍ଧିରେ ବଡ ବଡ କଥା କହିବାରେ ଅଗ୍ରସର ସର୍ବସାଧାରଣଙ୍କ ସୁଖ-ସମୃଦ୍ଧି-ସ୍ୱାତନ୍ତ୍ର୍ୟ-ସ୍ୱାଚ୍ଛନ୍ଦ୍ୟ ନାମରେ ଢୋଲ ପିଟିବାରେ ନିପୁଣ, ପୁନରୁକ୍ତ ଯୁଦ୍ଧପର ପୁନର୍ଗଠନ (Oft-spoken Post-war Re-construction) ବେଳେ ସେମାନେ ସେହି ନୀତିକୁ କେତେଦୂର ଅକ୍ଷୁଣ୍ଣ ରଖିବେ ।



# ବିପ୍ଳବ

ଜୀବନର ସୁଖ ଦୁଃଖ, ଅଭାବ ଅଭିଯୋଗ, କ୍ରିୟା ପ୍ରତିକ୍ରିୟା, ଘାତ ପ୍ରତିଘାତ ମଧ୍ୟ ଦେଇ ବିଶ୍ୱନିୟନ୍ତାଙ୍କ ବିଚିତ୍ର ଇଙ୍ଗିତରେ ବିଶ୍ୱ ସୃଷ୍ଟି ଚିରନ୍ତନ ଭାବରେ ପୂର୍ଣ୍ଣତା ଆଡ଼କୁ ଗତି କରୁଅଛି । ଏହି ପୂର୍ଣ୍ଣତା ଅଖଣ୍ଡ ମୁକ୍ତି, ଅନନ୍ତ ସୁଖ ଚିରଶାନ୍ତି । ଅବଶ୍ୟ ବର୍ତ୍ତମାନ ଜୀବନର ଘୋର ଆତଙ୍କ, ଅଶ୍ରୁ, ହାହାକାର, ହିଂସା, ଦ୍ୱେଷ, ମୃତ୍ୟୁ ବିଭୀଷିକ ପ୍ରତି ଦୃଷ୍ଟିପାତ କଲେ ଏହି ମହନୀୟ ପରିଣତି ସ୍ୱପ୍ନ-କଳ୍ପନାପରି ପ୍ରତୀୟମାନ ହୋଇପାରେ; କିନ୍ତୁ ବାସ୍ତବରେ ଜୀବନର ଏହି ଶୋକ ଜଞ୍ଜାଳ ପ୍ରକୃତିର କେବଳ ଗୋଟିଏ ବାହ୍ୟ ଆବରଣ । ସେହି ଆବରଣ ଅନ୍ତଃସ୍ଥଳ ଭେଦକରି ମାନବର ଅନ୍ତର୍ନିହିତ ଦେବତ୍ୱ ମର୍ତ୍ତ୍ୟରେ କଳ୍ପିତ ସ୍ୱର୍ଗର ବିମଳ ଆନନ୍ଦ, ସୌନ୍ଦର୍ଯ୍ୟ ଓ ସତ୍ୟ ପ୍ରତିଷ୍ଠିତ କରିବାକୁ ନିୟତ ଲାଳାୟିତ । ମନୁଷ୍ୟକୃତ ସାମାଜିକ, ଆର୍ଥିକ, ନୈତିକ, ରାଜନୈତିକ, ଧର୍ମ ସମ୍ବନ୍ଧୀୟ ସକଳ ପ୍ରକାର ଅନୁଷ୍ଠାନ ଏହି ଅନନ୍ତ ଉଦ୍ଦେଶ୍ୟ ଉପଲବ୍ଧି କରିବା ସକାଶେ ସ୍ପଷ୍ଟ ଭାବରେ ନ ହେଲେ ସୁଦ୍ଧା ପ୍ରଚ୍ଛନ୍ନ ଭାବରେ ଉଦ୍ଭୂତ ହେଉଅଛି । କାଳଚକ୍ରର ପ୍ରବର୍ତ୍ତନରେ ଘୂର୍ଣ୍ଣାୟମାନ ହୋଇ ମନୁଷ୍ୟ ପଦେ ପଦେ ସସୀମରୁ ଅସୀମକୁ ଅଗ୍ରସର ହେଉଅଛି । ଅବଶ୍ୟ ସସୀମରେ ରହି ମନୁଷ୍ୟ ଯେତେବେଳେ ନିଜକୁ କ୍ଷୁଦ୍ରାଦପି କ୍ଷୁଦ୍ରହେୟ ନଗଣ୍ୟ ପ୍ରକୃତି-ଚାଳିତ ପୁତ୍ତଳିକା ବୋଲି ଭାବୁଅଛି, ସେତେବେଳେ ତାହାର ବହୁତୋମୁଖୀ ଉନ୍ମୁକ୍ତ ଉନ୍ନତ ଆତ୍ମା ସଙ୍କୁଚିତ ସୀମାବଦ୍ଧ କଦର୍ଯ୍ୟାକାର ହୋଇ ବିବିଧ ପ୍ରକାର ବିଭୀଷିକାର ସୃଷ୍ଟି କରୁଅଛି । କିନ୍ତୁ ଏ ଅବସ୍ଥା ଚିରସ୍ଥାୟୀ ହୋଇପାରେ ନାହିଁ । କାରଣ ଏହା ସୃଷ୍ଟିର ପ୍ରକୃତିବିରୁଦ୍ଧ, ଧର୍ମବିରୁଦ୍ଧ ପ୍ରକୃତିର କୁହେଳିକାବୃତ ଘନ ଅଙ୍କ ଗୁଣ୍ଠନ ଉନ୍ମୋଚନ କରି ଅମରାତ୍ମା ଯେତେବେଳେ ସତ୍-ଚିତ୍-ଆନନ୍ଦ-ପଥରେ ପଥିକ ହୁଏ ସେତେବେଳେ ତାହାର ପ୍ରାପ୍ୟ ଚିର ସୁଖ, ଚିର ଶାନ୍ତି । ସୃଷ୍ଟି ମନୁଷ୍ୟକୁ ବ୍ୟକ୍ତିଗତ ଓ ଦଳଗତ ଭାବରେ ସେହି ପଥରେ ପଥିକ କରାଇବାକୁ ନିୟତ ପ୍ରୟାସ କରୁଅଛି । ଇତିହାସ ଏହି ପ୍ରୟାସର ବର୍ଣ୍ଣନାତ୍ମକ ପୃଷ୍ଠା ।

କିନ୍ତୁ ଇତିହାସ ପୃଷ୍ଠାରେ ଆମ୍ଭେମାନେ ସମୟେ ସମୟେ ସଙ୍ଗତିର ଭଙ୍ଗ ଦେଖିବାକୁ ପାଉ । କାରଣ ମନୁଷ୍ୟ ଜୀବନର ଗତି ଯେଉଁପରି ସବୁବେଳେ ସମାନ ନୁହେ । ଉତ୍‌ଥାନ ପତନ ଜଗତର ନିୟମ । ଆଲୋକ ସହିତ ଅନ୍ଧକାର, ସୁଖ ସହିତ ଦୁଃଖ, ଯୌବନ ସହିତ ବାର୍ଦ୍ଧକ୍ୟ ସଂଯୁକ୍ତ ଥିବାପରି ଉନ୍ନତି ସହିତ

ଅବନତି ଜଡିତ ରହିଅଛି । ତେଣୁ ସୃଷ୍ଟିର ମୁଖ୍ୟ ମୂଳ ସମୂହ ଉଦ୍ଦେଶ୍ୟ ଚିର ସୁଖ ଶାନ୍ତି ଉପଲବ୍ଧି ହେଲେ ସୁଦ୍ଧା, ଦେଶ-କାଳ-ପାତ୍ର ଅନୁଯାୟୀ, ଉତ୍‌ଥାନ ପତନ, ଉନ୍ନତି ଅବନତି ମଧ୍ୟ ଦେଇ ସମାଜ ବା ଜାତି ଗତି କରିବାକୁ ବାଧ୍ୟ ହୁଏ । ଉନ୍ନତିର ଅଭିଲିପ୍ସା ନୂତନତ୍ୱର ମାଦକତା ସଙ୍ଗେ ରକ୍ଷଣଶୀଳତା ମନୁଷ୍ୟର ଗୋଟିଏ ବିଶିଷ୍ଟ ପ୍ରବୃତ୍ତି । ଏଣୁ କ୍ରିୟା ପ୍ରତିକ୍ରିୟା ନିୟମାନୁଯାୟୀ, କୌଣସି ଦେଶ ବା ଜାତି ଗୋଟିଏ ବିଶିଷ୍ଟ ଘଟଣା ବା ଉତ୍ତେଜନାର ସଂଘଟନ ପରେ କେତେକାଳଯାଏ ନିଶ୍ଚେଷ୍ଟ ଓ ମୃତପ୍ରାୟ ରହିବାର ସାଧାରଣରେ ଦେଖାଯାଏ, ସେତେବେଳେ ତାହାର ଜୀବନ କ୍ରମଶଃ ଶିଥିଳ ହୋଇ ଆସେ ଓ ଆକାଙ୍‌କ୍ଷା ମନ୍ଦୀଭୂତହୁଏ, ରକ୍ଷଣଶୀଳତା ବଜ୍ର-ମୁଷ୍ଟିରେ ତାହାର ଗତିରୋଧ କରେ ଏବଂ ତାହାରି ଫଳରେ ନାନାପ୍ରକାର କୁସଂସ୍କାର ଓ କୁପ୍ରଥା ସମାଜରେ ପ୍ରବେଶ କରେ । କିନ୍ତୁ ଏହି ଅବସ୍ଥା ଚିରନ୍ତନ ତିଷ୍ଠିପାରେ ନାହିଁ । କାରଣ କୁହାଯାଇଅଛି ଅବନତି, ପତନ ବା ମୃତ୍ୟୁ ସୃଷ୍ଟିର ପରିଣତି ନୁହେ, ସୃଷ୍ଟିର ପରିଣତି ପୂର୍ଣ୍ଣ ବିକଶିତ ଜୀବନ, ଜ୍ଞାନପୂର୍ଣ୍ଣ ସତ୍ୟ ଅନୁପ୍ରାଣିତ ସୌନ୍ଦର୍ଯ୍ୟଭରା ପ୍ରାଣ । ଏଣୁ ହଠାତ୍ ଅଲକ୍ଷିତ ଭାବରେ କୌଣସି ଗୋଟିଏ ଚିନ୍ତା ବା ଘଟଣାର ଗଭୀର ପ୍ରେରଣାରେ ସମାଜ ବା ଜାତିର ସେହି ଶୁପ୍ତ ଶକ୍ତି ପୁଣି ନବ ତେଜ ନବ ସଞ୍ଜୀବନ ମନ୍ତ୍ରରେ ଉଦ୍ଭାସିତ ହୁଏ ଏବଂ ମୁହୂର୍ତ୍ତ ମଧ୍ୟରେ ସମସ୍ତ କୁସଂସ୍କାର ନିରଶା; ଅନ୍ଧକାର ଦୂର ହୁଏ. ପୁଣି ଜାତିର ଜୀବନ-ସ୍ରୋତ ନିରବଚ୍ଛିନ୍ନ ଭାବରେ ବୋହି-ଯାଏ । ଏହିଭଳି ବିଶିଷ୍ଟ ଚିନ୍ତା ବା ଘଟଣାକୁ କୁହାଯାଏ ବିପ୍ଲବ ।

କିନ୍ତୁ ବିପ୍ଲବ ଯେ ଏକାବେଳକେ ଅହିତଶୂନ୍ୟ ଏହା କୁହାଯାଇ ନ ପାରେ । ବିପ୍ଲବର ପ୍ରଥମ ସ୍ଫୁରଣରେ ଭୀଷଣ ରକ୍ତପାତ ହୁଏ, ଧ୍ୱଂସର ତାଣ୍ଡବଲୀଳା ଲାଗିଯାଏ, ପ୍ରଳୟର ଅଗ୍ନିଶିଖା ସମୁତ୍‌ଥିତ ହୁଏ; କିନ୍ତୁ ଏଥିରେ ଭୀତତ୍ରସ୍ତ ହେବାର କୌଣସି କାରଣ ନାହିଁ । ସମୟେ ସମୟେ ଏପରି ଧ୍ୱଂସସାଧନ ଆବଶ୍ୟକ, ବାଞ୍ଛନୀୟ ଓ ସ୍ୱାଭାବିକ । କାରଣ ଯୁଗବ୍ୟାପୀ ଅବସନ୍ନ ନିପୀଡ଼ିତ ସଙ୍କୁଚିତ ପ୍ରାଣ କଥା କଥାକେ ପୁଣି ଜୀବନ୍ତ ଅଗ୍ନିମୟ ଗଠନମୂଳକ ହୋଇପାରେ ନାହିଁ; ରକ୍ଷଣ-ଶୀଳତାର ସୁଦୃଢ଼ ଦୁର୍ଗ ଏଡ଼େ ସହଜରେ ଭୂମିସାତ୍ ହୋଇପାରେ ନାହିଁ; ଏପରି ଉତ୍କଟ ରୋଗର ଏଡେ ଚିକିତ୍ସାରେ ଉପଶମ ହୁଏ ନାହିଁ । ବିପ୍ଲବର ସେହି ସାମୟିକ ଅଶାନ୍ତି ଓ ବିଶୃଙ୍ଖଳା ଉତ୍କଟ ବ୍ୟାଧିର ଉତ୍କଟ ଚିକିତ୍ସାର ପରିଚାୟକ ଏବଂ ସମାଜର ମୂଳ ଓ ସମୂହ ଅଭ୍ୟୁଦୟ ଦୃଷ୍ଟିରେ ବାଞ୍ଛନୀୟ ।

ଜୀବନର ପ୍ରତ୍ୟେକ କ୍ଷେତ୍ରରେ ବିପ୍ଲବ ସଂଘଟିତ ହୁଏ । ବ୍ୟକ୍ତିଗତ ଜୀବନରେ, ସମାଜ, ଜାତି, ଦେଶ, ସାମ୍ରାଜ୍ୟ ଓ ସ୍ଥୂଳତଃ ସମଗ୍ର ଜଗତ ବ୍ୟାପକ

ଭବରେ, ଧର୍ମ ରାଜ୍ୟରେ, ଆର୍ଥିକ ସୀମାରେ, ରାଜନୈତିକ କ୍ଷେତ୍ରରେ, ନୈତିକ ଭବନାରେ ବିପ୍ଲବର ପ୍ରାଦୁର୍ଭାବ ଦେଖାଯାଏ । ବିପ୍ଳବର ବାରମ୍ବାର ସଂଘଟନ ହୁଏ ନାହିଁ । ବିପ୍ଳବ ଯୁଗାନ୍ତରରେ ଥରେ ଥରେ ଦେଖାଦିଏ । କାରଣ ବିପ୍ଳବ ଯୁଗ ପରିବର୍ତ୍ତନର କର୍ତ୍ତା ଏବଂ ପଥପ୍ରଦର୍ଶକ ଏବଂ ଦଶ ବର୍ଷ କିମ୍ବା ଶହେ ବର୍ଷକୁ ଯୁଗ କୁହାଯାଏ ନାହିଁ । ଯୁଗ ସହସ୍ର ସହସ୍ର ବର୍ଷ ବ୍ୟାପିଥାଏ ।

ବ୍ୟକ୍ତିଗତ ଜୀବନରେ ବିପ୍ଳବର ସୃଷ୍ଟି ବଡ ରହସ୍ୟମୟ । ଦାରୁଣ ନିଷ୍ଠୁର ବିଧର୍ମୀ ଜୀବନ-ମରୁରେ ହଠାତ୍ କୌଣସି ବିଶିଷ୍ଟ ଅନୁଭୂତି ଫଳରେ କିପରି ସ୍ନେହ, ଦୟା ଓ ଧର୍ମର ଅନାବିଳ-ମନ୍ଦାକିନୀ ଧାରା ପ୍ରବାହିତ ହୁଏ ତାହା ଭବିଲେ ହୃଦୟରେ ଯୁଗପତ୍ ହର୍ଷ ଓ ବିସ୍ମୟର ଉଦ୍ରେକ ହୁଏ । ଏହିପରି ଭବରେ ଦିନେ ପରଧନା-ପହାରୀ, ଦସ୍ୟୁ ରତ୍ନାକର ତପସ୍ୟା ବଳରେ ରାମାୟଣ ରଚୟିତା ଋଷିପ୍ରବର ବାଲ୍ମୀକିରେ ପରିଣତ ହୋଇଥିଲେ । ଚଣ୍ଡାଶୋକ ଦିନେ କଳିଙ୍ଗ ସମର କ୍ଷେତ୍ରରେ ଲୋମହର୍ଷଣକାରୀ ବିଭୀଷିକା ସନ୍ଦର୍ଶନ କରି ଧର୍ମାଶୋକରେ ପରିଣତ ହୋଇ ଭରତରେ ତଥା ଏସିଆରେ ଅହିଂସା ପରମ ଧର୍ମ ପ୍ରଚାର କରିଥିଲେ । ପାପିଷ୍ଠ, ପାଷଣ୍ଡ ଦୁଷ୍ଟ ଶତ୍ରୁ ଜଗାଇ ମାଧାଇ ଦିନେ ହରିନାମ ସ୍ୱର୍ଗୀୟ ସୁଧା ପାନକରି ବୈଷ୍ଣବ ଧର୍ମର ପ୍ରଧାନ ପ୍ରଚାରକ ହୋଇଥିଲେ । ମୂର୍ଖ କାଳିଦାସ ବେଶ୍ୟାର ବଚନ ବାଣରେ ବ୍ୟଥିତ ଚିତ୍ତହୋଇ ଦିନେ ସରସ୍ୱତୀଙ୍କ କରୁଣା କଟାକ୍ଷ ଫଳରୁ ଅମର କବିତ୍ୱ ପ୍ରାପ୍ତ ହୋଇଥିଲେ । କୁସଙ୍ଗୀ, ବ୍ୟଭିଚାରୀ, ମଦ୍ୟପାୟୀ ଯୁବରାଜ ହେନେରି ମୁହୂର୍ତ୍ତ ମାତ୍ରକ ସିଂହାସନାରୋହଣ ଫଳରେ ବୀରତ୍ୱ ଓ ରାଜତ୍ୱର ବିଚିତ୍ର ସମାବେଶ ନିଜ ଜୀବନରେ ପ୍ରତ୍ୟକ୍ଷୀଭୂତ କରାଇଥିଲେ ।

ଏ ଗଲା ବ୍ୟକ୍ତିଗତ ଜୀବନ କଥା । ବର୍ତ୍ତମାନ ଦେଶ ଏବଂ ସାମ୍ରାଜ୍ୟ ବ୍ୟାପୀ ବିପ୍ଳବର କେତୋଟି ଉଦାହରଣ ଆଲୋଚନା କରାଯାଉ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଯେତେବେଳେ ଉପନିଷଦ ସମ୍ଭୂତ ଉନ୍ନତ ଉଦାର ହିନ୍ଦୁଧର୍ମ ପ୍ରତିମା-ପୂଜା, ଜାତି ପାର୍ଥକ୍ୟ ଓ ହିଂସାମୂଳକ ତନ୍ତ୍ର-ଉପାସନା ଇତ୍ୟାଦି ସାମୟିକ ଆବର୍ଜନାରେ ମନ୍ଦୀଭୂତ ହେଲା, ସେତେବେଳେ ପୁଣ୍ୟାତ୍ମା ଶାକ୍ୟମୁନି ବୁଦ୍ଧଦେବଙ୍କର ଶୁଭ ଆବିର୍ଭାବ ସେହି ଆବର୍ଜନା ଦୂର କରି ଧର୍ମର ମଧୁର-ମୋହନଦୀପ୍ତି ପ୍ରକାଶ କରିଥିଲା । ସେହିପରି ଖ୍ରୀଷ୍ଟପର ପଞ୍ଚମ ଓ ଷଷ୍ଠ ଶତାବ୍ଦୀରେ ଯେତେବେଳେ ଆରବ ଦେଶ କଳହ, ଅନ୍ୟାୟ, ବ୍ୟଭିଚାରର ଲୀଳାସ୍ଥଳୀ ଥିଲା, ସେତେବେଳେ ମହାପୁରୁଷ ମହମଦ୍ ବଜ୍ରଗମ୍ଭୀର କଣ୍ଠରେ ଏକତା, ନିଷ୍ଠା ଓ ସଂଯମର କଣ୍ଠରେ ଏକତା, ନିଷ୍ଠା ଓ ସଂଯମର ମନ୍ତ୍ର ପ୍ରଚାର କରି ମାନବ ଜାତିର କଳଙ୍କକାଳିମା ବିପ୍ଳବ-ସ୍ରୋତରେ ଭସାଇ ଦେଇଥିଲେ ।

ଏହିପରି ବ୍ୟକ୍ତିଗତ ଓ ସାମାଜିକ ଉଭୟ ଦିଗରେ ଏହି ପବିତ୍ର ପ୍ରାଚ୍ୟ-ଭୂଖଣ୍ଡରେ ଅନେକ ବିପ୍ଳବ ସଂଘଟିତ ହୋଇଅଛି; କିନ୍ତୁ ସେ ସବୁ କେବଳ ଧର୍ମ ଦିଗରେ । ଏହାର କାରଣ ପ୍ରାଚ୍ୟଧର୍ମ ଛଡ଼ା ଅନ୍ୟ କୌଣସି ଅନୁଷ୍ଠାନ ପ୍ରତି ସେତେ ଦୂର ଆକୃଷ୍ଟ ନୁହେଁ । ଧର୍ମ ପ୍ରାଚ୍ୟର ଅସ୍ଥିମଜ୍ଜାଗତ, ଜଳବାୟୁଗତ—ପ୍ରାଚ୍ୟର ସମସ୍ତ ଗତିବିଧି, ଆକାଂକ୍ଷା ଓ ଆଦର୍ଶ ଧର୍ମର ଶାସନରେ ନିୟନ୍ତ୍ରିତ । ପ୍ରାଚ୍ୟର ଚିରନ୍ତନ ଅଭିଳାଷ, ଚିରନ୍ତନ ସତ୍ୟ ଓ ଶକ୍ତିର ଅନୁସନ୍ଧାନ, ମୃତ୍ୟୁର କଦର୍ଯ୍ୟ ବିଭୀଷିକା ମଧ୍ୟରେ ଅମରତ୍ୱର ନିଦର୍ଶନ, ଭବ-ଜଞ୍ଜାଳର ଗଭୀର ଅନ୍ଧକାର ମଧ୍ୟରେ ଶାନ୍ତି-ଆଲୋକର ଆନୟନ । ତେଣୁ ପାଶ୍ଚାତ୍ୟ ଖଣ୍ଡରେ ସଂଘଟିତ ଅସଂଖ୍ୟ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବିପ୍ଳବ ତୁଲ୍ୟ ବିପ୍ଳବ ଆମ୍ଭେମାନେ ପ୍ରାଚ୍ୟଖଣ୍ଡରେ ଦେଖିବାକୁ ପାଉନାହୁଁ । ପାଶ୍ଚାତ୍ୟ ଭିନ୍ନ ଉପାଦାନରେ ଗଠିତ । ପାଶ୍ଚାତ୍ୟ ଜୀବନ-ସଂଗ୍ରାମର ଦାରୁଣ ଲୀଳାସ୍ଥଳୀ । ବିଜ୍ଞାନ-ଆଲୋକର ଉଦ୍ଭାସିତ କ୍ଷେତ୍ର, ପ୍ରକୃତି ଉପରେ ଅଧିକାର, ଦଣ୍ଡରେ ଦଣ୍ଡିତ ସାମ୍ରାଜ୍ୟ । ଏଣୁ ସେଠାରେ ଜୀବନର ବୈଷୟିକ ଅନୁଷ୍ଠାନ ପ୍ରତି ବିଶେଷ ଦୃଷ୍ଟି ଦିଆଯାଏ—ତେଣୁ ସେଠାରେ ରାଜନୈତିକ ଓ ଅର୍ଥନୈତିକ ବିପ୍ଳବର ପ୍ରାଦୁର୍ଭାବ ବିଶେଷ ପରିମାଣରେ ପରିଲକ୍ଷିତ ହୁଏ ।

ପାଶ୍ଚାତ୍ୟର ପ୍ରଧାନ ବିପ୍ଳବ "ଶିକ୍ଷା-ଅଭ୍ୟୁତ୍ଥାନ" (renaissance) ଆନ୍ଦୋଳନ ୟୁରୋପରେ ଆଧୁନିକ ଯୁଗର ପ୍ରବର୍ତ୍ତକ ଓ ପଥ-ପ୍ରଦର୍ଶକ । ତହିଁ ପୂର୍ବେ ସମଗ୍ର ୟୁରୋପ ଖଣ୍ଡ ଶିକ୍ଷା, ସଭ୍ୟତା ଓ ସଂସ୍କାରର ନିମ୍ନତମ ସୋପାନରେ ଅବସ୍ଥିତ ଥିଲା । ସେତେବେଳେ ୟୁରୋପବାସୀଙ୍କର ୟୁରୋପ ଛଡ଼ା ଅନ୍ୟ କୌଣସି ଦେଶର ଅବସ୍ଥିତି ସମ୍ବନ୍ଧରେ ଜ୍ଞାନ ନ ଥିଲା । ସଂଗ୍ରାମ ଚଳାଇ ଭରଣପୋଷଣ କରିବା ଏବଂ ପାଶବିକ ଅଧିକାର ଚଳାଇବା ବ୍ୟତୀତ ସେମାନେ ଜୀବନର ଅନ୍ୟ କୌଣସି କଳା ବା ବିନୋଦ ଅଧ୍ୟୁଷିତ କରିପାରି ନଥିଲେ । ଏପରି ଅବସ୍ଥାରେ 'ଶିକ୍ଷା-ଅଭ୍ୟୁତ୍ଥାନ' ଆନ୍ଦୋଳନ ଇଟାଲୀରୁ ଆରମ୍ଭ ହୋଇ ଜର୍ମାନୀ, ସ୍ପେନ୍, ଫ୍ରାନସ୍, ବିଲାତ ଇତ୍ୟାଦି ଦେଶମାନଙ୍କରେ ପ୍ରସାରିତ ହେଲା । ଆମେରିକା ଓ ଭାରତ ଆବିଷ୍କାର ୟୁରୋପ-ବାସୀଙ୍କ ସଙ୍କୁଚିତ ଦୃଷ୍ଟି ପ୍ରସାରିତ କରିଦେଲା । ଛାପାଖାନାର ଆବିଷ୍କାର ଦ୍ୱାରା ସହସ୍ର ସହସ୍ର ପୁସ୍ତକ ସମାଜରେ ବ୍ୟବହାର କରାଯାଇ ଅଜ୍ଞାନ ଅନ୍ଧକାର ଦୂରୀଭୂତ ହେବାର ପ୍ରୟାସ ଆରମ୍ଭ ହେଲା । ପୁଣି ପ୍ରାଚୀନ ଗ୍ରୀକ୍ କଳା ଓ ସଭ୍ୟତାର କେନ୍ଦ୍ର କନଷ୍ଟାନ୍‌ଟିନୋପଲ ତୁର୍କୀମାନଙ୍କ ଦ୍ୱାରା ଅଧିକୃତ ହେବାରୁ ଗ୍ରୀକ୍ ମନୀଷୀଗଣ ୟୁରୋପର ବିଭିନ୍ନ ସ୍ଥଳରେ ବସତି ସ୍ଥାପନ କରି ମହତ୍ ଓ ସୁନ୍ଦର ଜ୍ଞାନାଲୋକ ପ୍ରସାରିତ କଲେ । ଏହିସବୁ କାରଣରୁ ୟୁରୋପବାସୀ ଉନ୍ମୁକ୍ତ ଉଦାର ପ୍ରାଣ ଘେନି

କଳା-ସୌନ୍ଦର୍ଯ୍ୟର ଉପାସକ ହୋଇ ଉଠିଲେ । ସେମାନଙ୍କର ତୀକ୍ଷ୍ଣ ଚିନ୍ତା ଶକ୍ତି ଜାଗ୍ରତ ହେଲା । ଏହି ଆନ୍ଦୋଳନ ପ୍ରବର୍ତ୍ତିତ ଆଧୁନିକ ଯୁଗର ଏ ପର୍ଯ୍ୟନ୍ତ ଅବସାନ ହୋଇ ନାହିଁ ।

ବର୍ତ୍ତମାନ ଯେଉଁ ଆମେରିକା ସମଗ୍ର ଜଗତର ରାଜନୀତି ଓ ଅର୍ଥନୀତି-ପୋତର କର୍ଣ୍ଣଧାର ସ୍ୱରୂପ, ଯେଉଁ ଆମେରିକାବାସୀ ଧନକୁବେରମାନଙ୍କର ସମ୍ପତ୍ତି କଳ୍ପନାର ପ୍ରସାରକୁ ବଳି ଯାଉଅଛି, ଯେଉଁ ଆମେରିକା ବିଜ୍ଞାନ ପ୍ରତିଷ୍ଠା ଏବଂ ଯନ୍ତ୍ରଚାଳନ ସାହାଯ୍ୟରେ ବଳୀୟାନ ହୋଇ ଉଠିଅଛି, ସେହି ଆମେରିକାର ପ୍ରତିଷ୍ଠା କେବଳ ବିପ୍ଳବଦ୍ୱାରା ସମ୍ଭାବିତ ହୋଇଅଛି । ପ୍ରାୟ ଦୁଇଶତ ବର୍ଷ ପୂର୍ବେ ଆମେ-ରିକାର କୌଣସି ବିଶିଷ୍ଟ ବ୍ୟକ୍ତିର ବ୍ୟକ୍ତିତ୍ୱ ନଥିଲା, ବିଲାତ-ପାର୍ଲିଆମେଣ୍ଟ ତାହାର ଭାଗ୍ୟବିଧାତା ହୋଇ ଇଚ୍ଛାନୁଯାୟୀ ତାହା ଉପରେ କର ବିଧାନ କରୁଥିଲା କିନ୍ତୁ ଆମେରିକାବାସୀ ଏହିଭଳି କର-ପ୍ରଥାରେ ଉତ୍ୟକ୍ତ ହୋଇ ଖଡ୍‌ଗ ହସ୍ତ ହେଲେ । ବିଚକ୍ଷଣ ହୃଦୟବାନ ଜେନେରାଲ୍ ଉଆଶିଂଟନଙ୍କ ନେତୃତ୍ୱରେ ଆମେରିକାରେ ବିପ୍ଳବ-ବହ୍ନି ପ୍ରଜ୍ୱଳିତ ହୋଇଉଠିଲା ଓ ସ୍ୱାଧୀନତା ମନ୍ତ୍ର ଗମ୍ଭୀର କଣ୍ଠରେ ବିଘୋଷିତ ହେଲା । ସେହି ଦିନାବଧି ଆମେରିକା ସ୍ୱାଧୀନ, ଶକ୍ତିଶାଳୀ ଓ ବିଜ୍ଞାନ-କଳା-ମଣ୍ଡିତ ହୋଇଅଛି ।

କିନ୍ତୁ ପାଶ୍ଚାତ୍ୟରେ ସଂଘଟିତ ସବୁ ବିପ୍ଳବଠାରୁ ବଡ଼ ଭୀଷଣ, ବଡ଼ ସର୍ବଗ୍ରାସୀ, ବଡ଼ ଫଳପ୍ରଦ ଫରାସୀ ବିପ୍ଳବ । ଫ୍ରାନ୍‌ସ ଦେଶରେ ଏ ବିପ୍ଳବର ପ୍ରଥମ ସୂତ୍ର-ପାତ, ଯୁଗବ୍ୟାପୀ ଏକାଧିପତ୍ୟ—ରାଜତନ୍ତ୍ର (Detinavpotic monarchy) ପରାନ୍ନଭୋଗୀ-ଭଦ୍ରତା Parasitic ability) ଏବଂ ଅବିବେକୀ-ପୌରୋହିତ୍ୟ (Unscrupulous Clergy)ର ଅନ୍ୟାୟ ଅତ୍ୟାଚାର-ବ୍ୟଭିଚାର ପ୍ରପୀଡ଼ିତ ଫ୍ରାନସ ଦେଶବାସୀ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଆଉ ସମ୍ଭାଳି ନ ପାରି, ଯୁଗବାର୍ତ୍ତା-ପ୍ରଚାରକ ଭଲ୍‌ଟାୟର ଓ ରୁସୋଙ୍କ ଅଗ୍ନିମୟ ବାକ୍ୟ-ବାଣରେ ଉତ୍ତେଜିତ ହୋଇ ସାମ୍ୟ, ସ୍ୱାଧୀନତା ଓ ସାର୍ବଜନୀନ ମୈତ୍ରୀ (Equality, Liberty and Fraternity)ର ମନ୍ତ୍ରରେ ଦୀକ୍ଷିତ ହୋଇ ଏହି ବିପ୍ଳବର ସୃଷ୍ଟି କରିଥିଲେ । ଅନେକ ବର୍ଷ ପର୍ଯ୍ୟନ୍ତ ଫ୍ରାନସ ସୀମା ଅତିକ୍ରମ କରି ବିପ୍ଳବର ଲେଲିହାନ ଶିଖା ସମଗ୍ର ୟୁରୋପରେ ଜଳି ଉଠିଲା, ଧରଣୀ ନର ରକ୍ତରେ ରଞ୍ଜିତ ହୋଇଗଲା, କାଳରୂପୀ ସମରର ବିକଟ ତାଣ୍ଡବ ଚତୁର୍ଦ୍ଦିଗ ବ୍ୟାପ୍ତ ହେଲା, ପ୍ରବଳ ପ୍ରତାପୀ ଯୁଗବୀର ନେପୋଲିୟନଙ୍କ ଉଦୟ ଓ ଅବସାନ ହୋଇଗଲା । ସର୍ବଶେଷରେ ଶାସନତନ୍ତ୍ର ଉପରେ ଦେଶବାସୀ ସର୍ବସାଧାରଣଙ୍କ ପୂର୍ଣ୍ଣ କର୍ତ୍ତୃତ୍ୱ (Sovereignty of the People) ସଙ୍ଗେ ଧର୍ମରାଜ୍ୟରେ ସ୍ୱାଧୀନ ମତ ଅଧିଷ୍ଠିତ ହେଲା । ଏହାରି

ଫଳରେ ଜଗତର ଅଧିକାଂଶ ଦେଶରେ ଆଜି ଆମ୍ଭେମାନେ ଜନ-ତନ୍ତ୍ରର ପ୍ରଚଳନ ଦେଖୁଅଛୁ । ଯେ କେତୋଟି ଦେଶରେ ରାଜ-ମୁକୁଟ ଶୋଭା ପାଉଅଛି, ସେ ସବୁ କେବଳ ଅଳଙ୍କାର ବିଶେଷ । ଭୂତପୂର୍ବ ସ୍ପେନ ରାଜା ଆଲଫୋନ୍‌ସୋଙ୍କ ସିଂହାସନ ତ୍ୟାଗ ଏହାର ଉତ୍କୃଷ୍ଟ ପ୍ରମାଣ ।

ଗତ ଦଶ ବର୍ଷ ଧରି ଆମ୍ଭର ଏହି ଜନ୍ମଭୂମି ଭାରତ ବର୍ଷରେ ବଡ ବିଚିତ୍ର ଧରଣର ଗୋଟିଏ ବିପ୍ଳବର ତରଙ୍ଗ ଖେଳିଯାଉଅଛି । ଦେଢ଼ଶହ ବର୍ଷ ବ୍ୟାପୀ ବ୍ରିଟିଶ ଶାସନ ଫଳରେ ଦେଶରେ ଯେ ନୈତିକ ଅବନତି ଓ ସଙ୍କୋଚ ଘଟିଅଛି ତାହା ଅନୁଶୋଚନା କରି, ସେଥିର ପ୍ରତିକାର କରିବା ସକାଶେ, ଆବାଳବୃଦ୍ଧବନିତା ଆଜି ଦରିଦ୍ରନାରାୟଣ ସେବାରେ, ଜନ୍ମଭୂମିର ପୌରାଣିକ ଗୌରବ ବିଭବ ପୁନଃ ପ୍ରବର୍ତ୍ତିତ କରାଇବାରେ, ତୁମୂଳ ବିପ୍ଳବର ସୂତ୍ରପାତ କରିଅଛନ୍ତି । କିନ୍ତୁ ଏଭଳି ବିପ୍ଳବ ଇତିହାସ ପୃଷ୍ଠାରେ କେବେ ବର୍ଣ୍ଣିତ ହୋଇ ନାହିଁ । କାରଣ ଆଜିପର୍ଯ୍ୟନ୍ତ ସଂଘଟିତ ସମସ୍ତ ବିପ୍ଳବର ଅବିଚ୍ଛିନ୍ନ ଉପାଦାନ ଥିଲା ସଂଘର୍ଷ ରକ୍ତପାତ, କମାଣର ଧ୍ୱନି, ତରବାରୀର ତୀକ୍ଷ୍ଣାଘାତ । କିନ୍ତୁ ଆଜି ଭାରତୀୟ ବିପ୍ଳବର ଅହିଂସା ମୂଳମନ୍ତ୍ର, ସହଜ ଗୁଣ ଏକମାତ୍ର ଆଧାର, ସତ୍ୟ, ନ୍ୟାୟ ଓ ମୁକ୍ତିର ପ୍ରତିଷ୍ଠା ଏକମାତ୍ର ଆକାଙ୍‌କ୍ଷା । ଏ ବିପ୍ଳବରେ ଶତ୍ରୁର ଜୟ ଭ୍ରୂକୁଟି ପ୍ରଦର୍ଶନରେ ନୁହେ, ଜୟ ହୃଦୟ ପରିବର୍ତ୍ତନରେ, ପ୍ରେମର ସଞ୍ଚାରରେ, ସଂସ୍କୃତିର ମାର୍ଜିତ ଅଭିରୁଚିର ପ୍ରଚେଷ୍ଟାରେ । ପୁଣି ଭାରତୀୟ ବିପ୍ଳବ ଆଜି ଆପାତତଃ ରାଜନୈତିକ କ୍ଷେତ୍ରରେ ସର୍ବତୋଭାବେ ପ୍ରଯୁଜ୍ୟ ହେଉଥିଲେ ସୁଦ୍ଧା, ପ୍ରଚ୍ଛନ୍ନରେ ଏହାର ପରିଚୟ ସକଳ କ୍ଷେତ୍ରରେ ବିସ୍ତୃତି ଲାଭ କରିଅଛି । ଆଜି ଏ ଦେଶରେ କୌଳିକ ପ୍ରଥାର ଆବର୍ଜନା ଦୂରକରି ସନାତନ ହିନ୍ଦୁ ଧର୍ମର ଗଭୀର ତତ୍ତ୍ୱ ଦର୍ଶାଇବା ସକାଶେ ରାମକୃଷ୍ଣ, ବିବେକାନନ୍ଦ ପ୍ରମୁଖ ଚାଳିତ ଯେଉଁ ଧର୍ମ ଆନ୍ଦୋଳନ ଚାଲିଅଛି, ବାଲ୍ୟ ବିବାହ, ଅସ୍ପୃଶ୍ୟତା, ମାଦକ ଦ୍ରବ୍ୟ ସେବନ, ଦେବଦାସୀ ପ୍ରଥା, ପରମୁଖାପେକ୍ଷିତା ଦୂରକରି ସମାଜକୁ ଯେପରି ନୈତିକ ବଳରେ ସୁନିୟନ୍ତ୍ରିତ ଓ ସୁବ୍ୟବସ୍ଥିତ କରାଇବାର ପ୍ରଚେଷ୍ଟା ଦେଖାଯାଉଅଛି, ରାଜନୀତି କ୍ଷେତ୍ରରେ ରାଷ୍ଟ୍ର, ପ୍ରାଦେଶିକ, ଆଇନ, ସୈନ୍ୟ, ଅର୍ଥ ଇତ୍ୟାଦି ବିଭାଗରେ ଯେଉଁ ସ୍ୱାତନ୍ତ୍ର୍ୟ ପାଇବାର ଉପକ୍ରମ ହେଉଅଛି ଅର୍ଥନୀତି କ୍ଷେତ୍ରରେ ପଲ୍ଲୀ ସଙ୍ଗଠନଦ୍ୱାରା ବିନଷ୍ଟ କୁଟୀର ଶିଳ୍ପର ପୁନରୁଦ୍ଧାର ଦ୍ୱାରା, ବୈଦେଶିକମାନଙ୍କ ସ୍ୱାର୍ଥପୂର୍ଣ୍ଣ କୁଟିଳ ନୀତିରୁ ଦେଶକୁ ଉଦ୍ଧାର କରି ସ୍ୱଦେଶୀବାଣିଜ୍ୟ ଓ ବ୍ୟବସାୟ ଚଳାଇବାଦ୍ୱାରା ଦେଶର ଶ୍ରୀ ସାଧିତ କରିବାର ଯେ ପ୍ରବଳ ଉଦ୍ୟମ ଦେଖାଯାଉଅଛି ପ୍ରାଚ୍ୟ ଓ ପାଶ୍ଚାତ୍ୟର ଭାବ ଚିନ୍ତା ଓ ସଂସ୍କୃତିର ସମ୍ମେଳନରେ ଯେପରି ଗୋଟାଏ ମହନୀୟ ଆନ୍ତର୍ଜାତିକ, ବିଶ୍ୱବ୍ୟାପକ ଶକ୍ତି ଓ ସଭ୍ୟତା ଓ କର୍ମ-ପନ୍ଥାର ବିକାଶ ହୋଇଅଛି,—ସେହିସବୁ ବର୍ତ୍ତମାନ ଭାରତୀୟ

ଆନ୍ଦୋଳନର ଅଭିବ୍ୟକ୍ତିମାତ୍ର । ଅନ୍ୟାନ୍ୟ ବିପ୍ଳବ ପରି ଅବିବେଚିତ, ନିର୍ବିଶେଷ ଓ ଅନ୍ଧଭାବରେ ପୁରାତନର ପୂର୍ଣ୍ଣ ଧ୍ୱଂସ ଓ ତଦୁପରି ନୂତନର ପ୍ରତିଷ୍ଠା କରିବା ଏହି ବିପ୍ଳବର ଆଦର୍ଶ ନୁହେଁ । ଏହି ବିପ୍ଳବର ଅତ୍ୟୁଚ୍ଚ ଆଦର୍ଶ ପୁରାତନରେ ବା ନୂତନରେ ଦେଶ ବା ବିଦେଶରେ ଯାହାକିଛି ଉନ୍ନତ, ମହତ୍, ସୁନ୍ଦର, ତାହାର ସମ୍ମେଳନ ସତ୍ୟ-ଶିବ-ସୁନ୍ଦରଙ୍କ ଉପାସନା ।

ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ବ୍ୟାପ୍ତ ଏହି ବିପ୍ଳବର ତରଙ୍ଗ ଆମ୍ଭର ଏହି ଉତ୍କଳ-ସୈକତରେ ମଧ୍ୟ ଯଥାବିଧି ଆଘାତ ଦେଇଅଛି । ଉତ୍କଳ ଆଜି ଦରିଦ୍ର, ଉତ୍କଳବାସୀ ଆଜି ଦୁର୍ବଳ ନିଃସହାୟ—ଏ କଥା କହିବା ଅତିରଞ୍ଜନ ମାତ୍ର । ଯେଉଁ ଉତ୍କଳର ବିଜୟବାହିନୀ କାଞ୍ଚୀ ସମରକ୍ଷେତ୍ରରେ ରଣଶିଙ୍ଘା ପ୍ରଖର ଭାବରେ ବଜାଇଥିଲା, ଯେଉଁ ଉତ୍କଳର ମଣ୍ଡନମଣି ପ୍ରବଳ ପରାକ୍ରାନ୍ତ ବିଜୟନଗର ସମ୍ରାଟଙ୍କ ଠାରୁ ସାକ୍ଷୀଗୋପାଳ ମୂର୍ତ୍ତି ଏବଂ ରତ୍ନବେଦୀ ଛଡାଇ ଆଣିଥିଲେ. ଯେଉଁ ଉତ୍କଳର ବୋଇତ ଦିନେ ସୁଦୂର ସିଂହଳ, ମାଳୟ ପ୍ରଭୃତି ସ୍ଥାନରେ ଲାଗୁଥିଲା, ଯେଉଁ ଉତ୍କଳର ସୀମା ଦିନେ ଗଙ୍ଗାଠାରୁ କୃଷ୍ଣା ନଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା, ଯେଉଁ ଉତ୍କଳ ନରପତିଙ୍କ ସମ୍ମୁଖରେ ବଙ୍ଗ ନବାବ ଦିନେ ନତମସ୍ତକ ହୋଇଥିଲେ, ପୁରୀ, କୋଣାର୍କ, ଭୁବନେଶ୍ୱରର ବିଚିତ୍ର କାରୁକାର୍ଯ୍ୟ ଉତ୍କଳ-ଜନନୀର ଅଙ୍ଗ-ସୌଷ୍ଠବ ସମୃଦ୍ଧ କରୁଥିଲା; ସେହି ଉତ୍କଳ ଆଜି ଛିନ୍ନମସ୍ତା, ବିକଳାଙ୍ଗ ଓ ପ୍ରପୀଡ଼ିତା । ଏହାର କାରଣ କେବଳ ଦରିଦ୍ରତା ନୁହେ—ଯେହେତୁ ଉତ୍କଳଠାରୁ ବଳି ଦରିଦ୍ର ଦେଶ ଆଜି ଶକ୍ତିଶାଳୀ ହୋଇଅଛନ୍ତି । ଏହାର କାରଣ ପୂର୍ବୋକ୍ତ କ୍ରିୟା ପ୍ରତିକ୍ରିୟାର ଅଲଙ୍ଘନୀୟ ପ୍ରବର୍ତ୍ତନ । ଉତ୍‌ଥାନ ପରେ ପତନ, ଉନ୍ନତି ପରେ ଅବନତି ସ୍ୱତଃ ଏ ଦେଶକୁ ଘୋଟିଅଛି । କିନ୍ତୁ ବର୍ତ୍ତମାନ ପତନର ସମୟ, ଅବନତିର ସମୟ, ମୃତ୍ୟୁ ଓ ଅବସାଦର ସମୟ ବଳି ପଡ଼ିଅଛି । ବର୍ତ୍ତମାନ ପୁଣି ସୃଷ୍ଟିର ଧର୍ମ ଅନୁଯାୟ, ଶକ୍ତିର ଅପୂର୍ବ ନିୟନ୍ତ୍ରଣ ବଳରେ ସଂଯତ ସାଧନର ତୀବ୍ର ଆବେଗ ବଳରେ ପୁଣି ଉତ୍କଳର ପୁରାତନ ଗୌରବ-ବିଭବ କ୍ଷେତ୍ରରେ ବର୍ତ୍ତମାନ ବୀଜବପନ କରିବାକୁ ହେବ, ପୁରାତନ ଶୁଷ୍କ-ସମିଧରେ ନବଯୁଗର ବିପ୍ଳବ-ଇନ୍ଧନ ସଂଯୋଗ କରିବାକୁ ହେବ ଏବଂ ଏହି ଜୀବନ୍ତ ଜାତୀୟ ଯଜ୍ଞର ଆବାହକ ହେବେ ଉତ୍କଳର ନାରୀ, ଉତ୍କଳର ତରୁଣ କବି, ଦାର୍ଶନିକ, ସାଧକ ଓ କର୍ମୀ । ଭାଗ୍ୟର ବିଷୟ ଉତ୍କଳରେ ଆଜି ଏହିଭଳି ଯଜ୍ଞାନୁଷ୍ଠାନ ପ୍ରାରବ୍ଧ ହୋଇଅଛି । ଆଜି ଉତ୍କଳବାସୀ ମୃତ, ଜରଜୀର୍ଣ୍ଣ, ସଙ୍କୁଚିତ କଳେବର ଓ କ୍ଷୁବ୍ଧ ଅବସନ୍ନ ମନ ପରିହାର କରି ଆତ୍ମବଳରେ ବଳୀୟାନ ହୋଇ, ବିଶ୍ୱପ୍ରାଣରେ ପ୍ରାଣ ମିଶାଇ ଶକ୍ତିଶାଳୀ ଜାତୀୟତାର ସୁନ୍ଦର ଚିକ୍‌କଣ ସୌଧ ନିର୍ମାଣ କରନ୍ତୁ ।

●

# ସଂସ୍କାର

ଏହି ବିଂଶ ଶତାବ୍ଦୀରେ ଆମ ଦେଶରେ ବିଶେଷତଃ ଆଧୁନିକ ଶିକ୍ଷିତ ସମାଜରେ ସଂସ୍କାର ଶବ୍ଦର ବହୁଳ ପ୍ରୟୋଗ ଆମ୍ଭେମାନେ ଦେଖୁ । ଓଜସ୍ୱିନୀ ବକ୍ତୃତା ଦ୍ୱାରା, ସଂସ୍କାରକଗଣ ସମାଜରୁ କୁସଂସ୍କାର ଦୂରୀଭୂତ କରି ସୁସଂସ୍କାରର ବିମଳ କିରଣ ପ୍ରତିଭାତ କରିବାକୁ ବଦ୍ଧପରିକର ହେବାର ଦେଖାଯାଉଅଛି । ଏହା ଅବଶ୍ୟ ସ୍ପୃହଣୀୟ ଏବଂ ଏହି ସଂସ୍କାରକଗଣ ଆମ୍ଭମାନଙ୍କର ନମସ୍ୟ । କିନ୍ତୁ ବିଧିର ବିଚିତ୍ର ବିଧାନରେ ଏ ସଂସାରରେ ସଂଘଟିତ କୌଣସି କାର୍ଯ୍ୟ-ପ୍ରଣାଳୀ ଏକାବେଳକେ ଦୋଷ ଶୂନ୍ୟ ହୋଇ ନପାରେ ଏବଂ ସେହି ଭାବରେ ବର୍ତ୍ତମାନ ପ୍ରବର୍ତ୍ତିତ ସଂସ୍କାର ପ୍ରଣାଳୀରେ ମଧ୍ୟ ଅଲକ୍ଷିତ ଭାବରେ କେତେକ ଭ୍ରମାତ୍ମକ ଧାରଣା ପ୍ରବେଶ କରିବାର ଦେଖାଯାଉଅଛି ।

ପ୍ରଥମତଃ ଆମ ସଂସ୍କାରକଗଣ ବାହ୍ୟିକ (objective) କାର୍ଯ୍ୟ-କଳାପ ପ୍ରତି ସମସ୍ତ ଦୃଷ୍ଟି ଦେଇ ତହିଁର ଆଭ୍ୟନ୍ତରିକ (subjective) ତତ୍ତ୍ୱପ୍ରତି ଅବହେଳା ଦେଖାଇଥାନ୍ତି । ସେମାନେ ଜାତି-ପାର୍ଥକ୍ୟ-ଲୋପ ବିଧବା-ବିବାହ-ପ୍ରଚଳନ, ବାଲ୍ୟ-ବିବାହ-ନିରାକରଣ ଇତ୍ୟାଦି କେତୋଟି ବିଷୟ ଅନୁଧ୍ୟାନ କରି, ସୁସଂସ୍କାରର ମୂଳଭିତ୍ତି ସ୍ଥାପନରେ ଅମନୋଯୋଗୀ ହୁଅନ୍ତି । ଜାତି ପାର୍ଥକ୍ୟ, ବାଲ୍ୟ-ବିବାହ ବା ଯେ କୌଣସି କୁସଂସ୍କାର ଜାତି ବା ସମାଜର ଅଜ୍ଞାନ ବା ତଜ୍ଜନିତ ଦୁର୍ବଳତାର ଅଭିବ୍ୟକ୍ତି ମାତ୍ର । ଏହା ସୁନିଶ୍ଚିତ ଯେ, ସଂସାରର ଯାବତୀୟ ଦୁଃଖ, କଷ୍ଟ ଓ ଜଞ୍ଜାଳ କେବଳ ଦୁର୍ବଳତା ଦ୍ୱାରା ପ୍ରସୂତ ହେଉଅଛି ଏବଂ ଏହି ଦୁର୍ବଳତାର ପ୍ରତିକାର ଧନ, ବଳ, ଗୌରବ କିମ୍ବା ଅଧିକାର ନୁହେଁ—ଏହାର ଏକମାତ୍ର ଔଷଧ ଜ୍ଞାନ । ମନୁଷ୍ୟ ପ୍ରକୃତ ଜ୍ଞାନବାନ ହେଲେ, ଆତ୍ମ ବଳରେ ବଳୀୟାନ୍ ହେଲେ, ସୃଷ୍ଟିର ମହୀୟାନ୍ ଆଦର୍ଶରେ ଅନୁପ୍ରାଣିତ ହେଲେ, ସମସ୍ତ ଶୋକ, ପରିତାପ ଓ ବିଭୀଷିକାର ଅବସାନ ହୋଇଯିବ । ଏହିଭଳି ଜ୍ଞାନ ବିତରଣ, ଆତ୍ମ-ବଳର ପ୍ରତିଷ୍ଠା ଏବଂ ମହୀୟାନ୍ ଆଦର୍ଶ ସ୍ଥାପନ ପ୍ରତ୍ୟେକ ସଂସ୍କାରକଙ୍କ ସର୍ବାଦୌ କର୍ତ୍ତବ୍ୟ । ଏପରି ଭାବରେ ସଂସ୍କାରର ମୂଳନୀତିଶିକ୍ଷା ଦାନ (Educative) । ଏହା ଦିନେ ଦୁଇଦିନ କିମ୍ବା ବର୍ଷେ ଦୁଇ ବର୍ଷର କାର୍ଯ୍ୟ ନୁହେଁ । କିନ୍ତୁ ଏଥିପାଇଁ ବ୍ୟସ୍ତ ହେବାର କୌଣସି ପ୍ରୟୋଜନ ନାହିଁ । ଯୁଗ ଯୁଗ ବ୍ୟାପୀ ଯେଉଁ ଅଜ୍ଞାନ ଓ ଦୁର୍ବଳତାର ସଞ୍ଚାର ହୋଇଅଛି, ତାହାର ବିନାଶ କଥା କଥାରେ, ବକ୍ତୃତାରେ କିମ୍ବା କାଳି କଲମରେ ହୋଇନପାରେ । ବର୍ତ୍ତମାନ ସଂସ୍କାର reform ଅର୍ଥରେ ଗ୍ରହଣ

କରଯାଉଛି; କିନ୍ତୁ reform ସମାଜର କୋଟୋଟି ପ୍ରଥାର ବାହ୍ୟିକ ପରିବର୍ତ୍ତନକୁ ବୁଝାଏ । ପ୍ରକୃତରେ ସଂସ୍କାର Subconscious ସ୍ତରରେ ଗ୍ରହଣ କରିବା ଉଚିତ— ଅର୍ଥାତ୍ ମାନବର ଚିତ୍ତବୃତ୍ତି ଗଠନ ପ୍ରୟାସୀ ସମସ୍ତ ଚିନ୍ତା, ଆକାଂକ୍ଷା, ଆଦର୍ଶ ଓ ଅଭିରୁଚି ସଂସ୍କାରର ଅଭିପ୍ରାୟ ବୋଲି ଧରଯିବା ଉଚିତ । ଏପରି ଭବରେ ସଂସ୍କାର ମାନବ ଜୀବନ ଯାପନ ତଥା ସୃଷ୍ଟିର କ୍ରମିକ ବିକାଶରେ ନିମିତ୍ତ ହୁଏ । ମାନବ ଜୀବନର ଗତି ତଥା ସୃଷ୍ଟିର କ୍ରମବିକାଶର ଗତି ଫେରଇଦେବା କ'ଣ ଏଡ଼େ ସହଜ କଥା ? ଏହି ଦୃଷ୍ଟିରୁ ସଂସ୍କାରକଙ୍କ ବାକ୍ୟ ଆଡମ୍ବର ଓ ଆସ୍ଫାଳନ ବୃଥା ପ୍ରୟାସ ମାତ୍ର । ଅସୀମ ନିୟନ୍ତ୍ରିତ ସୃଷ୍ଟି ଉତ୍‌ଥାନ ପତନର ଚକ୍ର ଆବର୍ତ୍ତନରେ ଚିରନ୍ତନ ଭବରେ ଗ୍ଭଲିଅଛି । ଆମ୍ଭମାନଙ୍କର କର୍ତ୍ତବ୍ୟ କେବଳ ସେହି ଚିରନ୍ତନ ସୃଷ୍ଟି ବିକାଶର ନିମିତ୍ତ ହୋଇ, ତହିଁରେ ନିଜ ନିଜର କ୍ଷୁଦ୍ରଶକ୍ତି ବିନିଯୋଗ କରିବା ।

ଦ୍ୱିତୀୟତଃ ଆମର ସଂସ୍କାରକଗଣ ପ୍ରାଚୀନ କୁସଂସ୍କାର ବିରୁଦ୍ଧରେ ଖଡ୍‌ଗ-ହସ୍ତ ହୋଇ ନିଜେ ନିଜେ ବୈଜ୍ଞାନିକ-କୁସଂସ୍କାର (superstition) ପାଶରେ ଆବଦ୍ଧ ହୋଇପଡ଼ନ୍ତି । ପ୍ରାଚୀନ କୁସଂସ୍କାର ସଙ୍ଗେ ଯାହାକିଛି ସୁନ୍ଦର, ମହତ୍, ଉପାଦେୟ, ତାହା ସମୂଳେ ଉତ୍ପାଟନ କରି, ଆଧୁନିକ ଯୁଗର ମହତ୍ ଓ ସୁନ୍ଦର ସଙ୍ଗେ ନୀଚ, ଘୃଣ୍ୟ ଓ ଅନିଷ୍ଟକର ମଧ୍ୟ ସଜୀବ ରଖିବାକୁ ଏମାନେ ଯତ୍ନ କରନ୍ତି । ଏମାନଙ୍କ ମତରେ ଧର୍ମ କେବଳ ସମସ୍ତ କୁସଂସ୍କାରର ମୂଳ ହେତୁ । ପରମେଶ୍ୱର ମନୁଷ୍ୟର ଉର୍ବର ମସ୍ତିଷ୍କ ଆବିଷ୍କୃତ ଗୋଟାଏ ଅଦ୍ଭୁତ ଜିନିଷ ଏବଂ ଏ ବିଂଶ ଶତାବ୍ଦୀର ଆନ୍ତର୍ଜାତିକ ଭବଧାର ପ୍ଲାବନରେ ଏହି ସବୁ ଧର୍ମ ଓ ଈଶ୍ୱରଙ୍କ ଅନୁନ୍ନତ ଚିନ୍ତା ଧୋଇ ହୋଇଯିବା ଆବଶ୍ୟକ । ମନୁ, ଯାଜ୍ଞବଲ୍‌କ୍ୟ ବା ପରାଶର ଯାହା କହିଅଛନ୍ତି, ସେ ସବୁ କେତୋଟା ସମାଜର ଧରବନ୍ଧା ନିୟମ ଏବଂ ଟିଣ୍ଡେଲ, ହିଗେଲ, ଡ଼ାରଉଇନ ଯାହା କହୁଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ୍ୟ । କିନ୍ତୁ ଏଭଳି ସଂସ୍କାରକଗଣଙ୍କ ମଧ୍ୟରୁ କେତେଜଣ ହିନ୍ଦୁଧର୍ମର ମୂଳଗ୍ରନ୍ଥ ବେଦ, ବେଦାଙ୍ଗ, ଉପନିଷଦ୍ ଓ ଷଡ୍ ଦର୍ଶନ ଗଭୀର ମନୋନିବେଶ ସହକାରେ ଅଧ୍ୟୟନ କରି-ଅଛନ୍ତି ? କେତେଜଣ ହିନ୍ଦୁଧର୍ମର ଜୀବାତ୍ମା ଓ ପରମାତ୍ମାର ସଂଯୋଗ, ପ୍ରକୃତିର ମାୟାବରଣ ମଧ୍ୟରେ ପୁରୁଷର ଶାଶ୍ୱତ ନିର୍ବିକଳ୍ପ ପୂର୍ଣ୍ଣ ବିକାଶ ପ୍ରତ୍ୟକ୍ଷୀଭୂତ କରିଅଛନ୍ତି ? ହିନ୍ଦୁ ଧର୍ମର ତ୍ୟାଗ, ଲୋକସେବା, ସନ୍ନ୍ୟାସ, ଆଦର୍ଶର ପ୍ରେରଣାରେ ଉତ୍‌ଫୁଲ୍ଲ ହୋଇଅଛନ୍ତି ? କୌଣସି ବିଷୟର ଗଭୀର ତତ୍ତ୍ୱକୁ ନ ଯାଇ କେବଳ ବାହ୍ୟ ଆବରଣ ମଧ୍ୟରେ ସୀମାବଦ୍ଧ ହୋଇ ରହିଲେ ଏପରି ଅନୁଦାର ସଙ୍କୁଚିତ ଭବର ଉଦ୍ରେକ ହେବା ସ୍ୱାଭବିକ । ଉଦାହରଣ ସ୍ୱରୂପ କେତୋଟି ବିଷୟର ଆଲୋଚନା କରଯାଉ—

ବର୍ତ୍ତମାନ ଆମର କେତେଜଣ ସଂସ୍କାରକ ଭବନ୍ତି ଯେ, ପ୍ରତିମା ପୂଜା ଭଳି କଦାଗ୍ରହ ହିନ୍ଦୁଧର୍ମ ଛଡା ଅନ୍ୟ ଧର୍ମରେ ଦେଖିବାକୁ ମିଳେ ନାହିଁ ଏବଂ ଏହି କଦାଗ୍ରହ ପରିତ୍ୟାଗ ନ କରିବା ପର୍ଯ୍ୟନ୍ତ ଜାତିର ପତନ ଅବଶ୍ୟମ୍ଭାବୀ । କିନ୍ତୁ ଗଭୀର ଭବେ ଆଲୋଚନା କଲେ ଦେଖାଯିବ, ପ୍ରତିମା-ପୂଜା ମନୁଷ୍ୟର ସଗୁଣ-ବ୍ରହ୍ମ (Personal-God) କଳ୍ପନାର ଅଭିବ୍ୟକ୍ତି ମାତ୍ର । ହିନ୍ଦୁମାନେ ମତ୍ସ୍ୟ, କଚ୍ଛପ ଇତ୍ୟାଦି ଦଶ ଅବତାର ମାନନ୍ତି । ଖ୍ରୀଷ୍ଟିୟାନ୍ କପୋତାକାରରେ Holy ghostଙ୍କ ଦିବ୍ୟ ଶକ୍ତିର ଅବତରଣ ଏବଂ ସ୍ୱର୍ଗଦୂତମାନଙ୍କ ନୃତ୍ୟ ଇତ୍ୟାଦିରେ ବିଶ୍ୱାସ କରନ୍ତି ଏବଂ ମୁସଲମାନ କୌଣସି ତୀର୍ଥସ୍ଥ ଗୋଟାଏ ପ୍ରସ୍ତର ବିଶେଷରେ ଚୁମ୍ବନ ନ ଦେବାଯାଏ ଇହ ଜନ୍ମରେ ମୁକ୍ତି ନାହିଁ ବୋଲି ବିଶ୍ୱାସ କରନ୍ତି । ଅବଶ୍ୟ ଏଥିରୁ ଗୋଟିଏ ଭଲ ଓ ଅନ୍ୟଟି ଅସାର, ଏପରି କହିବା ଏଠି ଅଭିପ୍ରେତ ନୁହେଁ । ଏଠାରେ ବକ୍ତବ୍ୟ ଏତିକି ଯେ ସାଧାରଣ ମନୁଷ୍ୟର ଚିତ୍ତବୃତ୍ତି ଓ ପ୍ରତିଭ ପ୍ରଥମେ ନିର୍ଗୁଣ, ନିର୍ବିକଳ୍ପ ବ୍ରହ୍ମର କଳ୍ପନା କରିପାରେ ନାହିଁ । ଦେଶ, କାଳ, କାର୍ଯ୍ୟ-କାରଣ (Time space & cause-action) ଦ୍ୱାରା ଆବଦ୍ଧ ମନ ପ୍ରଥମେ ଅସୀମର ପରିକଳ୍ପନା ସସୀମ ଦ୍ୱାରା କରିବାକୁ ବାଧ୍ୟହୁଏ । ଏପରି ସ୍ତରେ ସ୍ତରେ ଊର୍ଦ୍ଧ୍ୱକୁ ଉଠି ଶେଷରେ ନିଜେ ଆତ୍ମପ୍ରତିଷ୍ଠାରେ ସମର୍ଥ ହୁଏ । କିନ୍ତୁ ଚିନ୍ତାଧାରାର ପ୍ରଥମ ସ୍ଫୁରଣରେ, ପ୍ରତିଭର ପ୍ରଥମ ବିକାଶରେ ଆଦର୍ଶର ଶେଷସୀମା ସ୍ପର୍ଶ ଅସମ୍ଭବ । ଯେହେତୁ ପ୍ରତ୍ୟେକ ଧର୍ମରେ ଆମ୍ଭେମାନେ ଦ୍ୱୈତ-ମତ (Dualism)ର ପ୍ରାଦୁର୍ଭାବ ଦେଖୁ । ଏହି ଦ୍ୱୈତଭବ ଈଶ୍ୱରଙ୍କ ସମସ୍ତ ସସୀମ ପରିକଳ୍ପନାର ମୂଳଭିତ୍ତି । କିନ୍ତୁ କେବଳ ଏତିକିରେ ମନୁଷ୍ୟର ଅସୀମ ପ୍ରାଣରେ ସନ୍ତୁଷ୍ଟ ଜାତହୁଏ ନାହିଁ । ତେଣୁ ହିନ୍ଦୁଧର୍ମ ଏ ଦିଗରେ ଆହୁରି ଊର୍ଦ୍ଧ୍ୱକୁ ଉଠି ଅଦ୍ୱୈତ ଭବର ପ୍ରଚାର କରିଅଛି । ଏ ସବୁର ଗଭୀର-ତତ୍ତ୍ୱ ପ୍ରତି ଦୃଷ୍ଟି ନ ଦେଇ କେବଳ 'ପ୍ରତିମା ପୂଜା ଛାଡ ଛାଡ଼' ବୋଲି ଚିତ୍କାର କରିବା ଅବିମୃଶ୍ୟକାରିତା ନୁହେ କି ? ଆଚ୍ଛା, ଆଜି ଯଦି କୋଟି କୋଟି ଲୋକ ପ୍ରତିମାଗୁଡ଼ିକୁ ଭଙ୍ଗି ଦିଅନ୍ତି, ତା ପରେ କଣ କରିବେ । କଥାଟା କହିବା ସହଜ । କୌଣସି ଜିନିଷ ଭଙ୍ଗିବା ବଡ ସହଜ, କିନ୍ତୁ ଗଢ଼ିବା ବଡ଼ କଷ୍ଟସାଧ୍ୟ । ସମାଜ ଆଗରେ କୌଣସି ଗଠନମୂଳକ ଆଦର୍ଶ ଓ କର୍ମପନ୍ଥା ସ୍ଥାପିତ ନକରି କେବଳ ଧ୍ୱଂସର ତାଣ୍ଡବଲୀଳା ଲଗାଇଦେବା ପସନ୍ଦ କାର୍ଯ୍ୟନୁହଁ । ନିର୍ଗୁଣ ବ୍ରହ୍ମର ଉପାସନା ନିର୍ଗୁଣମାନେ କରିପାରିବେ ଅର୍ଥାତ୍ ଯେଉଁ ମନୁଷ୍ୟ ସତ୍ତ୍ୱ-ରଜ-ତମ ତିନିଗୁଣର କ୍ରିୟା-ପ୍ରତିକ୍ରିୟାର ଊର୍ଦ୍ଧ୍ୱକୁ ଉଠିଅଛି, ନାମ-ରୂପର ମାୟାକୁ ପ୍ରତ୍ୟାହାର କରିଅଛି, କର୍ମବୀଜକୁ ନଷ୍ଟ କରିଅଛି--ଅର୍ଥାତ୍ କାୟ, ମନ ଓ ମେଧାକୁ ଆତ୍ମ-ପ୍ରତିଷ୍ଠାରେ ବିନିଯୋଗ କରିଅଛି, ସେପରି ମନୁଷ୍ୟ ନିର୍ଗୁଣ ବ୍ରହ୍ମର ପରିକଳ୍ପନା କରିବେ । ଏହା ଅବଶ୍ୟ ଅତି ଉଚ୍ଚ ଆଦର୍ଶ ଏବଂ ଏହି ଆଦର୍ଶ ହିନ୍ଦୁ-

ଧର୍ମ-ମୁକୁଟର ମଉଡ଼ମଣି । କିନ୍ତୁ ଆଦର୍ଶର ଉଚ୍ଚତମ ସୋପାନକୁ ଉଠିବାକୁ ବିହିତ ଶ୍ରେଣୀର ବ୍ୟବସ୍ଥା ନକରି, ତ୍ୟାଗ, ନିଷ୍ଠା ଓ ସଂଯମ ନଥାଇ, କର୍ମମୟ, ଦୁଃଖ-ସୁଖ-କ୍ଲିଷ୍ଟ ସଂସାରରେ ଅସଂଖ୍ୟ ବ୍ୟଭିଚାରର ଆବର୍ତ୍ତନ ସ୍ୱରୂପ ଶୁଷ୍କ 'ନିର୍ଗୁଣ-ବ୍ରହ୍ମ' ଚିନ୍ତାର ବିଡମ୍ବନା ମାତ୍ର । ବିଶେଷତଃ ପ୍ରତିମା ପୂଜାଦ୍ୱାରା କାହାରି କୌଣସି ଅନିଷ୍ଟ ଘଟୁନାହିଁ । ଏଥିରେ ଇସଲାମ ଦୀକ୍ଷାର "ତରବାରି ଦ୍ୱାରା ଜୟ ନୀତି" ବା ଖ୍ରୀଷ୍ଟିଆନ୍ ଦୀକ୍ଷାର "ବିଧର୍ମୀ ପ୍ରତି ଅଭିଶାପ" ନୀତିର ସ୍ଥାନ ନାହିଁ । ପୁଣି ପ୍ରତିମା-ପୂଜା ରାମକୃଷ୍ଣ ପରମହଂସଙ୍କ ଭଳି ଜ୍ଞାନୀ ଓ ସାଧକ ପ୍ରସୂତ କରିଅଛି । ଏହିସବୁ ଦୃଷ୍ଟିରେ, ଆଦର୍ଶ ପ୍ରତ୍ୟକ୍ଷୀଭୂତ କରିବାର ପନ୍ଥା ସୁଗମ ଥିଲେ ପ୍ରତିମା-ପୂଜା ଗୋଟାଏ ହିତକର ନିମିତ୍ତ ବୋଲିବାକୁ ହେବ । ଅବଶ୍ୟ ଏହା ଶେଷ ଲକ୍ଷ୍ୟ, ଏହା କେହି କହୁନାହିଁ ।

ସଂସାରକଙ୍କ କଟୂ-କଟାକ୍ଷର ଦ୍ୱିତୀୟ ବିଷୟ ଜାତି-ପ୍ରଥା । ଅବଶ୍ୟ ଜାତି ପାର୍ଥକ୍ୟ ଅସଂଖ୍ୟ ଶାଖା-ପ୍ରଶାଖା ଭେଦକରି ସଂକୀର୍ଣ୍ଣତା ଓ ମନୋମାଳିନ୍ୟ ଦ୍ୱାରା ଭାରତୀୟ ଜାତୀୟ ଶକ୍ତିକୁ ଯେପରି ରୁଦ୍ଧ କରି ରଖିଅଛି, ତାହା ପରିତାପର ବିଷୟ । କିନ୍ତୁ, ସେଥି ସଙ୍ଗେ ମନେ ରଖିବାକୁ ହେବ ଯେ, ଏହି ଜାତି ପାର୍ଥକ୍ୟ କେବଳ ଆମ ଦେଶରେ ପ୍ରଚଳିତ ନୁହେଁ, ଏହା ଆହୁରି ଭୀଷଣ ଆକାରରେ ପାଶ୍ଚାତ୍ୟ ଦେଶ-ମାନଙ୍କରେ ପ୍ରଚଳିତ ଅଛି । ସେଠାରେ ମଜୁରିଦାର, ମଧ୍ୟବିତ୍ତ ଓ ଉଚ୍ଚପଦସ୍ଥ ବ୍ୟକ୍ତିମାନଙ୍କ ମଧ୍ୟରେ ଦ୍ୱେଷ ଓ ହିଂସା ଦେଖାଯାଏ । ଆମ ଦେଶରେ ଆଜି ଜାତିମାନଙ୍କ ମଧ୍ୟରେ ପାର୍ଥକ୍ୟ ଥିଲେ ସୁଦ୍ଧା, ଅସ୍ପୃଶ୍ୟତା ବ୍ୟାଧି ଉତ୍କଟ ଭାବରେ ପ୍ରଚଳିତ ଥିଲେ ସୁଦ୍ଧା, ଜାତି ଜାତି ମଧ୍ୟରେ କୌଣସି ଅର୍ଥନୈତିକ ବା ନୈତିକ ବା ସାଂସାରିକ ବିଶୃଙ୍ଖଳା ନାହିଁ । ଆମ ଦେଶରେ ସକଳ ଜାତି ପୂର୍ଣ୍ଣ ସାହଚର୍ଯ୍ୟ ପାଇ ସମାଜ ବା ଦେଶର ସକଳ ପ୍ରକାର ଧର୍ମ-କର୍ମ କରନ୍ତି । ପୁଣି ମନେ ରଖିବାକୁ ହେବ, ଦେଶର ବିବିଧ ସମସ୍ୟା ଯେତେ ଜଟିଳ ଓ ପରସ୍ପର ନିର୍ଭରଶୀଳ ହେଉଅଛି ଏବଂ ଯେତେଦିନ ଯାଏ ଗୁଣ-ତ୍ରୟ ବିଶିଷ୍ଟ ମନୁଷ୍ୟ ସ୍ୱଭାବରେ କ୍ରିୟା-ପ୍ରତିକ୍ରିୟା ଚାଲିଅଛି, ସେତେଦିନ ଯାଏ ଜାତି-ବିଭାଗ ରହିବ । କାରଣ ଜାତି-ବିଭାଗ ବହୁଦର୍ଶୀ ମନୀଷୀଙ୍କ ଦ୍ୱାରା ମନୁଷ୍ୟ ଚିତ୍ତବୃତ୍ତିର ମୂଳ ଉପାଦାନ ଉପରେ ଗଠିତ ହୋଇଅଛି । କିନ୍ତୁ ଜାତି-ବିଭାଗ ରହିବ ବୋଲି ଯେ ଗୋଟାଏ ଜାତି ଅନ୍ୟ ଗୋଟାଏ ଜାତି ଉପରେ ଅଯଥା ଅଧିକାର ଓ ଶାସନ ଚଳାଇବ, ତାହା ନୁହେଁ । ଏହି ଅଯଥା ଅଧିକାର ଓ ଶାସନ ହିଁ ବର୍ତ୍ତମାନ ବିଦ୍ୱେଷର କାରଣ । କିନ୍ତୁ ଅତି ପୂର୍ବେ ବୈଦିକ ଯୁଗରେ ଏ ବିଦ୍ୱେଷର ଆଦୌ ଅବକାଶ ନଥିଲା । ସେତେବେଳେ ଗୋଟିଏ ଜାତିରୁ ଉର୍ଦ୍ଧ୍ୱ ଜାତିକୁ ଉଠିବାକୁ ପ୍ରୟାସ ଓ ସୁବିଧାର ସୁଯୋଗ ଦିଆଯାଇଥିଲା ଏବଂ ଏହି

ବିକାଶୋନ୍ମୁଖ ଶୃଙ୍ଖଳାର ଆଦର୍ଶ ରଖାଯାଇଥିଲା ବ୍ରାହ୍ମଣତ୍ୱ ବା ଋଷିତ୍ୱ । ଆଜିକାଲି ବ୍ରାହ୍ମଣତ୍ୱ ଏକ ଅଭିଶପ୍ତ ବସ୍ତୁପରି ବୋଧ ହେଉଅଛି । ସମାଜର ସକଳ ପ୍ରକାର ଦୁର୍ବଳତା, ବିଶୃଙ୍ଖଳତା, ଭରତର ପତନ ଓ ବୈଦେଶିକ ଶାସନ, ବ୍ରାହ୍ମଣଙ୍କ ହିଂସା ଓ ସଙ୍କୀର୍ଣ୍ଣ ପ୍ରବୃତ୍ତିର ଫଳ ବୋଲି ଧରଯାଉଅଛି । ଅବଶ୍ୟ ଏ ନିନ୍ଦା ସକାଶେ ବ୍ରାହ୍ମଣ ଅନେକ ପରିମାଣରେ ଦାୟୀ । ଯେଉଁ ବ୍ରାହ୍ମଣ ଦିନେ ସନ୍ନ୍ୟାସବ୍ରତ ଅବଲମ୍ବନ ପୂର୍ବକ ତ୍ୟାଗର ଜ୍ୱଳନ୍ତ ଦୃଷ୍ଟାନ୍ତ ଜଗତ ସମ୍ମୁଖରେ ପ୍ରଦର୍ଶାଉଥିଲେ, ସମାଜରୁ ଅଜ୍ଞାନ ଅନ୍ଧକାର ଦୂରକରି ସଭ୍ୟତା, ସଂସ୍କୃତି ଓ ଜ୍ଞାନର ଦିବ୍ୟ ଆଲୋକ ପ୍ରସାରିତ କରିଥିଲେ, ବ୍ରହ୍ମତେଜରେ, ସତ୍ୟ ନ୍ୟାୟ ବଳରେ ମୁକ୍ତିର ଦ୍ୱାର ଉଦ୍‌ଘାଟିତ କରିଥିଲେ, ସେହି ବ୍ରାହ୍ମଣ ଆଜି ହୀନବୀର୍ଯ୍ୟ, କୁଳାଗ୍ରହୀନ, କଦାଗ୍ରହଲୀନ ଓ ବିଷୟୀ ହୋଇ ପଡ଼ିଅଛନ୍ତି । ସେଥିପାଇଁ ସେ ନିଜେ ଦାୟୀ ନୁହନ୍ତି ତ ଆଉ କିଏ ? ଏପରି ଅବସ୍ଥାରେ ବର୍ତ୍ତମାନ ବ୍ରାହ୍ମଣଙ୍କ ଦାୟିତ୍ୱ ଗୁରୁତର । ଯୁଗବ୍ୟାପୀ ହିନ୍ଦୁଧର୍ମ ଓ ସଂସ୍କୃତି ସ୍ୱରୂପ ଅମୂଲ୍ୟ ଭଣ୍ଡାରର କୁଞ୍ଚିକା ସେମାନଙ୍କ ହସ୍ତରେ ନ୍ୟସ୍ତ । ସେହି ଭଣ୍ଡାରର ଦ୍ୱାର ଫିଟାଇ ତହିଁର ଅମୂଲ୍ୟ ରତ୍ନର ଅନିତ୍ୟ ସୌନ୍ଦର୍ଯ୍ୟ ଓ ପ୍ରଭବ ବିସ୍ତାର କରିବାକୁ ସେମାନଙ୍କର ଆଗଭର ହେବା ଉଚିତ । ପୂର୍ବପୁରୁଷଙ୍କ ସୁଯୋଗ୍ୟ ଦାୟାଦ ହେବାକୁ ଚେଷ୍ଟା କରିବା ସେମାନଙ୍କର ପ୍ରଥମ କର୍ତ୍ତବ୍ୟ । ସେମାନଙ୍କର ବୁଝିବା ଉଚିତ ଯେ, ଅଯଥା ଅଧିକାର ଓ ନିରଙ୍କୁଶ କ୍ଷମତାର ଯୁଗ ବର୍ତ୍ତମାନ ଶେଷ ହୋଇଅଛି । ବର୍ତ୍ତମାନ ନିଜଗୁଣ ଓ କର୍ମ ଅନୁସାରେ ଜୀବନ ନିୟନ୍ତ୍ରିତ ଓ ସମାଜରେ ସ୍ଥିତି ପ୍ରତିଷ୍ଠିତ କରିବାର ସମୟ ଆସିଅଛି । କିନ୍ତୁ କାଳର କୁଟିଳ ଗତିରେ ବ୍ରାହ୍ମଣଙ୍କ ବ୍ୟକ୍ତିଗତ ଅବସ୍ଥା ଆଜି ଶୋଚନୀୟ ହୋଇଥିଲେ ସୁଦ୍ଧା 'ବ୍ରାହ୍ମଣତ୍ୱ' ଆଦର୍ଶ ହିନ୍ଦୁ ଆଗରେ ପ୍ରଭବନ୍ତ ହୋଇ ଜଳି ଉଠୁଛି । ସେହି ଆଦର୍ଶର ପ୍ରେରଣାରେ ନିବୃତ୍ତି ପନ୍ଥା ଅନୁସରଣ ନକରି, ଅହଂର ବିକାଶ ନ କରି, ଲୋକସେବାରେ ସ୍ୱାର୍ଥକୁ ଆହୁତି ନ ଦେଇ, ସଂଯମ ବଳରେ ବିଶ୍ୱ-ବିଜୟୀ ନହୋଇ, ନିମ୍ନରୁ ଉର୍ଦ୍ଧ୍ୱକୁ ଉଠିବାର ପ୍ରୟାସ ନକରି, ପାଶ୍ଚାତ୍ୟର ଚାକଚକ୍ୟରେ ଭୁଲିଯାଇ ଉର୍ଦ୍ଧ୍ୱରୁ ନିମ୍ନକୁ ଖସିବାକୁ ନଚେତ୍ ପାରି ନପାରି ସବୁ ଧ୍ୱଂସ କରି ସୀମାବଦ୍ଧ ସଙ୍କୁଚିତ ଜୀବନ କଟାଇବାକୁ ଚିତ୍କାର କରିବା ଅବିମୃଶ୍ୟକାରିତା ନୁହେ କି ? ବର୍ତ୍ତମାନ ଅଧଃପତନ ସକାଶେ ବ୍ରାହ୍ମଣ ଦାୟୀ ହେଲେ କ୍ଷତ୍ରିୟ, ବୈଶ୍ୟ କିମ୍ବା ଶୂଦ୍ର ତତୋଽଧିକ ପରିମାଣରେ ଦାୟୀ । ସର୍ବପ୍ରଥମେ ସେମାନଙ୍କୁ ଜ୍ଞାନାଲୋକରୁ ଦୂରନ୍ତକୁ ଯିବାକୁ କିଏ କହିଥିଲା ? ସଂସ୍କୃତ ଚର୍ଚ୍ଚା କରି, ବେଦ ବେଦାନ୍ତ ପୁରାଣ ଉପନିଷଦ୍‌ରେ ପ୍ରବେଶ କରି ହିନ୍ଦୁଧର୍ମର ମହାୟାନ ଶକ୍ତିରେ ଉଦ୍‌ବୁଦ୍ଧ ହେବାକୁ କିଏ ସେମାନଙ୍କୁ ମନା କରିଥିଲା ? ନିଜର ଦୋଷ ଚପାଇ ରଖି ଅନ୍ୟକୁ ଦୋଷୀ ସାବ୍ୟସ୍ତ କରିବା ମନୁଷ୍ୟର ସ୍ୱଭବଗତ । ପୁଣି ନିଜ ଦୋଷ ସ୍ୱୀକାର କରି ତାହାର ପ୍ରତିକାର କରିବା ପ୍ରକୃତ

ମନୁଷ୍ୟର କାର୍ଯ୍ୟ । ସ୍ଥୂଳତଃ କହିବାକୁ ଗଲେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏକାଠି ବସି ଗୋଟାଏ ଭୋଜନର ବ୍ୟବସ୍ଥା କରି ପରକ୍ଷଣରେ ସ୍ୱାର୍ଥ ସଂରକ୍ଷଣ ସକାଶେ ଅର୍ଥଶୋଷଣ ନୀତି ଧରିଲେ ଜଣେ, ଅସ୍ପୃଶ୍ୟ ସଙ୍ଗେ କରମର୍ଦ୍ଦନ କରି ପରକ୍ଷଣରେ ଅସ୍ପୃଶ୍ୟଙ୍କ ଅଜ୍ଞାନ ତା ଅପରିଚ୍ଛନ୍ନତା ପ୍ରତି ନାସିକା କୁଞ୍ଚିତ କଲେ, ପ୍ରକୃତ ସଂସ୍କାର ହେଲନାହିଁ । ସଂସ୍କାରର ମୂଳ ଉଦ୍ଦେଶ୍ୟ ଜୀବନର ପ୍ରତ୍ୟେକ ସ୍ତରରେ ସମାଜର ପ୍ରତ୍ୟେକ କ୍ଷେତ୍ରରେ ସ୍ନେହ, ଦୟା, କ୍ଷମା ଓ ସୌଜନ୍ୟର ପ୍ରସାର, ସ୍ୱାର୍ଥ ବିନାଶ, ଲୋକସେବାର ମହତ୍ ଆଦର୍ଶ ସ୍ଥାପନ ।

ବର୍ତ୍ତମାନ ନାରୀ ସମାଜରେ ମଧ୍ୟ ସଂସ୍କାରର ପ୍ରାଦୁର୍ଭାବ ବିଶେଷ ଭାବରେ ପରିଲକ୍ଷିତ ହୁଏ । ସମାଜର ଶୃଙ୍ଖଳା ଛିନ୍ନକରି ମହତ୍ ପ୍ରାଣା ନାରୀଗଣ ଆଜି ଯେପରି ଲୋକସେବାରେ, ଦେଶସେବାରେ ଅଗ୍ରସର ହୋଇଅଛନ୍ତି ତାହା ଆଧୁନିକ ଶିକ୍ଷା ଓ ସଭ୍ୟତାର ପରିଚାୟକ; କିନ୍ତୁ ଏଥିରେ ମଧ୍ୟ ପଦ ସ୍ଖଳନର ଆଶଙ୍କା ଅଛି । ଅବଶ୍ୟ ପଦ ସ୍ଖଳନର ଆଶଙ୍କା କରି ଆମ୍ଭେମାନେ ସର୍ବଦା 'ଯେଉଁ ତିମିରେ ସେହି ତିମିରେ' ରହିବା, ତାହା ମୁଁ କହୁନାହିଁ । ଦେଖିବାକୁ ଗଲେ ଜୀବନ-ମୃତ୍ୟୁଠାରୁ ଯେ କୌଣସି ପ୍ରକାର ସ୍ପନ୍ଦନ ଅଧିକ ଶ୍ରେୟସ୍କର । ଏ କର୍ମମୟ ଯୁଗରେ କର୍ମ-ପ୍ରବୃତ୍ତି ଚରିତାର୍ଥ କରିବାକୁ ସଂପୂର୍ଣ୍ଣ ପ୍ରଶ୍ରୟ ଦେବା ଆବଶ୍ୟକ; କିନ୍ତୁ ସେଥି ସଙ୍ଗେ କେବଳ କର୍ମାଭିମାନର ଆଦର୍ଶକୁ ଉପେକ୍ଷିତ କରି ମହତ୍ କୁତ୍ସିତ ସକଳ ପ୍ରକାର କର୍ମ କରିବା ବାଞ୍ଛନୀୟ ନୁହେ । ପ୍ରଥମେ ଆଜିକାଲି ନାରୀ-ସମାଜ ସଂସ୍କାର ବସନ-ଭୂଷଣ ପରିବର୍ତ୍ତନ, ହାବଭାବ ଚାଲିଚଳଣରେ ପାଶ୍ଚାତ୍ୟ ନୀତି ଅନୁସରଣ, ସିନେମା ଥିଏଟର ସନ୍ଦର୍ଶନ, ମଟର ଯୋଗେ ସାନ୍ଧ୍ୟକାଳୀନ ପରିଭ୍ରମଣ ଇତ୍ୟାଦିରେ ପର୍ଯ୍ୟବସିତ ହୋଇଅଛି । ଅବଶ୍ୟ ଏହି ବାହ୍ୟିକ କ୍ରିୟାକଳାପଗୁଡ଼ିକ ନିନ୍ଦନୀୟ, ଏହା କେହି କହିପାରିବେ ନାହିଁ । ମନୁଷ୍ୟ ଜନ୍ମ ପାଇ, ଏ ସଭ୍ୟ ଯୁଗର ସମସ୍ତ କଳା ସୌନ୍ଦର୍ଯ୍ୟ ଉପଭୋଗ କରିବା ନିତାନ୍ତ ବାଞ୍ଛନୀୟ । କିନ୍ତୁ ତହିଁରେ ପ୍ରାଣର ତୃଷା ସଂପୂର୍ଣ୍ଣ ମେଣ୍ଟିବାର ନୁହେ । ଅନ୍ତର୍ଜଗତର ପ୍ରବଳ ତୃଷ୍ଣା, ସତ୍ୟ ଓ ମୁକ୍ତିର ଉଚ୍ଛ୍ୱସିତ ଅନୁସନ୍ଧାନ, ତ୍ୟାଗ ଓ ସେବାର ପାରମ୍ପରିକ ପ୍ରବୃତ୍ତି, କେବଳ ବାହ୍ୟ କ୍ରିୟାକଳାପରେ ବିନିଯୋଗ କରଯାଇ ପାରିବ ନାହିଁ । ଏଥିପାଇଁ ଆଜି ଭାରତୀୟ ନାରୀକୁ ଅତୀତର ସମୁଜ୍ଜ୍ୱଳ ଚିତ୍ର ପ୍ରତି ଦୃଷ୍ଟି ଫେରାଇବାକୁ ହେବ । ଭାରତୀୟ ପୌରାଣିକ ଯୁଗର ନାରୀ ଚରିତ୍ର-ଚିତ୍ରଣ ଓ ଆଦର୍ଶ ପ୍ରତିଷ୍ଠା ତୁଲ୍ୟ ବିଚିତ୍ର ଓ ମହତ୍ ଉପାଦାନ ଜଗତର ଅନ୍ୟ କୌଣସି ଇତିହାସ ବା ପରମ୍ପରାରେ ନାହିଁ । ସୀତାଙ୍କ ସତ୍ୟ-ପ୍ରତି, ସାବିତ୍ରୀଙ୍କ ଦିବ୍ୟଜ୍ଞାନ, ଦମୟନ୍ତୀଙ୍କ ପତି-ଭକ୍ତି, ଗୋପାଙ୍ଗନାଙ୍କ ନିଃସ୍ୱାର୍ଥ ଆବେଗପୂର୍ଣ୍ଣ ପ୍ରେମର ଅନିତ୍ୟ ସୌନ୍ଦର୍ଯ୍ୟ ଓ ଦେବୋପମ ପବିତ୍ରତା ଆଜି ଭାରତୀୟ ନାରୀଙ୍କ ପ୍ରତ୍ୟେକ କ୍ରିୟାକଳାପରେ ଫୁଟି ଉଠିବା ଆବଶ୍ୟକ । ପାଶ୍ଚାତ୍ୟର ବିଚକ୍ଷଣତା, ଚଞ୍ଚଳତା ଓ

ବିଶ୍ଳେଷଣ ସଙ୍ଗେ ପ୍ରାଚ୍ୟର ଏହି ମହାୟାନ୍ ମଣିକାଞ୍ଚନ ସଂଯୋଗ ଯେପରି ହେବ, ସେଥିପ୍ରତି ସଂସ୍କାରକ ଦୃଷ୍ଟି ଦେବା କର୍ତ୍ତବ୍ୟ ।

ଉପରେ ସଂସ୍କାରକଙ୍କ କେତୋଟି କର୍ମ-ପନ୍ଥାର କେତୋଟି ପ୍ରଧାନ ବିଷୟ ଆଲୋଚନା କରାଗଲା । ବର୍ତ୍ତମାନ ପ୍ରକୃତ ସଂସ୍କାର ସକାଶେ ଆବଶ୍ୟକ ଉପକରଣ ସମ୍ବନ୍ଧରେ କିଞ୍ଚିତ ବିଚାର କରାଯାଉ । ସଂସ୍କାରର ପ୍ରଥମ ଆବଶ୍ୟକ ଉପକରଣ ସଂସ୍କାରକଙ୍କ ସମବେଦନା, ପ୍ରାଣର ଆବେଗ, ଗଭୀର ଉତ୍କଣ୍ଠା, ମର୍ମସ୍ପର୍ଶୀ କରୁଣତା । ଆଜି କୌଣସି ସଂସ୍କାରକ ବାହାବା ନେବାକୁ ବକ୍ତୃତା ଝାଡି ଦେଲାବେଳେ ନିଜକୁ ଅତି ବଡ଼ ଆସନରେ ବସାଇ ଶ୍ରୋତୃଗଣଙ୍କୁ ତୁମେ ମୂର୍ଖ, ତୁମେ ପାଜି, ତୁମେ ବେହିଆ, ଇତ୍ୟାଦି ଗାଳି ଦିଅନ୍ତି । ଫଳତଃ ସାଧାରଣ ଲୋକଙ୍କ ଏପରି କର୍କଶ ନିନ୍ଦାବାଦରେ ହତାଶ ହୋଇ ଦୀର୍ଘ ନିଶ୍ୱାସ ନିକ୍ଷେପ କରି ମନରେ ଭାବନ୍ତି-କାହିଁ ! ଆମ୍ଭମାନଙ୍କ ଦୁଃଖରେ ତ ଦୁଃଖୀ ହେବାର ଏହାଙ୍କୁ ଦେଖୁ ନାହୁଁ । ଆମ୍ଭମାନଙ୍କ ଗଭୀର ମନୋବେଦନାରେ ଉପଶମ ନିମନ୍ତେ ପଦେ ଆଶ୍ୱାସନା ବାଣୀ ଏହାଙ୍କ ମୁଖରୁ ତ ସ୍ଫୁରୁନାହିଁ । ଆମ୍ଭମାନଙ୍କ ତିକ୍ତ ଅଶ୍ରୁଧାର ସଙ୍ଗେ ମିଶାଇବାକୁ ଏହାଙ୍କ ଆଖିରୁ ତ ଟୋପାଏ ଲୁହ ଗଡ଼ୁ ନାହିଁ । ସହାନୁଭୂତି ଛଡ଼ା କୌଣସି ସଂସ୍କାରକଙ୍କର ଲୋକସେବାର ପ୍ରୟାସ କରିବା ବୃଥା । ସଂସ୍କାରକଙ୍କୁ ତାଙ୍କର ପ୍ରତ୍ୟେକ କଥା ଓ କାର୍ଯ୍ୟରେ ଉତ୍ପୀଡ଼ିତ ଓ ନିର୍ଯ୍ୟାତିତ ପ୍ରତି, ଦୁଃଖୀରଙ୍କୀପ୍ରତି, ଅଭାବୀ ପ୍ରତି ସ୍ନେହର ପ୍ରସ୍ରବଣ ଝରାଇବାକୁ ହେବ ! ପ୍ରେମର ଅମିୟ ପୀୟୂଷ ବୁହାଇବାକୁ ହେବ । ପ୍ରାଣ ପୂର୍ଣ୍ଣ-ପୁଲକ ଧମନୀରେ ସ୍ପନ୍ଦିତ କରାଇବାକୁ ହେବ । ଏହିଭଳି ସଂସ୍କାରକ ଯୁଗ ପ୍ରବର୍ତ୍ତକ ହୁଅନ୍ତି, ସୃଷ୍ଟି ବିକାଶର ନିମିତ୍ତ ହୁଅନ୍ତି । ଶଙ୍କର, ରାମାନୁଜ, କବୀର, ଚୈତନ୍ୟ, ନାନକ ଭଳି ସଂସ୍କାରକ ଥିଲେ । ଅମିତ-ପ୍ରତିଭଶାଳୀ ଶଙ୍କର ବୌଦ୍ଧ-ଧର୍ମର ଅର୍ଥଶୂନ୍ୟ ଅସାର ବାହ୍ୟ ଆଡ଼ମ୍ବର ଓ ଯନ୍ତ୍ର ମନ୍ତ୍ର ଉଚ୍ଛେଦ ସାଧନରେ ଦିଗ୍‌ବିଜୟ କରିଥିଲେ । ମହତ୍ ପ୍ରାଣ ରାମାନୁଜ ଅସ୍ପୃଶ୍ୟଙ୍କୁ ସମାଜର କୋଳକୁ ଟାଣି ଆଣିବାକୁ ପ୍ରଗାଢ଼ ପ୍ରୟାସ କରିଥିଲେ । କବୀରଙ୍କ ଭାବପ୍ରବଣ ମଧୁର ପଦାବଳୀ ଅଦ୍ୟାପି ହିନ୍ଦୁସ୍ଥାନର ଜନମୁଖରେ ବିଘୋଷିତ ହେଉଅଛି । ବର୍ତ୍ତମାନ ଯେଉଁ ହିନ୍ଦୁ ମୁସଲମାନ ସମ୍ମେଳନ ପାଇଁ ଏତେ ଧନ୍ଦା ଲାଗିଅଛି, ଗୁରୁ ନାନକ ବହୁଦିନ ପୂର୍ବେ ତାହାର ସୁନ୍ଦର ଆଧ୍ୟାତ୍ମିକ ସମାଧାନ କରାଇଥିଲେ । ଚୈତନ୍ୟ ଯେପରି ଭାବରେ ପ୍ରେମର ଅମିୟ ସ୍ରୋତରେ ଆଚଣ୍ଡାଳ ବ୍ରାହ୍ମଣଙ୍କୁ ମନ୍ତ୍ର ମୁଗ୍ଧବତ୍ ଭସାଇ ଦେଇଥିଲେ, ତାହା ଅତି ଚମତ୍କାର କଥା । ଏପରି ଭାବରେ ଭାରତର ମହାଜାତୀୟ-ଜୀବନ-ପୋତ କାଳ ସାଗରର ଅନନ୍ତ ବକ୍ଷୋପରି ସହସ୍ର ସହସ୍ର ବର୍ଷ ଧରି ଚାଳିତ ହୋଇ ଆସିଅଛି । କେତେ ତ୍ୟାଗର ପରାକାଷ୍ଠା, କେତେ ଦେବତ୍ୱର ନିଦର୍ଶନ, କେତେ ଭୟ ବିଷାଦ ଭଞ୍ଜକ ସଞ୍ଜୀବନ-ମନ୍ତ୍ର ତାହାର ଅତୀତକୁ ସଞ୍ଜୀବିତ

କରି ଓ ସମୁଜ୍ଜ୍ୱଳ କରି ରଖିଅଛି । ସେଥିପ୍ରତି ଦୃଷ୍ଟି ନଦେଇ, ବର୍ତ୍ତମାନ ସହିତ ପୁରାତନର ସମ୍ପର୍କ ନ ମିଳାଇ, ପ୍ରାଚ୍ୟ ଓ ପାଶ୍ଚାତ୍ୟର ମଧୁର ସମାବେଶ ନ କରାଇ, ଯୁଗବ୍ୟାପୀ, ବିଶ୍ୱବ୍ୟାପୀ ଅସୀମ-ଜୀବନ-ସ୍ରୋତର ସୁନିୟନ୍ତ୍ରଣ ନ କରାଇ ଆତ୍ମ-ଶ୍ଲାଘା ପ୍ରଦୀପ୍ତ ହୋଇ ସାମୟିକ ଚଞ୍ଚଳ କଳ୍ପନାର ବଶୀଭୂତ ହୋଇ, ଏହି ମହାଜୀବନ ସ୍ରୋତକୁ ମୃତ୍ତିକାଗତ କରି ଏକାବେଳେକେ ଗୋଟାଏ ନୂତନ ଗ୍ରନ୍ଥି ସ୍ଥାପିତ କରିବା ବାତୁଳତା ନୁହେଁ କି ?

ସଂସ୍କାରର ଏହି ଆବଶ୍ୟକ ଉପକରଣ ଲୋକମତ ଓ ତାହାର ଇଙ୍ଗିତରେ ଚାଳିତ ସରକାରଙ୍କ ମତ । ଆମ ଦେଶରେ ଏ ଉଭୟର ସଂପୂର୍ଣ୍ଣ ଅଭାବ । ବୈଦେଶିକ ଶାସନରେ ବଜ୍ର ମୁଷ୍ଟିରେ ପଡ଼ି ଏ ଦେଶବାସୀଙ୍କର ବର୍ତ୍ତମାନ କୌଣସି ସ୍ୱାଧୀନ ସାଧାରଣ ମତ ନାହିଁ ବା ସେପରି ମତ ଥିଲେ ସୁଦ୍ଧା ତାହା ଉପଯୁକ୍ତ ଭାବରେ ପ୍ରକାଶ କରି ପ୍ରବର୍ତ୍ତାଇବାର ଶକ୍ତି ନାହିଁ । ପୁଣି ବିଦେଶୀ ସରକାର ନିଜ ଲାଭ ପ୍ରତି ସମସ୍ତ ଦୃଷ୍ଟି ଦେଇ ଲୋକଙ୍କର ଅଭାବ ଅଭିଯୋଗ ପ୍ରତି ମନୋଯୋଗ ଦିଅନ୍ତି ନାହିଁ । ବର୍ତ୍ତମାନ ପ୍ରଚଳିତ ଶାରଦା ଆଇନ ଏହାର ଉତ୍କୃଷ୍ଟ ପ୍ରମାଣ । ବାଲ୍ୟ ବିବାହ ସମ୍ବନ୍ଧରେ ବ୍ୟକ୍ତିଗତ ଭାବରେ ଅଧିକାଂଶ ଲୋକଙ୍କର ପ୍ରତିକୂଳ ମତଥିଲେ ସୁଦ୍ଧା, ସମାଜରେ ତାଡ଼ନା ଭୟରୁ ହେଉ କିମ୍ବା ନୈତିକ ସାହସ ଅଭାବରୁ ହେଉ କିମ୍ବା ଶତବର୍ଷ ବ୍ୟାପୀ ଗୋଟିଏ ପଥର ମାୟା ମମତା ଛିନ୍ନ କରି ନପାରି ହେଉ, ଅନେକ ଲୋକ ଅଦ୍ୟାପି ଅସଂଖ୍ୟ ବାଲ୍ୟ ବିବାହ କରୁଛନ୍ତି । ସରକାର ଏ ବିଷୟରେ କରଛଡ଼ା ଦେଇ କହନ୍ତି —ପ୍ରଥମେ ଡିପୋଜିଟ ବାନ୍ଧି ମକଦ୍ଦମା ଫାଇଲ କର, ତା ପରେ ବିଚାର କରାଯିବ । ଏହି ସବୁ ଅଭାବ ଅଭିଯୋଗ ଦୂର କରିବାକୁ, ପ୍ରବଳ ସ୍ୱାଧୀନ ଜନମତ ଗଠିତ କରି ସରକାରଙ୍କ ଉପରେ ଜୋର ଦେବାକୁ ପ୍ରକୃତ ଶିକ୍ଷା ଆବଶ୍ୟକ । ଶିକ୍ଷା ବିନା ଯେଉଁ ସବୁ ଉଦ୍ଭଟ (Fanatical) ସଂସ୍କାର ପ୍ରବର୍ତ୍ତନ ହୁଏ, ତାହା କେବଳ କ୍ଷଣସ୍ଥାୟୀ ଓ ବିଦ୍ୱେଷାତ୍ମକ ହୁଏ । ଶିକ୍ଷା ହିଁ ସଂସ୍କାରକୁ ଚିରସ୍ଥାୟୀ, ସୁନ୍ଦର, ମହତ୍ ଓ ଜନହିତକର କରିପାରେ ।

ବର୍ତ୍ତମାନ ସଂସ୍କାରରେ ପ୍ରକୃତ ପରିସ୍ଥିତି ଓ ଅଭିପ୍ରାୟ ସମ୍ବନ୍ଧରେ କିଞ୍ଚିତ ଆଲୋଚନା କରି ପ୍ରବନ୍ଧ ଶେଷ କରିବୁ । ଆମ ଦେଶର ଅନେକ ସଂସ୍କାରକଙ୍କ ମତରେ ଯାହା କିଛି ପୌରାଣିକ, ରକ୍ଷଣଶୀଳ, ଭାରତୀୟ କିମ୍ବା ଧର୍ମ ସମ୍ପର୍କୀୟ, ତାହା କୁସଂସ୍କାରର ଘନ ଅନ୍ଧକାର ଆବୃତ ଏବଂ ସେହେତୁ ସର୍ବଦା ବର୍ଜନୀୟ; ପୁଣି ଯାହା କିଛି ଆଧୁନିକ, ପାଶ୍ଚାତ୍ୟ କିମ୍ବା ବୈଜ୍ଞାନିକ, ତାହା ସୁସଂସ୍କାର ଏବଂ ସେହେତୁ ସର୍ବଦା ଅନୁକରଣୀୟ । ଏଭଳି ସଂସ୍କାରକଙ୍କ ଗୁରୁ ମେୟୋବିବିଙ୍କ ଭଳି କେତେଜଣ ପକ୍ଷପାତୀ, ଏକଦର୍ଶୀ, ସଂକୀର୍ଣ୍ଣମନା ପ୍ରଚାରକ (Protagonist); କିନ୍ତୁ ପ୍ରକୃତରେ

କୌଣସି ଦେଶ ବା ସମାଜ କୌଣସି କାଳେ ଏକାବେଳକେ ଦୋଷଶୂନ୍ୟ ହୋଇ ନପାରେ ।

ଆଜି ଭରତରେ ବିଧବାର ତପ୍ତ ନିଶ୍ୱାସ ଜଳବାୟୁକୁ ଦୂଷିତ କରୁଥିଲେ ପାଶ୍ଚାତ୍ୟର ଅବିବାହିତାର ତିକ୍ତ ଅଶ୍ରୁଧାର ବସୁନ୍ଧରକୁ ସିକ୍ତ କରୁଅଛି; ଭରତରେ ବାଲ୍ୟ ବିବାହ ଜାତିକୁ ଦୁର୍ବଳ କରୁଥିଲେ ପାଶ୍ଚାତ୍ୟରେ ପ୍ରଣୟ-ସମ୍ଭାଷଣ-ଜନିତ-ବିବାହ (Love by wooing) ଘରେ ଘରେ କହଳ ଓ ମନୋମାଳିନ୍ୟର ସୂତ୍ରପାତ କରୁଅଛି; ଭରତର ଅସ୍ପୃଶ୍ୟ ସମାଜ ଦ୍ୱାର ନିର୍ଯାତିତ ହେଉଥିଲେ, ପାଶ୍ଚାତ୍ୟରେ ଶ୍ରମିକ ବ୍ୟବସାୟରେ ତୀକ୍ଷ୍ଣ ପ୍ରତିଯୋଗିତାରେ ନିଷ୍ପେଷିତ ହେଉଅଛି । ସ୍ଥୂଳତଃ ଜଗତ୍ ଥିବା ପର୍ଯନ୍ତ, ସୃଷ୍ଟିର କ୍ରିୟା-ପ୍ରତିକ୍ରିୟା ଚଳିଥିବା ପର୍ଯ୍ୟନ୍ତ, ଭଲମନ୍ଦ ଏକାକାର ଓ ପରସ୍ପର-ନିର୍ଭରଶୀଳ ହୋଇଥିବେ । ଅସୀମରେ ନ ପହଞ୍ଚିବା ଯାଏ, ଆତ୍ମାର ଅମରତ୍ୱ ପ୍ରତିପାଦିତ ନ ହେବା ଯାଏ ସଂସାର ସାଗରର ଉତ୍ତାଳ ତରଙ୍ଗରେ ଉତ୍କ୍ଷିପ୍ତ ହୋଇ ଆମ୍ଭେମାନେ ଆଶ୍ରୟ ନିମିତ୍ତ ଏଣେତେଣେ ଧାଇଁଥିବୁ । ବିଶେଷତଃ ନିଷ୍ପକ୍ଷପାତ ଦୃଷ୍ଟିରେ ଦେଖିଲେ, ଆଧ୍ୟାତ୍ମିକ ପ୍ରାଣର ଯେଉଁ ଛାୟା ଅଦ୍ୟାପି ଭରତକୁ ଆବର୍ତ୍ତ କରିଅଛି ତାହା ଅତି ଶୁଭ ଲକ୍ଷଣ ।

ସ୍ୱୀକାର କରିବାକୁ ହେବ, ଭରତବାସୀ ଆଜି ଦୁର୍ବଳ ଓ ମୂର୍ଖ । କିନ୍ତୁ ଏ ଅଜ୍ଞାନ ଓ ଦୁର୍ବଳତାର ଘନ କୁହେଳିକା ଭେଦକରି ଦେଖିଲେ ଭରତୀୟ ପ୍ରାଣରେ ଈଶ୍ୱରଙ୍କ ନାମରେ ଯେ ବିଶ୍ୱାସ, ନିଷ୍ଠା ଓ ସଂଯମର ଯେ ନିୟନ୍ତ୍ରଣ, ଧର୍ମନାମରେ ଯେ ତ୍ୟାଗ ଦେଖାଯାଉଛି, ତାହା ଅତି ମୂଲ୍ୟବାନ ସାମଗ୍ରୀ ଏବଂ ତହିଁର ଉପଯୁକ୍ତ ବ୍ୟବହାର କରି ଜାଣିଲେ ପୁଣି ପୌରାଣିକ ଗୌରବ ଓ ବିଭବ ଫେରିଆସିବ । ମୂଳତଃ ସଂସ୍କାରକଙ୍କୁ ସଂସ୍କାରର ମୂଳ ତତ୍ତ୍ୱ ଓ ସମୂହ ଜାତୀୟ ଜୀବନର ଗତିବିଧି ପ୍ରତି ଦୃଷ୍ଟି ଦେବାକୁ ହେବ । ସେମାନଙ୍କର ମନେ ରଖିବାକୁ ହେବ, କେବଳ ଗୋଟିଏ ସମ୍ମିଳିତ ଭୋଜନରେ କିମ୍ବା ଗୋଟିଏ ବିଧବାର ଦୁଇ ତିନୋଟି ଭର୍ତ୍ତା ପ୍ରାପ୍ତିରେ କିମ୍ବା ବସନ ଭୂଷଣ ପରିବର୍ତ୍ତନରେ ସଂସ୍କାର ପୂର୍ଣ୍ଣାଙ୍ଗ ପ୍ରାୟ ହୁଏ ନାହିଁ । ପ୍ରକୃତ ଜ୍ଞାନାଲୋକ, ସୂକ୍ଷ୍ମ ବିବେଚନା ଶକ୍ତି, ଜୀବନ୍ମୁକ୍ତି ଆଦର୍ଶର ଅନୁକରଣ ଓ ମନର ସଂପ୍ରସାରଣ ହିଁ ସଂସ୍କାରର ମୂଳ ପରିସ୍ଥିତି ।



# ବେଦାନ୍ତ ଓ ବିଶ୍ୱଶାନ୍ତି

ଘୋର ଅଶାନ୍ତି ଭିତରେ ଆଜି "ଶାନ୍ତି"ର ଡାକରା । ଯୁଦ୍ଧ-ଦେବତାର ତୁମୁଳ ଅଟ୍ଟହାସ ଭିତରେ ସ୍ନେହ-ବନ୍ଧନର ଚେଷ୍ଟା । ବିଜ୍ଞାନର ଆଣବିକ ତଥା ଉଦ୍‌ଯାନ ବୋମା ଆଦି ଭୀଷଣ ମାରଣାସ୍ତ୍ରର ବିଚକ୍ଷଣ ଉଦ୍‌ଭାବନ ଓ ପ୍ରୟୋଗ ଭିତରେ ନିରାପତ୍ତାର ଅନୁସନ୍ଧାନ । ବିଭିନ୍ନ ଦେଶ, ଜାତି, ଭୂଖଣ୍ଡ ମଧ୍ୟରେ ସାମରିକ-ରାଜନୈତିକ ମେଣ୍ଟ ଭିତରେ ବିନିମୟର ପ୍ରଯତ୍ନ । ଯୁଗ ଯୁଗ କଥା ଥାଉ । ଚଳନ୍ତି ଶତାବ୍ଦୀର ପ୍ରଥମ ଅଧର ଘଟଣା ବିଗ୍ଭର କଲେ ମନୁଷ୍ୟ କି ଅସରନ୍ତି ସଙ୍କଟର ସମ୍ମୁଖୀନ ହେଉଛି, ସ୍ପଷ୍ଟ ଜଣାପଡେ । ପ୍ରଥମ ମହାଯୁଦ୍ଧ ଆସିଲା । ବିରାଟ ଧ୍ୱଂସ ପରେ ହିତକର ଓ ନ୍ୟାୟପର ପୃଥିବୀ-ସଂସ୍କାର ଆଶା ଦେଇ ଭରସ୍‌ଲିସ୍‌ ସନ୍ଧି ସ୍ୱାକ୍ଷରିତ ହେଲା । ତଥାପି ଅଳ୍ପଦିନ ଭିତରେ ସେହି ଆଶାର ଗୋଲାପୀ ରକ୍ତିମା ପାଂଶୁଳ ଅନ୍ଧକାରରେ ଲୁଚିଗଲା । ଜାତିସଂଘ, ଏକଲଗ୍‌ମେଣ୍ଟ, ହେଗ୍‌ ଆନ୍ତର୍ଜାତିକ ବିଗ୍ଭରାଳୟ ତାଳିପକାରେ ପରିଣତ ହେଲା । ଦଶନ୍ଧି ନ ବିତୁଣୁ ଗୋଟାଏ ଅକଳନୀୟ ଆର୍ଥିକ ଦୁର୍ଗତି ସମଗ୍ର ପୃଥିବୀକୁ ଘୋଟିଗଲା । ବାଣିଜ୍ୟ-ବ୍ୟବସାୟରେ ଅଚଳ ଅବସ୍ଥା ଆସିଲା । ତହୁଁ ଚୀନ-ଜାପାନ, ଇଟାଲୀ-ଏବିସିନିଆ, ସ୍ପେନ ଗୃହଯୁଦ୍ଧ ଦ୍ୱିତୀୟ ମହାସମର ସୂତ୍ରପାତ୍ କଲା । ସେ ପ୍ରଳୟଙ୍କରୀ ତାଣ୍ଡବ ମନେ ପଡ଼ିଲେ ହୃଦୟ ଥରିଯାଉଛି । ଜଳ ସ୍ଥଳ ଆକାଶରେ ମୃତ୍ୟୁ ବରଷିଲା । କୌଣସି ସଂସ୍କୃତି-କେନ୍ଦ୍ର ତହିଁରୁ ରକ୍ଷା ପାଇଲା ନାହିଁ । ସାମରିକ କେନ୍ଦ୍ର ଓ ନାଗରିକ ଜୀବନ ମଧ୍ୟରେ ପ୍ରଭେଦ ନିଶ୍ଚିହ୍ନ ହେଲା । ସମର ପ୍ରାଙ୍ଗଣରେ ସୈନିକ, ନାବିକ, ବ୍ୟୋମଯାନ-ଚାଳକ ଯେତିକି ବିପଦରେ ପଡିଲେ, ଶାନ୍ତ ନିଭୃତ ପଲ୍ଲୀକୋଣର ନିରୀହ ଅଧିବାସୀ ବାଳ-ବୃଦ୍ଧ ସ୍ତ୍ରୀ-ପୁରୁଷ ତାଠାରୁ ଅଧିକ ବିପଦରେ ପଡ଼ିଲେ । ଛେଉଣ୍ଡ ଓ ବିଧବାର ଆର୍ତ୍ତନାଦରେ ଧରା ପ୍ରକମ୍ପିତ ହେଲା । ତାକୁ ଲାଗି ଦୁର୍ଭିକ୍ଷ, ଅନାହାର ପଡ଼ି, କୋଟି କୋଟି ଲୋକଙ୍କ ବାସହୀନ ଭ୍ରମଣ । ଅନ୍ଧାରି ଯୁଗର ବର୍ବରତା କଥା ଇତିହାସରେ ପଢ଼ିଥିଲୁ । ତାକୁ ଏହା ସହସ୍ର ଗୁଣରେ ବଳିଗଲା ଆଉ ମଣିଷ ଯେତେବେଳେ ନିର୍ବିକାର ଚିତ୍ତରେ ପୋଡ଼ିବା, ଜାଳିବା, ମାରିବା ପାଇଁ ବାହାରୁଛି ସେତେବେଳେ ନାଗରିକ ଅଧିକାର ବା ଆନ୍ତର୍ଜାତିକ ସନନ୍ଦ ପ୍ରଶ୍ନ ଉଠୁଛି କେଉଁଠି ? ସେସବୁ ଦଲିଲ ଟିକି ଟିକି କରି ପବନରେ ଉଡ଼ାଇ ଦିଆଗଲା ।

ଦ୍ୱିତୀୟ ମହାସମର ଶେଷହେଲା—କିନ୍ତୁ ମୂଳ ସମସ୍ୟାର ସମାଧାନ ହେଲନାହିଁ । ସମ୍ମିଳିତ ଜାତି ଅନୁଷ୍ଠାନ ପୁଣି ଟଳ ମଟଳ । ୟାଲ୍‌ଟା, ପାଟସ୍‌ଡାମ, ଆଟଲାଣ୍ଟିକ୍, ପେସିଫିକ୍ ଇତ୍ୟାଦି ଚୁକ୍ତି ତା ଭିତରେ ଅସ୍ଥିର । ଭରତ-ବିଭକ୍ତ ତଥା କାଶ୍ମୀର ଏ ଅସ୍ଥିରତାକୁ ବଢାଉଛି । କୋରିଆରେ, ଇଣ୍ଡୋ-ଚାଇନାରେ ବର୍ଷ ବର୍ଷ ବ୍ୟାପୀ ଧ୍ୱଂସଲୀଳା ଲାଗି ଏବେ ଟିକେ ବିରାମ ଆସିଛି ସତ—କିନ୍ତୁ କିଏ କହିବ ଏହା ସ୍ଥାୟୀ ଶାନ୍ତି ରୂପ ଧରିବ ? ବିଭିନ୍ନ ରାଜନୈତିକ ମତାନ୍ଧତାର ତୀବ୍ରତା ଊଣା ହେବାକୁ ନାହିଁ । ଅର୍ଥନୈତିକ କ୍ଷମତାର ମୋହ ଦେଶ ଦେଶ ଗ୍ରାସିବାକୁ ବସିଛି । ପୃଥିବୀ ପୃଷ୍ଠରେ ଦୁଇ ବିବଦମାନ ଶକ୍ତିପୁଞ୍ଜର "ଶୀତଳ" ଯୁଦ୍ଧ କେଉଁ ମୁହୂର୍ତ୍ତରେ 'ଗରମ' ହୋଇ ଉଠିବ, କିଏ କହି ପାରିବ ? ତାକୁ ଲାଗି ପୁଣି ଦକ୍ଷିଣ-ପୂର୍ବ-ଏସିଆ ମେଣ୍ଟ, ବିଭିନ୍ନ ଦେଶ ଶାସନ-ଚକ୍ରରେ ହିଂସ୍ରକ ବୈପ୍ଳବିକ ପରିବର୍ତ୍ତନ, ଔପନିବେଶିକତାର ଶେଷ ବିଭୀଷିକା । ଏ କଳା ମେଘରେ ଢେନେଭ ବୁଝାମଣା ଭଳି ଈଷତ୍ ରୂପାଗାର ଦେଖା ଯାଉଛି ସତ—କିନ୍ତୁ ତାହା ଅତି କ୍ଷୀଣ, ଅତି ନିଷ୍ପ୍ରଭ !

ଏ ସବୁର ପରିଣତି ତୃତୀୟ ମହାସମର ? ସମର ପରେ ସମର ? ଆଖି ପାଉ ନାହିଁ, ବୁଦ୍ଧି ଖେଳୁ ନାହିଁ । ଅତୀତର ଅସଂଖ୍ୟ ଯୁଦ୍ଧ ଘଟି ଆସିଛି, ଅନାଗତରେ ନ ଘଟିବ ବୋଲି କିଏ ଦମ୍ଭରେ କହିବ ? ପ୍ରତ୍ୟେକ ଯୁଦ୍ଧବେଳେ ଉଭୟ ପକ୍ଷ କହନ୍ତି, ଆମେ ନ୍ୟାୟ ପାଇଁ ଲଢ଼ୁଛୁ—ଆମର ଜୟ ହେଲେ ପୃଥିବୀ ପରିତ୍ରାଣ ହେବ—ସ୍ୱର୍ଗ ପାଲଟିବ । ଅଥଚ ପ୍ରତ୍ୟେକ ଯୁଦ୍ଧ ବନ୍ଦ, ପ୍ରତ୍ୟେକ ଶାନ୍ତି ଚୁକ୍ତି, ଅନାଗତ ସଂଘର୍ଷର ଅସଂଖ୍ୟ ଅଧ୍ୟାୟ ଫିଟାଇଛି । ନିୟତିର ନିଷ୍ଠୁର ଉପହାସ !

କାର୍ଯ୍ୟ-କାରଣ-ନିବଦ୍ଧ ମନୁଷ୍ୟର ମନ ଏହିପରି ପ୍ରତ୍ୟେକ ଶାନ୍ତିଚୁକ୍ତି ଅନୁଶୀଳନ କରି କେଉଁ କାରଣରୁ ସେ ଯୁଦ୍ଧ ଘଟିଥିଲା ଓ ସେ ଚୁକ୍ତିଦ୍ୱାରା ତାହାର କେତେଦୂର ସମାଧାନ ହୋଇଛି, ପରୀକ୍ଷା କରି ବସେ । ଯେ କୌଣସି ଯୁଦ୍ଧର ଆପାତ କାରଣ ସହଜ ବୋଧଗମ୍ୟ । ପ୍ରତ୍ୟେକ ସ୍କୁଲ ପିଲା ଜାଣେ, ୟୁରୋପରେ ମଧ୍ୟଯୁଗର ତଥା ନବଯୁଗର ପ୍ରାୟ ସବୁ ଯୁଦ୍ଧ କିପରି ଉପନିବେଶ ତଥା ବାଣିଜ୍ୟ ଓ ସାମୁଦ୍ରିକ ଆଧିପତ୍ୟର ଈର୍ଷା ଯୋଗୁଁ ହୋଇଥିଲା । ଇତିହାସ ଗାଉଛି—ସାମ୍ରାଜ୍ୟବାଦ, ଧନଲୋଭ, ଅର୍ଥନୈତିକ ଶୋଷଣ, ରାଜନୈତିକ କ୍ଷମତା ବିସ୍ତାର, ମତାନ୍ଧତା ସବୁଠାରେ ସବୁ ଯୁଦ୍ଧର ସାଧାରଣ କାରଣ । ଏସବୁ ବାରୁଦ ଭଣ୍ଡାରକୁ ସଜାଡି ଭର୍ତ୍ତିକରି ରଖେ । କୌଣସି ଆକସ୍ମିକ ଘଟଣାର ନିଆଁଝୁଲ ତା ଉପରେ ପଡିଗଲେ ଭୀଷଣ ବିସ୍ଫୋରଣ ଘଟେ । କିନ୍ତୁ ଇତିହାସ ନିର୍ଦ୍ଦିଷ୍ଟ ଏହି ସାଧାରଣ ତଥା ଆକସ୍ମିକ କାରଣରୂପକ ପାଦପ ମୂଳ ଖୋଳି ନ ତାଡ଼ିଲେ ଯୁଗ ଯୁଗ

ସଞ୍ଚାରିତ ମୌଳିକ ମାନବିକ ସଂଘର୍ଷର ଉପଶମ ହେବ କାହିଁ ? ବିଶ୍ୱ ଔପନ୍ୟାସିକ ଟଲଷ୍ଟୟ୍ ଠାଏ ଲେଖିଛନ୍ତି—

The blood of the fox, the pig and the wolf is in man and immoral living, living at the cost of others, gives it free play (War and Peace)

ମଣିଷ ଭିତରେ ବିଲୁଆ, ଘୁଷୁରି, ଗଧିଆର ରକ୍ତ ବହୁଛି, ପରଶ୍ରମପୁଷ୍ଟି, ଶୋଷଣ, ଅନୈତିକ ଜୀବନ ସେ ରକ୍ତକୁ ସତେଜ କରେ, ସେ ପ୍ରବୃତ୍ତିର ଉଦ୍ଦାମ ଉଚ୍ଛୃଙ୍ଖଳ ମାର୍ଗ ଫିଟାଏ । ଏପରି ଦୀନ-ଦୁର୍ବଳ ଅତ୍ୟାଚାରିତ ହୁଏ; ସେ ତାହାର ପାଳି ଜଗେ; ହିଂସା-ହିଂସାର ଉଦ୍ରେକ କରେ । ନିୟତିର ଅଲଙ୍ଘନୀୟ ପରିକ୍ରମରେ ନ୍ୟାୟ ଡାକ ଦିଏ । ସେକସ୍‌ପିଅର ଭାଷାରେ—

When all is not well, something is rotten in the state of Denmark, foul deeds wise and overwhelm the sweet mother earth —(Hamlet)

ଯେତେବେଳେ ସବୁ ଭଲ ନ ରହେ, କୌଣସିଠାରେ କିଛି ଅନ୍ୟାୟ ଅବିଚାର ହୁଏ, ସେତେବେଳେ ଦୁଷ୍କାର୍ଯ୍ୟରେ ମା ବସୁଧା ଥରିଯାଏ । ତହୁଁ ଯୁଦ୍ଧ ହୁଏ । କିନ୍ତୁ ତଦ୍ୱାରା ମୌଳିକ ସମସ୍ୟା ସମାଧାନ ନ ହୋଇ ପାରିପାର୍ଶ୍ୱ ଅଧିକ ଦୁଃଖ, ହୃଦ୍‌ଜ୍ୱାଳା, ପାଶବିକ ପ୍ରବୃତ୍ତିରେ ଘନୀଭୂତ ହୁଏ । ବିଖ୍ୟାତ ଇଂରେଜ ଔପନ୍ୟାସିକ ଥେକିରେ ଯଥାର୍ଥ କହିଛନ୍ତି—

The dregs of a battle, however brilliant, are ever a base residue of dreadful carnage, rapin, cruelty and drunken plunder—(Henry Esmond)

ଯେ କୌଣସି ଯୁଦ୍ଧ କେତେ ବୀରତ୍ୱ-ବ୍ୟଞ୍ଜକ ବିଚକ୍ଷଣ ହେଲେହେଁ ସବୁବେଳେ ତାର ଶେଷ ରହଣୀ ହୁଏ ଭୀଷଣ ହତ୍ୟା, ନାରୀ-ଧର୍ଷଣ, ନିଷ୍ଠୁରତା, ମଦିରାସକ୍ତ ଲୁଣ୍ଠନ । ନିଷ୍ଠୁର ମାର୍ଗରେ ଶାନ୍ତି ଲକ୍ଷ୍ୟ କେବେହେଁ ସାଧିତ ହୋଇପାରିବ ନାହିଁ । ଯେ କୌଣସି ଯୁଦ୍ଧର ବିଜୟୀ ପକ୍ଷ ଯୁଦ୍ଧ ସମୟରେ କରି ଆସୁଥିବା ନ୍ୟାୟ ଘୋଷଣା ବିଜୟ ଦର୍ପରେ ପାଶୋରି ଦିଅନ୍ତି; ଯୁଦ୍ଧ-ଲବ୍ଧ ଲୁଣ୍ଠନରେ ଭାଗ ନେବା ପାଇଁ ଉତ୍ସୁକ ହୁଅନ୍ତି । ବିଜିତ ପକ୍ଷ କ୍ଷୁବ୍ଧ ଅତୃପ୍ତ ହୃଦୟରେ ସମୟ ପରିବର୍ତ୍ତନ ପାଇଁ ଜଗି ରହନ୍ତି । ମୁହୂର୍ତ୍ତର ମୋହାସକ୍ତିରେ କଲ୍ୟାଣକର ସଂସାର ଗଢ଼ିବାର

ଯୋଜନାର ଉଚ୍ଚବାଚ କୁଆଡେ ମିଳେଇ ଯାଏ । ଗଭୀର ମାନବିକତା ପୂର୍ଣ୍ଣ ଅର୍ନ୍ତଦୃଷ୍ଟି-ସମ୍ପନ୍ନ ବ୍ୟକ୍ତିମାନଙ୍କ ସତର୍କ ବାଣୀ ଅବହେଳିତ ଓ ବିଦ୍ରୂପିତ ହୁଏ ।

ଏପରି ଭବରେ ଭର୍ତ୍ତି ହାଣ୍ଡିର ଟକର ମକର ଫୁଟା କେଉଁଠି ଊଣା ହୁଏ ନାହିଁ । ଗତ ମହାଯୁଦ୍ଧ ଆଦର୍ଶବାଦର ସଂଘର୍ଷ ବୋଲି କୁହାଯାଉଥିଲା । କିନ୍ତୁ ଏ ଆଦର୍ଶର ମାନଦଣ୍ଡ କଅଣ ? ଆମେ ତ ଦେଖିଲୁ ପ୍ରତ୍ୟେକ ଯୁଦ୍ଧରେ ଆପଣାର ଅଭ୍ରାନ୍ତି ଓ ଅପରର ଭ୍ରାନ୍ତି କଥନ ସ୍ୱାଭାବିକ । ଏଥିରେ ଅସଲ କଥା ହେଉଛି, ବାହାରେ ଆମେ କଅଣ କହିହେଉ ତାହା ନୁହେ, କିନ୍ତୁ ଗଭୀର ଆତ୍ମିକ ସନ୍ଧାନ । ଏହି ସନ୍ଧାନର ହିଁ ଏ ପ୍ରତ୍ୟେକ ଘଟଣାରେ ଅଭବ । ସେଥିପାଇଁ ଏ ଚକ ଘୂରି ଗ୍ଲଲିଚି । ପ୍ରତ୍ୟେକ ଯୁଦ୍ଧରେ ସେ ସମୟର ଲୋକେ ଏକ ପ୍ରକାର ଭବୁଥିଲେ, ବିବର୍ତ୍ତନ-ଆଲୋକ-ସମ୍ପାତ ଐତିହାସିକ ସିଦ୍ଧାନ୍ତ ଅନ୍ୟ ପ୍ରକାର ମତ ଦେଉଛି । ଯୁଗ ଯୁଗର ଏ କଷଣ ଓ ଯନ୍ତ୍ରଣା ମନ୍ଥିତ ହତାଶ ଅନ୍ଧକାର ଜଡ଼ିତ ସନ୍ତ-ହୃଦୟ ଭେଦ ସେହି ଚିରନ୍ତନ ପ୍ରଶ୍ନ ପୁଣି ଆଜି ଉଠୁଛି—ତେବେ କି ଆଶା-ଭରସା ନାହିଁ ? ପରସ୍ପର ଧ୍ୱଂସ-ସାଧନ କି ମନୁଷ୍ୟ-କୋଟୀର କପାଳ ଲିଖନ ? ଏଥିରୁ କି ତ୍ରାହି ନାହିଁ ? ଏହା କି ସଂଶୋଧନର ବାହାରେ ? ଶାନ୍ତି ସମାହିତ ଧରଣୀ-ସଂସ୍ଥାର ଅଧିକ ନିରପଦ ମୂଳଦୁଆ କି କିଛି ନାହିଁ ? କିଛି ନ ହେଲା ସରିକି, ସେ ଦିଗରେ ଆଶାୟିତ ହୋଇ ନୂଆ ଅଧ୍ୟାୟ ଫିଟାଇବାର ମାନବିକ ଗ୍ରନ୍ଥ କି କିଛି ନାହିଁ ?

—୨—

ଆମର ଅଖଣ୍ଡ ବିଶ୍ୱାସ—ଭରତ ସଂସ୍କୃତିର ଅଖଣ୍ଡ ବିଶ୍ୱାସ ଅଛି । ଜୀବନ ଥିବା ଯାକେ ଆଶା ବିଶ୍ୱାସ ନ ଥାଇ ନାହିଁ । କବି ଗାଇଛନ୍ତି—ଜୀବନ ବାସ୍ତବ, ଜୀବନ ଜାଗ୍ରତ । ତାହା ଏତେ ସହଜରେ ଅଭିଶପ୍ତ ହୋଇ ନ ପାରେ । ସୁସ୍ଥ ଲୋକ ସ୍ୱାସ୍ଥ୍ୟର ମୂଲ୍ୟ କଳନା କରିପାରେ ନାହିଁ, କିନ୍ତୁ ରୋଗୀ ତାହା ବୁଝେ, ଲଭିବାକୁ ସବୁ ପଣ କରେ । ନିରଶାର ଘନ ଅନ୍ଧକାର ଭିତରୁ ଆଶ୍ୱାସନା ଓ ପଥ-ପ୍ରଦର୍ଶନର ଉଜ୍ଜ୍ୱଳ ଆଲୋକ ଅତର୍କିତ ଭବରେ ଫୁଟି ଉଠେ । ଦୈବୀ ସମ୍ପଦ୍‌ର ଏହା ହିଁ ବିଚିତ୍ର ହୃଦର । ସାହିତ୍ୟ, ଦର୍ଶନ, ସଂସ୍କୃତିର ଅମୂଲ୍ୟ ଭଣ୍ଡାର । ଏତେକାଳ ମନୁଷ୍ୟର ଯେଉଁ ପୂର୍ଣ୍ଣାତ୍ମକ ସୃଜନିକା ଗଢି ଆସିଚି, ତାହାର କି ଏତେ ଗ୍ଲାନିକର ଅଧଃପତନ ହୋଇପାରେ ?

ବେଦାନ୍ତ ହିଁ ସେହି ନୂଆ ଅଧ୍ୟାୟ । ବର୍ତ୍ତମାନର ବସ୍ତୁତନ୍ତ୍ର-ପ୍ରଧାନ ଜଗତ ପ୍ରତି ତାହା ନୂଆ ହୋଇପାରେ, କିନ୍ତୁ ପ୍ରକୃତରେ ତାହା ଅତି ପ୍ରାଚୀନ, ସନାତନ । ଏ

ଘଡ଼ିସନ୍ଧିରେ ମାନବିକ ଚିନ୍ତା-ପଥର ସର୍ବୋଚ୍ଚ ସୋପାନ ବେଦାନ୍ତ ଯଥାସାଧ୍ୟ ଧ୍ୱଂସ ଅପନୋଦନ କରି କଲ୍ୟାଣ ସାଧନରେ ଉପାଦାନ ଓ ବଳବତ୍ତର ସୂଚନା ଦେଇ ପାରିବ । ବେଦାନ୍ତ କେବଳ ତତ୍ତ୍ୱର ଶୁଷ୍କ ବ୍ୟାଖ୍ୟାନ—ଏପରି ଭବିବା ଆଧୁନିକ ବୁଝାମଣାର ଗୋଟାଏ ବିଷମ ଭ୍ରମ । ଆସ୍ତିକ ବୁଦ୍ଧିବନ୍ତର ବିଗ୍ରହ ଉପରେ ପ୍ରତିଷ୍ଠିତ ବେଦାନ୍ତର ଗମ୍ଭୀର ଶିକ୍ଷା ଓ ଅନୁସରଣ ଏ ଆପଦ ବେଳେ ଅପରିହାର୍ଯ୍ୟ ।

ବେଦାନ୍ତ କେବଳ 'ମୋକ୍ଷ' ଦ୍ୱାହିରେ ଜୀବନର ଅନ୍ୟ ବର୍ଗମାନଙ୍କୁ—ମାନବ ସମାଜର ରାଜନୈତିକ, ଅର୍ଥନୈତିକ, ସାଙ୍ଘିକ ଜୀବନକୁ ଉପେକ୍ଷା କରିନାହିଁ । ବ୍ୟଷ୍ଟି ଓ ସମଷ୍ଟି ଜୀବନର ତାତ୍ପର୍ଯ୍ୟ ବୋଧ ସଙ୍ଗେ ସେହି ଜୀବନକୁ ସ୍ୱଚ୍ଛଳ ସମୃଦ୍ଧ କରିବାପାଇଁ ଆହ୍ୱାନ କରିଛି । ବଳହୀନର ଆତ୍ମା ଲଭ୍ୟ ହୁଏ ନାହିଁ—ଏକଥା ବଜ୍ର-ଗମ୍ଭୀର କଣ୍ଠରେ ଘୋଷଣା କରିଛି । ଶକ୍ତି, ପୁଷ୍ଟି, ତୁଷ୍ଟି ସାଧନର ଅଭ୍ରାନ୍ତ ନିର୍ଦ୍ଦେଶ ଦେଇଛି ।

ମୋର ଅବୟବ, ବାକ୍ ଆଖି, କାନ, ନିଶ୍ୱାସ, ସକଳ ଇନ୍ଦ୍ରିୟ କର୍ମଠ ଓ ବଳିଷ୍ଠ ହେଉ—ଆତ୍ମାଦ୍ୱାରା ପ୍ରାଣ ପ୍ରାଚୁର୍ଯ୍ୟ ସମ୍ପାଦିତ ହେଉ—(କେନ)

ଉପାସନାର ଯୋଜନାରେ ଓ ବଳିଷ୍ଠ ଅଙ୍ଗ ଚାଳନାରେ ଆମର ଜୀବନ ପୂର୍ଣ୍ଣ ହେଉ—ମୁକ୍ତ-ବିହାରୀ ବିବସ୍ୱାନ୍ ବର୍ଦ୍ଧିଷ୍ଣୁ ବିଶ୍ୱ-ଜୀବନ ଆମର ଅଭ୍ୟୁନ୍ନତି ସାଧନ କରନ୍ତୁ—(ପ୍ରଶ୍ନ)

ମଙ୍ଗଳ ବିଧାନରେ ଉନ୍ନତି ଆଡକୁ ଆମେ ଅଗ୍ରସର ହେବା—(ଈଶାଭାଷ୍ୟ)

ଆମ ସମସ୍ତଙ୍କର ଖ୍ୟାତି ବଢ଼ୁ । ମହାନ୍ ସଂହିତାର ବୁଝାମଣା ଓ ଅବଲମ୍ବନରେ ଆମକୁ ପୁତ୍ର-ପୌତ୍ର, ଗୋ-ସମ୍ପଦ, ପ୍ରଖର ବୁଦ୍ଧି, ପୁଷ୍ଟିକର ଖାଦ୍ୟ, ସ୍ୱର୍ଗ ପ୍ରାପ୍ତ ହେଉ । ଆମର ଶରୀର ସମର୍ଥ ହେଉ, ବଚନ ଅତି ମଧୁର ହେଉ, ଆମର ଶିକ୍ଷା ନିରାପଦ ହେଉ । ସର୍ବଦା ଆମକୁ ପୋଷାକ ପରିଚ୍ଛଦ, ଗାଈ, ଖାଦ୍ୟ-ପାନ ଅପର୍ଯ୍ୟାପ୍ତ ମିଳୁ । ଖାତିସମ୍ପନ୍ନଙ୍କ ମଧ୍ୟରେ ମୁଁ ଯେପରି ଜଣେ ହୁଏ, ଅତିଶୟ ସମ୍ପତ୍ତି-ବାନଙ୍କ ମଧ୍ୟରେ ମୁଁ ଯେପରି ଗୌରବାସ୍ପଦ ହୁଏ…ଗୁରୁଙ୍କ ପାଇଁ ତାଙ୍କର ସନ୍ତୁଷ୍ଟି ବିଧାନ ପଦାର୍ଥ ଆଣି ଦିଅ । ପରମ୍ପରା ଯୋଗ ସୂତ୍ର କାଟି ଦିଅ ନାହିଁ । ଦେବ ଓ ପିତୃ ଦାନରେ ଅବହେଳା କର ନାହିଁ……ସକଳ ଜୀବ ଅନ୍ନରୁହିଁ ଜାତ, ଅନ୍ନରେ ପ୍ରତିଷ୍ଠିତ…ଶିକ୍ଷାର୍ଥୀ ବଳବାନ୍, ଦୃଢ଼ ସଙ୍କଳ୍ପ, ସୁଶ୍ରୀ ଯୁବକ ହେଉ । ତାହା ପକ୍ଷରେ ଏ ବିଶାଳ ଜଗତ ଧନବନ୍ତ ହେଉ—[ତୈତ୍ତିରୀୟ]

ସବୁ ଜୀବଙ୍କ ପ୍ରତି ଏ ବସୁଧା ମଧୁମୟ ହେବ, ବସୁଧା ପ୍ରତି ସବୁ ଜୀବ ମଧୁମୟ ହୁଅନ୍ତୁ । ଯେ ଭୂମା, ସେ ସୁଖ (ଛାନ୍ଦୋଗ୍ୟ) ।

ମୋ ପାଇଁ ନିରନ୍ତର ବର୍ଦ୍ଧିତ ହୁଅ – (ଐତରେୟ)··· ।

ଏ ସବୁରୁ ଦେଖାଯିବ ବେଦାନ୍ତ ଜୀବନକୁ ନାସ୍ତି କରିବାର ଉପକ୍ରମ କରିନାହିଁ; ବରଂ ତ ତାର ବାସ୍ତବତା ଓ ଉଜ୍ଜ୍ୱଳତା ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଇଛି । ପୂର୍ଣ୍ଣତାର, ସୁଖତର ଜୀବନର ବାଞ୍ଛା କରିଛି । କିନ୍ତୁ ସେଥି ସଙ୍ଗେ ମନେ ରଖିବାକୁ ହେବ, ତାକୁ ଏକତରଫା କରିନାହିଁ । ନ୍ୟସ୍ତସ୍ୱାର୍ଥଙ୍କ ଅଗ୍ରାହ୍ୟ ସମ୍ମତି କରିନାହିଁ, ଯେପରି କି ସେମାନେ ଅନ୍ୟଙ୍କୁ ଦାରିଦ୍ର୍ୟରେ ସଢ଼ାଇ ଶୋଷଣ କରୁଥିବେ, ସମସ୍ତଙ୍କୁ ଜୀବନରେ ସମ ଭଗୀଦାର କରିଛି ।

ସର୍ବଶକ୍ତିମାନ୍ ଆମ ସମସ୍ତଙ୍କୁ ଜଗନ୍ତୁ, ରକ୍ଷା କରନ୍ତୁ । ଆମେ ସମସ୍ତେ ମିଳିମିଶି କାମ କରିବା । ଆମେ ଜଣେ ଅନ୍ୟକୁ ବିସୁଖ ପାଇବା ନାହିଁ–(କଠ)···

ସାରଂଶ—ଜୀବନର ମାନ ଓ ସ୍ୱାଚ୍ଛନ୍ଦ୍ୟ ବୃଦ୍ଧିରେ ସମସ୍ତଙ୍କର ଉପଯୁକ୍ତ ସୁଯୋଗ ଓ ଦାୟିତ୍ୱ ରହିବାକୁ ହେବ । ଗୋଟାଏ ମିଥ୍ୟା ଅଭିଭବକତ୍ୱ ବର୍ଣ୍ଣ ଶ୍ରେଷ୍ଠତା, ଅଧିକ ନୈପୁଣ୍ୟ ଛଳନାରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ଯେତେବେଳେ ଏହି ପ୍ରାଥମିକ ବୈଦାନ୍ତିକ ଶିକ୍ଷାର ଅବମାନନା କରି ବସିଲା, ସେତେବେଳେ ତାର ବିରାଟ ସୌଧ ଯେ ଖଣ୍ଡ ଖଣ୍ଡ ହୋଇ ଭୁଷୁଡ଼ି ପଡିଲା ଓ ପଡୁଛି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଆଶ୍ଚର୍ଯ୍ୟ ହେବାର ଅଛି, ଏହା ଦେଖି ଦେଖି ସାମ୍ରାଜ୍ୟବାଦ ପୁଣି ମୁଣ୍ଡ ଟେକୁଛି, ନିଜକୁ ରକ୍ଷା କରିବା ଲାଗି ମାରଣାସ୍ତ୍ର ବାହାର କରୁଛି ।

— ୩ —

କିନ୍ତୁ ବେଦାନ୍ତ ଏତିକିରେ ତୁନି ପଡ଼ିନାହିଁ । କେତେ ବୁଦ୍ଧିପୂର୍ବକ ଓ ସାମୂହିକ ହେଲେ ମଧ୍ୟ ଜୀବନକୁ ସ୍ୱାର୍ଥ ଉପରେ ଛାଡ଼ି ଦେବାଟା ଉଚିତ ମନେ କରିନାହିଁ । ଉପ-ଯୋଗବାଦ, ପ୍ରାଚୁର୍ଯ୍ୟ-ବାଦ ବଡ ସହଜରେ ନୀଚ ସଙ୍କୀର୍ଣ୍ଣତାରେ ଆବଦ୍ଧ ହୋଇପଡ଼େ । ଭାରତର ପ୍ରାଚୀନ ମନୀଷୀମାନେ ଉପଲବ୍ଧ କରିଥିଲେ, ନୈତିକ ସଂଯମ ବିହୁନେ ମନୁଷ୍ୟର ନିମ୍ନ ପ୍ରକୃତି ନିଶ୍ଚୟ ବିଶୃଙ୍ଖଳ ହୋଇ ଉଠିବ । ସେଥିପାଇଁ ସେମାନେ ନୈତିକ ଉତ୍କର୍ଷ ସାଧନ ସକାଶେ ପ୍ରତି କର୍ମ ଓ ବାକ୍ୟ ବିନିଯୋଗ କରିଛନ୍ତି—

ହେ ଦେବ, ସବୁଠାରେ କାନରେ ଭଦ୍ର ଶୁଣିବୁ, ଆଖିରେ ଭଦ୍ର ଦେଖିବୁ—(ପ୍ରଶ୍ନ)

ବିଶାଳ ପରିମିତ ଦେବତାମାନେ .ଆମ ପ୍ରତି ମଙ୍ଗଳ ବିଧାୟକ ହୁଅନ୍ତୁ—(ତୈତ୍ତିରୀୟ)

ମୋର ବଚନ ମନରେ ସୁପ୍ରତିଷ୍ଠିତ ହେଉ, ମନ ବଚନରେ ସୁପ୍ରତିଷ୍ଠିତ ହେଉ —(ଐତରେୟ)

ବାହାର ସମ୍ପତ୍ତି ପ୍ରତି ଆମେ ଲୋଭ କରିବା ନାହିଁ; ପାପ ପ୍ରବଞ୍ଚନାରୁ ଦୂରରେ ରହିବା—(ଈଶାଭାଷ୍ୟ)

ମନୁଷ୍ୟ କେବଳ ଧନରେ ତୃପ୍ତ ହୋଇ ରହି ନ ପାରେ; ମିଥ୍ୟା, ଶଠତା, କୁଟିଳତା ମୁକ୍ତ ମନୁଷ୍ୟହିଁ ସକଳ ଦୋଷରହିତ ପରମ ରାଜ୍ୟର ଅଧିକାରୀ – (କେନ)

ଶ୍ରେୟ ଓ ପ୍ରେୟ ଭିନ୍ନ । ଶ୍ରେୟ ଗ୍ରହଣ କରିବା ଲୋକର ମଙ୍ଗଳ ହୁଏ । କିନ୍ତୁ ପ୍ରେୟ ଗ୍ରହଣ କରିବା ଲୋକ ଲକ୍ଷ୍ୟଭ୍ରଷ୍ଟ ହୁଏ । ଶ୍ରେୟ ପ୍ରେୟ ଉଭୟ ଜୀବନ ପଥରେ ପହଞ୍ଚେ । ବୁଦ୍ଧିମାନ ସେ ଦୁହିଁଙ୍କ ମଧ୍ୟରେ ବିବେଚନା କରେ—ପ୍ରେୟ ଛାଡି ଶ୍ରେୟ ଲୋଡେ । ସମ୍ପତ୍ତି ଓ ଅଧିକାର ମୋହରେ ମୂର୍ଖ ପ୍ରେୟ ପଛରେ ଧାଏଁ । ଅପରିପକ୍ୱ ମାନସ ବାହ୍ୟ ସୁଖ ପଛରେ ଗୋଡ଼ାନ୍ତି—ମରଣର ବିସ୍ତୃତ ଜାଲରେ ଛନ୍ଦି ହୁଅନ୍ତି —(କଠ)

ସତ୍ୟର ହିଁ ଜୟହୁଏ, ଅସତ୍ୟର ନୁହେଁ, ଶୁଦ୍ଧ ସ୍ୱଭାବ ଲୋକ ଯାହା ଚିନ୍ତା ଓ ବାଞ୍ଛା କରେ ତାହା ପାଏ—(ମୁଣ୍ଡକ)

ଧର୍ମ ଶିକ୍ଷା କରି ଶାନ୍ତ ସଂଯତ ହୁଅ । ସତ୍ୟ କହ । ଧର୍ମ ଆଚରଣ କର । ଜନକ-ଜନନୀ, ଆଚାର୍ଯ୍ୟ-ଅତିଥି ଦେବତା ହୁଅନ୍ତୁ । ନିଷ୍ପାପ କର୍ମ, ସଦାଚାର ପ୍ରତି ଅନୁରକ୍ତ ହୁଅ । ସଂସ୍କୃତି-ଆଲୋକ-ବାନ୍ ଲୋକେ ଆଶ୍ୱାସିତ ହୁଅନ୍ତୁ । ଶ୍ରଦ୍ଧା, ହ୍ରୀ, ଶ୍ରୀ, ବିନୟ ସହିତ ଦିଅ । କର୍ତ୍ତବ୍ୟ ପାଳନରେ ସଂଶୟ ଉପୁଜିଲେ ପୁଣ୍ୟାତ୍ମାଙ୍କ ପନ୍ଥା ଅବଲମ୍ବନ କର । ନିଷ୍ଠୁର ହୁଅନାହିଁ । ଧର୍ମରେ ଶ୍ରଦ୍ଧାବନ୍ତ, ବିଚାରରେ ଗମ୍ଭୀର ହୁଅ । ପର ଦୋଷ ଦର୍ଶନରେ ମଧ୍ୟ ସେହି ପନ୍ଥା ଧର । ସଂଯମ ରକ୍ଷାର ଉତ୍ତମ ପରିପୋଷକ ହୁଅ – (ତୈତ୍ତରୀୟ)

ଲୋକ ଯାହା ଭଲ କରିଥାଏ, ତାହା ଫେରି ପାଏ...ଅନ୍ନଶୁଦ୍ଧିରୁ ବୁଦ୍ଧି ଶୁଦ୍ଧି ହୁଏ, ତହୁଁ ସ୍ମୃତିଶକ୍ତି ତୀକ୍ଷ୍ଣ ହୁଏ; ତହୁଁ ସବୁ ଗଣ୍ଠି ଫିଟିଯାଏ—(ଛାନ୍ଦୋଗ୍ୟ)

ମନୁଷ୍ୟ ବା ପଶୁକୁ ଆଘାତ କରନାହିଁ—(ଶ୍ୱେତଶ୍ୱେତର) । ଏଥିରେ ନୈତିକ ଶିକ୍ଷାର କୌଣସି ବିଭବ ଗୁଢ଼ ଯାଇନାହିଁ । ଏସବୁ କହିଦେବା କଥା ନୁହେଁ—ଯେପରି ଯୀଶୁଙ୍କ ନୀତିବାଦ ଆଜି ଅଧିକାଂଶ ଖ୍ରୀଷ୍ଟୀୟାନ ଧର୍ମଯାଜକଙ୍କ ଦ୍ୱାରା ହେଉଛି । 'ବୁଢ଼ାମାନେ ଯେମିତି କହୁଥିବେ' 'ପିଲାମାନେ ଇମିତି କରୁଥିବେ' 'ନୀତି-ଗୁରୁ ସାଜୁଥିବୁ, ଛି ଛି କରୁଥିବୁ'—ଏ ରୀତିରେ ଏହା ବୁଝିବା ନୁହେଁ; ପଦାକୁ ଦେଖାଣିଆ କଥା ନୁହେ । ବାସ୍ତବ ଆଚରଣ, ଜୀବନ୍ତ ଦର୍ଶନ, ଆନ୍ତରିକ ବର୍ଦ୍ଧନର କଥା । ଏହି ନୈତିକ ନିଷ୍ଠାର ଅଭାବ ହିଁ ଆଜିର ଶୋଚନୀୟ ପୃଥିବୀ-ପରିସ୍ଥିତି ପାଇଁ କମ୍ ଦାୟୀ ନୁହେ । ଏଥିରୁ ବିଚ୍ଛିନ୍ନ ହୋଇ ହିଁ ଆଧୁନିକ ବିଜ୍ଞାନ ଧ୍ୱଂସ-ସାଧନରେ ଗୋଟାଏ ଅସ୍ତ୍ରବିଶେଷ ହୋଇଛି । ନିଗଟ ସତ୍ୟକୁ ବିଶ୍ଳେଷଣ କରୁଛି ବୋଲି ଆଧୁନିକ ବିଜ୍ଞାନ ଗର୍ବ କରୁଛି—କିନ୍ତୁ ପାଶୋରି ଦେଉଛି, ନୈତିକ ଆଦର୍ଶ ଭିତରେ ଏପରି ଗୋଟାଏ ସତ୍ୟ ଅଛି ଯାହା ଏ ବୈଜ୍ଞାନିକ ସତ୍ୟ ଅପେକ୍ଷା ସତ୍ୟତର । ସେଥିପାଇଁ ଆଜିର ତଥାକଥିତ ବୈଜ୍ଞାନିକ ସତ୍ୟ ମନୁଷ୍ୟର କର୍ମ-ପ୍ରବାହର ଅନୁକୂଳ ପାଉନାହିଁ, ତାର ଆଧ୍ୟାତ୍ମିକ ଭୂମିକାକୁ ସ୍ପର୍ଶ କରିପାରୁ ନାହିଁ । ଅବଶ୍ୟ ପଦାର୍ଥ ସଂଯୋଜନାକୁ ତନ୍ନ ତନ୍ନ ଅନୁଶୀଳନ କରି ପରମାଣୁ ରାଜ୍ୟର ଅଧିକାରୀ କରି ଆଧୁନିକ ବିଜ୍ଞାନ ମନୁଷ୍ୟକୁ ଅଚିନ୍ତିତ ଶକ୍ତିସମ୍ପନ୍ନ କରିଛି । ତଥାପି ନୈତିକ ଆଦର୍ଶ ଓ ଆଧ୍ୟାତ୍ମିକ ଦର୍ଶନ ବିହୀନରେ ତାହାର ବିଚିତ୍ର ଉଦ୍ଭାବନୀ ଶକ୍ତି କେବଳ ଶିଶୁ ହାତରେ ନିଆଁ ବା ଛୁରୀ ଦେବା ଭଳି ହୋଇଛି । ଏ ଶକ୍ତି-ମଦିରା-ପାନରେ ମତୁଆଲା ନାସ୍ତିକ ବସ୍ତୁବାଦ ଜାଣିଶୁଣି ସକଳ ନୈତିକ ବିଧି-ନିଷେଧକୁ ନିରର୍ଥକ ବନ୍ଧନ ବୋଲି ପବନରେ ଉଡ଼ାଇ ଦେବାର ଉପକ୍ରମ କରୁଛି । ଅନ୍ୟପକ୍ଷରେ, ଆନୁଷ୍ଠାନିକ ମତାନ୍ଧତା ସଞ୍ଜ ସକାଳେ ପସରା ବାଢ଼ି ନିଜର ସ୍ୱାର୍ଥପର ଇନ୍ଦ୍ରିୟାସକ୍ତିକୁ ଘୋଡ଼ାଇ ଦେବାର ଉପକ୍ରମ କରୁଛି । ତଥାପି କୌଣସି ସଂଶୋଧନର ବେଳ ଗଡିଯାଏ ନାହିଁ । ସଂକ୍ଷେପରେ, ନୈତିକ ଗୁଣର ଉପଯୁକ୍ତ କର୍ଷଣରେ ଯୁଦ୍ଧ ଅନେକ ଦୂର ନିବାରିତ ହୋଇ ପାରିବ, ବୁଝେଇବାର ପ୍ରୟୋଜନ ନାହିଁ ।

— ୪ —

ତଥାପି ଏକା ଏକା ନୈତିକତା ଜୀବନର ଏ ଭୀଷଣତମ ଅଭିଶାପ ତୁଳେ ଲଢ଼େଇ କରି ତାକୁ ମାରିବାରେ ସଂପୂର୍ଣ୍ଣ ସମର୍ଥ ହେବ ବୋଲି ବର୍ତ୍ତମାନ ପରିସ୍ଥିତିରେ ବିଶ୍ୱାସ କରି ହେଉନାହିଁ । ଏଥିପାଇଁ ତାହାର ଗୋଟାଏ ଅଧିକ ବଳିଷ୍ଠ ଓ ସ୍ଥାୟୀ ଆଧାର ଲୋଡ଼ା । ଇନ୍ଦ୍ରିୟ—ସବାର ଜୀବନ—ଅଶ୍ୱର ଡିଆଁକୁଦା ତାକୁ ବଳାଇ ଯାଉଛି ।

ଏଠାରେ ପ୍ରଶ୍ନ ଆସୁଛି—ନୈତିକତା କାହିଁକି ? ତାର ମୌଳିକ ଭିତ୍ତି କଅଣ ? ମୁଁ କାହିଁକି ଭଲ ହେବି, ଦୟାଳୁ ହେବି ? ଅନ୍ୟମାନଙ୍କୁ ସ୍ନେହ କରିବି ? ଏହାର ଉତ୍ତର ଦେବାରେ ହିଁ ବେଦାନ୍ତ ମାନବିକ ଚିନ୍ତାଦ୍ରିର ଉଚ୍ଚତମ ଶିଖରକୁ ଚଢ଼ି ଯାଇଛି—ସୃଷ୍ଟି ଓ ସ୍ଥିତିର ଅଖଣ୍ଡତାକୁ ହୃଦବୋଧ କରି ନୈତିକତାର ଅର୍ଥବନ୍ତ ଓ ସ୍ୱୟଂ ପ୍ରକାଶ କରିଛି—ଯେ ଏଠାରେ 'ବହୁ' ଦେଖେ ସେ ମରଣରୁ ମରଣକୁ ଠେଲି ହୋଇଯାଏ, ଏକ ଦର୍ଶନରେ ହିଁ ଅଖଣ୍ଡ ଶାନ୍ତି, ପରମ ଆନନ୍ଦ, ଉତ୍କୃଷ୍ଟ ଜ୍ଞାନ ରହିଛି... କାମନାର ପୂରଣରେ ସସାଗରଧରା, ଦୀର୍ଘ ଜୀବନ, ଅଶେଷ ସମ୍ପଦ ଉପରେ ରାଜତ୍ୱ ମିଳିଲେ ମଧ୍ୟ ତାହା କେତେଦିନ ପାଇଁ ? ଇନ୍ଦ୍ରିୟ ପ୍ରଖରତା କ୍ରମେ ଦୁର୍ବଳ ହୋଇଯିବ...ସାଂସାରିକ ଯେ କୌଣସି ପ୍ରକାର ଜୀବନ ବାସ୍ତବିକ୍ ଅତିଶୟ କ୍ଷୁଦ୍ର ଅମୃତ ଥରେ ଆସ୍ୱାଦନ କରି କେଉଁ ମରଦେହୀ ଏ ଐହିକ ଜୀବନର ବର୍ଣ୍ଣ ଓ ରାଗରେ ସନ୍ତୁଷ୍ଟ ରହିବ ? (କଠ)

ମୁଁ ପରମକୁ ଛାଡ଼ିବି ନାହିଁ, ପରମ ମତେ ଛାଡ଼ିବ ନାହିଁ; ସବୁ କର୍ମ ଆତ୍ମବୋଧ ନିମିତ୍ତ ଉତ୍ସର୍ଗ କରିବ— କେନ) ।

ପରମ ହିଁ ସତ୍ୟ—ସେ ମତେ ରକ୍ଷା କରନ୍ତୁ—(ଐତରେୟ)

ଏହି ସଂସାର ତ୍ୟାଗରେ ହିଁ ଭୋଗ୍ୟ...ଯେ ନିଜ ଭିତରେ ସବୁ ପ୍ରାଣୀକୁ ଦେଖେ. ସବୁ ପ୍ରାଣୀଙ୍କ ଭିତରେ ନିଜକୁ ଦେଖେ, ତାର ଦ୍ୱେଷ ରହି ନ ପାରେ—(ଈଶାଭାଷ୍ୟ) ।

କେବଳ କର୍ମଦ୍ୱାରା ଅସୃଷ୍ଟ ଜଗତ ଉପଲବ୍ଧ ହୋଇ ନ ପାରେ...ଆଗରେ ପଛରେ, ବାଁରେ, ଡ଼ାହାଣରେ, ଉପରେ, ତଳେ, ସବୁଠାରେ ହିଁ ସେହି ଅସୀମ । ଅସୀମ ହିଁ ବିଶ୍ୱ । ଜ୍ଞାନୀ ଆତ୍ମଲୀଳାରେ ସଦାନନ୍ଦି ହୁଏ—(ମୁଣ୍ଡକ)

ଯେ ପ୍ରକୃତରେ ଦେଖେ ସେ ରୋଗ, ବାଧା, ମୃତ୍ୟୁଦେଖେ ନାହିଁ; ସେ ସବୁ ଦେଖେ, ସବୁମନ୍ତେ ସବୁ ପାଏ....ଆମେ ଅନ୍ଧକାରର ଆରପାରକୁ ଯିବା—(ଛାନ୍ଦୋଗ୍ୟ) ।

ବ୍ରହ୍ମ ହିଁ ଅଭୟ...ଧନରତ୍ନ ଭରା ସମଗ୍ର ପୃଥିବୀ ଆମର ହେଲେ ମଧ୍ୟ ଆମେ ଅମର ହୋଇପାରିବୁ ନାହିଁ, ପ୍ରତ୍ୟେକ ପଦାର୍ଥ ନିଜ ପାଇଁ ଆମର ପ୍ରିୟ ନୁହେଁ; କିନ୍ତୁ ଆତ୍ମ ପାଇଁ—ଅସତ୍‌ରୁ, ସତ୍‌କୁ, ତମସରୁ ଜ୍ୟୋତିକୁ, ମୃତ୍ୟୁରୁ ଅମୃତକୁ ମତେ ନେଇଯାଅ—(ବୃହଦାରଣ୍ୟକ)

— ୪ —

ଏସବୁର ତାତ୍ପର୍ଯ୍ୟ ସ୍ପଷ୍ଟ । ବସ୍ତୁ ଜଗତରେ ଥିବାଯାକ ସଂଘର୍ଷ ଲଗିବ । ସଦା ଗହଳ ବିପଣ୍ଣତ – ଅଭିମୁଖୀ ଉଦ୍ଦାମ ଚଞ୍ଚଳ କଠିନ ପ୍ରତିଯୋଗୀ ବ୍ୟବସାୟ-ମୂଳକ ଦୈନନ୍ଦିନ ଜୀବନ ବସ୍ତୁ – ଜଗତକୁ ହିଁ ଜାବୁଡ଼ି ଧରିଥିବ । ଏ ପରିସ୍ଥିତିରେ ମାନବସମାଜ ସବୁବେଳକୁ ସମର-ଶୂନ୍ୟ ହୋଇଯିବ, ଏପରି ଭବିବା ଅସମ୍ଭବ ନ ହେଲେ ମଧ ଦାମ୍ଭିକ ହେବ । ସତ୍ୟ ଓ ଅହିଂସା ପ୍ରତିଷ୍ଠିତ ଅଶୋକ ସାମ୍ରାଜ୍ୟର ଜ୍ୱଳନ୍ତ ସ୍ମାରକ ଶିଳାଲିପି ପଛେ ପଛେ ସମୁଦ୍ର ଗୁପ୍ତଙ୍କ ସମର-ସର୍ଜିତ ଦିଗ୍ବିଜୟର ପ୍ରଶସ୍ତି ଅନୁଶାସନ ଖୋଦିତ ହୋଇଥିଲା । ଜୀବନ ବାସ୍ତବିକ୍ କେଡେ ଦୁର୍ଜ୍ଞେୟ, ଦୁର୍ଭେଦ୍ୟ, ରହସ୍ୟମୟ ! ଜୀବନ-ବ୍ରତୀ ଭବରେ ପ୍ରାଚୀନ ଭରତ ରାଷ୍ଟ୍ରନୀତି ସାମରିକ ତାଲିମ୍‌କୁ ଆନୁଷ୍ଠାନିକ କରିଥିଲା । କିନ୍ତୁ ବୃହତ୍ତର-ଜୀବନ-ବ୍ରତୀ ଭବରେ ସେହି ଅନୁଷ୍ଠାନକୁ ଧର୍ମ-ସଂସ୍ଥାପନରେ ଲଗାଇବାରେ ପଶ୍ଚାତ୍ପଦ ହୋଇ ନ ଥିଲା— 'ସମରବାଦ'କୁ ଉତ୍ସାହିତ କରି ନ ଥିଲା । ଏହାର ପ୍ରମାଣ ମିଳେ ମହାଭରତ ଯୁଦ୍ଧର ସ୍ମରଣୀୟ ଭୂମିକାରେ ସବୁ ଶାନ୍ତ ସମାଧାନର ବାଟ ବନ୍ଦ ଓ କୌରବଙ୍କ ଦୁଷ୍ଟ ପ୍ରକୃତିର ସ୍ପଷ୍ଟ ନିଦର୍ଶନ ମିଳିବା ଉତ୍ତାରୁ ଶ୍ରୀକୃଷ୍ଣଙ୍କ 'ଯୁଦ୍ଧ ଡାକରା'ରେ । ତଥାପି ସେ ନୀତିର ସାମୟିକ ସ୍ଖଳନ ନଥିଲା, ଏହା କହି ହେବ ନାହିଁ । ସବୁବେଳେ, ଆଦର୍ଶ ଓ ବାସ୍ତବ ଭିତରେ ବହୁତ ତଫାତ୍ । 'ଯାହା ହେବା ଉଚିତ' ଠାରୁ 'ଯାହା ଅଛି' ସର୍ବଦା ବହୁତ ପଛରେ । କିନ୍ତୁ ତାହା ବୋଲି ଆମେ ଆଦର୍ଶ ଛାଡ଼ି ମଉଜ ମଜଲିସ୍ କରି ଚାଲିବୁ, ଏ ପ୍ରଶ୍ନ ଉଠେ ନାହିଁ । ସେପରି ହେଲେ ଜୀବନର ଅର୍ଥ କିଛି ରହିବ ନାହିଁ । ବାସ୍ତବରୁ ଆଦର୍ଶକୁ ଉଠିବାରେ ହିଁ ମାନବିକତା ରହିଛି । ବେଦାନ୍ତ ଏ ଉଭୟର ସ୍ୱର୍ଣ୍ଣଯୋଗରେ ବାଟ ଚାଲିବା ପାଇଁ ଆମକୁ ପ୍ରବର୍ତ୍ତାଏ ।

ଅନ୍ୟର ରକ୍ତରେ ଯାହା ଗଢ଼ା, ଅନ୍ୟର ଲୁହ ଲହୁରେ ଅର୍ଜିତ ସମ୍ପଦ ଯାହା ଆମ ହାତରେ ଅଛି, ତାହା ଦିନେ ନିଶ୍ଚୟ ଆମ ହାତରୁ ଛଡାଇ ନିଆଯିବ । ତ୍ୟାଗ-ସେବା ମୈତ୍ରୀ ମାର୍ଗରେ ଭରସାମ୍ୟ ରକ୍ଷିତ ନ ହେଲେ 'ରକ୍ତର ଦାନ୍ତ ଓ ନଖ' (Red tooth and claw) ମାର୍ଗରେ ପ୍ରକୃତି ସେ ସାମ୍ୟ ରକ୍ଷା କରିବ । ଯୁଧିଷ୍ଠିର କହିଥିଲେ—ପ୍ରାଣୀମାନେ ନିରନ୍ତର ମରୁଛନ୍ତି, ତଥାପି ଶେଷ ସ୍ଥିର ବୋଲି ଭବୁଛନ୍ତି, ଏହାଠାରୁ ଆଶ୍ଚର୍ଯ୍ୟ କଅଣ ଥାଇପାରେ ? ମନୁଷ୍ୟ ପକ୍ଷରେ ଯାହା, ସାମ୍ରାଜ୍ୟ ପକ୍ଷରେ ତାହା । ସୁବିସ୍ତୃତ ପରାକ୍ରାନ୍ତ ଚେଲଦିଆ, ବେବିଲୋନ୍, ଏସିରିଆ, ଗ୍ରୀକ୍, ରୋମ ସାମ୍ରାଜ୍ୟ କାହିଁ ? ନା, ଏ ରୋଗ ଉତ୍କଟ ହୋଇଛି—ଅସାଧାରଣ ଚିକିତ୍ସା ବିନା ଆରୋଗ୍ୟ ହେବ ନାହିଁ । ରାଷ୍ଟ୍ରନୀତିଜ୍ଞ କୂଟନୀତି ବଳରେ ଏହାର ଉପଶମ କରି ପାରିବେ ନାହିଁ—ତଥାକଥିତ 'ଶାନ୍ତିବାଦୀ' ମଧ ଏହା କରିପାରିବେ ନାହିଁ । କହିବା ଅନାବଶ୍ୟକ, ବିଶ୍ୱଶାନ୍ତି ସ୍ଥାପନର ପ୍ରଥମ ପର୍ଯ୍ୟାୟ

ବର୍ତ୍ତମାନ ଜଗତର ସାମାଜିକ, ରାଜନୈତିକ, ଅର୍ଥନୈତିକ ସଂସ୍ଥାର ନ୍ୟାୟସଙ୍ଗତ ପୁନର୍ଗଠନ । ତଥାପି ମନେ ରଖିବାକୁ ହେବ ଏପରି କେତେ ସଜାଡ଼ିଲେ ମଧ୍ୟ ଆଧ୍ୟାତ୍ମିକତାର ଗାମ୍ଭୀର୍ଯ୍ୟ, ସାମ୍ୟ, ପ୍ରସନ୍ନତା ବିନା ଦଳବାଦ ଓ ବ୍ୟକ୍ତିଗତ ଲୋଲୁପତା ଏ ଅଟ୍ଟାଳିକାକୁ ସଅଳ ବା ଉଚ୍ଛୁରରେ ଭୁଷୁଡ଼ାଇ ଦେବ ! ସଂକୀର୍ଣ୍ଣ ସ୍ୱାର୍ଥ ଗଣ୍ଡିରୁ ସେହି ବଡ଼ ବଡ କଥା କହିବା ବାସ୍ତବିକ କି ହାସ୍ୟାସ୍ପଦ ! ସେଥିପାଇଁ ଯେ କୌଣସି ଯୋଜନାର ପ୍ରଥମ-ବିଗ୍ରର୍ଯ୍ୟ । ସର୍ବମଙ୍ଗଳ ପାଇଁ ଆନ୍ତରିକ ନିଷ୍ଠା, ଗଭୀର ସମ୍ବେଦନ, ସର୍ବସ୍ୱ ତ୍ୟାଗ ପଣ ତହିଁରେ ଅଛି ତ ? ଏହା ହିଁ ଅଗ୍ନି-ପରୀକ୍ଷା । ପ୍ରକୃତ ସାଧୁ-ସନ୍ଥ, ମୁନି ଋଷି ଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି । ସେମାନେ ହିଁ ବର୍ତ୍ତମାନ ଆମକୁ ବାଟ ବଢ଼ାଇବେ ।

ଅବୁଝାମଣା, ଅନୁଦାରତା, ପାଶବିକତା ଯୁଦ୍ଧର ବାଟ ଫିଟାଏ । ସେ ସବୁ ଘୁଞ୍ଚିବ କିପରି ? ଆହୁରି ଗଭୀର ଚିନ୍ତା କରିବାକୁ ହେବ । ଅକାର୍ଯ୍ୟକାରୀ ଚିନ୍ତାର ପ୍ରତିକାର ଆହୁରି ଗଭୀର ଚିନ୍ତା—

ବୁଦ୍ଧିମାନ ଚିନ୍ତା ଜଗତର ଆଖି; ବିବେକୀର ସେ ଆଖି ଥାଏ, ତହିଁରେ ସେ ପ୍ରତିଷ୍ଠିତ ହୁଏ । ସେପରି ଚିନ୍ତା ଜଗତର ଆଶ୍ରୟ, ପରମଶ୍ରେୟ...ବୁଝାମଣା ହିଁ ସତ୍ୟ, ତହିଁରୁ ଯେ ଟଳେ ନାହିଁ, ସେ ପୂର୍ଣ୍ଣକାମ ହୁଏ—(ଐତରେୟ)

ସମର ପାଇଁ ମଧ୍ୟ ସହଯୋଗ, ସାହସ, ନେତୃତ୍ୱ, ସଂଯୋଜନା ଲୋଡ଼ା ହୁଏ । କିନ୍ତୁ ତହିଁରେ ଏ ଦୈବୀ ସଂପଦ୍‌ଗୁଡ଼ିକ କି ନୀଚ ଉଦ୍ଦେଶ୍ୟ ସାଧନ ପାଇଁ, କି ବିରାଟ ଧ୍ୱଂସ ପାଇଁ ବ୍ୟବହୃତ ନ ହୁଏ ! ଶାନ୍ତି, ଶ୍ରଦ୍ଧା ଓ ବିଶ୍ୱାସ, ବିଶ୍ୱ ଭ୍ରାତୃତ୍ୱ ପାଇଁ ଏହା ପ୍ରଯୁକ୍ତ ହେଲେ କି ମହତ୍ତ୍ୱର ସହସ୍ରଗୁଣ ପରିଚୟ ନ ମିଳନ୍ତା ?

ଶାନ୍ତିର ପନ୍ଥା କ୍ଷୁରଧାର ପରି—(କଠ)....ଆତ୍ମ-ଚେତନାର ଦିବ୍ୟ ଆଲୋକରେ ଆମେ ସେହି ପଥରେ ଚାଲିବା । ବର୍ତ୍ତମାନ କୂଟନୀତିର ଅସ୍ତ୍ରାଗାରରେ ଥିବା ଶାନ୍ତି ନୁହେ, ପ୍ରକୃତ ଶାନ୍ତି ଆମେ ଖୋଜିବା ।

କବି ଗାଇଛନ୍ତି; ଦୁଃଖର ଉପଯୋଗ ମଧୁର (Sweet are the uses of adversity)—ଥେକ୍‌ରେ ଆଉଠାଏଁ ଯଥାର୍ଥ କହୁଛନ୍ତି—

Adversity is the great reconciler, it brings adverted. Kindness, disarms animosity and causes yesterdays enemy to fling his hatred aside and hold

out a hand to the fallen friend of old days (Henry Esmond)

ଦୁଃଖ ହିଁ ମହାନ୍ ପ୍ରୀତି ସଂସ୍ଥାପକ ବିସ୍ମୃତ ଦୟାକୁ ଫେରାଇ ଆଣେ, ଦ୍ୱେଷକୁ ନିରସ୍ତ କରେ, କାଲିର ଶତ୍ରୁକୁ ନିଜ ଘୃଣା ଫିଙ୍ଗିଦେଇ ପୂର୍ବ ପରାଜିତ ମିତ୍ର ପ୍ରତି ହାତ ବଢ଼ାଇବା ପାଇଁ ପ୍ରବର୍ତ୍ତାଏ । ବର୍ତ୍ତମାନର ପୃଥିବୀ ସଙ୍କଟ ଆମ ବିଜୟୀ-ବିଜିତଙ୍କୁ ଏ ମହାନ୍ ଶିକ୍ଷା ଦେଉ । ବେଦାନ୍ତ ଠିକ୍ କହିଛି – ବିଜିତ ଓ ବିଜୟୀ ଅଭିନ୍ନ ।

ଏ ମହାନ୍ ଉଦ୍ୟମରେ ପ୍ରତ୍ୟେକର ଭାଗ ଓ ଦାୟିତ୍ୱ ଅଛି । ଏଥିରେ କେତେ ଜଣ 'ନେତା' ଅନ୍ୟଙ୍କୁ ଉଠାଣି ବାଟ (Step ascent) ଦେଖାଇ ନିଜେ କୁସୁମ-କୋମଳ ବିଳାସ-ଚିକ୍କଣ (Primrose path of dalliance) ରାସ୍ତାରେ ଯାଇପାରିବେ ନାହିଁ । ମନେ ରଖିବାକୁ ହେବ, ଆଜି ପ୍ରତ୍ୟେକ ଲୋକର ପ୍ରତ୍ୟେକ ଭାବ-ତରଙ୍ଗ କେଡ଼େ କ୍ଷୁଦ୍ର ହେଲେ ମଧ୍ୟ ବିଶ୍ୱସାଗରରେ ତାହା ଢେଉ ମାରୁଚି । ତହିଁର ଯେ କୌଣସି ଅଂଶର ଯତ୍ କିଞ୍ଚିତ୍ ସଂଘର୍ଷରେ ସମଗ୍ର ସାଗର ବିକ୍ଷୁବ୍ଧ ହେଉଛି । ଏହି ସୂତ୍ରରେ ହିଁ ବୈଦିକ ଚିନ୍ତା 'ପିଣ୍ଡବ୍ରହ୍ମାଣ୍ଡ' ସମନ୍ୱୟ ସ୍ଥାପନ କରିଛି । ଏ ଅବବୋଧ ଆସିଲେ, ଆମେ କେତେକଙ୍କ ପାଇଁ ନୁହେଁ, ସମସ୍ତଙ୍କ ପାଇ ହାତ ମିଳାଇବା । ଏ ବିଭବରେ ଭାରତ ସ୍ଥାନ ଆଦି ଯୁଗରୁ ଖ୍ୟାତ । ଆଜି ବିଶ୍ୱଶାନ୍ତି ସ୍ଥାପନ ପ୍ରୟାସରେ ଭାରତ ପଛଉ ନାହିଁ, ପଛାଇବ ନାହିଁ ।



# ଉପନିଷଦ୍‌ରେ ଶିକ୍ଷା

ବର୍ତ୍ତମାନ ଆମ ଦେଶରେ ପ୍ରଚଳିତ ଶିକ୍ଷାର ଅନୁପଯୋଗିତା ଓ ଅପକାର ସମ୍ବନ୍ଧେ ବହୁତ କୁହାଯାଉଛି, ବହୁତ ଭାଷଣ ତଥା ବିବୃତି ଦିଆ ଯାଉଛି । ଏ ବିଷୟରେ ସରକାର, ଶିକ୍ଷା-ବିଭାଗ, ଶିକ୍ଷକ, ଅଭିଭାବକ, ଜନସାଧାରଣ, ସର୍ବୋପରି 'ନେତୃବର୍ଗ'—ଯେ ଯାହାକୁ ଯେମିତି ଦିଶିଲା କହୁଛନ୍ତି; ନାନା ପ୍ରଣାଳୀ, ସଂସ୍କାର, ପଦ୍ଧତି, ଯୋଜନା ଦେଖା ଦେଉଛି । ଏସବୁ ଭିତରେ କିନ୍ତୁ ସ୍ପଷ୍ଟ ହେଉଛି—ଆମର ଏବର ଶିକ୍ଷା-ପ୍ରଣାଳୀ ବିଦେଶୀ ଶାସକର ସ୍ୱାର୍ଥ ଦୃଷ୍ଟିରୁ ଗଠିତ ହୋଇଥିଲା—ସ୍ୱାଧୀନ ଲୋକହିତକର ରାଷ୍ଟ୍ରରେ ତାହାର ସ୍ଥାନ ଆଉ ନାହିଁ—ନଖରୁ ଶିଖଯାଏ ତାହାର ଅଦଳ ବଦଳ ଲୋଡ଼ା । ମାତ୍ର ଏ ପରିବର୍ତ୍ତନଟା କଅଣ, ପୁଣି କିଏ କାହାକୁ ଧରି ତାହା କରିବ, ତାହା କିପରି ନିର୍ଦ୍ଦିଷ୍ଟ ଶୃଙ୍ଖଳିତ ଭାବରେ କାର୍ଯ୍ୟକାରୀ ହେବ, ସେ ବିଷୟରେ 'ନାନା ମୁନିଙ୍କ ନାନା ମତ' । ତେବେ, ଏତିକି ସର୍ବସମ୍ମତ—ଦେଶ ତଥା ଜାତିର ପ୍ରତ୍ୟେକ ବାଳକ ବାଳିକା ଏପରି ଶିକ୍ଷା ଲାଭ କରିବେ, ଯେପରି ସେ ସୁସ୍ଥ ସବଳ ଶରୀର, ମନ, ବୁଦ୍ଧିବୃତ୍ତି ଘେନି କାହାକୁ ନ ଠକି ନ ଭଣ୍ଡି ଜୀବିକା ଅର୍ଜନରେ କ୍ଷମ ହେବେ—ନିଜର ସ୍ୱାର୍ଥସଙ୍ଗେ ଦେଶ, ଜାତି, ଜନ ସମୂହର ସ୍ୱାର୍ଥକୁ ମିଳାଇ ବ୍ୟକ୍ତିଗତ ଅଭ୍ୟୁନ୍ନତି ସଙ୍ଗେ ସାମାଜିକ କଲ୍ୟାଣ ସାଧନରେ ରତ ହେବେ—ବିବେଚନା କରି କାର୍ଯ୍ୟ କରିବେ—ନୈତିକ ଓ ଆଧ୍ୟାତ୍ମିକ ଆଦର୍ଶରେ ଯଥାସମ୍ଭବ ଅନୁପ୍ରାଣିତ ହେବେ—ଜ୍ଞାନ ଓ ସଂସ୍କୃତିର ଆଲୋକରେ ଯଥାଶକ୍ତି ଉଦ୍ଭାସିତ ହେବେ । ଲକ୍ଷ୍ୟ ଏକ—ପନ୍ଥା ବିଭିନ୍ନ, ଏହା ସବୁ କାଳରେ ଗଡ଼ି ଆସୁଛି । ପୁଣି ଏ ପରିବର୍ତ୍ତନଶୀଳ ଯୁଗରେ ସମସ୍ୟା ଆହୁରି ଜଟିଳ । ତାର ସମୁଚିତ ସମାଧାନର ମାର୍ଗ କାଳ ଦେଖାଇବ । ଏବେ ତଦୁପଯୋଗୀ ବିଭିନ୍ନ ଉପାଦାନର ସଂଗ୍ରହ, ଅନୁଶୀଳନ, ପ୍ରୟୋଗ ହିଁ କରାଯାଇପାରେ । ଏ ରୀତିରେ ବିଷୟଗତ ପ୍ରାଚୀନ ପରମ୍ପରାର ଗୋଟିଏ ବିଶିଷ୍ଟ ଧାରାର ବିହିତ ସୂଚନା ହିଁ ଦିଆଯାଉଛି ।

ପରଂପରା ନ ଥାଇ ପ୍ରଗତିର ଅର୍ଥ ନାହିଁ; ପ୍ରାଚୀନ ନ ଥାଇ ନବୀନର ସ୍ଥିତି ନାହିଁ । ଆମେ 'ନବ' ନିଶାରେ ଘାରି ହୋଇ କେଡ଼େ କୁହାଳିଆ ହେଲେ ମଧ୍ୟ ଗଢ଼ିବା ବେଳକୁ, ବାସ୍ତବ କ୍ଷେତ୍ରରେ କଷ୍ଟେମଷ୍ଟେ ପାଦେ ପାଦେ ଚାଲିବା ବେଳକୁ, ମୁଣ୍ଡର ଝାଳ ତୁଣ୍ଡରେ ମାରି କଣ୍ଟାଳଟା କୁଦି ଦୈନନ୍ଦିନ କାର୍ଯ୍ୟ ନିର୍ବାହ କରିବା ବେଳକୁ ପ୍ରାଚୀନ ଆଦର୍ଶକୁ ପ୍ରତୀକ କରି ନ ଚାଲିବା ଛଡ଼ା ଆମର ଗତି ନାହିଁ ।

ଆମର, ଭରତ, ପୁଣ୍ୟଭୂମି ଭରତର ସେ ସଙ୍କେତ ପୁଣି ସ୍ପଷ୍ଟ, ଉଜ୍ଜ୍ୱଳ, ପ୍ରଭମନ୍ତ, ଇତିହାସ ବିଭବପୂର୍ଣ୍ଣ । ଆର୍ଯ୍ୟାବର୍ତ୍ତର ମୂଳଗ୍ରନ୍ଥ ବେଦ ସେ ମହିମା, ବିଭବ, ଉଜ୍ଜ୍ୱଳତାର ଭୂମିକା । ସେହି ବେଦର ଅବିଚ୍ଛିନ୍ନ ଅଙ୍ଗ ଉପନିଷଦ୍‌ରୁ ଆଲୋଚିତ ସମସ୍ୟାର ବୁଝାମଣା ଲଗି ପ୍ରୟୋଜନୀୟ କିଞ୍ଚିତ୍ ଆଭସ ଦେବା ଏଠାରେ କାମ୍ୟ ।

ଶିକ୍ଷା ଯନ୍ତ୍ର ବିଶେଷ ନୁହେ; ଏ ଯାନ୍ତ୍ରିକ ଯୁଗରେ ଆମେ କେତେ ତାକୁ ଯନ୍ତ୍ରଗତ କରିବାକୁ ଚେଷ୍ଟା କଲେ ମଧ ତାହା ତହିଁରୁ ଫିଟିଯିବ । ପୁସ୍ତକଗତ ନୁହେଁ, ପୁସ୍ତକ ନିମିତ୍ତ ଭବରେ ସେଥିପାଇଁ ଆବଶ୍ୟକ ହୋଇପାରେ । ପ୍ରଣାଳୀ-ଗତ ନୁହେଁ, ପ୍ରଣାଳୀ ଅବଲମ୍ବନ ପାଇଁ ତହିଁରେ ଲୋଡା ହୋଇପାରେ । ମୁଖ୍ୟରେ ତାହା ଶିକ୍ଷକ ଶିକ୍ଷାର୍ଥୀ—ଦୁଇଟି ପ୍ରାଣର ମଧୁର ସହଯୋଗ, ଭବ ବିନିମୟ, ସତ୍ୟ-ଶିବ-ସୁନ୍ଦର ଅବଧାରଣର ଯୌଗିକ ପ୍ରଚେଷ୍ଟା ଏକ ପକ୍ଷରେ ଭକ୍ତି ଓ ଗୌରବ, ଅନ୍ୟ ପକ୍ଷରେ ସ୍ନେହ ଓ ଶ୍ରେୟ ସମ୍ପାଦନ—ଏକ ପକ୍ଷରେ ସାଧନା ଓ ଅନୁସନ୍ଧିତ୍ସାର ନିଷ୍ଠା ଓ ଉତ୍ସାହ, ଅନ୍ୟ ପକ୍ଷରେ ମନୁଷ୍ୟ ଭିତରେ ଦେବତ୍ୱ ଉନ୍ମେଷର ଗାମ୍ଭୀର୍ଯ୍ୟ ଓ ପ୍ରସନ୍ନତାର ପବିତ୍ର ପ୍ରାଣବନ୍ତ ସଂଯୋଗ ଶିକ୍ଷାର ଭିତ୍ତି । ଏ ଭିତ୍ତି ଉପନିଷଦ୍‌ର ଗୁରୁ ଶିଷ୍ୟ ସମ୍ପର୍କରେ ବଳବତ୍ତର । ଯମ-ନଚିକେତା, ଉଦ୍ଦାଳକ-ଶ୍ୱେତକେତୁ, ଅଙ୍ଗୀରସ-ସୌନକ, ବରୁଣ-ଭୃଗୁ ପରଂପର ଆଜି ଆମର ପ୍ରଣିଧାନଯୋଗ୍ୟ । ଆଜି ସେ ସ୍ନେହ, ବାତ୍ସଲ୍ୟ, ଭକ୍ତି, ପବିତ୍ରତା ସ୍ୱପ୍ନପରି ଲଗୁଛି । କିନ୍ତୁ ମନେ ରଖିବାର କଥା ଦିନେ ସେସବୁ ବାସ୍ତବ ଥିଲ । ପୁଣି ସାଧନା ଓ ସଂଯମର ଅପ୍ରତିହତ ବଳରେ ବାସ୍ତବ ହୋଇପାରେ । ଆଜି ତାସ୍ଥଳେ ବିଦ୍ରୂପ, ଅବିଶ୍ୱାସ, ଦୋଷଦର୍ଶନ, ଯେ କୌଣସି ମତେ ପେଟ ପୋଷା, ବଡ଼ ଲୋକି ସାଜ, ନେତୃତ୍ୱ ସଂପାଦନ, ମଜଲିସ୍, ଫୁର୍ତ୍ତି 'ବହୁ ଆଡ଼ମ୍ବର ଲଘୁକ୍ରିୟା' ସବୁ କ୍ଷେତ୍ରରେ ଯେପରି ଶିକ୍ଷା କ୍ଷେତ୍ରରେ ସେପରି ବିଶେଷ ଭବରେ ଦେଖାଦେଇଛି । କହିବା ବାହୁଲ୍ୟ ଶିକ୍ଷାର ମୂଳ ହିଁ ଏଥିଦ୍ୱାର ଉପୁଡ଼ିଯିବା ସ୍ୱାଭବିକ ।

ଶିକ୍ଷା କ୍ଷେତ୍ରରେ ମନସ୍ତତ୍ତ୍ୱ ଦିଗରୁ ଅନେକ ନୂତନ ତଥ୍ୟ ଏବେ ବାହାରୁଛି । ତହିଁର ସାର ହେଉଛି—ଶିକ୍ଷା ଶିକ୍ଷାର୍ଥୀର ଶ୍ରଦ୍ଧାଭଜନ, ମନଲଖି, ବୋଧଗମ୍ୟ, ପ୍ରାଞ୍ଜଳ, ଦୈନନ୍ଦିନ ଅନୁଭୂତି ସଂସ୍ପୃଷ୍ଟ ତଥା ଅନୁଗତ ହେବା ଆବଶ୍ୟକ, ଶିକ୍ଷାର୍ଥୀର କୋମଳ ତରୁଣ ମାନସରେ ଭବ ଓ କ୍ରିୟାର ଗଭୀର ପ୍ରାକୃତିକ ରସ ଫିଟାଇବାରେ ମହତ୍ ପ୍ରେରଣା ଦେବା ପାଇଁ ସରଳ ସହଜ ସୁନ୍ଦର ବୈଜ୍ଞାନିକ ବିଶ୍ଳେଷଣ ସ୍ପଷ୍ଟ ପ୍ରତିପାଦନ, କାହାଣୀର ପ୍ରୟୋଗ ଇତ୍ୟାଦି ଅତି ମୂଲ୍ୟବାନ୍ ସାମଗ୍ରୀ । ଏ ସାମଗ୍ରୀର ବ୍ୟବହାରରେ ହିଁ ଶିକ୍ଷା ସଫଳ ହେବ । ନଚେତ୍ କ୍ଳିଷ୍ଟ ଦୁର୍ବୋଧ ଭବରେ

ନିଷ୍ପ୍ରାଣ ଭଷାରେ ପଣ୍ଡିତଂମନ୍ୟ ମାର୍ଗରେ କେବଳ ତତ୍ତ୍ୱ ବ୍ୟାଖ୍ୟାନ କରି ବସିଲେ ତାହା ନିଷ୍ଫଳ ହେବ । ଉପନିଷଦ୍ ଏହାର ଜ୍ୱଳନ୍ତ ନିଦର୍ଶନ । କେତୋଟି ଦୃଷ୍ଟାନ୍ତ ଦେଖାଯାଉ—

ଶରୀର ଗୋଟିଏ ରଥ, ଇନ୍ଦ୍ରିୟ ସେ ରଥ ଚାଳନ ପାଇଁ ନିଯୁକ୍ତ ଅଶ୍ୱ, ମନ ବାଗର, ବୁଦ୍ଧି ସରଥୀ ଆତ୍ମା ରଥାରୋହୀ, ସଂସାର ପଥ । ସାରଥୀ ବାଗରକୁ ଠିକ୍ ଧରି ଘୋଡାକୁ ବାଗେଇ ବାହି ଜାଣିଲେ ରଥ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବ, ନହେଲେ ଘୋଡା ଅମାନିଆ ହୋଇ ଏଣେତେଣେ ଧାଇଁବ, ରଥ ଘୂରି ଘୂରି ହୋଇ 'ଜନ୍ମାନ୍ତର' କ୍ଷେତ୍ରରେ ବୁଲୁଥିବ—(କଠ)

ରାଶି ଭିତରେ ତେଲ ପରି, କ୍ଷୀର ଭିତରେ ଘିଅ ପରି, ନଦୀର ବାଲିପଟା ଭିତରେ ପାଣି ପରି, ଅରଣୀ ଭିତରେ ନିଆଁ ପରି ଆମ ଭିତରେ ପରମାତ୍ମା ଅଚ୍ଛନ୍ନ ରହିଛି । ଆରଣୀକୁ ଘର୍ଷିଲେ ନିଆଁପରି, ରାଶିକୁ ପେଡ଼ିଲେ ତେଲପରି, କ୍ଷୀରକୁ ମନ୍ଥିଲେ ଲହୁଣୀ ପରି, ବାଲି ଶେଯକୁ ଖୋଳିଲେ ପାଣିପରି ମନୁଷ୍ୟର ସତ୍ୟ ଓ ତପସ୍ୟା ସାଧନରେ ପରମାତ୍ମା ପ୍ରକଟିତ ହୁଏ—(ଶ୍ୱେତାଶ୍ୱେତର)

ପରମାତ୍ମା ଏକ । ତାହାର ଶକ୍ତି ଓ କ୍ରିୟା ଭେଦରେ ବହୁରୂପ ଦେଖା-ଯାଏ । ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅସଂଖ୍ୟ ନକ୍ଷତ୍ର ଖଚିତ ନୀଳ ଆକାଶ, ଆପ, ତେଜସ୍, ବ୍ରହ୍ମା, ରୁଦ୍ର, ନର, ନାରୀ, ତରୁଣ, ପତନୋନ୍ମୁଖ ସ୍ଥବିର, ପଶୁ, ପକ୍ଷୀ, କୀଟ, ପତଙ୍ଗ, ବିଦ୍ୟୁତ୍ ସ୍ଫୁରିତ ମେଘ, ସାଗର, ଋତୁ—ଏ ସବୁ ସେହି ପରମାତ୍ମାରେ ମିଶିଯିବେ—(ଶ୍ୱେତାଶ୍ୱେତର)

ଦର୍ଶନର କଠିନ—ଗୂଢ଼ତତ୍ତ୍ୱର ଶିକ୍ଷା ରୂପକରେ, କାବ୍ୟ-ସୌନ୍ଦର୍ଯ୍ୟ ଭୂଷିତ ସମ୍ମୋହନ ଭଙ୍ଗୀରେ, ଦୈନନ୍ଦିନ ଅନୁଭୂତିସଂପନ୍ନ ମାର୍ଗରେ, କି ସରଳ ଅଥଚ ବ୍ୟାପକ ଭବରେ ଏଠାରେ ଦିଆଯାଇ ଶିକ୍ଷାନୀତିର ମୂଳଦୁଆ ପଡ଼ିଛି—ଏହା ବୁଝାଇ କହିବାର ପ୍ରୟୋଜନ ନାହିଁ ।

କଥା ଛଳରେ ଶିକ୍ଷା ଦେବାର ଉଦାହରଣ ଗୋଟିଏ ଦୁଇଟି ଦେଖିବା—ଦେବତାମାନେ ଅସୁରଙ୍କୁ ଜୟ କରି ବିଜିତ ହେଲେ । ବ୍ରହ୍ମ ତାଙ୍କ ଆଗରେ ଠିଆ ହେଲେ । ସେମାନେ ତାଙ୍କୁ ବୁଝି ବା ଚିହ୍ନି ପାରିଲେ ନାହିଁ । ତହୁଁ ସେମାନେ ଅଗ୍ନିକୁ କହିଲେ "ଜାତବେଦ । ଯାଅ; ପୂଜ୍ୟ ପୁରୁଷ କିଏ ବୁଝି ଆସ ।" ଅଗ୍ନି ତାଙ୍କ ପାଖକୁ ଧାଇଁଗଲେ । ବ୍ରହ୍ମ ପଚାରିଲେ, "ଆପଣ କିଏ ?" ଉତ୍ତର ମିଳିଲା, "ମୁଁ ଅଗ୍ନି, ମତେ ଜାତବେଦ ବୋଲି ମଧ୍ୟ କହନ୍ତି ।"

ଆପଣଙ୍କର ବଳ କେତେ ?''

''ଏ ସମଗ୍ର ପୃଥିବୀକୁ ନିମିଷକେ ପାଉଁଶ କରି ଦେଇପାରେ ।'' ତହୁଁ ବ୍ରହ୍ମ କୁଟା ଖଣ୍ଡେ ତାଙ୍କ ଆଗରେ ରଖି କହିଲେ, ''ଏଇଟିକୁ ପୋଡ଼ି ଦିଅନ୍ତୁ ।'' ଅଗ୍ନି ତାଙ୍କର ସମସ୍ତ ଶକ୍ତି ପ୍ରୟୋଗ କରି ତାହା କରିପାରିଲେ ନାହିଁ, ବାହୁଡ଼ି ଦେବତାଙ୍କୁ ନିଜର ବିଫଳତା ଜଣାଇଲେ । ତହୁଁ ବାୟୁ ଗଲେ ।

ବ୍ରହ୍ମ ସେହିପରି ପଚାରିଲେ, ''ଆପଣ କିଏ ?''

''ମୁଁ ବାୟୁ, ମତେ ମାତରିଶ୍ୱ ବୋଲି ମଧ୍ୟ ଡ଼ାକନ୍ତି ।''

''ଏ ଧରା ସାରାକୁ ମୁହୂର୍ତ୍ତକେ ଉଡ଼ାଇ ଦେଇପାରେ ।''

ତହୁଁ ବ୍ରହ୍ମ ତାଙ୍କ ଆଗରେ ସେହିପରି କୁଟାଖଣ୍ଡେ ଆଣି କହିଲେ, ''ଏଇଟିକୁ ଉଡ଼ାଇ ଦିଅନ୍ତୁ ।'' ବାୟୁ ତାଙ୍କର ସବୁ ବଳବପୁ ବ୍ୟବହାର କଲେ, କିନ୍ତୁ ସେଇଟିକୁ ଘୁଞ୍ଚାଇ ପାରିଲେ ନାହିଁ । ତହୁଁ ବାହୁଡି ଦେବତାଙ୍କୁ ନିଜର ଅପାରଗତା ଜଣାଇଲେ । ତହୁଁ ଇନ୍ଦ୍ର ଗଲେ । ଦେଖିଲେ ସେ ଅଦ୍ଭୁତ ପୁରୁଷ ଆଉ ନାହାନ୍ତି—(କେନ)

ଉଦ୍ଦାଳକ ନିଜ ପୁତ୍ର ଶ୍ୱେତକେତୁକୁ ସୃଷ୍ଟି ଆଦ୍ୟ କାରଣ 'ସତ୍' ବୋଲି କହିବାରୁ ବାଳକ ପ୍ରଶ୍ନ କଲା, ''ଏ ବିଶାଳ ବହୁଳ ବିଚିତ୍ର ବିଶ୍ୱ କିପରି ଏତେ ସରଳ ଭବରେ ଜାତ ହୋଇପାରେ ?''

ପିତା କହିଲେ, ''ଏଇ ଦୂର ବରଗଛରୁ ଗୋଟିଏ ଫଳଆଣ ।'' ଶ୍ୱେତକେତୁ ସେପରି ଆଣିଲେ ।

''ତାକୁ ଭଙ୍ଗି ଦିଅ, ସେ ଭିତରେ କଅଣ ଦେଖୁଛ ?''

''ସାନ ସାନ ମଞ୍ଜି ।''

''ତହିଁରୁ ଗୋଟିଏ ଚୂନ୍ଚୂନା କରିଦିଅ, ତା' ଭିତରେ କ'ଣ ଦେଖୁଛ ?''

''କିଛି ନାହିଁ ।''

''ତଥାପି ସେହି 'କିଛି ନାହିଁ' ରୁ ହିଁ ତ ଦେଖୁଛ ଏହି ପ୍ରକାଣ୍ଡ ଶାଖା-ପ୍ରଶାଖା-ବିସ୍ତୃତ ନ୍ୟଗ୍ରୋଧ ବୃକ୍ଷ ଉଭା ରହିଛି । ତାହାହିଁ ସୂକ୍ଷ୍ମ ସତ୍ତା । ସେହିପରି ହିଁ 'ସତ୍' ରୁ ବିଶ୍ୱ ସଞ୍ଜାତ ।''

"ଆଚ୍ଛା, 'ସତ୍' ଯଦି ଏପରି ସର୍ବବ୍ୟାପକ କାରଣ, ତାହା ଦେଖଯାଉ ନାହିଁ କାହିଁକି ?"

"ଯେପରି ଲୁଣ ମେଞ୍ଚାଏ ପାଣିରେ ମିଳି ଦେଖାଯାଏ ନାହିଁ, ସେହିପରି । ପୁଣି ଯେପରି ସେହି ଲୁଣି ପାଣିଯାକରେ ସେହି ଲୁଣ ପ୍ରଚ୍ଛନ୍ନ ଭାବରେ ରହିଥାଏ, ସେହିପରି 'ସତ୍' ରହିଛି ।"

"ତେବେ ଦେଖାଯାଉ ନଥିବା ଏ ସତ୍‌କୁ ଆମେ ଜାଣିବା କିପରି ? ବିଶ୍ୱାସ ଯିବା କିପରି ?"

"ଥରେ ଜଣେ ଲୋକକୁ ଚୋରମାନେ ଧରି, ତା ଆଖିରେ ଲୁଗା ପଟୋଳି ବାନ୍ଧି, ଅନ୍ୟ ସ୍ଥାନକୁ ନେଇ, ମାଡ଼ ମାରି, ତାର ସର୍ବସ୍ୱ ଲୁଟି କରି ନେଇଗଲେ । ତହୁଁ ସେ ଅଣ୍ଡାଳି ବୁଲି ବହୁତ କଷ୍ଟ ପାଇଲା । ଏ ଅବସ୍ଥାରେ ତାର ଜଣେ ମିତ୍ର ତାକୁ ଦେଖି ଲୁଗା ପଟୋଳି ଆଖିରୁ ଫିଟାଇଦେବାରୁ ସେ ଦେଖି ପାରିଲା ଓ ବାଟ ପଗ୍ଭରି ପଗ୍ଭରି ଘରକୁ ଫେରିଲା । ଗୁରୁ ସେହିପରି ମିତ୍ର । ମନୁଷ୍ୟକୁ ଦୁଷ୍କର୍ମ ଚୋର ଯେତେବେଳେ ମୋହ-ପଟୋଳିରେ ବାନ୍ଧି ଦିଅନ୍ତି, ଗୁରୁ ସତ୍-ଶିକ୍ଷା ଦେଇ ସେ ପାଶରୁ ଫିଟାଇ ଦେଲେ, ସେ ଜ୍ଞାନ-ଦୃଷ୍ଟି ଲାଭ କରେ ଓ 'ସତ୍'—ସ୍ୱଭାବକୁ ଫେରି ଆସେ—(ଛାନ୍ଦୋଗ୍ୟ)

ଏହି କଥାମାନଙ୍କରେ ବୈଜ୍ଞାନିକ ଗବେଷଣା ଆଶ୍ରୟରେ ପ୍ରାଞ୍ଜଳ ଭାବରେ ପ୍ରଶ୍ନୋତ୍ତରମୂଳକ ଜିଜ୍ଞାସା ସୂତ୍ରରେ କାହାଣୀ ଛନ୍ଦରେ ଜୀବନର ଗଭୀରତମ ରହସ୍ୟ, ପରମର ଅଖଣ୍ଡ ପ୍ରଭାବ, ଚିରନ୍ତନୀ ପ୍ରକୃତିର ଅଖଣ୍ଡ ସୃଷ୍ଟି ବିଳାସ, ମାୟା ଭେଦରେ ସତ୍-ଚିତ୍ ଆନନ୍ଦ ଅବବୋଧର ତାତ୍ପର୍ଯ୍ୟ ପୂର୍ଣ୍ଣ ଉଦ୍‌ବୋଧକ ସରସ ଚିତ୍ର କିପରି ଉନ୍ମୋଚିତ ହୋଇଛି ଓ ତହିଁରେ ଆମର ଆଧୁନିକ ଶିକ୍ଷା-ନୀତିର ବିଭିନ୍ନ ପନ୍ଥା କିପରି ଏକାଧାରରେ ସମନ୍ୱିତ ହୋଇ ବ୍ୟବହୃତ ହୋଇଛି, ତାହା ଆପେ ଆପେ ଜଣାପଡ଼ୁଛି ।

ଏଠାରେ ଆଉ ଗୋଟିଏ କଥା ଲକ୍ଷ୍ୟ କରିବାର ଅଛି । ବର୍ତ୍ତମାନ ଆମର ସାଧାରଣ ଧାରଣା-ବେଦ ଉପନିଷଦ୍ କେବଳ ଧର୍ମ-ତତ୍ତ୍ୱ ବ୍ୟସ୍ତତାରେ ଶେଷ ହୋଇଛି—ତହିଁରେ ସାଂସାରିକ ଜ୍ଞାନ ଅର୍ଜନ, ଜୀବିକା ନିର୍ବାହ, ସାମାଜିକ ଚଳାଚଳ ପ୍ରତି ଦୃଷ୍ଟି ପଡିନାହିଁ—କିନ୍ତୁ କେବଳ 'ଆଧ୍ୟାତ୍ମିକତା'ରେ ଆମର ପେଟ ପୋଷାଇବ ନାହିଁ—'ବସ୍ତୁ'କୁ ଧରି ସିନା ଆମେ ସବୁ କରିବା । ଏଠାରେ ବୁଝିବା କଥା ଏପରି ଅଧାପନ୍ତରିଆ ବୁଝାମଣା ଉପନିଷଦ୍‌ରେ ନାହିଁ । ବାସ୍ତବିକ୍ ତାହା

ବ୍ୟାପକ । ସେଥିପାଇଁ ପରମର କୀର୍ତ୍ତନ ସଙ୍ଗେ ଉପନିଷଦ୍ କେଉଁକାଳୁ ବୁଝିଛି—ସୃଷ୍ଟି ଅନ୍ନମୟ । ସେଥିପାଇଁ ଆମର ଅଧିକ ଶସ୍ୟ ଉତ୍ପାଦନ (Grow more food)ର ବହୁଯୁଗ ପୂର୍ବେ, 'ଖାଦ୍ୟ ସଞ୍ଚୟ ଯୋଜନା' (Miss a meal)ର ବହୁ ସହସ୍ର ବର୍ଷ ପୂର୍ବେ, 'ବହୁଳ ଉତ୍ପାଦନ ଓ ସମ-ବଣ୍ଟନ' (Larger Production and balanced Distribution ର ଅନେକ କାଳ ପୂର୍ବେ ଆଶ୍ରମରେ ଗୁରୁ ପ୍ରାଣପ୍ରିୟ ଶିଷ୍ୟଙ୍କୁ ବଜ୍ର-ନିର୍ଘୋଷରେ ନିର୍ଦ୍ଦେଶ ଦେଇଛନ୍ତି ।

ଅନ୍ନକୁ ନିନ୍ଦା କରିବ ନାହିଁ । ଅନ୍ନକୁ ଫୋପାଡିବ ନାହିଁ । ଅନ୍ନକୁ ବହୁ କରିବ । ଅନ୍ନ ପାଇଁ ଯେ ଆସିବ, ତାକୁ ନିରାଶ କରି ଫେରାଇ ଦେବ ନାହିଁ—(ତୈତ୍ତିରୀୟ)

ସେଥିପାଇଁ ପୁଣି ବରୁଣ ଭୃଗୁଙ୍କୁ ବତାଇଥିଲେ—

ଅନ୍ନକୁ ବ୍ରହ୍ମ ବୋଲି ଜାଣିବ । ଅନ୍ନ ଆଦ୍ୟ । ସବୁ ପ୍ରାଣୀ ଅନ୍ନରୁ ଜାତ, ଅନ୍ନରେ ଜୀବିତ, ପରିପୁଷ୍ଟ, ପ୍ରୟାଣ ବେଳେ ପୁଣି ଅନ୍ନରେ ମିଶିଯାନ୍ତି ଅନ୍ୟମାନଙ୍କର ଖାଦ୍ୟ ପାଇଁ—(ତୈତ୍ତିରୀୟ)

ଏ ପର୍ଯ୍ୟାୟରେ ବିଜ୍ଞାନ-ଦୃପ୍ତ ବିଂଶ ଶତାବ୍ଦୀରେ ଅଧିକ ଉପଯୋଗୀ ଶିକ୍ଷା କଅଣ ?

ଶେଷ କଥା । ଆଜିକାଲି ଆମ ଦେଶରେ, ସବୁ ଦେଶରେ ବିଶ୍ୱବିଦ୍ୟାଳୟ ସଂଖ୍ୟା ବଢ଼ୁଛି, ସେ ଗୁଡ଼ିକର ସମାବର୍ତ୍ତନ ଆଦି ବହୁତ ଉତ୍ସବ ହେଉଛି, ସେଥିରେ କୁଳପତି, ପ୍ରଧାନ ଅତିଥିଠାରୁ ଆରମ୍ଭ କରି ବହୁତ ଭାଷଣ ଦିଆଯାଉଛି । କିନ୍ତୁ ସେ ସବୁର ସାରାଂଶ ବାଛି ବସିଲେ, ଖୋଜି ବସିଲେ, ଉପନିଷଦ୍‌ରେ ଶିଷ୍ୟ ଶିକ୍ଷା ଶେଷରେ ଗୁରୁ ପାଦରେ ପ୍ରଣତି ଜଣାଇ ବିଦାୟ ନେଲାବେଳେ ଗୁରୁ ତାକୁ ଯେଉଁ ଉପଦେଶ, ଉଦ୍‌ବୋଧନ ଦେଇଛନ୍ତି, ତାହାଠାରୁ ଅଧିକ କିଛି ତ ଶିକ୍ଷଣୀୟ ଉପକରଣ ଆମେ ପାଉନାହୁଁ । କେବଳ ଶୁଷ୍କ ଉପଦେଶ ନୁହେ—ଜୀବନ୍ତ ସତ୍ୟର ପ୍ରାଣ-ପ୍ରତିଷ୍ଠାରେ ଏଥିରେ ପ୍ରାଚୀନ ଭାରତୀୟ ଶିକ୍ଷାର ଆଦର୍ଶ, ଆଭିମୁଖ୍ୟ, କ୍ରମ-ପରିଣାମର ଯେଉଁ ସୁନ୍ଦର ସ୍ପଷ୍ଟ ଭାବଗଭୀର ସଙ୍କେତ ଦିଆଯାଇଛି, ତାହା ପ୍ରକୃତରେ ହୃଦୟସ୍ପର୍ଶୀ—

ସତ୍ୟ କହ । ଧର୍ମ ଆଚରଣ କର । ସ୍ୱାଧ୍ୟାୟରେ ପ୍ରମାଦ ଘଟାଅ ନାହିଁ । ଆଚାର୍ଯ୍ୟଙ୍କ ପ୍ରସାଦ ସମ୍ପାଦନ କର । ବ୍ରହ୍ମଚର୍ଯ୍ୟ ସରିଛି, ଏଣିକି ଗୃହସ୍ଥ ଧର୍ମ ଗ୍ରହଣ କର । ସତ୍ୟ ଓ ଧର୍ମ ପଥରୁ ବିଚଳିତ ହୁଅ ନାହିଁ । କୁଶଳତା ସମ୍ପାଦନ କର । ସାମାଜିକ ଶ୍ରୀ ସାଧନରେ ବ୍ରତୀ ହୁଅ । ଭୂତି,ଅର୍ଜ୍ଜନରେ ମନ ବଳାଅ । ସ୍ୱାଧ୍ୟାୟ-

ପ୍ରବଚନରେ ହେଳା କର ନାହିଁ । ଦେବ-ପିତୃ କାର୍ଯ୍ୟରେ ପ୍ରମାଦ ଘଟାଅ ନାହିଁ । ମାତୃ ତୁମର ଦେବତା ହୁଅନ୍ତୁ, ପିତୃ ତୁମର ଦେବତା ହୁଅନ୍ତୁ, ଅତିଥି ତୁମର ଦେବତା ହୁଅନ୍ତୁ । ଅନବଦ୍ୟ କର୍ମ ହିଁ ତୁମର ସେବିତ ହେଉ, ଇତର କର୍ମରେ ମନ ବଳାଅ ନାହିଁ । ସୁଚରିତ ହିଁ ତୁମର ଉପାସ୍ୟ ହେଉ, ଇତର କଥାରେ ଆଗ୍ରହ ନ ବଢୁ, ଶ୍ରଦ୍ଧାରେ ଦିଅ, ଅଶ୍ରଦ୍ଧାରେ ଦିଅ ନାହିଁ, ହ୍ରି-ସହିତ ଦିଅ, ଦୟା, ନମ୍ରତା, ଗୌରବ ସହିତ ଦିଅ—(ତୈତ୍ତିରୀୟ ପ୍ରଥମ ବଲ୍ଲୀ)

ବ୍ୟକ୍ତି ଓ ସମାଜ, ବ୍ୟଷ୍ଟି ଓ ସମଷ୍ଟି ତଥା ଜୀବନର ସକଳ ସ୍ତର ଓ ବିଭବ ସମନ୍ୱୟ ସୂତ୍ରରେ ଗୁନ୍ଥା ହୋଇଛି । ଚାରି ପୁରୁଷାର୍ଥ, ଚାରି ଆଶ୍ରମ, ଚାରିଯୋଗ ସୁନ୍ଦର ଭାବରେ ମିଳାଯାଇ ଏଠାରେ ସଂକ୍ଷେପରେ ନିର୍ମଳ ସେହି ସିକ୍ତ ଆନ୍ତରିକ ଉଦ୍‌ବୋଧନ ସରଣୀରେ ଶିକ୍ଷାର ଯେଉଁ ମହତ୍ ଲକ୍ଷ୍ୟ, ବ୍ୟାପକତା, କର୍ମପନ୍ଥାର ନିର୍ଦ୍ଦେଶ ମିଳେ, ଆମର ଆଧୁନିକ ଶିକ୍ଷା କ୍ଷେତ୍ରରେ ସକଳ ପ୍ରକାର ଆଲୋଡନ ଆନ୍ଦୋଳନ, 'ମହାଧ୍ୱନି' ସତ୍ତ୍ୱେ ତା' ଠାରୁ ଅଧିକ ଶ୍ରେୟସ୍କର କଅଣ ମିଳେ, ତାହା ହିଁ ଚିନ୍ତା କରିବାର କଥା । ଅବଶ୍ୟ ଯୁଗ ଭେଦରେ ପରିସ୍ଥିତି ପାରିପାର୍ଶ୍ୱ ଭେଦରେ ଦେଶ-କାଳ-ପାତ୍ର ଭେଦରେ କର୍ମପନ୍ଥାର ପ୍ରସ୍ତାବନା ଓ ପ୍ରୟୋଗ ବଦଳିବ, ଏଥିରେ ସନ୍ଦେହ ନାହିଁ । ତଥାପି ସବୁ ଯୁଗକୁ ବଳାଇ ଶିକ୍ଷାର ମୂଳ ଏକ । ସେହି ମୂଳରେ ହିଁ ପାଣି ଢାଳି ପ୍ରଥମ ସୋପାନଠାରୁ ଉପନିଷଦ୍ ଭାରତୀୟ ସଂସ୍କୃତି ସୌଧକୁ ବିରାଟ, ମହାନ୍, ଉଦାର କରିଥିଲା । ଆମେ ଏବେ ମୂଳକୁ ଛାଡ଼ି ଡାଳ-ପତ୍ର କାଟିକୁଟି ସଜାଡ଼ି ବସିଲେ, କେତେ ଦୂର ସାର୍ଥକ ହେବା, ଚିନ୍ତା କରିବାର କଥା ।



# ଇତିହାସ ଶିକ୍ଷା

ଆଧୁନିକ ଓ ଗବେଷଣାମୂଳକ ରୀତିରେ ଇତିହାସ ଶିକ୍ଷା କରିବା ସ୍ପୃହା ବର୍ତ୍ତମାନ ଜଗତର ବିଭିନ୍ନ ସ୍ଥଳରେ ଶିକ୍ଷିତ ମଣ୍ଡଳରେ ଦେଖାଯାଉଅଛି । ବିଲତ ଓ ଆମେରିକା ବିଶ୍ୱବିଦ୍ୟାଳୟମାନଙ୍କରେ ଇତିହାସ ଓ ଆଧୁନିକ ଭଷା ପ୍ରାଚୀନ ଭଷା ଓ ବିଷୟମାନଙ୍କ ସ୍ଥାନ ଅଧିକାର କରିଅଛି । ଭରତରେ ଐତିହାସିକ ଗବେଷକମାନେ ଜାତୀୟ ସଭ୍ୟତା ଓ ସଂସ୍କୃତିର ସଙ୍ଗତି ଓ ଭିତ୍ତି ଉପରେ ନୂତନ ଇତିହାସ ଲେଖିବାର ଆରମ୍ଭ କରିଅଛନ୍ତି । ଆଧୁନିକ ଇତିହାସର ବିରଟ ସୌଧ ପ୍ରକୃତ ଘଟଣା ଓ ତଥ୍ୟମୂଳକ ଦୃଢ ମୂଳଦୁଆ ଉପରେ ନିର୍ମିତ ହେବାର ସ୍ପଷ୍ଟ ସୂଚନା ଦେଖାଯାଉଅଛି । ଏହି ସୂଚନା ମନୁଷ୍ୟର ଜ୍ଞାନ ପରିସର ବୃଦ୍ଧିରେ ଗୋଟାଏ ଅନୁକୂଳ ବେଷ୍ଟନୀ ଗଠନ କରିବ ଏ କଥା ନିଃସନ୍ଦେହରେ କୁହାଯାଇପାରେ ।

ଇତିହାସ ଶିକ୍ଷାର ଉପାଦେୟତା ସ୍ୱତଃସିଦ୍ଧ, ଏଣୁ ସେ ସମ୍ବନ୍ଧେ ବିସ୍ତୃତ ଆଲେଚନା ଅତିରଞ୍ଜନ ମାତ୍ର । ଯେତେବେଳେ ଲୌକିକ ଦୃଷ୍ଟିରେ "ଅତୀତକୁ ଶୋଚନା କରିବା ଉଚିତ ନୁହେଁ, ବର୍ତ୍ତମାନ କେବଳ ଧେୟ ଓ କ୍ରୟମାଣ", ଏହି ନୀତି ବାରମ୍ବାର ଶିକ୍ଷାର୍ଥୀକୁ କୁହାଯାଏ, ସେଥିରେ ଜଡ଼-ବିଷୟ କିମ୍ବା ବସ୍ତୁବାଦର ମାତ୍ରା ଟିକିଏ ବେଶି ରହିଯାଏ ବୋଲି ମନେହୁଏ । ପରମ୍ପରର ସଞ୍ଚୟ ଏକାବେଳକେ ପୋଛିଦେଇ ସ୍ମୃତି-ପଟ ସଫା କରିଦେବା ଅସମ୍ଭବ । ବାସ୍ତବିକ ଅତୀତ ଗୋଟାଏ ମୃତ ଆଭରଣ ମାତ୍ର ନୁହେଁ । ବର୍ତ୍ତମାନର ସ୍ପର୍ଶରେ ଭବିଷ୍ୟତ ପ୍ରତି ଉନ୍ମୁଖ ହୋଇ ଅତୀତ ସନ୍ତତ ଜୀବିତ, କ୍ରମ-ବୃଦ୍ଧିଶୀଳ ଓ ବିକାଶମାନ । ନିଖୁଣ ଇତିହାସ ଆଲେଚନା ଯେ କୌଣସି ଲେକ ସମାଜକୁ ଭବପୂର୍ଣ୍ଣ, ସମୃଦ୍ଧ, ବୈଚିତ୍ର୍ୟମୟ ଜୀବନ ଗଠନ ପ୍ରୟାସରେ ଗୋଟାଏ ସୁସ୍ଥ ପ୍ରେରଣା ଅଥବା ଦ୍ୟୋତନା ଆଣିଦିଏ । ତହିଁରେ ଉଦ୍‌ବୁଦ୍ଧ ହୋଇ ସେହି ସେହି ସମାଜ ନିଜ ପରମ୍ପରିତ କୃତିତ୍ୱରେ ନ୍ୟାଯ୍ୟ ଗୌରବ ଓ ଆନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ, ·ଅନ୍ତିମ ଲକ୍ଷଣ ପୂରଣରେ ଯେଉଁ ବିକାଶ ଓ ଅଭିବୃଦ୍ଧି ଆବଶ୍ୟକ ତହିଁର ପ୍ରତିବନ୍ଧକଗୁଡ଼ିକୁ ଦୂର କରିବାକୁ ସମର୍ଥ ହୁଏ । ସୂକ୍ଷ୍ମ ଭବରେ ଦେଖିଲେ ଏକ ଏବଂ ଅଦ୍ୱିତୀୟ ବ୍ରହ୍ମପଦାର୍ଥ ନିର୍ଣ୍ଣୟକୁ ଦର୍ଶନର ଅଧିକାରରେ ଛାଡ଼ିଦେଲେ ବାକି ଜାଗତିକ ସୃଷ୍ଟି ପ୍ରତ୍ୟେକ କଥା—ଭୌତିକ,

ମାନସିକ, ଆଧ୍ୟାତ୍ମିକ କିମ୍ବା ଯାହାହେଉ, ସମସ୍ତଙ୍କର ଗୋଟାଏ ନିର୍ଦ୍ଦିଷ୍ଟ ଆରମ୍ଭ ଠାରୁ ଶେଷ ପର୍ଯ୍ୟନ୍ତ ଗତି ଅଛି ଏବଂ ଏହି ଗତି କ୍ରମବିକାଶ ଧୋରଣୀରେ ଚାଳିତ ହେବାର ଦେଖା ଯାଉଅଛି । ମନୁଷ୍ୟ ନିଜର ସମସ୍ତ ବୁଦ୍ଧି ପ୍ରୟୋଗରେ ଏହି ଗତି-ବିଧିକୁ ପୁଙ୍ଖାନୁପୁଙ୍ଖ ପରୀକ୍ଷା କରି ନିର୍ଦ୍ଦେଶ କରିବା ହିଁ ଇତିହାସର କାର୍ଯ୍ୟ ଓ ଏହି ଭବରେ ଜୀବନର ସକଳ ଅର୍ଥ ଇତିହାସରେ କେନ୍ଦ୍ରୀଭୂତ ବୋଲି କୁହାଯାଇପାରେ । ପାରିଭାଷିକ ନାମାଙ୍କନକୁ ଛାଡ଼ିଦେଲେ ଇତିହାସ ହିଁ ମାନବିକତାର ମୌଳିକ ଓ ମୁଖ୍ୟ ଅଭିପ୍ରେତ ବିଷୟ । ଇତିହାସ ରକ୍ତ-ମାଂସ-ଶରୀରଧାରୀ ସାଧାରଣ ମନୁଷ୍ୟ-ଜୀବନର ବର୍ଣ୍ଣନ ହୋଇଥିବାରୁ ମାନବିକତାରେ ତାହାର ପ୍ରସିଦ୍ଧି । ଅନେକ ତାମସ ନିଶୀଥରେ ବିପଦ-ସଙ୍କୁଳ ବାତ୍ୟାବିକ୍ଷୋଭିତ ସାଗରର ଉତ୍ତାଳ ତରଙ୍ଗମାଳା ଉପରେ ଜୀବନ-ପୋତ ଅନାୟାସରେ ଚଳାଇ ପୋତାଶ୍ରୟର ଶାନ୍ତି ଓ ନିରୁପଦ୍ରବତାରେ ପହଞ୍ଚାଇବା ପାଇଁ ଐତିହାସିକ ଶିକ୍ଷାନୁଭୂତି ଅନେକ ସାହାଯ୍ୟ କରେ । ଆବଶ୍ୟକତା, ପ୍ରକୃତି ଓ ରୁଚି, ସାଂପ୍ରଦାୟିକ ଓ ଦଳଗତ ମନୋବୃତ୍ତି, ମାନୁଷିକ ଆଶା ଓ ଆକାଂକ୍ଷା, ଅଭବ ଓ ଅଭିଯୋଗ, ଆଚାର ଓ ବ୍ୟବହାର, ଅଭ୍ୟାସ, ଭୌଗୋଳିକ ପରିସ୍ଥିତି ଇତ୍ୟାଦି ଅସଂଖ୍ୟ ଶକ୍ତି ସମୂହର ପରସ୍ପର ଘାତ-ପ୍ରତିଘାତ ଫଳରେ ଯେଉଁ ବିଭିନ୍ନ ସାମାଜିକ ରାଜନୈତିକ ଓ ଆର୍ଥିକ ଅନୁଷ୍ଠାନଗୁଡ଼ିକର ଗଠନ, କ୍ରମୋନ୍ନତି, କ୍ଷୀଣତା ଓ ବିନଷ୍ଟି ନିୟତ ଘଟୁଅଛି, ଇତିହାସ ତହିଁର ବିଶ୍ଳେଷଣ କରି ଜୀବନ-ସାରକୁ ଏକାଠି କରୁଛି ବୋଲିବାକୁ ହେବ । ସଂକ୍ଷେପରେ ସତତ ଦୂରପ୍ରସାରୀ, ଅନନୁଭୂତ, ଅଖଣ୍ଡ, ଆନନ୍ଦମୟ ପୂର୍ଣ୍ଣ ଓ ଅବିକଳ ଆଦର୍ଶ-ରାଜ୍ୟର ଅନୁସନ୍ଧାନ କରି, ସେହି ପ୍ରେରଣାରେ ରୁକ୍ଷ, କର୍କଶ, ନିଷ୍ଠୁର ଦୁଃଖ ଝଞ୍ଜାଳକ୍ଳିଷ୍ଟ, ଅଭବ-କୋଳାହଳ ସାଂସାରିକ ଜୀବନକୁ ଉଦ୍‌ବୁଦ୍ଧ, ଶାନ୍ତ, ସଂଯମ ରହସ୍ୟମୟ ଓ ବିକସିତ କରିବା ମନୁଷ୍ୟର ଏହି ଚିରନ୍ତନ କ୍ରିୟା-କଳାପ ସ୍ପଷ୍ଟ ପ୍ରତିବିମ୍ବିତ ହୁଏ ଇତିହାସ ଦର୍ପଣରେ ।

ବିଭିନ୍ନ ସଂସ୍କୃତିର ଧାର ଓ ବୁଦ୍ଧି ବିକାଶ ମିଳନ କ୍ଷେତ୍ର ଏସିଆ ମାଇନରର ଜଳବାୟୁରେ ପୁଷ୍ଟ, ପାଶ୍ଚାତ୍ୟ-ସାହିତ୍ୟର ଜନ୍ମଦାତା ହେରେଡ଼ୋଟସ୍ ଇତିହାସକୁ ସତ୍ୟ ବାରିବାର ଜିଜ୍ଞାସା ବୋଲି ନିର୍ଦ୍ଦେଶ କରିଅଛନ୍ତି । ବର୍ଣ୍ଣନଶୀଳ ସଙ୍ଗେ ବାସ୍ତବ ଘଟଣା ଦର୍ଶନର ମଧୁର ସମାବେଶ ତାଙ୍କ ଲେଖାରେ ଦେଖାଯାଏ । ଇତିହାସ ସମାଲୋଚନା-ବୃତ୍ତରେ ଛନ୍ଦିବା ତାଙ୍କ ପ୍ରତିଭାର ବୈଶିଷ୍ଟ୍ୟ । ପ୍ରାଚୀନ-ସଭ୍ୟତା-ଲୋକିତ, ପରମ୍ପରା ପ୍ରଧାନ, ଧର୍ମପ୍ରାଣ, ପବିତ୍ର ଭାରତ-ଭୂମିରେ ବୈଦିକ-ସାହିତ୍ୟ, ରାମାୟଣ, ମହାଭାରତ, ଅଷ୍ଟାଦଶ ପୁରାଣ, ମହାକାବ୍ୟ, ନାନାବିଧ ଗାଥା ଓ ଆଖ୍ୟାୟିକା, ନୀତିଶାସ୍ତ୍ର ଇତ୍ୟାଦିରେ ଲିପି ଛନ୍ଦୋବଦ୍ଧ ଇତିହାସର କମ୍ ଆଦର

ନାହିଁ । ବର୍ତ୍ତମାନ ସୁଦ୍ଧା ଏହି ସବୁ ଗ୍ରନ୍ଥ ଲୋକସମୂହ ନୈତିକ, ଧର୍ମ୍ୟ ଓ ସାମାଜିକ ଶିକ୍ଷାର ଉତ୍କଟ ପନ୍ଥା ଶ୍ରୁତି ଓ ସ୍ମୃତି ସହିତ ଇତିହାସକୁ ସତ୍ୟ ଜ୍ଞାନ ଓ କଲ୍ୟାଣକର ଆଗ୍ରହର ପ୍ରଧାନ ଉପାଦାନ ବୋଲି ପ୍ରାଚୀନମାନେ ମତ ବିଖ୍ୟାତ କରିଅଛନ୍ତି । ଧର୍ମ-ଗ୍ଳାନି ବେଳେ ଦେଶ ଓ ସମାଜ ପାପ, ଅହଙ୍କାର, ଅଜ୍ଞାନ, ପ୍ରଚଣ୍ଡ ପାଶବିକ ଓ ଦୁରାଗ୍ରହର ସକଳ ଆବର୍ଜନା ଭର୍ତ୍ତି ହୋଇ ଜୀବନକୁ ଆବିଳ କଲେ, ଧର୍ମ ପ୍ରତିପାଳକ ପ୍ରବର୍ତ୍ତକମାନଙ୍କର ପ୍ରଗ୍ରହ ଓ ସହଯୋଗ ପୁନରପି ଧର୍ମ ସଂସ୍ଥାପିତ ହେବାର ଇତିବୃତ୍ତ ଇତିହାସ ବୋଲି ଆମ୍ଭେମାନେ ଗ୍ରହଣ କରୁ ।

ଇତିହାସ ବିଜ୍ଞାନ ନା କଳା ଏହି ପ୍ରଶ୍ନ ସାମୟିକ ଉଠିଥାଏ ଓ ଏହାର ଠିକ୍ ଜବାବ ଦେବା ସହଜ ନୁହେଁ । ଇତିହାସକୁ ଉଭୟ ଭାବରେ ଗ୍ରହଣ କରାଯାଇପାରେ । ଅନୁପାତ, ବ୍ୟବହାର ଓ ଆଲୋଚନାର ଭଙ୍ଗୀ ଅନୁସାରେ ପ୍ରଶ୍ନଟି ବିଭିନ୍ନ ବିଭାଗରୁ ବିଗ୍ରହ କରାଯାଇଥାଏ । ଅଧ୍ୟୟନ ଓ ଅନୁସନ୍ଧାନ ଦିଗରୁ ଐତିହାସିକ ଘଟଣାର ତୁଳନା ଓ ଅବବୋଧ ସମ୍ପୂର୍ଣ୍ଣ ବିଜ୍ଞାନମୂଳକ । କିନ୍ତୁ ସେଥି ସଙ୍ଗେ କଳାର ଅନ୍ତର୍ଦୃଷ୍ଟି, କଳ୍ପନାର ପ୍ରାଚୁର୍ଯ୍ୟ, ଗଠନ ମୂଳକ ଶକ୍ତିର ଅବାରିତ ଲୀଳାକୁ ଏହି ବୈଜ୍ଞାନିକ ଅଧ୍ୟୟନ ଓ ଅନୁସନ୍ଧାନ ନିର୍ଭର ତଥ୍ୟର ଯଥୋଚିତ ସମାବେଶ ଓ ଅଭିବ୍ୟକ୍ତି ବିସ୍ତୃତ କ୍ଷେତ୍ର ଯୋଗାଏ । ଏହା ବୋଲି କଳ୍ପନା ଯେ ଇତିହାସ ସୀମାରେ ଯଥେଚ୍ଛାଗ୍ରସ୍ତ ହୋଇ ଉଚ୍ଛୃଙ୍ଖଳତାରେ ପରିଣତ ହେବ ଏହା ଠିକ୍ ନୁହେଁ । ନିରଟ, ନିଷ୍କପଟ, ନିପଟ ବାସ୍ତବତାର ଚିତ୍ରଣ ଇତିହାସ । ପ୍ରବଞ୍ଚନା, ଛଳନା, ବ୍ୟକ୍ତିଗତ ମତବାଦର ଉତ୍କଟତାକୁ ବାଦ ଦେବାକୁ ହେଲେ ଦୃଷ୍ଟ ଓ ଅନୁଭବ ଜଗତ ସହିତ ଆଦ୍ୟୋପାନ୍ତ ସାମଞ୍ଜସ୍ୟ ଇତିହାସକୁ ରକ୍ଷା କରିବାକୁ ହୁଏ । ଐତିହାସିକ ଗବେଷଣାରେ ବିବେଚନାର ସୂକ୍ଷ୍ମ-ଦର୍ଶନ, ଉପାଦାନ ବିଶ୍ଳେଷଣ, ଶୃଙ୍ଖଳିତ ପ୍ରକାଶ, ତତ୍କାଳୀନ ନୀତି-ଗଠନ ଓ ଅନୁଭବ ଦୃଷ୍ଟିରେ ତହିଁର ସଂଶୋଧନ, ଜୀବନ ପ୍ରକୃତିର ଇଙ୍ଗିତ ଗ୍ରହଣରେ ଅଦମ୍ୟ ସ୍ପୃହା ଅପରିହାର୍ଯ୍ୟ । ଅମୂଳକ ମତ ଅସଙ୍ଗତ ଓ ଆପାତ ଦୃଢ଼ ସାଧାରଣତା, ପକ୍ଷପାତ, ବିଗ୍ରହ ବ୍ୟକ୍ତିଗତ ନୀତି-କୁଶଳତାକୁ ନୈୟାୟିକ ବିଶ୍ଳେଷଣ ଓ ଦୃଷ୍ଟତାର ନିର୍ମଳ ଆଲୋକରେ ତନ୍ନ ତନ୍ନ କରି ପରୀକ୍ଷିତ, ସଂଶୋଧିତ, ପରିଷ୍କୃତ ଓ ପରିମାର୍ଜିତ କରିବା ଏକାନ୍ତ ବାଞ୍ଛନୀୟ । କଷ୍ଟସାଧ ଗବେଷଣା ପ୍ରକୃତ ଜୀବନକୁ ପଛରେ ପକାଇ ଚମତ୍କାରିତାର ଅନନୁପାତ ଅବାଧ ପ୍ରବଳ ସ୍ରୋତରେ ଭସିଗଲେ ଇତିହାସ ହାସ୍ୟାସ୍ପଦ ହେବା ଛଡା ଅନ୍ୟ କିଛି ହୁଏନାହିଁ । ବାସ୍ତବିକ ଇତିହାସର ଏହିସବୁ ଗୁଣ ଓ ଲକ୍ଷଣଗୁଡିକ ଆଧୁନିକ ବୁଦ୍ଧି ବୃତ୍ତି ସଙ୍ଗଠକ ଓ ନିୟାମକ ବିଜ୍ଞାନ ପ୍ରଣାଳୀର ଚିହ୍ନ, ଏଥିରେ ଆଉ

ସନ୍ଦେହ କଣ ? ଏଣୁ ଇତିହାସ ବିଜ୍ଞାନ ସାପେକ୍ଷ । କିନ୍ତୁ ଅନ୍ୟ ପକ୍ଷରେ ଶୁଷ୍କ, ନିରସ, ଘଟଣା—କେବଳ ଇତିହାସ, ମିଥ୍ୟା ଇତିହାସ ବୋଲି ଧରଯାଇପାରେ । ଇତିହାସ ଯଦି ପ୍ରକୃଷ୍ଟ ମାନବିକତାର ସ୍ୱଚ୍ଛ ପରିଚୟ, ତେବେ ଅତୀତ-ଜଗତର ଅଗଣିତ ମନୁଷ୍ୟ—ସ୍ତ୍ରୀ ଓ ପୁରୁଷ, ଜାତି ଗୋଷ୍ଠୀ କାଷ୍ଠ ପାଷାଣ ତୁଲ୍ୟ ପଦାର୍ଥ ବିଶେଷ ହୋଇ ନ ଥିଲେ । ଜୀବନ-ସଞ୍ଜୀବନୀ ଆସ୍ୱାଦନ କରି ସେମାନେ ଥିଲେ କର୍ମୀ, ଭାବୁକ ଚିନ୍ତକ, ଉତ୍ସାହୀ । ସେମାନଙ୍କ ଜୀବନ ଦର୍ଶାଇବାକୁ ଯାଇ ଇତିହାସ ପଦାର୍ଥ ବିଜ୍ଞାନ ମଧ୍ୟରୁ ଗୋଟିଏ ହୋଇ ନ ପାରେ । ଅସ୍ଥିର, ପ୍ରବହମାନ ବିଚିତ୍ର ବାହ୍ୟ ଜଗତରେ ମାନବିକତାର ଆତ୍ମ-ବିକାଶ ବର୍ଣ୍ଣନ କରିବାକୁ ଗଲେ, ତହିଁକୁ ଅନୁସରଣ କରି ଇତିହାସକୁ ମଧ୍ୟ କେତେକ ପରିମାଣରେ ଅସ୍ପଷ୍ଟ, ଆଲୋକ-ଛାୟା-ଶାଦ୍ୱଳିତ, ବିଚ୍ଛୁରିତ ଓ ଅନିର୍ଦ୍ଦିଷ୍ଟ ହେବାକୁ ହେବ । ଇତିହାସରେ ବସ୍ତୁ ବିଜ୍ଞାନର ନିର୍ଦ୍ଦିଷ୍ଟତା ଓ ଧରାବନ୍ଧା ମାପ ରହି ନ ପାରେ । ଐତିହାସିକ ଅନୁସନ୍ଧାନର ମାର୍ଗ କ୍ଷଣକୁ କ୍ଷଣ ବଦଳୁଛି । ଇତିହାସ କେତେକ ସମ୍ରାଟ ଓ ସମ୍ରାଜ୍ଞୀ, ଜନ୍ମ ଓ ମରଣ, ଯୁଦ୍ଧ ଓ ଆକ୍ରମଣର ତାଲିକା ନୁହେଁ, କେତୋଟି ବିଚ୍ଛିନ୍ନ, ଅପ୍ରାସଙ୍ଗିକ, ଅର୍ଥହୀନ ଘଟଣାର ଲିପି ନୁହେଁ । ଇତିହାସ ଜୀବନୀ-ଶକ୍ତିରେ ଚିର ପ୍ରଭାବିତ, ପ୍ରାଣପୂର୍ଣ୍ଣ ଆବେଗ ଉନ୍ମାଦନା, କର୍ମଠତାରେ ସବୁବେଳେ ସ୍ପନ୍ଦିତ ଓ ଉଚ୍ଛ୍ୱସିତ । ଅହରହ ସୃଷ୍ଟି ପ୍ରବାହର ଅଗାଧ ଜଳ-ରାଶିରେ ସର୍ବଦା ତାର ନିମଜ୍ଜନ । ନିବନ୍ଧମୟ ପୂର୍ଣ୍ଣତା, ସାମାଜିକ ପ୍ରକରଣତା, ପରସ୍ପର-ସଂଲଗ୍ନ ଜଟିଳତା ପ୍ରତି ଇତିହାସ କେବେହେଲେ ଅବହେଳା ଦେଖାଇବା ଉଚିତ ନୁହେଁ । ନୂତନ ତଥ୍ୟ, ନୂତନ ଉପାଦାନ ସଂଗ୍ରହ କରି ତାକୁ ଆଦର୍ଶ-ମୂଲ୍ୟର ମାପକାଠିରେ ମାପି, ତୁଳି, ଚିହ୍ନି ପ୍ରତ୍ୟେକର ଯଥୋଚିତ ସ୍ଥାନ ନିର୍ଦ୍ଦେଶ କରିବା ଇତିହାସର କାର୍ଯ୍ୟ । ଅସଂଲଗ୍ନ ବ୍ୟଷ୍ଟି ଓ ସ୍ଥାନୀୟତା ଉପରେ ଜୋର ଦେଲେ ଐତିହାସିକ ଉପାଦାନ ପରଖ ହୁଏ ନାହିଁ । କେବଳ ସମ-ଜୀବୀ ବୋଲି ଶାଶ୍ୱତ, ଚିତ୍, ସୁନ୍ଦର କିମ୍ବା ଜ୍ୟୋତିର୍ମୟକୁ କେବେ-ହେଲେ ଅସତ୍, ଜଡ, କୁତ୍ସିତ, ନୀଚ, ଘୃଣ୍ୟ କିମ୍ବା ତାମସ ସଙ୍ଗେ ସମାନ ସ୍ଥାନ ଦିଆଯାଇ ନ ପାରେ । କ୍ଷଣିକ ଚିର କ୍ଷଣ-ଭଙ୍ଗୁର, ଅନିତ୍ୟ, ଅସ୍ଥାୟୀ । ଭାରତୀୟ ପ୍ରତିଭା ନିଜ ଆଦର୍ଶକୁ ସର୍ବଦା ସମ୍ମୁଖରେ ରଖି, ନିରବଚ୍ଛିନ୍ନ, ଚଞ୍ଚଳତର, ରଙ୍ଗ ରଞ୍ଜିତ, ଗତିଶୀଳ, ଐତିହାସିକତାରେ ମଧ୍ୟ ସବୁ ଯୁଗରେ ପରମ ସତ୍ତା, ଦେଶକାଳ ଅତିକ୍ରମଶୀଳ ବିନଷ୍ଟି-ରହିତ ଅକ୍ଷୟ ଅମୃତ ଖୋଜି ଆସିଅଛି । ଅନୁଭୂତିରେ ଏହିସବୁ ବିଭାଗ କଳାକୁ ଆଶ୍ରୟ କରେ । ସଂକ୍ଷେପରେ କହିଲେ ଇତିହାସ ଏକ ପ୍ରକାର ବାସ୍ତବ-ସାହିତ୍ୟ । ଏଣୁ ଯେ କୌଣସି ସାହିତ୍ୟ ଭଳି ଇତିହାସ ଲେଖା ସୁନ୍ଦର ମାର୍ଜିତ ଭାଷା, ଶୈଳୀ ଶବ୍ଦ ବିଭବ, ପ୍ରୟୋଗ-ରୁଚିରତା ଓ ଅଳଙ୍କାର ଛଟା

ଆବଶ୍ୟକ କରେ । ସେଥିପାଇଁ ଜଗତର ସମସ୍ତ ପ୍ରସିଦ୍ଧ ଐତିହାସିକ ଦକ୍ଷ ଓ ନିପୁଣ ସାହିତ୍ୟିକ ଶିଳ୍ପୀ । ଗିବନ୍ ତାଙ୍କର "ରୋମ-ସାମ୍ରାଜ୍ୟର ଅଧୋଗତି ଓ ଧ୍ୱଂସ" ଗ୍ରନ୍ଥରେ, କାରଲାଇଲ "ଫରାସୀ ବିପ୍ଳବ"ରେ, ମେକାଲେ "ଇଂରେଜୀ ବିପ୍ଳବ' ରେ, ଟେସଟସ୍, ବେଦୋନୀ, ଫେରିଷ୍ଟା ଇତ୍ୟାଦି ଐତିହାସିକମାନେ ନିଜ ନିଜ ଗ୍ରନ୍ଥରେ ଏହି କଥାର ପ୍ରମାଣ ଦେଖାଇ ଅଛନ୍ତି । ଅବଶ୍ୟ ଏମାନଙ୍କ ଲେଖାରେ ସ୍ଥାନେ ସ୍ଥାନେ ଯେ ଅଭାବ ନାହିଁ ଏପରି ନୁହେ । ଗିବନ କେଉଁ କେଉଁଠାରେ ଐତିହାସିକ କାଳ ପାରିପାର୍ଶ୍ୱକୁ ଉଲଙ୍ଘନ କରିଅଛନ୍ତି । ରୋମ୍ ଇତିହାସର କଥା ବିବୃତ୍ତିରେ ଖ୍ରୀଷ୍ଟପର ଊନବିଂଶ ଶତାବ୍ଦୀର ଭାବ ଓ ପରିସ୍ଥିତିକୁ ଥୋଇଛନ୍ତି । ଏହାର ବିପରୀତ ଦିଗରେ ଆଧୁନିକ ସ୍କଟ ରୁଚି ଅନୁଯାୟୀ ଜଣେ ପ୍ରାଚୀନପନ୍ଥୀ ଓ ସେ ପ୍ରାଚୀନତାକୁ ନିଜ ଐତିହାସିକ ଉପନ୍ୟାସରେ ଫୁଟାଇଅଛନ୍ତି । ଭାରତୀୟ ଇତିହାସ ପ୍ରତି ଦୃଷ୍ଟି ଫେରାଇଲେ ରତ୍ନାକର ବାଲ୍ମିକୀ କିମ୍ବା କୃଷ୍ଣ ଦ୍ୱୈପାୟନ-ବ୍ୟାସ ଇତିହାସର ସଙ୍କୀର୍ଣ୍ଣ ନାମକରଣରେ ତ ହେଲେ ସୁଦ୍ଧା, ତହିଁର ପ୍ରସାରିତ ଦୃଷ୍ଟିରେ ପ୍ରକୃତ ଐତିହାସିକ । ସେଥି ସଙ୍ଗେ ବ୍ୟବସ୍ଥାପକ, କବି ଓ ଦ୍ରଷ୍ଟା । ଏପରି ଭାବରେ ଆଲୋଚନା କଲେ ଦେଖାଯାଏ, ଇତିହାସ କେବଳ ବିଜ୍ଞାନ ବା କଳା କାହିଁକି ବିଭିନ୍ନ ଅନୁପାତ, ବ୍ୟଞ୍ଜନା ଓ ଲକ୍ଷଣାରେ ସାହିତ୍ୟ ଓ ଦର୍ଶନର ମଧ୍ୟ ମଧୁର ସମନ୍ୱୟ ।

ସାଧାରଣ ଦୃଷ୍ଟିରେ କୌଣସି କାଳ ବା ଯୁଗର ଇତିହାସ ପରବର୍ତ୍ତୀ କାଳଜନ୍ମା ଐତିହାସିକ ଦ୍ୱାରା ଯେପରି ଭ୍ରମଶୂନ୍ୟ ଭାବରେ ଚିତ୍ରିତ ହୁଏ, ତାତ୍କାଳିକ ଅବସ୍ଥାରେ ସେପରି ହୋଇ ନ ପାରେ । ତତ୍ତତ୍ ସମୟବର୍ତ୍ତିତ ନିଷ୍ପକ୍ଷପାତ ତତ୍ତ୍ୱ ଅବଧାରଣାରେ ସମ୍ପୂର୍ଣ୍ଣ ସୁଯୋଗ ଦିଏ ନାହିଁ । ମାନୁଷିକ ଚିନ୍ତା ଓ କ୍ରିୟା-ମୂଲ୍ୟର ମହା ପରୀକ୍ଷକ କାଳ । ଯାହାହେଉ ଆଧୁନିକ ଯୁଗରେ ମନୁଷ୍ୟ ବୁଦ୍ଧି ଓ ହସ୍ତ-କୌଶଳ ସମ୍ପାଦିତ ବିଭିନ୍ନ ବିଭାଗକୁ ଆଲୋଡ଼ନ କରି, ଲୋକ-ସାହିତ୍ୟ, ଚିତ୍ର-ସଙ୍ଗୀତ-ସ୍ଥାପତ୍ୟ ଇତ୍ୟାଦି ସୂକ୍ଷ୍ମ କଳା, ଶିଳା-ଲିପି, ମୁଦ୍ରା-ପରୀକ୍ଷା, ତାମ୍ରଫଳକ-ଅଧ୍ୟୟନ ଇତ୍ୟାଦି ବିଭିନ୍ନ ସୂତ୍ରର ସମ୍ମିଶ୍ରଣ କରି ଇତିହାସ କେତେ ଦୂର ଜୀବନ ଓ ସମୃଦ୍ଧ ହୋଇଅଛି, ତାହା ବିଜ୍ଞ ମାତ୍ରେ ଅନୁଭବ କରିବେ ।

କୁହାଯାଇଅଛି ବିଶାଳ ଦୃଷ୍ଟିରେ ମନୁଷ୍ୟର ପ୍ରତ୍ୟେକ କୃତି ଇତିହାସ ବିବୃତ୍ତି ଗୁଚ୍ଛରେ ଢଳା ଯାଇପାରେ । ଦାନ୍ତେ, ଚସର୍, ସେକସ୍‌ପିଅର, ମିଲଟନ୍, ଡ଼ିଫୋ, ଥେକାରେ, ବାଇରନ୍, ସେଲୀ, ବେରେ, ପିଲକ୍, ଭବଭୂତି, ବାଣ, କାଳିଦାସ, ଆମିରଖୁସରୋ, ଫଇଜିଙ୍କୁ ପାରିଭାଷିକ ଭାଷାରେ ଐତିହାସିକ ବୋଲି କୁହା ନ ଗଲେ ସୁଦ୍ଧା, ସେମାନେ ଗଭୀର ଇତିହାସ ଚର୍ଚ୍ଚା କରିଅଛନ୍ତି । କେବଳ ଐତିହାସିକମାନେ

ଗୋଟାଏ ବିଶିଷ୍ଟ ଉଦ୍ଦେଶ୍ୟ ଓ ଦୃଷ୍ଟିକୋଣରୁ ଇତିହାସ ଲେଖିଥାନ୍ତି । ତହିଁର ଚରିତାର୍ଥରେ ସମୟେ ସମୟେ ନିଜର ବିବେକୀ ବ୍ୟକ୍ତିତ୍ୱକୁ ନାୟକର ବଳିଷ୍ଠ ବ୍ୟକ୍ତିତ୍ୱ ମଧ୍ୟରେ ଜଳାଞ୍ଜଳି ଦେଇଥାନ୍ତି । କିନ୍ତୁ ଏମାନଙ୍କଠାରେ ତାହା ସମ୍ଭବେ ନାହିଁ । ବାସ୍ତବିକ ଇଲିୟେଡ୍, ଓଡେଶେ, ବାଇବଲ ଗୋଟିଏ ଗୋଟିଏ ଆଦର୍ଶ ଇତିହାସ ।

ଜଗତରେ ଏ ପର୍ଯ୍ୟନ୍ତ ପ୍ରଚଳିତ ବିଭିନ୍ନ ଯୁଗର ବିଭିନ୍ନ ସଭ୍ୟତାର ଉପକାର ଓ ଅପକାର, ଗୁଣ ଓ ଦୋଷ ବାଛିବା ପାଇଁ ଇତିହାସ ଆମ୍ଭମାନଙ୍କୁ ମାନଦଣ୍ଡ ଯୋଗାଏ; ଏକଦେଶଦର୍ଶୀ ଶିକ୍ଷା, ଭୟଙ୍କର ଅନ୍ଧ ବିଦ୍ୟା କିମ୍ବା ମୂର୍ଖତାଜନିତ କୁସଂସ୍କାର ଅନ୍ଧତା, ଭ୍ରମାତ୍ମକ ମତଭେଦ ବିଶୁଦ୍ଧ କରେ; କୌଣସି ସମସ୍ୟାର ନ୍ୟାୟ ବିଗ୍ରହ ଦ୍ୱାର ଠିକ୍ ମୀମାଂସା କରିବା ପାଇଁ ସାମର୍ଥ୍ୟ ଦିଏ । ଇତହାସଦର୍ଶିତ କାର୍ଯ୍ୟକାରଣ ଅନୁବନ୍ଧନ ଗୋଟିଏ ଉତ୍କୃଷ୍ଟ ଦାର୍ଶନିକତାର ନିଦର୍ଶନ । ସେଥି ସଙ୍ଗେ ଆକସ୍ମିକତାର ପ୍ରଭବ ମଧ୍ୟ ବାଦ ଦିଆଯାଏ ନାହିଁ । ଭବିତବ୍ୟତା ଓ ସୃଷ୍ଟି-ଶକ୍ତିର ସ୍ୱଚ୍ଛନ୍ଦଗତ, କାରଣବାଦ ଓ ଅହେତୁକତାର ପରସ୍ପର ପ୍ରଭବାନ୍ୱିତ ଚିତ୍ର ଇତିହାସର ଦୃଶ୍ୟପଟ ଅଙ୍କିତ କରେ ।

ଆଜିର ଏହି ପ୍ରାଚ୍ୟ ଓ ପାଶ୍ଚାତ୍ୟ ପ୍ରାଚୀନ ଓ ଅର୍ବାଚୀନ ସଂସ୍କୃତି ସଂଘର୍ଷ ମଧ୍ୟରେ,—ବିଭିନ୍ନ ଧର୍ମ, ମତ, ପନ୍ଥା, ରାଜନୈତିକ ଆଦର୍ଶବାଦ ଓ ଆର୍ଥିକ ସ୍ୱାବଲମ୍ବନ ସଙ୍ଗଠନର ଅହୋରୂପ ମହୋଧ୍ୱନି ଝଙ୍କୃତ ଏବ ପରିସ୍ଥିତିରେ,— ଆତ୍ୟନ୍ତିକ ଟଣାଟଣି, ସମର-ତରଙ୍ଗ ପ୍ଲାବନ, ନିରାଶା ତିମିରଚ୍ଛନ୍ନ ମାନସିକ ଦିଗ୍‌ବଳୟ, ସଙ୍କୀର୍ଣ୍ଣ ଜାତୀୟତା, ଭିତ୍ତିଶୂନ୍ୟ ଆନ୍ତର୍ଜାତିକତା, ଦଳ ପୁଣି ଗୋଷ୍ଠୀଗତ କଳହ, ରଣସଜ୍ଜା, ଏକପକ୍ଷୀୟ ସ୍ୱାର୍ଥ-ଦ୍ୱନ୍ଦ୍ୱର ଭୟଙ୍କର ଚିତ୍କାର, ପରଂପରା-ଚ୍ୟୁତି, କ୍ରମଭଙ୍ଗ ଶୂନ୍ୟତାର ହାହାକାରମୟ ବର୍ତ୍ତମାନ ଯୁଗରେ, ତତ୍ତ୍ୱ-ବୋଧ, ମୀମାଂସା ନିର୍ଣ୍ଣୟ, ଶୂନ୍ୟ ସ୍ଥାନରେ ପୂର୍ଣ୍ଣର ସଂସ୍ଥାପନ, କ୍ରମର ସହଜ ସରଳ ଗତି ନିର୍ଦ୍ଦେଶ, ଆଂଶିକ ସ୍ଥିତିଗୁଡ଼ିକୁ ଏକତାର ସମଷ୍ଟିକରଣ, ଶାନ୍ତି ଓ ପ୍ରଗତିର ଆଦର୍ଶ ସ୍ଥାପନର ମାର୍ଗ ଉନ୍ମୁକ୍ତ କରିବାରେ ସମର୍ଥ, ସହଯୋଗିତାମୂଳକ, ଜାଗତିକ ଇତିହାସ ଶିକ୍ଷା ଯେ କେଡେ ମୂଲ୍ୟବାନ୍ ତାହା ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର । ବ୍ୟକ୍ତି ଓ ସମଷ୍ଟିଗତ, ଅତୀତ ଓ ବର୍ତ୍ତମାନ, ଦୃଶ୍ୟ ଓ ଅଦୃଶ୍ୟ ସାମୁଦାୟିକ ଜୀବନର ମୂଳପିଣ୍ଡ ସଚ୍ଚିଦାନନ୍ଦ ପଦାର୍ଥ ଅବଧାରିତ ହେଲେ ସକଳ ସନ୍ଦେହ, ପ୍ରତିବାଦ, ଶଙ୍କା, ପ୍ରତିଯୋଗିତା, ହିଂସା ଓ ଦ୍ୱେଷ ଆପେ ଆପେ ଅପସାରିତ ହୋଇ ସତ୍ୟ ଜ୍ଞାନ, ସତ୍ୟ ଦର୍ଶନ, ସତ୍ୟ କୃତିସମ୍ପନ୍ନ ମାନବିକ ସ୍ନେହ, ଭ୍ରାତୃତ୍ୱ, ଶ୍ରଦ୍ଧା ଓ ବିଶ୍ୱାସର ଆଲୋକରେ ଉଜ୍ଜ୍ୱଳିକୃତ ଜୀବନ ସୁନ୍ଦର ଓ ମହତ୍ତର ହୋଇ ଉଠିବ ଏଥିରେ ସଂଶୟ କାହିଁ ?

ଜର୍ଜ ମେକ୍‌ରେ ଟ୍ରେଭିଲିଅନ୍ କହିଛନ୍ତି, ' ଅଗଣିତ ମନୁଷ୍ୟ ଗୋଷ୍ଠୀର ଚିନ୍ତା ଭବ ଓ ସଭ୍ୟତାର ଚିତ୍ର ଇତିହାସ ପୃଷ୍ଠାରେ କ୍ରମଶଃ ଉନ୍ମୋଚିତ ହୁଏ; ଇତିହାସ ଗୋଟାଏ ସର୍ବବ୍ୟାପକ, ଜଟିଳ, ତୀକ୍ଷ୍ଣବୁଦ୍ଧିସଂଯୁକ୍ତ ବିଷୟ ।'' କବି ଟେନିସନ ଗାଇ ଯାଇଛନ୍ତି,'' ''ଇତିହାସ ପୃଷ୍ଠାରେ ଗୋଟାଏ ଗମ୍ଭୀର ଉଦ୍ଦେଶ୍ୟ ମହନୀୟ ଆଦର୍ଶ ଉପର୍ଯ୍ୟୁପରି ବିକଶିତ ହୁଏ ।'' ବାସ୍ତବିକ୍ ଅସୀମ ଦେଶ ଗର୍ଭରେ ଅନାଦି ଅନନ୍ତ କାଳ-ପୁରୁଷ ଜୀବନ [ପ୍ରକୃତିର ଯେଉଁ ଜଟିଳ-ଜାଲ ଇତିହାସ ରୂପେ ବିସ୍ତାରିତ କରେ, ପରିଣତ-ବୁଦ୍ଧି ମନୁଷ୍ୟ ତହିଁର ଯତ୍‌କିଞ୍ଚିତ ଅଭିପ୍ରାୟ ଓ ନିଗୂଢ଼ ତାତ୍ପର୍ଯ୍ୟ ବୋଧ କଲେ ଯେ କୃତାର୍ଥ ହୁଏ ଏହା ବୁଝାଇ କହିବାର ପ୍ରୟୋଜନ ନାହିଁ ।



# ସାମାଜିକ ଇତିହାସ

କେଉଁ କୋଟିଯୁଗ ପୂର୍ବ ଆଦିମ ପ୍ରସ୍ତର ମାନବର ବିଂଶ ଶତାବ୍ଦୀର ବିଜ୍ଞାନାଲୋକ ଉଦ୍ଭାସିତ ବୁଦ୍ଧିସମ୍ପନ୍ନ ମାନବରେ ପରିଣତ ମୁଖ୍ୟରେ ଇତିହାସର ଆଲୋଚ୍ୟ । ସେଥିପାଇଁ ଇତିହାସର ରାଜନୈତିକ, ସାମରିକ, ଅର୍ଥନୈତିକ, ସାଂସ୍କୃତିକ, ଶିକ୍ଷାଗତ ମୂଲ୍ୟ ସମ୍ବନ୍ଧେ ଆଜି ଆମେ ଅବହିତ । ଆଜି ଆମେ ଶିଖିଛୁ— ଇତିହାସ ମାନବିକ ପ୍ରଗତିର ସ୍ମାରକ, ସୂଚକ, ଦ୍ୟୋତକ; ଐତିହାସିକ ଗବେଷଣା ମାନବିକତା ଶିକ୍ଷାର ବିଶିଷ୍ଟ ଅଙ୍ଗ । ପୁଣି ଜଣାଯାଇଛି, ଏହି ଉପଲବ୍ଧି ଇତିହାସ-ଶିକ୍ଷାର ବିଭିନ୍ନ ବିଭାଗ ମଧ୍ୟରେ ତାହାର ସାମାଜିକ ବିଶ୍ଳେଷଣ ତଥା ଅବବୋଧ ସବୁଠାରୁ ମୂଲ୍ୟବାନ୍ । ଏହି ସର୍ବସମ୍ମତ ମୂଲ୍ୟବାନ୍ ଅବବୋଧ ତଥା ବିଶ୍ଳେଷଣର କିଞ୍ଚିତ୍ ଆଭାସ ଦେବା ଏଠାରେ କାମ୍ୟ ।

ସାମାଜିକ ଇତିହାସ ଶିକ୍ଷାରେ ବ୍ୟକ୍ତିଗତ ଜୀବନୀ ଏକମାତ୍ର ପନ୍ଥା ନୁହେଁ । ବିଖ୍ୟାତ ଇଂରେଜୀ ଦାର୍ଶନିକ-ସାହିତ୍ୟିକ କାର୍ଲାଇଲ୍ ଅଧ୍ୟୁଷିତ 'ବୀରପୂଜା' ନିଶ୍ଚୟ ଚମତ୍କାର; କୌଣସି ସମାଜ କଥା ଭାବିବାବେଳେ ତାହାର ପ୍ରତିନିଧି ଭାବରେ ବିଶିଷ୍ଟ ନେତୃବର୍ଗଙ୍କ ଉପରେ ସମସ୍ତଙ୍କ ଦୃଷ୍ଟି ସ୍ୱତଃ ପଡ଼ିଥାଏ । ତଥାପି ଏ ପ୍ରାତିନିଧ୍ୟ ସାମୂହିକ ଜୀବନର ଅସରନ୍ତି ବିକାଶର ପୂର୍ଣ୍ଣମାତ୍ରାରେ ଚିତ୍ରକ ହୋଇ ନ ପାରେ । କୌଣସି ଦେଶ ବା କାଳର କେତେଜଣ 'ବଡ଼' ଦୈହିକ, ମାନସିକ, ନୈତିକ ଇତ୍ୟାଦି କ୍ଷେତ୍ରରେ କେତେ ମହାନ୍ ହେଲେ ମଧ୍ୟ ଜନତାର ସର୍ବବ୍ୟାପକ ସର୍ବବୋଧକ ପ୍ରତିନିଧି ବୋଲି ଧରଯାଇ ନ ପାରନ୍ତି । ସେମାନଙ୍କ କୃତିରେ ଜୀବନ-ନାଟିକାର କେତୋଟି ଦୃଶ୍ୟ ବିଦ୍ୟୁତ୍ ସ୍ଫୁରଣ ଭଳି ଝଲସି ଯାଏ । ତଥାପି ସେଥିରେ ଅନ୍ଧକାରଗ୍ରସ୍ତ ମଧ୍ୟବର୍ତ୍ତୀ ଅନ୍ତର ଅପ୍ରକାଶିତ ରହିଯାଏ । ଏ ଅନ୍ଧକାରକୁ ଦୂର କରିପାରେ କେବଳ ସାମାଜିକ ଇତିହାସ । ସେଥିପାଇଁ ବ୍ୟକ୍ତିଗତ ଜୀବନୀ ତାହାର ପରିପୂରକ ହୋଇପାରେ, କିନ୍ତୁ ତାହାର ସ୍ଥାନକୁ ଅଧିକାର କରିପାର ନାହିଁ । 'ବଡ଼'ଙ୍କଠାରୁ ସାଧାରଣ ମନୁଷ୍ୟର ଦୈନନ୍ଦିନ କ୍ରିୟାକଳାପରେ ତାତ୍ପର୍ଯ୍ୟ ଯେ କେତେ ଗୁରୁତର, ତାହା ଏ ଗଣତନ୍ତ୍ର ଯୁଗରେ ପରିସ୍ଫୁଟ । ଏଥିପାଇଁ ସେହି ତାତ୍ପର୍ଯ୍ୟ ବୁଝାଇବାରେ ସକ୍ଷମ ସାମାଜିକ ଇତିହାସ ଶିକ୍ଷା କେତେ ଉପାଦେୟ, ତାହା ମଧ୍ୟ ଆଜି ପରିସ୍ଫୁଟ । ଐତିହାସିକ ଗ୍ରୀନ୍ ଇଂରେଜ ଇତିହାସ ପୃଷ୍ଠାରେ ଏଭଳି ଆଲୋଚନାର ସୂତ୍ରପାତ କରି ସ୍ମରଣୀୟ ହୋଇଛନ୍ତି ।

ଏ ଗଣତନ୍ତ୍ର ଯୁଗରେ ପୁଣି ନାଗରିକତା—ତାହାର ଅଧିକାର ଓ ଦାୟିତ୍ୱ —ସମ୍ବନ୍ଧେ ଆମେ ଯଥେଷ୍ଟ ଅବହିତ ହୋଇଛୁ । ଏ ନାଗରିକତା ତାଲିମ୍

କେନ୍ଦ୍ରରୂପେ ସାମାଜିକ ଇତିହାସ ସମକକ୍ଷ ଆଉ କଅଣ ହୋଇପାରେ ? କୌଣସି ଗୋଷ୍ଠୀ ବା ଜନସଙ୍ଘରେ ଜନ୍ମ ଓ ନିବାସ କରିବା ଦ୍ୱାରା ତଥା ତାହାର ପରମ୍ପରା ଓ ଆଦାନପ୍ରଦାନ ଦ୍ୱାରା ଆମେ କିପରି କେତେକ ପଦାର୍ଥ ଓ ଚିନ୍ତା ବ୍ୟବହାରରେ ସୁବିଧା ଓ ସୁଯୋଗ ପାଉଁ— ତହିଁର ବିନିମୟରେ ଆମେ କିପରି କେତେକ ଗୁରୁତର କର୍ତ୍ତବ୍ୟ ସମ୍ପାଦନରେ ବ୍ରତୀ ହେବା ପାଇଁ ଦାୟୀ ରହୁ—ଏହି ମୌଳିକ ନୀତିଶିକ୍ଷା, ଏହି ପାରସ୍ପରିକ ଭ୍ରାତୃଭାବର ମୂଳଦୂଆ ସାମାଜିକ ଇତିହାସ ହିଁ ଦୃଢ଼ଭାବରେ ସ୍ଥାପନ କରେ । ଏକ ପକ୍ଷରେ ନିଜଠୁ କୁଟୁମ୍ବ, କୁଟୁମ୍ବରୁ ଗୋଷ୍ଠୀ, ଗୋଷ୍ଠୀରୁ ଶ୍ରେଣୀ, ଶ୍ରେଣୀରୁ ଜାତି, ଜାତିରୁ ମାନବିକତା—ଅନ୍ୟପକ୍ଷରେ ଘରରୁ ଗାଁ, ଗାଁରୁ ଜିଲ୍ଲା, ଜିଲ୍ଲାରୁ ପ୍ରଦେଶ, ପ୍ରଦେଶରୁ ଦେଶ, ଦେଶରୁ ପୃଥିବୀ, ପୃଥିବୀରୁ ବିଶ୍ୱ—ଏ କ୍ରମ-ବର୍ଦ୍ଧିଷ୍ଣୁ ଧାରଣାରେ 'ବସୁଧୈବ କୁଟୁମ୍ବକମ୍' ଆଦର୍ଶର ମୂଳ ପତ୍ତନ ଓ ଦୃଢ଼ୀକରଣ କରେ ଏହି ସାମାଜିକ ଇତିହାସ ଶିକ୍ଷା । ବ୍ୟଷ୍ଟି ଉପରେ ସମଷ୍ଟିର ପ୍ରଭାବ, ବ୍ୟକ୍ତିଠାରେ ପାରିପାର୍ଶ୍ୱର ସମ୍ବନ୍ଧ ଏହି ଶିକ୍ଷାରେ ହିଁ ଆମେ ବଳବତ୍ତର ଭାବରେ ଅନୁଭବ କରୁ ।

ନର ସଙ୍ଗେ ନାରୀ ରଚିତ ଅନୁଶୀଳନ ବିଦ୍ୟାଚର୍ଚ୍ଚାର ଅନ୍ୟ ସବୁ ଶାଖା-ମାନଙ୍କ ଅପେକ୍ଷା ଏହି ଶିକ୍ଷାର ଏକ ତାତ୍ତ୍ୱିକ ପର୍ଯ୍ୟାୟ । ସ୍ତ୍ରୀ ଓ ପୁରୁଷ ଗୋଟିଏ ଡେମ୍ଫରେ ଦୁଇଟି ଫୁଲ, ଗୋଟିଏ ପ୍ରାଣୀର ଦୁଇଟି ଆଖି—ସମାଜ ଉପରେ ନାରୀର କର୍ତ୍ତୃତ୍ୱ ଅକଳନ—ତାହାର ଅର୍ଥପୂର୍ଣ୍ଣ ଇଙ୍ଗିତରେ ଇତିହାସର ଗତି ଶୁଭ୍ର ଓ ଶୁଭଙ୍କର ହୁଏ—ସାମାଜିକ ଜୀବନର ମୂଳପିଣ୍ଡ ଘରର ପରିଚାଳିକା ଭାବରେ ଧର୍ମ ପରିପାଳିକା ଭାବରେ, ସକଳ ସୃଜନ-କ୍ରିୟାର ପ୍ରେରଣାଦାତ୍ରୀ ଭାବରେ, ଆହ୍ଲାଦିନୀ, ଶକ୍ତିରୂପିଣୀ, ମାତୃସ୍ୱରୂପା ନାରୀର ପୋଷକତା ଅତୁଳନୀୟ । ଏହି ସବୁ ବିଭବର ଅବତାରଣା ଏହି ଶିକ୍ଷାରେ ହିଁ ବହୁଳ ପରିଲକ୍ଷିତ ହୁଏ ।

ସାମାଜିକ ଇତିହାସ ଗତିରେ ପୁଣି 'ବିଷାଦ ବାଦ'ଠାରୁ 'ଆନନ୍ଦ-ବାଦ' ପ୍ରବଳ ! ବିଶାଳ ସମୁଦ୍ର ରୂପକ ତାହାର ଗର୍ଭରେ ମୁକ୍ତି ଓ ଆଶା ତରଙ୍ଗାୟିତ ହୁଏ । ନିରାଶା, ଦୁଃଖ, କ୍ଳେଶ, ଯନ୍ତ୍ରଣା ଜୀବନର ତୋଟି ଚିପି ମାରି ଦେବା ଭଳି ଦେଖାଯାଏ ସତ; ତଥାପି ଏହା ସାମୟିକ, ବ୍ୟକ୍ତିଗତ । ଚିରନ୍ତନ ଜୀବନର ଅନ୍ତଃସ୍ଥଳରେ, ଅତଳ ଗର୍ଭରେ ଅଶେଷ ଆନନ୍ଦ ନିର୍ଝର ସଦା ବହମାନ । ସବୁ ଦୈନ୍ୟ ଓ ଯାତନାର ବନ୍ଧ ଡେଇଁ ସେହି ନିର୍ଝର କୁଳୁକୁଳୁ ନାଦରେ, ଅବିରାମ ଗତିରେ ଲୀଳାୟିତ ଛନ୍ଦରେ ବହିଯାଏ । କବି ଭାଷାରେ କହିଲେ—ମଣିଷ ଆସେ, ମଣିଷ ଯାଏ—କିନ୍ତୁ ମାନବିକତାର ଅଖଣ୍ଡ ସ୍ରୋତ ବହିଯାଏ—ବହିଯାଏ—ସୌନ୍ଦର୍ଯ୍ୟ-ସାଗରର କଲ୍ଲୋଳିତ ବକ୍ଷ ଉପରେ ନିଜର ଅଙ୍ଗ-ଲତା ଢାଳିଦିଏ ।

ଖଣ୍ଡ-ଅଖଣ୍ଡର ଏହି ନିବିଡ ସଂସ୍ପର୍ଶ, ଅଖଣ୍ଡର ଉପଙ୍ଗରେ ଖଣ୍ଡର ଆଶ୍ଳେଷର ଅବବୋଧ ହିଁ ଜ୍ଞାନାଲୋକର ପ୍ରତୀକ । ସାମାଜିକ ଇତିହାସ ମୁଖ୍ୟରେ ଏହି ଆଲୋକବର୍ତ୍ତିକା ଜାଳି ରଖେ । କହିବା ଅନାବଶ୍ୟକ, ଏହି ଇତିହାସ ତୁଳନାତ୍ମକ ଶିକ୍ଷାର ସାର ସଂଗ୍ରହ । କ୍ରମ-ବିକାଶ-ସରଣୀରେ ବିଭିନ୍ନ ଅବସ୍ଥାପନ୍ନ ବିଭିନ୍ନ ଗୋଷ୍ଠୀ ବା ଜାତିର ସାମାଜିକ ପରିସ୍ଥିତି ଏଥିରେ ତୁଳନା କରାଯାଏ । ସେଥିପାଇଁ ସୂକ୍ଷ୍ମ ବିଗ୍ରହ, ତୀକ୍ଷ୍ଣ ବୁଦ୍ଧିବୃତ୍ତିର ବ୍ୟବହାର ଏହି ଶିକ୍ଷାରେ ଅତ୍ୟନ୍ତ ଆବଶ୍ୟକ । ସେଥିପାଇଁ ଆଧୁନିକ ସମସ୍ୟାମାନଙ୍କର ସମାଧାନ ଏହି ଶିକ୍ଷାର ଆନୁକୂଲ୍ୟ ସାପେକ୍ଷ ।

ଅନ୍ତର, ବାହାର, ସମର, ସଂବିଧାନ, ଆଇନ, କଳା, ସ୍ଥାପତ୍ୟ, ସାହିତ୍ୟ, ଧର୍ମ, ଦର୍ଶନ—କୌଣସିଟି ସାମାଜିକ ଇତିହାସ ଚର୍ଚ୍ଚାରୁ ବିଚ୍ଛିନ୍ନ ରହି ନ ପାରେ—ଯେହେତୁ ଏ ସବୁକୁ ଧରି ସମାଜ ଗଠିତ । ସମର ଓ ଶାନ୍ତିର ପ୍ରଭାବ ସମାଜ ଉପରେ ଅସୀମ । ସମର ସମାଜର ସଂଯୋଜନା ତଥା ଐକ୍ୟଶକ୍ତିର ପରୀକ୍ଷା କରେ; ତଥାପି ସମର ସଦା ସନ୍ଧି-ସଂଘର୍ଷରେ ଉତ୍କ୍ଷିପ୍ତ—ଅମାନୁଷିକ, ପୈଶାଚିକ ଧ୍ୱଂସ ତାଣ୍ଡବରେ ଉଦ୍‌ଭ୍ରାନ୍ତ—ମୁମୂର୍ଷୁର, ମୃତର ଆର୍ତ୍ତ ହାହାକାରରେ ଅନ୍ଧୀଭୂତ— ତେଣୁ ପରିତ୍ୟଜ୍ୟ, ଘୃଣ୍ୟ । ଶାନ୍ତିର କାନ୍ତ ଲଳିତ ଆସ୍ତରଣରେ ହିଁ ସାଂସ୍କୃତିକ କୃତିତ୍ୱର ଉଚ୍ଚତମ ସୋପାନକୁ ସମାଜ ଉଠିପାରେ । ଆହୁରି, ସବୁ ଅନୁଷ୍ଠାନ ସମାଜରୁ ହିଁ ପ୍ରସୂତ । ଅର୍ଥନୈତିକ ସ୍ୱଚ୍ଛଳତା ସାମାଜିକ ଉନ୍ନତିର ଅପରିହାର୍ଯ୍ୟ ଉପାଦାନ । ନୀତି-ନିୟମ ସାମାଜିକ ଶୃଙ୍ଖଳାର ସଂରକ୍ଷକ । ସାମାଜିକ ଆଚାର-ବ୍ୟବହାର, ରୁଚି-ଅରୁଚି ପ୍ରାକୃତିକ ଓ ଭୌଗୋଳିକ ପରିସ୍ଥିତି ଉପରେ ବହୁତ ନିର୍ଭର କରେ । ଏପରି ବାଛି ବସିଲେ ସାମାଜିକ-ବସ୍ତ୍ରର ସମ୍ମିଶ୍ରିତ ଗ୍ରଥନରେ ଜୀବନର କୌଣସି ସୂତ୍ର ବାଦ ଦିଆଯାଇ ନ ପାରେ; ସାମାଜିକ-ସଙ୍ଗୀତର ମଧୁର ମୂର୍ଚ୍ଛନାରେ ଜୀବନର କୌଣସି ରାଗ ବାଦ୍ ଦିଆଯାଇ ନ ପାରେ ।

ଆମ ପୂର୍ବପୁରୁଷମାନେ କଳ୍ପନା ସାମଗ୍ରୀ ନ ଥିଲେ; ସେମାନେ ଥିଲେ ରକ୍ତ ମାଂସର ବାସ୍ତବଜୀବୀ । ସେମାନେ ହିଁ ସାମାଜିକ ଇତିହାସର ଉପଜୀବ୍ୟ । ସାମାଜିକ ବାତାବରଣର କ୍ରମିକ ସର୍ଜନା ତାହାର ଆଭିମୁଖ୍ୟ । ଉତ୍ତରୋତ୍ତର ଯୁଗର ଅନବରତ ପରିବର୍ତ୍ତନଶୀଳ ସମସ୍ୟାର ବୁଝାମଣା ସୂତ୍ରରେ ସାମାଜିକ ଇତିହାସର ରୂପରେଖ ବଦଳୁ ଥାଏ । ଯୁଗ ଯୁଗର ବିଶାଳ ଛବିଳ ଚିତ୍ର ସାମାଜିକ ଅଭିବ୍ୟକ୍ତିରେ ମାନବିକତା ସର୍ବସ୍ୱ ହୋଇଉଠେ । କ୍ରମୋନ୍ନତ ବହୁଳ ଜୀବନର ପ୍ରସଙ୍ଗ ବୁଝି ବୁଝେଇବା ପାଇଁ ଗବେଷକମାନଙ୍କ ପକ୍ଷରେ ସାମାଜିକ ଇତିହାସ ଯେତେ ଉପଯୋଗୀ, ଅନ୍ୟ କୌଣସି ଶିକ୍ଷା ସେତେ ହୋଇ ନ ପାରେ । ସେଥିପାଇଁ

ପ୍ରଚଳିତ ବ୍ୟବସ୍ଥା, ଜାତୀୟ ଭାବ, ଲୋକପ୍ରିୟ ଅଭିରୁଚିରେ ତାହା ସର୍ବଦା ଜୀବନ୍ତ । ତହିଁରେ ଆକସ୍ମିକ ବିପ୍ଳବ, ବିଷମ ବିଘାତ କ୍ୱଚିତ ଦେଖାଯାଏ—ଯେହେତୁ ଚିନ୍ତା ଓ କ୍ରିୟାର ଘର୍ଷଣ ଯୋଗୁଁ ସାମାଜିକ ଠାରୁ ବ୍ୟକ୍ତିଗତ ଜୀବନ ଉପରେ ହିଁ ଅଧିକ ଧକ୍କା ଦିଏ । ବିଗଟ-ଉତ୍ଥାନ ପତନରହିତ ସାଧାରଣ ଜୀବନର ସରଳ ଗତି ସୁବିଦିତ । ସଂକ୍ଷେପରେ, ସାମାଜିକ ଇତିହାସ ଜୀବନ-ପ୍ରବାହର ଅବାଧ ସ୍ପନ୍ଦନରେ ଅବିରତ ସ୍ପନ୍ଦିତ ଅନବରୁଦ୍ଧ ଉଚ୍ଛ୍ୱାସରେ ଅବିରତ ଉଚ୍ଛ୍ୱସିତ । ପୁଣି ସେଥିପାଇଁ ଆଲୋକ ଓ ଶ୍ରଦ୍ଧାରେ ତାହାର ଶିକ୍ଷା ପ୍ରାଣବନ୍ତ ।

କିନ୍ତୁ ଏହି ଆଲୋକ ଓ ଶ୍ରଦ୍ଧା ବିଷୟ-ବସ୍ତୁରେ ଯେତିକି ନ ଥାଏ, ତହିଁର ଶିକ୍ଷା-ପ୍ରଣାଳୀ ଭିତରେ ସେତିକି ଥାଏ । ଏଣୁ ଏ ସଂକ୍ରାନ୍ତ ଶିକ୍ଷା-ପ୍ରଣାଳୀର କିଞ୍ଚିତ୍ ସୂଚନା ଏଠାରେ ଦିଆଯାଇପାରେ । ସାମାଜିକ ଇତିହାସ ଶିକ୍ଷା କେବଳ ପ୍ରୌଢ଼ ପାଇଁ ଉଦ୍ଦିଷ୍ଟ ନୁହେ, ପ୍ରାଥମିକ ପାଠଶାଳାର ଶିଶୁ ପାଇଁ ମଧ୍ୟ ଯେହେତୁ ସେମାନେ ହିଁ ସମାଜର ମୂଳପିଣ୍ଡ—ଦେଶର ସବୁ ଆଶା-ଭରସାର ଆଶ୍ରୟ ଭବିଷ୍ୟ ନାଗରିକ । ସେଥିପାଇଁ ମୂଳ ପାହାଚରୁ ଶିଶୁ ଶିକ୍ଷାର୍ଥୀର ସାମାଜିକ ମନୋବୃତ୍ତି ଠିକ୍ ମାର୍ଗରେ ପରିଚାଳିତ ନ ହେଲେ, ଅପକାରଜନକ ହୁଏ । ସେ ଅସାମାଜିକ ଭାବରେ ବଢ଼ି ନାନା ଉପଦ୍ରବ ସୃଷ୍ଟି କରେ । ଅନ୍ୟ ପକ୍ଷରେ, ତାହାର କୋମଳ ଉର୍ବର ହୃଦ୍-କ୍ଷେତ୍ରରେ ସ୍ନେହ, ମୈତ୍ରୀ, ତ୍ୟାଗ, କୃତଜ୍ଞତା ଇତ୍ୟାଦି ସଦ୍‌ଗୁଣ-ବୀଜ ପାଗ ଯୋଗରେ ବୁଣାଗଲେ, ନିଶ୍ଚୟ ସୃଷ୍ଟିକର, ଫଳବନ୍ତ ହେବ. ଏହା ଜଣାଶୁଣା କଥା ଏଥିପାଇଁ ବିଶ୍ଳେଷଣ ପରିହାର କରି ବ୍ୟକ୍ତିଗତ ଜୀବନର ମନୋରମ ବୃତ୍ତାନ୍ତ କାହାଣୀ ଛଳରେ ଶିଶୁକୁ କହିବା ଏହି ଶିକ୍ଷା-ପ୍ରଣାଳୀର ପ୍ରଥମ ଅଧ୍ୟାୟ । ପୁଣି ଏ ବ୍ୟକ୍ତିଗତ ଜୀବନୀ ଶିଶୁର ସମବୟସ୍କ ବା କିଞ୍ଚିତ୍ ଉର୍ଦ୍ଧ୍ୱବୟସ୍କ ଓ ସମକାଳୀନ ହୋଇଥିଲେ, ଶିଶୁର ମନଲାଖି ଓ ସହାନୁଭୂତିଶୀଳ ହେବା ସ୍ୱାଭାବିକ । ସବୁ ସାମାଜିକ କର୍ତ୍ତବ୍ୟର ଆଧାର କୌଣସି ବିଶିଷ୍ଟ ବ୍ୟକ୍ତିର କୃତିତ୍ୱ ଓ ପ୍ରଭାବ ହିଁ ଶିଶୁର ତୀକ୍ଷ୍ଣ ଦୃଷ୍ଟି ଆକର୍ଷଣ କରିବ । ତଦ୍ୱାରା ସ୍ୱତଃ ସେ ଜ୍ଞାନ ଆହରଣ କରିବା ସଙ୍ଗେ କର୍ମ-କୁଶଳତା ସମ୍ପାଦନ କରିବ । ଦେଶାତ୍ମବୋଧ, ମାନବିକତା. ସତ୍ୟ ସନ୍ଧାନ ଇତ୍ୟାଦିର ପାଣ୍ଡିତ୍ୟପୂର୍ଣ୍ଣ ବ୍ୟାଖ୍ୟାନ କରି ବସିଲେ ଶିଶୁ ବରଂ ସେଗୁଡ଼ିକ ପ୍ରତି ବୀତସ୍ପୃହ ହେବ । କିନ୍ତୁ ସେଗୁଡ଼ିକ ଅଧିକାର ଓ ପ୍ରକାଶ କରୁଥିବା ବ୍ୟକ୍ତିବିଶେଷର ବାସ୍ତବ ମୂର୍ତ୍ତିମନ୍ତ ଦୃଷ୍ଟାନ୍ତରେ ସେ ସେଗୁଡ଼ିକୁ ଅହେତୁକ ଭାବରେ ନିଜର କରି ନେବାରେ ସମର୍ଥ ହେବ । ସେଥିପାଇଁ କୁହାଯାଇଛି, ଏ ବୟସରେ ଏହି ବିଷୟ ଶିକ୍ଷାରେ କାହାଣୀ କଥନ-ପ୍ରଣାଳୀ ବହୁ ଉପକାରକ । କାହାଣୀଗୁଡ଼ିକ କ୍ରମ-ବର୍ଦ୍ଧିଷ୍ଣୁ ସ୍ଥିତିରେ ବ୍ୟକ୍ତି, ଗୋଷ୍ଠୀ, ଜାତି ଜୀବନରୁ ସଂଗ୍ରହ କରାଯାଇପାରେ । ପୁଣି ଏ ପ୍ରସଙ୍ଗରେ ଆମେ କେବଳ କହୁଥିବା—ଶିଶୁ ଶୁଣୁଥିବ—ଏହା ନ କରି ଶିଶୁକୁ ନିଜ ମତାମତ ଓ

ସୂଚନା ପ୍ରକାଶ କରିବାର ସୁଯୋଗ ଦେଲେ ତାହାର କୌତୂହଳ ବଢ଼ିବା ସଙ୍ଗେ ସଙ୍ଗେ ଶିକ୍ଷା ଅଗ୍ରଗାମୀ ହେବ । ପୁଣି ଏଥିରେ ମନୋରଞ୍ଜନ ପାଇଁ କଳ୍ପନାର ଆଶ୍ରୟ ନ ନେଇ ପ୍ରକୃତ ଘଟଣାର ଅବଲମ୍ବନ ଶ୍ରେୟସ୍କର । ଶିଶୁ ଏ ବିଷୟରେ ତାର ନିଜର ଅନୁଭୂତି ପ୍ରକାଶ କରିବ । ତାହାର ବକ୍ତବ୍ୟ ଅବଶ୍ୟ ପ୍ରଥମେ ପୂର୍ବାପର ସମ୍ବନ୍ଧହୀନ ହେବ । କିନ୍ତୁ ଉପଯୁକ୍ତ ପୁରୋଦୃଷ୍ଟିସମ୍ପନ୍ନ ତତ୍ତ୍ୱାବଧାନ ଓ ପରାମର୍ଶ ଯୋଗେ ପରିସ୍ଥିତିର ଭୂମିକାରେ ପ୍ରାକୃତିକ ସମ୍ପଦ, ଖାଦ୍ୟ, ପରିଧାନ, କ୍ରୀଡା-କୌତୁକ ଇତ୍ୟାଦି ବିଭାଗରେ ଶୈଶବ ଅନୁଭୂତି ଶୃଙ୍ଖଳିତ ଓ ଶ୍ରେଣୀଭୁକ୍ତ ହୋଇଯିବ । ଏପରି ଭାବରେ ବ୍ୟକ୍ତି—ଜୀବନୀରେ ଆବଦ୍ଧ ନ ରହି ସାମାଜିକ—ଜୀବନୀ ସ୍ତରକୁ ଶିକ୍ଷାର୍ଥୀର ମାନସକୁ ଉଠାଇବା ପଥ ଉନ୍ମୁକ୍ତ ହେବ । ପୁଣି ସାମାଜିକ ଜୀବନୀର ତ ଅନେକ ବିଭବ ଅଛି । ସେ ସବୁର ଆଲୋଡ଼ନ ତଥା ଚିତ୍ରଣ ଯେପରି ଅନନୁପାତ ନ ହୁଏ । ଏ ଚିତ୍ରଣରେ ପୁଣି ବର୍ଣ୍ଣନା ଅପରିହାର୍ଯ୍ୟ । ରାଜନୈତିକ ବା ସାମରିକ ଇତିହାସର କୂଟନୈତିକ ବା ଅଭିଯାନମୂଳକ ଘଟଣା ବର୍ଣ୍ଣନରେ ବୈଜ୍ଞାନିକ ପରିଭାଷାର ବ୍ୟବହାର ଲୋଡା ହେଲା ପରି ସାମାଜିକ ଇତିହାସରେ ହୁଏ ନାହିଁ । ଏହା ହିଁ ତାହାର ସହଜବୋଧର ପ୍ରକୃତ ଲକ୍ଷଣ । ସେଥିପାଇଁ ଏହି ଶିକ୍ଷାର ସରଳ ସ୍ୱାଭାବିକ ଭାଷା ପ୍ରୟୋଗ ଅତ୍ୟନ୍ତ ଉପଯୋଗୀ । ତଥାପି ମଧ୍ୟେ ମଧ୍ୟେ ତହିଁରେ ସୂକ୍ଷ୍ମ ଦର୍ଶନ ଲୋଡା ନ ହୋଇ ରହେନାହିଁ । ସେତେବେଳେ ଶିକ୍ଷାର୍ଥୀ ପକ୍ଷରେ ଚିତ୍ର-ଶିକ୍ଷା-ପ୍ରଣାଳୀ ଫଳଦାୟକ ହୁଏ । ବ୍ୟକ୍ତି ଓ ଗୋଷ୍ଠୀ ଜୀବନ ପ୍ରତିଫଳିତ ଏ ଚିତ୍ରଗୁଡ଼ିକର ଦର୍ଶନ, ଅଙ୍କନ, ପରିବେଷଣ ବର୍ଣ୍ଣ-ବୈଭବ, ଆକର୍ଷଣ, ଆଲୋକ-ଛାୟା-ସଂପାତ ଦ୍ୱାରା ତରୁଣ ଶିକ୍ଷାର୍ଥୀ ମାନସ-ପଟରେ ବିଶେଷ ପ୍ରଭାବ ପକାଇ ଥାଏ । ଭାବୁକମାନେ କହିଛନ୍ତି, ଆମେ ବର୍ତ୍ତମାନ ପଦାର୍ଥ ବା ଘଟଣାର 'କେଉଁଠାରୁ' ଓ 'କାହିଁକି'ରେ ବ୍ୟସ୍ତ ରହୁଛୁ, କିନ୍ତୁ ଆମ ପ୍ରାଚୀନମାନେ ତହିଁର 'କଅଣ' ଓ 'କେବେ'ରେ ବ୍ୟସ୍ତ ରହୁଥିଲେ । ଏହାର ତାତ୍ପର୍ଯ୍ୟ ସ୍ଥୂଳରୁ ସୂକ୍ଷ୍ମକୁ ଗତି, କାର୍ଯ୍ୟରୁ କାରଣର ନିର୍ଦ୍ଦେଶ । ପ୍ରାଚୀନ-ଅର୍ବାଚୀନ ଭେଦରେ ଏ ଦାର୍ଶନିକ ତତ୍ତ୍ୱ ପ୍ରୟୋଗ ସଂପୂର୍ଣ୍ଣ ସତ୍ୟ ନ ହେଲେ ମଧ୍ୟ କୌଣସି ଦୃଷ୍ଟିଭଙ୍ଗୀରୁ କେତେକାଂଶରେ ସତ୍ୟ । ସାମାଜିକ ଇତିହାସରେ ଏହି ସତ୍ୟର ଯଥାଯଥ ସଞ୍ଚରଣ, କ୍ରମବିକାଶ, କ୍ରମ ବର୍ଦ୍ଧନ ସ୍ପଷ୍ଟ । ସେଥିପାଇଁ ଏଥିରେ ବର୍ତ୍ତମାନରୁ ଅତୀତ ଆଡକୁ ଫେରି ଶିକ୍ଷା କରିବା ଏକ ପ୍ରକାର ଅସମ୍ଭବ । ସେଥିପାଇଁ ଏଥିରେ ପୁରୁଷାନୁକ୍ରମ ରୀତି ବ୍ୟବହାର ନ କରି ବାଟ ନାହିଁ । ଏହି ଶିକ୍ଷାର ପୁରୁଷାନୁକ୍ରମ, ପରଂପରା, ଯୁଗ ଅନୁବର୍ତ୍ତନ ମେରୁଦଣ୍ଡ । ସେହି ମେରୁଦଣ୍ଡରେ ପ୍ରତ୍ୟେକ ଘଟଣାର ସଂଯୋଜନା ସମ୍ୟକ୍ ଉପଲବ୍ଧ ହେଲେ ଇତିହାସର ଶୋଭାଯାତ୍ରା ପ୍ରକଟିତ ହୁଏ । ତଥାପି ଗୁଡ଼ିଏ ତାରିଖ ଓ ଘଟଣା ଭର୍ତ୍ତିକଲେ ଏ ଶୋଭା ବିନଷ୍ଟ ହୁଏ । ପୁଣି ବର୍ତ୍ତମାନ ପରିସ୍ଥିତିରେ ଉପୁଜୁଥିବା ବିଭିନ୍ନ ସମସ୍ୟାର ଚିନ୍ତାପୂର୍ଣ୍ଣ ଆଲୋଚନା କେବଳ ଏଥିରେ କାହିଁକି ସବୁଥିରେ ଲୋଡ଼ା ।

ବିଭିନ୍ନ ବିଷୟ ଶିକ୍ଷାର ସାମଞ୍ଜସ୍ୟ, ଏକୀକରଣ, ସମନ୍ୱୟ ସାମାଜିକ ଇତିହାସରେ ଯେପରି କରଯାଇପାରେ, ଅନ୍ୟ କେଉଁଥିରେ ନୁହେଁ-- କାରଣ କୁହାଯାଇଛି, ଜୀବନର କୌଣସି ଅଧିଚବ୍ୟ ବିଷୟ ଏଥିରେ ଗ୍ଭଡ ପାଏ ନାହିଁ । ବୁଝି ଚସିଲେ, ମାନବିକ ଶିକ୍ଷାର ବିଭିନ୍ନ ପର୍ଯ୍ୟାୟ ଶାଖା ସ୍ୱରୂପ ଏହି ମୂଳଗଣ୍ଡିରୁ ଉତ୍ପନ୍ନ । ତାହାର ସର୍ବାନ୍ତର୍ଭୁକ୍ତ ପ୍ରକରଣରେ ପ୍ରତ୍ୟେକର ଆନୁପାତିକ ଅବବୋଧ ଶିକ୍ଷଣୀୟ । ନଗର-ବିଜ୍ଞାନ ଏହି ଅନ୍ତର୍ଭୁକ୍ତିର ପ୍ରଥମ ପାଠ୍ୟ । ସଂକ୍ଷେପରେ, ନବଶିକ୍ଷା ନୀତିର ସବୁ ପ୍ରଣାଳୀର ଆବଶ୍ୟକାନୁମତ ବୁଦ୍ଧିମନ୍ତ ପ୍ରୟୋଗର ଅବକାଶ ଏ କ୍ଷେତ୍ରରେ ଅପର୍ଯ୍ୟାପ୍ତ ।

ଶେଷରେ, ସାମାଜିକ ଇତିହାସ ଶିକ୍ଷାରେ ଯେପରି କୌଣସି ଅବିଗ୍ଭର, ମତାନ୍ଧତା, ସାଂପ୍ରଦାୟିକ ବିଦ୍ୱେଷ, ଜାତୀୟ ଅହଙ୍କାର ବା ବର୍ଣ୍ଣ-ବୈଷମ୍ୟ-ପ୍ରବୃତ୍ତି ପ୍ରଥମରୁ ରହି ନ ଯାଏ । ତହିଁରୁ ଟିକିଏ ରହିଗଲେ, ଅମୃତ ଘଣ୍ଟରେ ବିଷ ଟୋପାଏ ପରି ଏ ଶିକ୍ଷା କ୍ଷୁଣ୍ଣ, ମୂଲ୍ୟହୀନ, ବିପଜ୍ଜନକ ହୁଏ । ନିର୍ମଳ ନିରପେକ୍ଷ ଉଦାର ଭବ ଓ ସମାଲୋଚନା ଏହାର ରକ୍ଷା କବଚ । ସବୁ ପୌରାଣିକ ବିଭବ, ସାଂସ୍କୃତିକ ଗୌରବ ସତ୍ତ୍ୱେ, ଭରତ ଆଜି ସାଂପ୍ରଦାୟିକ ସଂଘର୍ଷ ସଂକୀର୍ଣ୍ଣ ପ୍ରାଦେଶିକ ଅସୂୟା, ଶ୍ରେଣୀ ଔଦ୍ଧତ୍ୟରୁ ଯେ ସମ୍ପୂର୍ଣ୍ଣ ମୁକ୍ତ ଏହା କୁହାଯାଇ ନ ପାରେ ।

ଲୋକ-ଶାସନ ତଥା ନାଗରିକତାର ଉତ୍କର୍ଷ ସାଧନରେ ନବ ସ୍ୱାଧୀନ ଭରତ ଆହୁରି ବହୁତ ଶିଖିବାର ଅଛି, ଏହା ପରିଷ୍କାର ଦିଶୁଛି । ଅଜସ୍ର ଉଚ୍ଚାରିତ ରାଷ୍ଟ୍ର-ମଙ୍ଗଳ-ବିଧାୟକ ପ୍ରଜା-ସୃଷ୍ଟି, ରାମ-ରାଜ୍ୟର ଆଦର୍ଶ ଏବେ ମଧ୍ୟ କେଉଁ ଦୂରରେ ରହିଛି, ଆଖି ପାଉ ନାହିଁ । ମୁକ୍ତ, ପୂର୍ଣ୍ଣ, ଉତ୍କୃଷ୍ଟ, ସମୃଦ୍ଧ ଜୀବନ ଏବେ ମଧ୍ୟ କାହିଁ ଲୁଚି ରହିଛି, କହି ହେଉ ନାହିଁ । ବାଧା, ବନ୍ଧନ, ଉଦ୍‌ବେଗ, ଆଶଙ୍କା, ବିଫଳତା ଏବେ ମଧ୍ୟ ଆମକୁ ସମରତ୍ରସ୍ତ ସମଗ୍ର ପୃଥିବୀକୁ ଗଳଗ୍ରହ ପରି କିପରି ଘେରି ରହିଛି, ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ । ଦାରିଦ୍ର, ଅଜ୍ଞାନ, ଅସ୍ୱାସ୍ଥ୍ୟ, ପଶୁ-ପ୍ରବୃତ୍ତିର ବିକଟ ଛାୟା ଏବେ ମଧ୍ୟ ମନୁଷ୍ୟର ଭଗ୍ୟାକାଶକୁ କିପରି ସାନ୍ଦ୍ର ତମସାଚ୍ଛନ୍ନ କରି ରଖିଛି, ତାହା ଲୋକଲୋଚନ ଅଗୋଚରରେ ନାହିଁ । ଏ ପରିସ୍ଥିତିରେ ସାମାଜିକ ଇତିହାସର ତାତ୍ପର୍ଯ୍ୟପୂର୍ଣ୍ଣ ଶିକ୍ଷା ମାର୍ଗରେ ଏ ସବୁକୁ ଯଥାସମ୍ଭବ ଦୂର କରି ମାନବ-ସମାଜକୁ ଯଥାଶକ୍ତି ସୁସ୍ଥ, ସକ୍ଷମ, ସଫଳ, ସତ୍‌ନ୍ୟସ୍ତ କରିବାର ତୁରନ୍ତ ଆବଶ୍ୟକତା ବୁଝାଇ କହିବାର ପ୍ରୟୋଜନ ନାହିଁ ।

●

# ସେକେଣ୍ଡରି ଶିକ୍ଷାର ପୁନର୍ଗଠନ

ଦେଶବ୍ୟାପୀ ନ ହେଲେ ମଧ୍ୟ, ଅନ୍ତତଃ ପ୍ରତ୍ୟେକ ପ୍ରଦେଶରେ ଏକଧରଣର ସେକେଣ୍ଡରି ଶିକ୍ଷା ପ୍ରଚଳିତ ହେବା କାର୍ଯ୍ୟକାରୀ, ବାଞ୍ଛନୀୟ । ପଠିତ ବିଷୟ, ପାଠ୍ୟପୁସ୍ତକ, ପଠନ ପ୍ରକାର, ଛାତ୍ରଙ୍କର ଶ୍ରେଣୀ-ଉନ୍ନତି-ଅବନତିର ନୀତି-ନିୟମ, ଶିକ୍ଷକଙ୍କ ଟ୍ରେନିଙ୍ଗ -ସର୍ଭିସ ପ୍ରଣାଳୀ ଇତ୍ୟାଦିରେ ଭେଦ ରହିଲେ ନାନା ଗୋଳମାଳ ଓ ଦକ୍ଷତା ହାନି ଘଟେ । ପୁଣି ବର୍ତ୍ତମାନ ଆମ ପ୍ରଦେଶର ଶୋଚନୀୟ ଆର୍ଥିକ ଅବସ୍ଥା ଦୃଷ୍ଟିରେ ଶିକ୍ଷାର କେବଳ ବାହ୍ୟ ଉପକରଣ ବଡ଼କୋଠା, ଜିନିଷପତ୍ର, ଜାକଜମକ ଇତ୍ୟାଦି ଦିଗରେ ଯେପରି ବହୁତ ଧନ ବ୍ୟୟ କରାହେଉଛି, ତାହା ଉଚିତ ନୁହେଁ । ଏ ଦିଗରେ ଭାରତର ସରଳ ଜୀବନ ସଙ୍ଗେ ମହନୀୟ ଚିନ୍ତା ସଂଯୋଗ (simple living and high thinking ର ପାରମ୍ପରିକ ବୃତ୍ତ ଠିକ୍ ନିର୍ଦ୍ଦେଶ ଦେଇପାରେ । ବାହ୍ୟ ଆଡମ୍ବର ଛାଡ଼ି ଆନ୍ତରିକ ସତ୍ୟର ରକ୍ଷା ଓ ସୃଷ୍ଟିପାଇଁ ପ୍ରାଚୀନ ଗୁରୁକୁଳର କ୍ଷୀଣ ଆହ୍ୱାନ ମଧ୍ୟ ଆଜି ଆମ କାନରେ ବାଜି ଉଠୁଛି । ଏ ଅକାରଣ ବ୍ୟୟ ବଦଳରେ ସେହି ଅର୍ଥର ଫଳୋତ୍ପାଦକ ବ୍ୟବହାର ପାଇଁ ବହୁତ ଆବଶ୍ୟକତା ଅଛି । ଆମ ପକ୍ଷରେ ଏବେ ଶିକ୍ଷା ଏପରି ବ୍ୟୟବହୁଳ ଯେ ଶ୍ରମିକ-କୃଷକଙ୍କ କଥା ଛାଡ଼ ମଧ୍ୟବିତ୍ତ ପରିବାରର ପିଲାଙ୍କୁ ମଧ୍ୟ ଶିକ୍ଷା ଦେବା ଯନ୍ତ୍ରଣା-ଦାୟକ ହୋଇଛି । ଏଣେ ପୁଣି ଶିକ୍ଷକଙ୍କ ଦୁଃଖକାହାଣୀ ଗାଇଲେ ନ ସରେ । ସ୍ୱଳ୍ପ ବେତନଭୋଗୀ, ଏକପ୍ରକାର ଅନାହାରୀ, ସମାଜର ବିଦ୍ରୂପ-ତାଚ୍ଛଲ୍ୟ-ଅବହେଳାରେ ଦୀନ ହୋଇ ସମାଜର ଅନିଷ୍ଟ ସାଧନ କରିବାର କଳ ହେଉଛନ୍ତି; ନିଜେ ନିଜର ଗୁରୁ ଦାୟିତ୍ୱ ବୁଝୁ ନାହାନ୍ତି । ବକ୍ତୃତା-ମଣ୍ଡପରେ ମୋଟା ବେତନ ଓ ସକଳ ସୁବିଧା-ଅଧିକାର ପ୍ରାପ୍ତ ହାକିମମାନେ କହୁଛନ୍ତି, ଶିକ୍ଷକତ୍ୱ ବଡ ମହତ୍ ବୃତ୍ତି; କିନ୍ତୁ ପାଶୋରି ଦେଉଛନ୍ତି, ସାମୟିକ କଥା ସହାନୁଭୂତିରେ ପେଟ ପୂରିବ ନାହିଁ । ଏ ପ୍ରତିଯୋଗିତାମୂଳକ ନିଷ୍ଠୁର ଜଗତରେ ବୃତ୍ତି ହିସାବରେ ମଧ୍ୟ ଶିକ୍ଷକତାର ନ୍ୟୁନତମ ଆର୍ଥିକ ଦାବୀ ରହିଛି । ଶିକ୍ଷା ଦେଶ ଓ ଜାତିର ଭବିଷ୍ୟତ ଉନ୍ନତିର ମୂଳପିଣ୍ଡ; ଗଠନମୂଳକ କ୍ରିୟା ମଧ୍ୟରେ ତାର ସ୍ଥାନ ଅତି ଉଚ୍ଚରେ । ଶିକ୍ଷା ପବିତ୍ର କାର୍ଯ୍ୟ, ରାଜନୀତିର କୂଟ-କୌଶଳ ତହିଁରେ ସ୍ଥାନ ପାଇବାର ନୁହେଁ, ଏ କଥା ସଞ୍ଜ-ସକାଳେ କର୍ତ୍ତୃପକ୍ଷ କହିବାରେ ତ୍ରୁଟି କରୁ ନାହାନ୍ତି; ତଥାପି ବ୍ୟୟ-ସଙ୍କୋଚ କୁଠାର ପ୍ରଥମେ ଶିକ୍ଷା-ତରୁ ମୂଳରେ ପଡୁଛି । ଶିକ୍ଷକଙ୍କ ସ୍ୱଳ୍ପବେତନ ବର୍ଷ ବର୍ଷ ଧରି ନ ମିଳିବାର ଖବର କେହି ରଖୁନାହିଁ । ଗାଆଁ ଗାଆଁ ନିର୍ବାଚନ ଇତ୍ୟାଦି

ବେଳେ ଶିକ୍ଷକମାନେ ରାଜନୀତିକ ଦଳାଦଳିରେ କିପରି ନିଷ୍ପେଷିତ ହେଉଛନ୍ତି, ତାହା ସମସ୍ତଙ୍କୁ ଜଣା । ସ୍ୱାଧୀନ ଚିନ୍ତା, ଆତ୍ମମର୍ଯ୍ୟାଦା, ପ୍ରତିଷ୍ଠା-ପ୍ରତିପତ୍ତି ବୋଲି ସେମାନଙ୍କ ପକ୍ଷରେ ଯେପରି କଥାଏ ନାହିଁ । କ୍ଷୋଭ ଓ ଆଶ୍ଚର୍ଯ୍ୟର କଥା, ଏ ସବୁର ଅନିଷ୍ଟ ସମସ୍ତେ କଥା କଥାକେ ବୁଝୁଛନ୍ତି; କିନ୍ତୁ କାର୍ଯ୍ୟରେ କିଛି ହୋଇପାରୁ ନାହିଁ । କଥା-କାର୍ଯ୍ୟର ଫାଙ୍କର ଏ ବିଡ଼ମ୍ବନା ବୋଧହୁଏ ମନୁଷ୍ୟର ପ୍ରକୃତି ।

ସରକାରୀ ବେ-ସରକାରୀ (Public and Private) ହିସାବରେ ବେତନ ଓ ସର୍ଭିସର ଅନ୍ୟାନ୍ୟ ନୀତି-ନିୟମ ସମ୍ବନ୍ଧରେ ଶିକ୍ଷକ ଶିକ୍ଷକଙ୍କ ମଧ୍ୟରେ ପ୍ରଭେଦ ରହିବା ଉଚିତ ନୁହେ । ଅନ୍ତତଃ ଶିକ୍ଷା ପରି ସାର୍ବଜନୀନ କ୍ଷେତ୍ରରେ ଭେଦ-ପ୍ରତିବନ୍ଧକ ବାଞ୍ଛନୀୟ ନୁହେ । ଛାତ୍ରସଂଖ୍ୟା ସମ୍ପର୍କରେ ଏତିକି କୁହାଯାଇପାରେ, ପ୍ରତ୍ୟେକ ଶ୍ରେଣୀରେ ୩୦ ଠାରୁ ୪୦ ପର୍ଯ୍ୟନ୍ତ ରହିପାରନ୍ତି; ତହିଁରୁ ଅଧିକ ରଖା ହେଲେ ଶିକ୍ଷକଙ୍କ କର୍ମ-କୁଶଳତା ଓ ପିଲାଙ୍କ ପଢାଶୁଣାରେ ବ୍ୟକ୍ତିଗତ ଦୃଷ୍ଟି ଉପରେ ବାଧାପଡ଼େ । ଆର୍ଥିକ ଅନଟନର ଦ୍ୱାହି ଦେଇ ଯେପରି ଭାବରେ ଉପଯୁକ୍ତ ଅନୁପଯୁକ୍ତ ବିଚାର ନ କରି ଅସଂଖ୍ୟ ଛାତ୍ରଙ୍କୁ ଶ୍ରେଣୀମାନଙ୍କରେ ଭର୍ତ୍ତି କରିଦେଇ ଶିକ୍ଷାକୁ ଏବେ ପ୍ରତିହତ ଓ ଧରବନ୍ଧା କରାହେଉଛି ତାହା କାହାରି ଅବିଦିତ ନାହିଁ ।

ଆମର ଏବର ସେକେଣ୍ଡରି ଶିକ୍ଷା ଅଭାବଗ୍ରସ୍ତ । ଯେତେଦୂର ସମ୍ଭବ ତହିଁରେ ପରିବର୍ତ୍ତନ ଆବଶ୍ୟକ, ଏଥିରେ ମତଦ୍ୱୈଧ ନାହିଁ । ଏହାର ପ୍ରତିକାର କରିବାକୁ ଯାଇ ଏବେ ବାହାରିଛି ଦୁଇଟି କଥା—ସାହିତ୍ୟିକ ପନ୍ଥା ଓ ବ୍ୟାବସାୟିକ ପନ୍ଥା (Literary and Vocational । ଏ ଦୁଇଟି ଉପରେ ବିଭିନ୍ନ ରୁଚି, ଅଭିପ୍ରାୟ, ଆଦର୍ଶ ଦୃଷ୍ଟିରେ ବିଭିନ୍ନ ମାତ୍ରାରେ ଜୋର ଦିଆହେଉଛି । ପୁଣି ମୁରବୀଙ୍କ ତୃତୀୟ ପନ୍ଥା ଭଳି ଆଉ ଗୋଟିଏ ମତ ଏହି ଯେ, ଦୁଇଟି ମିଶାଇ ଗୋଳିଆପୋଳିଆ ନ କରି ଦୁଇଟିକୁ ସମ୍ପୂର୍ଣ୍ଣ ଅଲଗା ରଖି ସେକେଣ୍ଡରି ଶିକ୍ଷାକୁ ଦୁଇ ଭାଗରେ ବିଭକ୍ତ କରି ଦିଆ ହେଉ; କିନ୍ତୁ ସେହି ଶିକ୍ଷାର ଠିକ୍ କେଉଁ ଅବସ୍ଥାରେ—ଆଦ୍ୟରେ, ମଧ୍ୟରେ, ପ୍ରାନ୍ତରେ ବା କେଉଁ ଶ୍ରେଣୀରେ ଏ ବିଭକ୍ତି ଆରମ୍ଭ କରାହେବ, ସେ ବିଷୟରେ ପୁଣି କିଛି ନିଶ୍ଚିତ ମତ ଦେଖାହେଉ ନାହିଁ । ଏଣେ ଅତିମାତ୍ରା ସାହିତ୍ୟିକତା ବା ଅତିମାତ୍ରା ବ୍ୟାବସାୟିକତାର ମନ୍ଦ ଫଳ ଶୁଣି ଶୁଣି କାନ ଅତଡ଼ା ପଡ଼ିଗଲଣି । ପ୍ରଥମ ଦ୍ୱାରା ଶିକ୍ଷାର୍ଥୀ କିପରି ସମାଜ-ସମ୍ପର୍କ ରଖିପାରେ ନାହିଁ, ଏକଦର୍ଶୀ ବୁଦ୍ଧିଜୀବୀ ହୁଏ, ତାହାର ଶାରୀରିକ, ଭାବାତ୍ମକ, ଆଧ୍ୟାତ୍ମିକ ଜୀବନ ବିକଶିତ ହୁଏ ନାହିଁ, ଅକର୍ମ ସମସ୍ୟା ଗୁରୁତର ହୁଏ ଓ ଦ୍ୱିତୀୟ ଦ୍ୱାରା କିପରି ଶିକ୍ଷାର୍ଥୀର ମନ କେବଳ ଲାଭ-ନଷ୍ଟ ବିଚାର (Utilitarian outlook)ରେ ଆବଦ୍ଧ ରହେ, ଅନ୍ୟ କୌଣସି ଆଦର୍ଶ ତାକୁ ସୁନ୍ଦର, ସରସ, ଉଦ୍‌ବୁଦ୍ଧ କରେ

ନାହିଁ—ଏ ସବୁ କଥା ଘଷାମଜା ହୋଇସାରିଲଣି । ଏ ସବୁ ସତ୍ୟ ନୁହେ, ଏ କଥା କହୁ ନାହୁଁ; କିନ୍ତୁ କାର୍ଯ୍ୟକ୍ଷେତ୍ରରେ ତାର ପ୍ରତିକାର ନ କରି ବାହୁନେଇ ହେଲେ ପ୍ରୟୋଜନ କଅଣ ? ଆମର ଏ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ମତ, ଏ ଦିଗରେ ଆମର ପାରମ୍ପରିକ ମନସ୍ତତ୍ତ୍ୱ ଓ ସାମାଜିକ ପାରିପାର୍ଶ୍ୱର ଠିକ୍ କଳନା କରିବାକୁ ହେବ ଓ ଏସବୁ ସମସ୍ୟାର ସମାଧାନ ହିନ୍ଦୁ ଧର୍ମର ମୂଳ ବର୍ଣ୍ଣାଶ୍ରମ-ନୀତିର ଆଧୁନିକ ପ୍ରୟୋଗରେ ଅନେକ ଦୂର ସମ୍ଭବ ହେବ । ସେହି ନୀତି ଉପରେ ପ୍ରତିଷ୍ଠିତ ହେଲେ ବିଭିନ୍ନ ବ୍ୟବସାୟ ଶିକ୍ଷା ପାଇଁ ବିଭିନ୍ନ ସ୍କୁଲ ରଖାହେବ । ମିଳିତ ସ୍କୁଲରେ ତାହା କେତେଦୂର ସମ୍ଭବ ହୋଇପାରିବ, ସେ ସମ୍ବନ୍ଧରେ ସୂଚନା ମଧ୍ୟ ମିଳିବ । କୌଣସି ସ୍କୁଲରେ କି ଧରଣର ବ୍ୟବସାୟ ଶିକ୍ଷା ଦିଆହେବ, ତାହା ସେ ସ୍କୁଲ ଛାତ୍ରଙ୍କ ହାବଭାବ, ସଂଖ୍ୟା, ପୈତୃକ ଓ ସେ ବସତିର ପ୍ରଚଳିତ ବୃତ୍ତି ଆଦି ଉପରେ ନିର୍ଭର କରିବ; କିନ୍ତୁ ଯେଉଁ ଧରଣର ବ୍ୟବସାୟ ଶିକ୍ଷା ଦିଆହେଉ ପଛକେ ଲକ୍ଷ୍ୟ ରଖିବାକୁ ହେବ, ସେ ଶିକ୍ଷା ଦ୍ୱାରା ଶିକ୍ଷାର୍ଥୀ ସ୍ୱଚ୍ଛନ୍ଦ ଓ ନୈତିକ ଭାବରେ କର୍ମ ସଂପାଦନ କରି, ଆତ୍ମସମ୍ମାନ ବଜାୟ ରଖି ନିଜର ଓ ନିଜ ପରିବାରର ଭରଣପୋଷଣ କରିବା ସଙ୍ଗେ ସମାଜ-ରାଜ୍ୟ-ସଂସାର ପ୍ରତି ନିଜର କର୍ତ୍ତବ୍ୟ ଅକ୍ଷୁଣ୍ଣଭାବରେ ପୂରଣ କରିପାରିବ । ନ ହେଲେ ବ୍ୟବସାୟ-ଶିକ୍ଷାରେ ମଧ୍ୟ ସେହି ଗତାନୁଗତିକ 'ଧୋବଧାଉଳିଆ' ଚାକିରି ଖୋଜା, ପୋଥି ବାଇଗଣ କଥା ବା ସଂକୀର୍ଣ୍ଣତା ରହିଲେ ଏ ଧରଣର ଶିକ୍ଷାର ପ୍ରୟୋଜନୀୟତା ରହିବ ନାହିଁ; ପୁଣି ଏ ସମ୍ବନ୍ଧରେ ଆଉ ଗୋଟିଏ ବିଚାର୍ଯ୍ୟ ଦିଗ ଏହି ଯେ, ଆମ ଦେଶର ପ୍ରଧାନ ବ୍ୟବସାୟ ଏବେ ମଧ୍ୟ କୃଷି । ଏ ଦେଶ ଶିଳ୍ପ-ବ୍ୟବସାୟ (Industry) ଦିଗରେ ଏବେ ମଧ୍ୟ ପଛରେ ପଡ଼ିଛି । ଅବଶ୍ୟ କେତେ ବର୍ଷ ହେଲା ଏ ଦେଶରେ ବ୍ୟବସାୟ-ପ୍ରବୀଣତା କେତେକ ପରିମାଣରେ ଦେଖାହେଉଅଛି, ତଥାପି କୃଷି ହିଁ ଏ ଦେଶର ପ୍ରଧାନ ପୋଷାକ; ଏଣୁ ବ୍ୟବସାୟ-ଶିକ୍ଷା କଥା ପଡିଲେ ସ୍ୱତଃ କୃଷି ଓ ତତ୍‌ସଂଲଗ୍ନ ଗୃହପାଳିତ ଜନ୍ତୁପାଳନ, ସୂତା-କଟା, ଲୁଗାବୁଣା, ତେଲପେଡ଼ା, ଘର ତିଆରି ଇତ୍ୟାଦି କଥା ଆମ ମନରେ ପଡ଼େ । ଏବେ ଯେଉଁ ଧରଣରେ ଭିତ୍ତି-ଶିକ୍ଷା ନାମରେ ସପ୍ତାହକେ ଗୋଟିଏ ଯୋଡ଼ିଏ ପିରିଅଡ଼ ଆମ ସ୍କୁଲମାନଙ୍କରେ ହସ୍ତ ଶିକ୍ଷା (Manual Training) ଦିଆଯାଏ, ତାହା ନିତାନ୍ତ ଅପୂର୍ଣ୍ଣ, ଅକର୍ମଣ୍ୟ ଓ ସୀମାବଦ୍ଧ । ସାହିତ୍ୟ ଓ ବ୍ୟବସାୟ, ଏ ଦୁଇଟିରେ ଶିକ୍ଷା-ସମୟ ବାଣ୍ଟିବା ଆମର ଆସ୍ଥା ତହିଁର ଉପକାରର କଳନା ଉପରେ ନିର୍ଭର କରେ । ସେକେଣ୍ଡରି ଶିକ୍ଷା ସମାପ୍ତି ପରେ ଅକର୍ମା ରହିବେ ନାହିଁ—ଏ ବିଷୟରେ ଆମେ କେବଳ ଶିକ୍ଷକ-ଶିକ୍ଷାର୍ଥୀ ଭାବରେ ବେଶୀ କିଛି କହିପାରିବୁ ନାହିଁ । ସେଥିପାଇଁ ସମୂହ ଭାବରେ ସମାଜ-ବ୍ୟବସ୍ଥା, ରାଜ୍ୟ-ନୀତି, ଆନ୍ତର୍ଜାତିକ ସମ୍ବନ୍ଧର ସନ୍ତୋଷଜନକ ପରିବର୍ତ୍ତନ ହେବା ଆବଶ୍ୟକ, କହିବା ବାହୁଲ୍ୟ । ଏ ଦିଗରେ ଆମର କୃତିତ୍ୱ ସୀମାବଦ୍ଧ ।

ଉଚ୍ଚପ୍ରାଥମିକ ବିଦ୍ୟାଳୟ (Higher Elementary Schools) ଗୁଡ଼ିକ ସେକେଣ୍ଡରି ସ୍କୁଲମାନଙ୍କର ଅନ୍ତର୍ଭୁକ୍ତ କଲେ କ୍ଷତି ନାହିଁ । ସେକେଣ୍ଡରି ସ୍କୁଲମାନଙ୍କରେ ଘର-ପଢ଼ା ପିଲଙ୍କ ପ୍ରବେଶ (Private Admissions) ସମ୍ପୂର୍ଣ୍ଣ ନିଷେଧ କରିବା ଉଚିତ ନୁହେ । ଅବଶ୍ୟ ବର୍ତ୍ତମାନ ପିଲଙ୍କ ସଂଖ୍ୟା, ସ୍କୁଲର ଆୟବୃଦ୍ଧି ଓ ଅନ୍ୟାନ୍ୟ ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରେ ତହିଁରେ ଯେପରି ଅଯଥାର୍ଥ ଅବାଧ ପ୍ରଶ୍ରୟ ଦିଆହେଉଛି, ତାହା ଅସଙ୍ଗତ । ଶିକ୍ଷକ ଭବରେ, ଦେଶର ଆଶା-ଭରସା ଭବିଷ୍ୟତ୍ ବଂଶଧରଙ୍କ ଜୀବନ-ସୌଧ ନିର୍ମାତା ଭବରେ ଆମର ଗୁରୁ ଦାୟିତ୍ୱ ଥରେ ଉପଲବ୍ଧି କଲେ, ଆମେ ଏଭଳି ପ୍ରଶ୍ରୟ ଦେଇ ଶିକ୍ଷାର ନୈପୁଣ୍ୟ ହାନିରେ କେବେ ସ୍ୱୀକୃତ ହୋଇପାରିବୁ ନାହିଁ । ତଦ୍ୱାରା ଏଭଳି ପ୍ରବେଶ ଶିକ୍ଷାର୍ଥୀର ପ୍ରକୃତ ସାମର୍ଥ୍ୟ ଭିତ୍ତି ଉପରେ ପ୍ରତିଷ୍ଠିତ ହେବ; କିନ୍ତୁ ଅନ୍ୟ ଦିଗରେ ଏ ପ୍ରବେଶ-ପଥ ସମ୍ପୂର୍ଣ୍ଣ ରୁଦ୍ଧ ହେଲେ ବାଲ୍ୟକାଳରେ ଦୁଃସ୍ଥ ଦୁର୍ଗତିଗ୍ରସ୍ତ ଅବସ୍ଥାରୁ ମଞ୍ଜୁରି-ବିଦ୍ୟାଳୟରେ ପଢ଼ିବା ପାଇଁ ଅସମର୍ଥ ଅନେକ ଦରିଦ୍ର ଅସହାୟ କୁଟୁମ୍ବଙ୍କ ପିଲଙ୍କ ପକ୍ଷରେ ଉଚ୍ଚଶିକ୍ଷାର ଆଲୋକ-ଦୀପ ଏକାବେଳକେ ନିଭିଯିବ । କୁହାହୋଇଛି, ଏ ଦେଶର ଶିକ୍ଷା-ଆତ୍ମା ସବୁବେଳେ ଧରବନ୍ଧା ଆଇନ୍-କାନୁନରେ ଆବଦ୍ଧ ନ ରହି ଆନ୍ତରିକ ଅଭିବୃଦ୍ଧି ଉପରେ ବେଶୀ ନିର୍ଭର କରୁଛି । ଶିକ୍ଷାର ପ୍ରାଥମିକ ଅବସ୍ଥାରେ ସାମାନ୍ୟ ଗଣିତ, ମାତୃଭଷା, ପ୍ରକୃତି ଓ କୌଣସି ଗୋଟିଏ ବୃତ୍ତି ଶିକ୍ଷା ଦେଲେ ଯଥେଷ୍ଟ । ଗୁଡିଏ ବିଷୟରେ ପଠନ ପ୍ରଣାଳୀକୁ ଭରକ୍ରାନ୍ତ କଲେ ତରୁଣ ଶିକ୍ଷାର୍ଥୀର କୋମଳ ବୃତ୍ତି ସ୍ୱତଃ ଦୁର୍ବଳ ହୁଏ । ଅଳ୍ପ ହେଉ ପଛେ କାର୍ଯ୍ୟ ସ୍ୱଚ୍ଛ, ଗମ୍ଭୀର ନିମଗ୍ନ ହେବା ଉଚିତ ।

ମାତୃଭଷାରେ ଶିକ୍ଷା ଦେବା ଉଚିତ, ଏ କଥାରେ ଏବେ ଆଉ ସଂଶୟ ନାହିଁ । ବାସ୍ତବିକ ଏ ପ୍ରଶ୍ନ ଆମ ଦେଶ ପରାଧୀନ ହୋଇ ନ ଥିଲେ ଉଠନ୍ତା ନାହିଁ । ସ୍ୱାଧୀନ ଦେଶରେ ଶିକ୍ଷା ସେ ଦେଶ ବା ଜାତିର ଭଷାରେ ଦିଆହେବ କି ନାହିଁ, ଏ ପ୍ରଶ୍ନ କରିବା ହିଁ ବାତୁଳତା । ସେ ଯାହାହେଉ, ଗୋଟାଏ ବୈଦେଶିକ ଶିକ୍ଷା-ପନ୍ଥା ଆମ ଦେଶରେ ଇଂରେଜୀ ଭଷାରେ ଶତାଧିକ ବର୍ଷ ଧରି ଆସୁଛି । ହଠାତ୍ ତାକୁ ମାତୃଭଷା ଓ ଜାତୀୟ କରିବାକୁ ଗଲେ କେତେକ କାର୍ଯ୍ୟକାରକ (Practical) ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଛି । ବିଶେଷତଃ ବିଶେଷ ବିଶେଷ ବିଷୟ (C. Group Subjects) ମାନଙ୍କରେ ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ବ୍ୟବସାୟକେନ୍ଦ୍ର-ଅନୁଷ୍ଠାନକୁ ଏ ଦିଗରେ ବାଟ ଦେଖାଇବାକୁ ହେବ । ଯାହା ହେଉ ଏ ଦିଗରେ ଆଉ ଅବହେଳାଜନିତ ଅପେକ୍ଷା କରା ହୋଇପାରିବ ନାହିଁ । କୌଣସି ନା କୌଣସି ସ୍ଥାନର ଓ ଅବସ୍ଥାର ପରିବର୍ତ୍ତନ ଅତି ଶୀଘ୍ର ବାଞ୍ଛନୀୟ । ପୁଣି ଆଧୁନିକ ଛାତ୍ରର ଶବ୍ଦକୋଷ (Vocabulary content) ରେ କ୍ରମେ ବୈଜ୍ଞାନିକ, ବ୍ୟାବସାୟିକ

ଶବ୍ଦ-ପ୍ରୟୋଗ (Technical Terms)ର ପ୍ରାଧାନ୍ୟ ବଢ଼ିଯାଉଛି । ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରେ ଏ ଶବ୍ଦ-ସମୂହର ସମଷ୍ଟି-ସଂଗ୍ରହ ଏ ପର୍ଯ୍ୟନ୍ତ ହୋଇ-ନାହିଁ । ମାତୃଭାଷାରେ ଯେତେଦୂର ସମ୍ଭବ ଏ ଶବ୍ଦଗୁଡ଼ିକର ପ୍ରତିଶବ୍ଦ ବ୍ୟବହାର କରିବାକୁ ହେବ; ଅଭାବରେ ସଂସ୍କୃତ ଆଦି ଉଚ୍ଚ ଶ୍ରେଣୀୟ (classical) ଭାଷା-ତନ୍ନ ତନ୍ନ କରି ଖୋଜିବାକୁ ହେବ; କିନ୍ତୁ ଏ ବଡ଼ ଅଧ୍ୟବସାୟ, ପାଣ୍ଡିତ୍ୟ ଓ ବୁଦ୍ଧିମତ୍ତାର କାର୍ଯ୍ୟ । ସେଥିପାଇଁ ପ୍ରାଚୀନ, ଅର୍ବାଚୀନ, ମୌଳିକ, ପ୍ରାଦେଶିକ, ଦେଶୀୟ-ବୈଦେଶିକ ସମସ୍ତ ସାହିତ୍ୟରେ ପ୍ରବେଶ ଆବଶ୍ୟକ । ଅଭାବରେ ବୈଦେଶିକ ଭାଷାରୁ ଶବ୍ଦ ଆଣି ପ୍ରୟୋଗ କରିବା ପାଇଁ ବୃଥା ଅଭିମାନ ଯୋଗୁଁ ବାଧା ଦେବା ଅନୁଚିତ । ଆହରଣ ଜୀବନର ଧର୍ମ । ମନୁଷ୍ୟର ବାଚ୍ୟ-ସଂସାରରେ ପୂର୍ଣ୍ଣଚ୍ଛେଦ କେବେ ପଡେ ନାହିଁ; ଜୀବନର ଅନ୍ୟ ସକଳ ବିଭାଗ ପରି ତାହା କ୍ରମବର୍ଦ୍ଧିଷ୍ଣୁ; କିନ୍ତୁ ଆହରଣ ଅର୍ଥଶୂନ୍ୟ ଅନ୍ଧ ଅନୁକରଣରେ ମରଣାନ୍ତକ ହେବା ଅନିଷ୍ଟକର ।

ବର୍ତ୍ତମାନ ମଧ୍ୟାହ୍ନରେ ଯେପରି ସ୍କୁଲମାନଙ୍କରେ ଶିକ୍ଷା ଦିଆହେଉଅଛି, ତାହା ଆମ ଜଳବାୟୁ ଓ ଋତୁଚର୍ଯ୍ୟାର ଅନୁକୂଳ ନୁହେଁ । ଠିକ୍ ସୂର୍ଯ୍ୟୋଦୟ ପରେ ପ୍ରାତଃକୃତ୍ୟ ସାରି ଶୁଚିମନ୍ତ ହୋଇ ବାଳ-ରବିର କନକ-କିରଣରେ ଆଲୋକିତ ଉପବନର ମଞ୍ଜୁଳ-ଶ୍ୟାମଳିମା ମଧ୍ୟରେ ଆମର ଅଧ୍ୟୟନ ଆରମ୍ଭ ହେବା ଉଚିତ । ପୂର୍ବାହ୍ନରେ ସାହିତ୍ୟିକ ଶିକ୍ଷା ଓ ଅପରାହ୍ନରେ ବ୍ୟବସାୟ ଶିକ୍ଷା, ଶାରୀରିକ ବ୍ୟାୟାମ, ଖେଳ-କୌତୁକରେ ବିନିଯୁକ୍ତ ହେଲେ ଭଲ ହେବ ।

କୁହାହୋଇଛି ପ୍ରାୟ ସବୁ ଛାତ୍ରଙ୍କୁ ଇଂରେଜୀ ଭାଷା ଠାରୁ ମାତୃଭାଷାକୁ ଅଧିକ ପ୍ରାଧାନ୍ୟ ଦେବାକୁ ହେବ । ଅବଶ୍ୟ ଯେଉଁମାନେ ଇଂରେଜୀରେ ପଣ୍ଡିତ ହୋଇ ପ୍ରତୀଚ୍ୟ-ଚିନ୍ତା ଆମ ମନରେ ଖେଳାଇବେ, ଏପରି କେତେକ ମେଧାବୀ ଛାତ୍ରଙ୍କ ପକ୍ଷରେ ଏ ସମ୍ପର୍କରେ ଛାଡ ଦେଇ ଅନ୍ୟ ସାଧାରଣଙ୍କ ପକ୍ଷରେ ଇଂରେଜୀରେ ଚଳନୀୟ ଲେଖା-ପଢ଼ା (Working knowledge) ଯଥେଷ୍ଟ; କିନ୍ତୁ ତାହା ବୋଲି ଇଂରେଜୀକୁ ହଠାତ୍ ଇଚ୍ଛାଧୀନ (Optional) ବିଷୟ କରିବା ଉଚିତ ନୁହେଁ । ପୂର୍ବପରି ତାହା ବାଧ୍ୟତାମୂଳକ ବିଷୟ ରହିବ; କିନ୍ତୁ ପ୍ରାଥମିକ ଧରଣରେ ଶିଖାଯିବ, ପୁଣି ହଠାତ୍ ପାଠ୍ୟପୁସ୍ତକ ବିନା ସାଧାରଣ ଜ୍ଞାନାର୍ଜନ ପନ୍ଥାରେ ଏ ବିଷୟ ଶିଖାଯାଇପାରିବ ନାହିଁ । ଶିକ୍ଷାରେ ନିର୍ଦ୍ଦିଷ୍ଟ ଅବଲମ୍ବନ ରହିଲେ ତାହା ଅସଂଲଗ୍ନ, ଅଶୁଦ୍ଧ ହେବ । ପାଠ୍ୟପୁସ୍ତକ ନ ଥିବାରୁ ଛାତ୍ରମାନେ ଲାଇବ୍ରେରୀ ପିରିଅଡ୍ ଯେପରି ବୃଥା କଟାଇ ଦିଅନ୍ତି, ତହିଁରୁ ଏ ସଂପର୍କରେ ଶିଖିବାର ଅଛି । ଭାଷା-

ଇତର (Non-Language) ବିଷୟଗୁଡ଼ିକ ମାତୃଭଷାରେ ଶିଖାହେବ । ସଂସ୍କୃତ ମାତୃଭଷାର ସ୍ଥାନ ଅଧିକାର କରିପାରିବ ନାହିଁ, ତଥାପି ସଂସ୍କୃତର ପ୍ରାଧାନ୍ୟ ଓ ଉପକାରିତା ବିଷୟରେ ଆଜିକାଲିକା ପରି ଅବହେଳା ଦେଖାଇବା ମାରାତ୍ମକ । ଆମର ପ୍ରାଚୀନ ବିବସ୍ତ୍ର ସଂସ୍କୃତି-ସଭ୍ୟତା କୋଷ ଉନ୍ମୁକ୍ତ କରିବାପାଇଁ ସଂସ୍କୃତ କୁଞ୍ଚିକା । ଆମର ଆଲୋଚିତ ମତ, ସଂସ୍କୃତ ଏବପରି ହାଇସ୍କୁଲରୁ ଉଚ୍ଚତମ କେବଳ ଦୁଇଟି ଶ୍ରେଣୀରେ ଇଚ୍ଛାଧୀନ ବିଷୟ ନ ହୋଇ ଆରମ୍ଭରୁ ଶେଷଯାଏ ବାଧ୍ୟତା-ମୂଳକ ହେଉ । ସଙ୍ଗେ ସଙ୍ଗେ ମାତୃଭଷା-ଶିକ୍ଷା ଉନ୍ନତିର ମାର୍ଗ ଫିଟୁ । ଏ ସମ୍ପର୍କରେ ବର୍ତ୍ତମାନ ପରୀକ୍ଷାରେ ଇଂରେଜୀ ଦ୍ୱିତୀୟ କାଗଜ (Second Paper)ର ଅନୁକରଣରେ ମାତୃଭଷା ମଧ୍ୟରେ ଆଉ ଗୋଟିଏ କାଗଜର ବ୍ୟବସ୍ଥା କରାହୋଇ-ପାରେ । ପୁଣି ଆଜିକାଲିକା ପରି ମାତୃଭଷା ପାଠ୍ୟପୁସ୍ତକମାନଙ୍କରେ ଇତିହାସ, ବିଜ୍ଞାନ, ଭୂଗୋଳ ବା ଅନ୍ୟାନ୍ୟ ବିଷୟକ ଗୁଡ଼ାଏ ପାଠ ରହିବା ଉଚିତ ନୁହେଁ । ଅବଶ୍ୟ ତହିଁରୁ ଅଳ୍ପ କେତୋଟି ଦିଆହୋଇପାରେ, କିନ୍ତୁ ତହିଁରେ ବିଷୟ-ଜ୍ଞାନ ଅପେକ୍ଷା ସାହିତ୍ୟ ଭଷାର ରୁଚି-ସୌନ୍ଦର୍ଯ୍ୟ ଉପରେ ଅଧିକ ଦୃଷ୍ଟି ଦେବାକୁ ହେବ । ନ ହେଲେ ମାତୃଭଷା-ଶିକ୍ଷାର ସମୟ ଓ ଶ୍ରମ ବୃଥା ହୁଏ; ଏଣେ ସେ ବିଷୟମାନ ପଢିବାପାଇଁ ଅନ୍ୟ ଆବଶ୍ୟକ ପିରିଅଡ୍ ଥାଏ । ହାଇସ୍କୁଲରେ ଏବେ ଦିଆହୋଇଥିବା ଗଣିତ-ଶିକ୍ଷା ସାଧାରଣ କର୍ମମୟ ଜୀବନରେ ସେତେ କାର୍ଯ୍ୟରେ ଆସୁନାହିଁ । ଉଚ୍ଚ୍ୟଗଣିତର ସୂକ୍ଷ୍ମସୂତ୍ର Abstract formulae) ଓ ସାଙ୍କେତିକ ଅନୁଶୀଳନ (Symbolic Representation) ଦ୍ୱାରା ତରୁଣ ଶିକ୍ଷାର୍ଥୀକୁ ଭରାକ୍ରାନ୍ତ କରାହେଉଛି । ଯେତେ ଦୂର ସମ୍ଭବ ଏହାର ପରିବର୍ତ୍ତନ ଆବଶ୍ୟକ । ଅନେକ ଅଂଶରେ ପଠିତବ୍ୟ ବିଷୟ (Syllabus) ଆଜିକାଲି ଭରି ହୋଇଯାଇଛି । ଯେତେଦୂର ସମ୍ଭବ ସେଗୁଡ଼ିକ କାଟିଦେବାକୁ ହେବ । ଭୂଗୋଳ ବର୍ତ୍ତମାନ ସାଧାରଣଙ୍କ ଦ୍ୱାରା ଅବହେଳିତ ହେଉଅଛି, କିନ୍ତୁ ତାର ପ୍ରାଧାନ୍ୟ ଇତିହାସ ବା ବିଜ୍ଞାନ ଠାରୁ କୌଣସି ପ୍ରକାରରେ ଊଣା ନୁହେଁ । ସଂସାରର ବର୍ତ୍ତମାନ ବିଭିନ୍ନ ଘଟଣା ଓ ଆନ୍ଦୋଳନ ଉପରେ ପ୍ରାକୃତିକ ଭୂଗୋଳ ଓ ପାରିପାର୍ଶ୍ୱିକର ପ୍ରଭବ ସ୍ପଷ୍ଟରୂପେ ଜଣାହେଉଛି ।

ପରୀକ୍ଷା ସମ୍ବନ୍ଧରେ ଏତିକି କୁହାହୋଇପାରେ, ଅବଶ୍ୟ ପରୀକ୍ଷାର ନିଗଡ଼ କଟକଣା କେତେକାଂଶରେ ଶିଥିଳ କରିବାକୁ ହେବ । ଯେପରିକି ଶିକ୍ଷାର୍ଥୀ ତାର ମୌଳିକତା ଓ ମୁକ୍ତି ପ୍ରକାଶର କ୍ଷେତ୍ର ପାଇବ । ତଥାପି ତାକୁ ଏକାବେଳକେ ବାଦ୍ ଦିଆହୋଇପାରିବ ନାହିଁ । ଭଲ ହେଉ ବା ମନ୍ଦ ହେଉ, ଶିକ୍ଷାର୍ଥୀର ଯୋଗ୍ୟତା ମାପିବାର ତାହାହିଁ ଏକମାତ୍ର ଯନ୍ତ୍ର । ସବୁ ଯୁଗରେ, ସବୁ ଦେଶରେ ଶିକ୍ଷା-କୁଶଳତାର

ମାତ୍ରା ଜାଣିବା ପାଇଁ କୌଣସି ନା କୌଣସି ଧରଣର ପରୀକ୍ଷା ଥିଲା ଓ ଅଛି । ଦୁଃଖର ବିଷୟ, ଏ ସମ୍ପର୍କରେ ଆମ ଅନେକଙ୍କ ମଧ୍ୟରେ ବଡ ଅସଙ୍ଗଲଗ୍ନ ଧାରଣା ଦେଖା ହେଉଛି । ଆମର ଶିକ୍ଷା-କେନ୍ଦ୍ରଗୁଡ଼ିକ ଯେପରି ଭବରେ ବର୍ତ୍ତମାନ ଧର୍ମଘଟ-ଦ୍ୱାରା ବ୍ୟତିବ୍ୟସ୍ତ ହେଉଛି, ଏସବୁ ଧାରଣାହିଁ ଅନେକ ପରିମାଣରେ ସେଥିପାଇଁ ଦାୟୀ । ବ୍ୟବସାୟ କ୍ଷେତ୍ରରେ ଧର୍ମଘଟର ପ୍ରୟୋଜନ ଓ ଉପକାର ଥାଇପାରେ, ପବିତ୍ର ଶିକ୍ଷା-ମନ୍ଦିର ଉପରେ ସଂକ୍ରାମକ ରୋଗ ପରି ତାର ଆକ୍ରମଣ କଦାପି କ୍ଷମଣୀୟ ନୁହେ । ଆମେ ଏଠାରେ ଦୋଷ ବାଣ୍ଟୁ ନାହୁଁ । ଧର୍ମଘଟ ପାଇଁ ସମ୍ପୃକ୍ତ ସମସ୍ତେ— ଛାତ୍ର. ଶିକ୍ଷକ, ଶିକ୍ଷା-ପ୍ରଣାଳୀ. କର୍ତ୍ତୃପକ୍ଷ, ସମାଜ, ଦେଶ ଦାୟୀ । କେବଳ ପରୀକ୍ଷା ଲୋଡ଼ା ନାହିଁ ବୋଲି ଯେଉଁମାନେ ଚିତ୍କାର କରୁଛନ୍ତି, ସେମାନଙ୍କର ମନେ ରଖିବା ଉଚିତ, ତେବେ ଜ୍ଞାନର ଉତ୍କର୍ଷ ଅପକର୍ଷ କିପରି ଧରାହେବ ? କିଛି ନୀତି-ନିୟମ ଲୋଡ଼ା ନାହିଁ ବୋଲି ଯେଉଁମାନେ ମୁକ୍ତି-ପ୍ରହେଳିକାର ସ୍ୱପ୍ନ ଦେଖୁଅଛନ୍ତି, ସେମାନଙ୍କର ବିଚାରିବା ଉଚିତ, ସଞ୍ଜମ ଶୃଙ୍ଖଳା ନ ଥିଲେ ସ୍ୱେଚ୍ଛାଚାରିତା ଜୀବନକୁ ପଙ୍ଗୁ କରିଦେବ ନାହିଁ କି ? କେବଳ ଶିକ୍ଷା-ସୀମାରେ କାହିଁକି, ଆମର ଜାତୀୟ ଜୀବନରେ ବିଶୃଙ୍ଖଳା ଅସଙ୍ଗତ, ଅପରିପକ୍ୱ ଚିନ୍ତା ଓ କ୍ରିୟାର ବିଷମୟ ଫଳ ତ ଆଜି ଦାଣ୍ଡରେ ପଡ଼ି ହାଟରେ ଗଡ଼ୁଛି ।

ପାଠ୍ୟପୁସ୍ତକ ନିର୍ବାଚନ-ପ୍ରକାଶରେ ଏବେ କେତେକ ଅଭାବ ଦେଖା-ହେଉଛି; ବ୍ୟକ୍ତିଗତ ଈର୍ଷା, ଲାଭ-ଆଶା, ପକ୍ଷପାତ ବିଚାର ତହିଁରେ ନ ଥାଇ ନାହିଁ । ବୋଧହୁଏ ମନୁଷ୍ୟ-ପ୍ରକୃତି ଥିବାଯାକେ ଏସବୁ ସମ୍ପୂର୍ଣ୍ଣ ଦୂର କରାହୋଇପାରିବ ନାହିଁ, ତଥାପି ସାଧ୍ୟାନୁସାରେ ଆଦର୍ଶ ସର୍ବଥା ଅନୁସରଣୀୟ । ଦେଶୀୟ ସରକାର ଶିକ୍ଷା-ବିଭାଗ ଓ ବାହାରର ପ୍ରକୃତ ଶିକ୍ଷାବିତ୍‌ମାନଙ୍କର ସାହଚର୍ଯ୍ୟ ଓ ପରାମର୍ଶରେ ଏସବୁ ପୁସ୍ତକ ପ୍ରକାଶ କରିପାରନ୍ତି । ସମୁଦାୟ ପ୍ରଦେଶରେ ନ ହୋଇପାରିଲେ ମଧ୍ୟ ଅନ୍ତତଃ ଜିଲ୍ଲାର ସବୁ ହାଇସ୍କୁଲରେ ସେହି ସେହି ପାଠ୍ୟ ପୁସ୍ତକ ରଖାହେଲେ ପିଲାଙ୍କର ସ୍କୁଲରୁ ସ୍କୁଲକୁ ପରିବର୍ତ୍ତନ ଓ ଶିକ୍ଷାର ଆଦାନ ପ୍ରଦାନର ସୁବିଧା ହେବ । ଅବଶ୍ୟ ଏସବୁ କାର୍ଯ୍ୟରେ ବର୍ତ୍ତମାନ ଅଭ୍ୟସ୍ତ ସରକାରୀ-ପଦ-ପରିଚୟର ତୀବ୍ରତା (Bureaucratic officialdom) ପ୍ରକୃତ ହିତକର ଜନମତଦ୍ୱାରା ସଂଶୋଧିତ ହେବାହିଁ ପ୍ରଥମ ଆଶା ।

ସୁଖର କଥା, ସେକେଣ୍ଡରି ଶିକ୍ଷାରେ ବର୍ତ୍ତମାନ ନିର୍ଦ୍ଧାରିତ ପାଠ୍ୟ-ଇତର ଅନ୍ୟାନ୍ୟ କୃତିତ୍ୱ ସମ୍ପାଦନ (Extra-curricular Activities) ର ଉପକାର ଓ ପ୍ରୟୋଜନ ଉପରେ ସମସ୍ତଙ୍କର ଦୃଷ୍ଟି ପଡ଼ିଅଛି । ଛାତ୍ରର କର୍ତ୍ତବ୍ୟ କେବଳ ସ୍କୁଲ-ହତା ଭିତରେ ଶେଷ ହୁଏ ନାହିଁ; ତାକୁ ବୃହତ୍ତର, ବିଶାଳତର ନିଷ୍ଠୁର ଜଗତର

ସମ୍ମୁଖୀନ ହେବା ପାଇଁ ତିଆରି ହେବାକୁ ହେବ । ଏଥିପାଇଁ ତାର ଶରୀର, ମନ, ମେଧା, ଆତ୍ମା ସବୁର ସମ୍ୟକ୍ ବିକାଶ ଲୋଡ଼ା, ସାମୂହିକ ଉନ୍ନତିହିଁ ଲକ୍ଷ୍ୟ; ଅଂଶ-ବିଶେଷ ଉପରେ ଜୋର ଦେଇ ସମୁଦାୟ ପ୍ରତି ଅବହେଳା ଦେଖାଇଲେ ଅକଲ୍ୟାଣ ଘଟିବ । ଆଦର୍ଶ ଶିକ୍ଷାର୍ଥୀ ରଚନାରେ ସକଳ ପ୍ରକାର କୃତିତ୍ୱ ଓ ଚାତୁର୍ଯ୍ୟ, ସାମର୍ଥ୍ୟ ଓ ସହନଶୀଳତା, ଜ୍ଞାନ ଓ ନୀତି, ସାମାଜିକତା ଓ ରସ-ଆସ୍ୱାଦନ, ଧର୍ମ ଓ ଦର୍ଶନ ସମ୍ୟକ୍ ଭାବରେ ମିଳିତ ହୁଏ । ଏ ଦିଗରେ ବାଳଚର, ରେଡ଼୍‌କ୍ରସ୍, ଖେଳ, ବିଦେଶ ଭ୍ରମଣ (Excursions) ପ୍ରକୃତି-ଶିକ୍ଷା (Nature Study) ଇତ୍ୟାଦି ବର୍ତ୍ତମାନ ପ୍ରଚଳିତ କେତୋଟି ଅନୁଷ୍ଠାନର ଭଲ ଫଳ ଦେଖା ହେଉଛି; କିନ୍ତୁ ଏଗୁଡିକର ଉନ୍ନତିର ଅବକାଶ ଆହୁରି ଯଥେଷ୍ଟ ଅଛି । ମନେ ରଖିବାକୁ ହେବ, ଏସବୁ କେବଳ କ୍ରୀଡ଼ନକ, ଗତାନୁଗତିକ, କର୍ତ୍ତୃପକ୍ଷଙ୍କୁ ସନ୍ତୁଷ୍ଟ କରିବାର ଉପାୟ, ବାହ୍ୟ ଆଡ଼ମ୍ବର ଇତ୍ୟାଦି ଭାବରେ ଗ୍ରହଣ କଲେ ପ୍ରୟୋଜନ ନାହିଁ । ଏ ସବୁଥିର ମୁଖ୍ୟ ଉଦ୍ଦେଶ୍ୟ ପ୍ରକୃତ ଜୀବନ ପାଇଁ ପ୍ରସ୍ତୁତ ହେବା, ଏହା ଯେପରି ପାଶୋର ନ ଯାଏ । ପୁଣି ଦେଖାଯାଏ, ଏ ସବୁଥିରେ ଏବେ ବିଦେଶୀ ଢ଼ାଞ୍ଚା ଓ ଅନୁକରଣ ଅତ୍ୟଧିକ ରହିଯାଉଛି; ଏସବୁ ଯେପରି ଆମର ରୁଚି, ବେଷ୍ଟନୀ ଓ ଦିଗ୍‌ଦର୍ଶନର ଅନୁକୂଳ ହେବ, ସେଥିପ୍ରତି ଶ୍ରଦ୍ଧାବାନ ହେବା ଆବଶ୍ୟକ । ଉଦାହରଣ ସ୍ୱରୂପ ଆମ ସ୍କୁଲ-ମାନଙ୍କରେ ବର୍ତ୍ତମାନ ପ୍ରଚଳିତ ଶାରୀରିକ ବ୍ୟାୟାମପ୍ରଣାଳୀର ଲକ୍ଷ୍ୟ ହେଉଛି, କେତେକ ପ୍ରତିରୂପ ଦୈହିକ ଶକ୍ତିଶାଳୀ ବ୍ୟକ୍ତି (Typical Athletes) ଗଠନ କରିବା; ଆମର ମତ, ତାର ଲକ୍ଷ୍ୟ ସର୍ବସାଧାରଣଙ୍କ ଶରୀର ଓ ମନର ପୁଷ୍ଟିସାଧନ ହେବା ଉଚିତ । ଏ ଦିଗରେ ହଟ-ଯୋଗର ପ୍ରଚଳନ ସୁଫଳ ଦେଇପାରେ ।

ଶେଷରେ ସେକେଣ୍ଡରି ଶିକ୍ଷାରେ ଧର୍ମ ଓ ନୀତିଶିକ୍ଷା ଠିକ୍‌ଭାବରେ ଦିଆହେବା ନିତାନ୍ତ ଆବଶ୍ୟକ । ଜୀବନ-ସଂଗ୍ରାମ ଆଜିକାଲି ତ ଭୀଷଣ । ଜଗତ କ୍ରୂର ପ୍ରତି-ଯୋଗିତାର ପୈଶାଚିକ-କ୍ଷେତ୍ର ହୋଇଛି ସତ୍ୟ, ତଥାପି କୌଣସି କାଳରେ ଶିକ୍ଷାର ପୂର୍ଣ୍ଣ ଉଦ୍ଦେଶ୍ୟ କେବଳ ଅନ୍ନ-ସନ୍ଧାନ (Bread & Butter theory) ହୋଇ-ପାରେ ନାହିଁ । ସାମୟିକ ଆକାଂକ୍ଷା, ପ୍ରେରଣା, ପ୍ରଲୋଭନ, ଉତ୍ତେଜନାପୀଠରେ ଜୀବନର ଚରମ ଅଖଣ୍ଡ ପରିଣତିକୁ ବଳି ଦିଆହୋଇପାରିବ ନାହିଁ । ନୈତିକ ହିତ, ଧର୍ମ-ଶୃଙ୍ଖଳା ବିନା କେବଳ ବିଲକ୍ଷଣ ବୁଦ୍ଧି ବିଚକ୍ଷଣତାରେ ସୁଫଳତାଠୁ କୁଫଳ ଅଧିକ, ଏହାର ଭୂରି ଭୂରି ପ୍ରମାଣ ଇତିହାସ-ପୃଷ୍ଠାରେ ଲିପିବଦ୍ଧ । ଇତିହାସ ଖୋଜିବାର ଆବଶ୍ୟକତା ନାହିଁ, ଆମ ଆଖି ଆଗରେ ଏବେ ମନୁଷ୍ୟ-ପ୍ରତିଭା ବିଜ୍ଞାନଦର୍ପରେ ଯେପରି ଧ୍ୱଂସ-ତାଣ୍ଡବରେ ମାତି ଉଠିଛି, ତାହା ଏହାର ସାକ୍ଷୀ । ଏହିଠାରେହିଁ ନୀତି-ଧର୍ମ-ଶିକ୍ଷାର ଅସୀମ ପ୍ରୟୋଜନୀୟତା; କିନ୍ତୁ ଏ ପ୍ରୟୋଜନୀୟତା

ସଙ୍ଗେ ଗୁରୁତର ଦାୟିତ୍ୱ ବିଦ୍ୟମାନ । ଜାତି ଯୁଗଧର୍ମର ଅସଂଖ୍ୟ ମତବାଦରୁ କୌଣସି ନା କୌଣସିଟିର କାଳ ଧରିଲେ, ଧର୍ମନାମରେ କୌଣସି ନା କୌଣସି ସାମ୍ପ୍ରଦାୟିକ ମତ ବା ସ୍ୱ-ମତ ପୋଷକ ଗର୍ବିତ ବିପର୍ଯ୍ୟୟ (Dogmatic perversion)କୁ ଛାକି ଧରିଲେ, ଧ୍ୱଂସ-ତାଣ୍ଡବ ଆହୁରି ଜ୍ୱାଳା କରଉ ମୃତ୍ୟୁଗ୍ର ହୋଇଯିବ । ଏ ଶିକ୍ଷାରେ ପୁଣି କଥା କାର୍ଯ୍ୟ ଫାଙ୍କର ବିଡମ୍ବନା ଯେତେଦୂର ସମ୍ଭବ ନ ରହେ । ଶିକ୍ଷକ ନିଜେ ସତ୍ୟ-ଶିବ-ସୁନ୍ଦରରେ ମୂର୍ତ୍ତିମନ୍ତ ହୁଅନ୍ତୁ; ଦେଖିବେ, ତଦ୍ୱାରା ଛାତ୍ରର ଜୀବନ ସ୍ୱତଃ ସାଧନାର ଉଚ୍ଚତର ସୋପାନକୁ ଉଠିଛି । ସେତେବେଳେ ବାଗାଡମ୍ବର ରହିବ ନାହିଁ; ତାଙ୍କର ପ୍ରତ୍ୟେକ କ୍ରିୟାରେ ଶିକ୍ଷାର ଜୀବନ୍ତ ଆଦର୍ଶ ଫୁଟିବ । ପେଟ ପୋଷିବା ପାଇଁ ଶିକ୍ଷା ଏକ ଆଡ଼େ, ଜୀବନ ଅନ୍ୟ ଆଡ଼େ, ଏ ବୈଷମ୍ୟ ଶିକ୍ଷକର ସ୍ଥିତିକୁ କଦର୍ଯ୍ୟ ନ କରୁ । ବିଧାତା କରନ୍ତୁ, ଶିକ୍ଷକ ଶିକ୍ଷାର୍ଥୀ ଉଭୟଙ୍କର ବୈଷୟିକ, ଆଧ୍ୟାତ୍ମିକ ଉଭୟ ଅଭ୍ୟୁନ୍ନତି ପରିପୂର୍ଣ୍ଣ ଶିକ୍ଷାର ବିମଳ ଆଲୋକରେ ଉଦ୍ଭାସିତ ହେଉ, ମହତ୍ ଚେତନାରେ ଅନୁପ୍ରାଣିତ ହେଉ, ଶାନ୍ତି-ପ୍ରୀତି-ତୁଷ୍ଟି ମାର୍ଗରେ ସଂସାଧିତ ହେଉ ।



# କାବ୍ୟ ଓ ନୀତି

କାବ୍ୟ—ଆଲୋଚନା ହବା କାଳରୁ କାବ୍ୟ ଓ ନୀତିର ସମ୍ବନ୍ଧ ସମ୍ପର୍କରେ ବହୁତ ବାଦାନୁବାଦ ହୋଇ ଆସୁଛି । ଗ୍ରୀକମାନଙ୍କର ପୂର୍ଣ୍ଣ ନାଗରିକତା ଆଦର୍ଶ ଥିଲା; ଏଣୁ କେବଳ କାବ୍ୟ ନୁହେଁ, ସବୁ କଳାକୁ ସମାଜ-ସେବାରେ ସେମାନେ ବିନିଯୋଗ କରୁଥିଲେ । ଷ୍ଟାବୋଙ୍କ ଭାଷାରେ କାବ୍ୟ ପ୍ରାଥମିକ ଦର୍ଶନ, ଦାର୍ଶନିକ ଶିକ୍ଷାର ପାଠଶାଳା; କବି ନୀତି-ଶିକ୍ଷକ, ରାଜନୀତିକ ପରାମର୍ଶଦାତା । ଏହି ନୀତିରେ ସୋଲନ୍, କବି ଥେସ୍‌ପିସ୍‌ଙ୍କୁ ମିଥ୍ୟା ରଚନା ଅପରାଧରେ ଅପରାଧୀ କରିଥିଲେ । ପ୍ଲେଟୋଙ୍କ ମତରେ କାବ୍ୟ ଅନୁକରଣର ଅନୁକରଣ; ବିଖ୍ୟାତ କବି ହୋମର୍‌ଙ୍କୁ ଲକ୍ଷ୍ୟ କରି ସେ ସ୍ପଷ୍ଟ ପଚାରିଲେ, "ବନ୍ଧୁ, ତୁମ ମହାକାବ୍ୟ ଦ୍ୱାରା ମାନବସମାଜର କି କଲ୍ୟାଣ ସାଧନ କରିଛ ? ତଦ୍ୱାରା କି କୌଣସି ଯୁଦ୍ଧ ଚଳାଯାଇଛି ? କୌଣସି ଆଇନକାନୁନ୍ ଗଢ଼ାଯାଇଛି ? କୌଣସି ଆବିଷ୍କାର ଘଟିତ ହୋଇଛି ? ପାଇଥାଗୋରିଏନ ଜୀବନ-ପନ୍ଥା ଭଳି ହୋମରିକ୍ ପନ୍ଥା କ'ଣ ଅଛି ?" ପୁଣି ସେ କହନ୍ତି, କାବ୍ୟଜ୍ଞାନ, ଇଚ୍ଛା, କ୍ରିୟା ସବୁ ଶକ୍ତିକୁ ଦୁର୍ବଳ କରିଦିଏ । ସେଥିପାଇଁ ନିଜ 'ରିପବ୍ଲିକ୍'ରେ ପ୍ଲେଟୋ କେତୋଟି ଦେବସ୍ତୋତ୍ର ଓ ବୀରସ୍ତୁତି ଛଡ଼ା ଅନ୍ୟ କୌଣସି କବିତାକୁ ସେ ସ୍ଥାନ ଦେଇ ନ ଥିଲେ । ଏରିଷ୍ଟଟଲ୍ କିନ୍ତୁ ନିଜ ଗୁରୁଙ୍କର ଏ ମତ ସମର୍ଥନ କରି ନ ଥିଲେ । ତାଙ୍କ ମତରେ କାବ୍ୟ ଅନୁକରଣ ନୁହେଁ; ଇତିହାସ ଠାରୁ ତାହା ଆହୁରି ଦର୍ଶନ-ସିଦ୍ଧ । ଇଚ୍ଛା ଓ କ୍ରିୟା ଶକ୍ତିକୁ ତାହା ଦୁର୍ବଳ କରିପକାଏ ନାହିଁ; ତାର ଆତିଶଯ୍ୟ ଦୂର କରି ସୁଗମ କରାଏ । ଏପରି ଭାବରେ ସେ ସମାଧାନ ପଥରେ ଚାଲିଥିଲେ ବାସ୍ତବିକ୍ ଗ୍ରୀକ ଚିନ୍ତାରେ ଶିବ ଓ ସୁନ୍ଦର ଏକ ବସ୍ତୁ ଥିଲା; କାବ୍ୟ ଓ ନୀତି ଅବିଚ୍ଛେଦ୍ୟ ଥିଲା । ତହିଁରେ ନୈତିକ ଜୀବନ ଓ ରୁଚିକର କାବ୍ୟ, ନିର୍ମଳମତି ଓ କବି-କଳ୍ପନା ଘଟିତ । ପରସ୍ପର ଛନ୍ଦୋବଦ୍ଧ ଗୋଟିଏ ବସ୍ତୁର ଦୁଇଟି ପାଖ । ଯାହା ଉତ୍ତମ ନାଗରିକ ଗଠନ କରିପାରେ, ତାହା ହିଁ ଉତ୍ତମ କାବ୍ୟ । ଯୁଦ୍ଧ, ଜୀବିକା, ଜୀବନ, ମରଣ ସବୁ ବିଷୟରେ କବି ଶିକ୍ଷା ଦେବାପାଇଁ କ୍ଷମ ।

ମଧ୍ୟଯୁଗ ପର୍ଯ୍ୟନ୍ତ ଏଇ ଗ୍ରୀକ୍‌ଭାବ ପ୍ରଭାବ ବିସ୍ତାର କରିଥିଲା । ବିଖ୍ୟାତ ଇଟାଲୀୟ କବି ଦାନ୍ତେଙ୍କ ଦୃଷ୍ଟିରେ କାବ୍ୟର ବିଚାର୍ଯ୍ୟ ବିଷୟ ପ୍ରଧାନତଃ

ତିନୋଟି—ଯୁଦ୍ଧ, ପ୍ରେମ ଓ ନୀତି—ତଦ୍ୱାରା ଜୀବନ ଯଥାକ୍ରମେ ରକ୍ଷିତ, ସ୍ଥାୟୀ ଓ ଶୃଙ୍ଖଳାବଦ୍ଧ ହୁଏ । ପ୍ରଭେଦ ଏତିକି, ଗ୍ରୀକ୍ ଯୁଗରେ ବିବାଦବେଳେ ନୀତିଜ୍ଞ କବି ଉପରେ ଅଧିକାର ଚଳାଉଥିଲେ; ମଧ୍ୟଯୁଗରେ କବି ଅର୍ଦ୍ଧନିର୍ବାସିତ ହେଲେ ମଧ୍ୟ ନୀତିଜ୍ଞ ଉପରେ ପ୍ରଭାବ ଦେଖାଇବାକୁ ହଟୁ ନଥିଲେ ।

ହୋରେସ୍‌ଙ୍କ ମତରେ କାବ୍ୟର ପ୍ରଧାନ ଲକ୍ଷଣ ଆନନ୍ଦ । ଲଙ୍ଗିନସ୍ ହିଁ ପ୍ରଥମେ କହିଥିଲେ ଉତ୍ତେଜନା, ଉନ୍ମାଦନା ଦେବା କାବ୍ୟର ମୁଖ୍ୟ କାର୍ଯ୍ୟ । ଏପରି ଭାବରେ ପୂର୍ବକାଳରୁ କାବ୍ୟ ସମ୍ବନ୍ଧେ ସବୁ ଆଲୋଚନା ମୋଟ ଉପରେ ନୈତିକ ଶିକ୍ଷା, ଆହ୍ଲାଦଗୁଣ, ପ୍ରେରଣାଶକ୍ତି, ଏହି ତିନୋଟି ବିଭାଗରେ ବିଭକ୍ତ ହୋଇଛି । ରୁଚିର ବୈଚିତ୍ର୍ୟରେ, ମାତ୍ରାର ଅନୁପାତରେ, ପ୍ରତି ସମସ୍ୟାର ଦୁଇଟି ପାଖ-ଖୁଚିରେ ଏ ଭାବଗୁଡ଼ିକର ପରସ୍ପର ସଂଘର୍ଷ ଅନବରତ ଦେଖାଯାଇଛି । ଗୋସନ୍‌ଙ୍କ ପ୍ରତିପକ୍ଷରେ ସିଡ଼୍‌ନି, ଜନ୍‌ସନ୍‌ଙ୍କ ପ୍ରତିପକ୍ଷରେ ବ୍ଲେକ୍, ପିକ୍‌କ୍‌ଙ୍କ ପ୍ରତିପକ୍ଷରେ ସେଲି ରସ୍କିନ୍‌ଙ୍କ ପ୍ରତିପକ୍ଷରେ ମରିସ୍, ମେଥ୍ୟୁ ଆର୍‌ନଲ୍‌ଡଙ୍କ ପ୍ରତିପକ୍ଷରେ ସ୍ୱିନବର୍ଣ୍ଣ,—ଏପରି ପକ୍ଷ-ପ୍ରତିପକ୍ଷର ଦୃଷ୍ଟାନ୍ତ ସବୁବେଳେ ଦେଖାଯାଏ । ଲୋକଙ୍କୁ ଶିକ୍ଷା ଦ୍ୱାରା ଉନ୍ନତ ନ କଲେ କାବ୍ୟ ବା କୌଣସି କଳାର କିଛି ମୂଲ୍ୟ ନାହିଁ । ରସ୍କିନ ଓ ଟଲଷ୍ଟୟ ଏ ଦାବୀ କଲାବେଳେ, କବି ଶୂନ୍ୟ ଦିବସର ଆଳସ୍ୟ ପରାୟଣ ଗାୟକ (An idle singer of an Empty Day) ଏକଥା କହିବାକୁ ମରିସ୍ ଗୁଡ଼ିନାହାନ୍ତି; ସବୁ କଳା ପ୍ରୟୋଜନ-ହୀନ, ସବୁ କଳା ଅନୈତିକ (All art is useless, All art is Immoral), ଏ କଥା କହିବାକୁ ଓସ୍କାର୍ ଓ୍ୱାଇଲ୍‌ଡ୍ ଅଗ୍ରସର ହୋଇଛନ୍ତି ।

ନବଯୁଗରେ ବିଜ୍ଞାନ ବିଭିନ୍ନ ଧର୍ମମତଗୁଡ଼ିକୁ ବିଶ୍ଳେଷଣ କରିବା ଫଳରେ ଏ ବାଦାନୁବାଦର ଏବେ ପୁଣି ଧର୍ମର ଦ୍ୱାହି ପଶିଛି । କାବ୍ୟ ତରୁଣଙ୍କୁ ପଥଭ୍ରଷ୍ଟ କରେ ବୋଲି ପ୍ଲେଟୋ କହିବାର ଅନେକ କାଳ ପରେ ତାଙ୍କର ପଟ୍ଟଶିଷ୍ୟ ମେଥ୍ୟୁ ଅର୍‌ନାଲ୍‌ଡ କାବ୍ୟ ଉପରେ କଠୋର ନୀତିର ଦାବୀ ଉପସ୍ଥାପିତ କରି ଗୁରୁଙ୍କ ଠିକ୍ ବିପରୀତ ମତରେ ପହଞ୍ଚିଛନ୍ତି । ବର୍ତ୍ତମାନ ଧର୍ମ ଓ ଦର୍ଶନର ଅନେକ ଅଂଶ କାବ୍ୟ ଦଖଲ କରିଛି । ଜର୍ଜ ଶାନ୍ତାୟନଙ୍କ ମତରେ ଧର୍ମ ଓ କାବ୍ୟ ସାରାଂଶରେ ଅଭିନ୍ନ; କାର୍ଯ୍ୟକାରିତା ପ୍ରକରଣରେ ଯାହା କିଛି ତହିଁରେ ଭିନ୍ନତା ଦେଖାଯାଏ । ଏ ଦୃଷ୍ଟିରେ ମୁରେ; ସେକ୍‌ସପିଅର୍‌ଙ୍କୁ ଯୀଶୁଖ୍ରୀଷ୍ଟଙ୍କ ସମାନ ଆସନ ଦେଇଛନ୍ତି । ଏହାର ପ୍ରତିପକ୍ଷରେ ଇଲିଏଟ୍ ସ୍ପଟ କହିଛନ୍ତି, ଏହା କାବ୍ୟ ନୁହେଁ—ଏପରି କୌଣସି କଥା ନାହିଁ, ଯାହା ପ୍ରକୃତରେ ଜଗତରେ ଧର୍ମର ସ୍ଥାନ ଅଧିକାର କରିପାରିବ ।

ଏ ସବୁ ବିଭିନ୍ନ ମତବାଦର କୋଳାହଳରେ ସରଳ ଅନୁସନ୍ଧିତ୍ସୁ ପ୍ରକୃତ ସତ୍ୟ ଅବଧାରଣ ନ କରିପାରିବାର ଆଶଙ୍କା ଅଛି । ବହୁମୁଖୀ ଜୀବନରେ ପ୍ରତ୍ୟେକ କଥାରେ ସତ୍ୟର ମାତ୍ରା ଅଛି । ଅନୁପାତ ଧରିପାରିଲେ ହେଲା ।

ଯେତେବେଳେ କାଳକୁ ଜୀବନ-ସମ୍ପର୍କରୁ ଅଲଗା କରିବାକୁ ଚେଷ୍ଟା କରେ, ସେତେବେଳେ କେବଳ କଳାବାଦୀ (Aesthete) ଭୁଲ କରେ । ଅନ୍ୟ ପକ୍ଷରେ ଯେତେବେଳେ କବିଠାରେ ଗୋଟାଏ ନିର୍ଦ୍ଦିଷ୍ଟ ନୈତିକ ଦର୍ଶନର-ଦାବୀ କରେ, ସେତେବେଳେ କେବଳ ନୀତିବାଦୀ (Moralist) ଭୁଲ କରେ । କଳାର ରାଜ୍ୟ ସ୍ୱତନ୍ତ୍ର; କଳା କୌଣସି ନିର୍ଦ୍ଦିଷ୍ଟ ଅଭିପ୍ରାୟ ଧରି ଆରମ୍ଭ ହୁଏ ନାହିଁ, ଅନ୍ୟାୟ ଦୂର କରି ନ୍ୟାୟ-ସଂସାର ପ୍ରତିଷ୍ଠା କରିବାକୁ କଳା ଅଗ୍ରସର ହୁଏ ନାହିଁ । କଳାବିତ୍ ଜୀବନକୁ ପୂର୍ଣ୍ଣ, ନିଖୁଣ ଭାବରେ ଦେଖିବାକୁ ଚେଷ୍ଟାକରେ ଓ ସେହି ଦୃଷ୍ଟି (Vision)କୁ ପ୍ରକାଶ କରେ । ସାଧାରଣ ଦୃଷ୍ଟିଠାରୁ ତାର ସେହି ଦୃଷ୍ଟିରେ ଭିନ୍ନତା, ବିରାଟତା ଓ ଗମ୍ଭୀରତା ଅଛି । ପେଟର୍‌ଙ୍କ ଭାଷାରେ, ସେ ପଦାର୍ଥର ମୂଳକୁ ଯାଏ; ଘଟଣାରୁ ଘଟଣାର ଭାବରେ (Sense of Things) ତନ୍ମୟ ହୁଏ । କଳା ଏପରି ଜୀବନର ପୂର୍ଣ୍ଣ ଅଭିଜ୍ଞତା, ଘଟଣା-ଭାବରେ ପ୍ରକାଶ; କଳାର ଏହାହିଁ ମୌଳିକ ସ୍ଥିତି । କଳାବିତ୍ ଜୀବନକୁ, ଜଗତକୁ ଅନାସକ୍ତ, ବ୍ୟାପକ ଭାବରେ ଦେଖେ, କୌଣସି ପୂର୍ବପୋଷିତ ଶ୍ରଦ୍ଧା ବା ଘୃଣାରେ ସେ ଭାବିତ ବା କାତର ହୋଇ ନଥାଏ । କୌଣସି ବିଶିଷ୍ଟନୀତି ବା ଧର୍ମବାଦ ତାକୁ ଆବଦ୍ଧ କରି ନଥାଏ । ତାର ଅଭିଜ୍ଞତାରେ ବ୍ୟକ୍ତିତ୍ୱର କୌଣସି ଗୋଟାଏ ଅଂଶ ପ୍ରକାଶ ପାଏ ନାହିଁ । ସମୁଦାୟ ବ୍ୟକ୍ତିତ୍ୱର ବଳିଷ୍ଠ ପରାକାଷ୍ଠାରେ ତାର ଅନୁଭୂତି ଅଖଣ୍ଡ ହୋଇଥାଏ । ଏଣୁ କଳା ବ୍ୟକ୍ତିଗତ ନୁହେଁ (Impersonal) ବୋଲି ମଧ୍ୟ କୁହାଯାଏ । ସମାଲୋଚକ ରିଚେର୍ଡ୍‌ସ୍‌ଙ୍କ ଭାଷାରେ ଆମେ ଅବ୍ୟକ୍ତିଗତ ବୋଲି ଯାକୁ କହୁ, ତାର ଅର୍ଥ ବ୍ୟକ୍ତିତ୍ୱର ଉପର୍ଯ୍ୟୁପରି ପୂର୍ଣ୍ଣତମ ବିକାଶ । ଏପରି ହେଲେ ହିଁ କଳା ଅକୃତ୍ରିମ ହୁଏ ।

କଳାବିତ୍‌ର ପ୍ରକାଶିତ ଅନୁଭୂତିକୁ ଦୁଇଟି ଦିଗରୁ ଆଲୋଚନା କରାଯାଇ ପାରେ—ସେ ଅନୁଭୂତି ମୂଲ୍ୟବାନ କି ନା, କଳା ରୁଚିର ସଙ୍ଗତ କି ନା ? ଦୁଇଟିର ମଣି-କାଞ୍ଚନ ସଂଯୋଗରେ, ମୂଲ୍ୟବାନ୍ ଅନୁଭୂତିର କଳା-ରୁଚିସଙ୍ଗତ ପ୍ରକାଶରେ ପ୍ରକୃତ କଳାର ସୃଷ୍ଟି ହୁଏ । ଗୋଟିକ ବିନା ଅନ୍ୟଟିର ଅଙ୍ଗହାନି ହୁଏ । ଅନୁଭୂତି ମହତ୍ ହେଲେ ମଧ୍ୟ କଳା-ରୁଚିର ପ୍ରକାଶ ନଥିଲେ ତାହା ସାଧାରଣରେ ବାକ୍‌ଆଡମ୍ବର ଓ ସଙ୍କୀର୍ଣ୍ଣ ନୀତିରେ ପର୍ଯ୍ୟବସିତ ହୁଏ । ଅନ୍ୟ ଦିଗରେ କଳାନୁମୋଦିତ ହେଲେ ମଧ୍ୟ ଅନୁଭୂତିରେ ମହତ୍ତ୍ୱ ନଥିଲେ ତାହା ଅନେକ ସମୟରେ ଅର୍ଥହୀନ ମଧୁର-ଧ୍ୱନି-ସମଷ୍ଟି (Jingle)ରେ ହିଁ ପରିଣତ ହୁଏ । ଯେପରି ସ୍ୱିନ୍‌ବର୍ଣ୍ଣଙ୍କ

କବିତା ସ୍ଥାନେ ସ୍ଥାନେ ହୋଇଛି । ଅର୍ନଲଡ୍ଙ୍କ ମତରେ କବିତାରେ ଭାବ ହିଁ ସବୁ । ଠିକ୍ ଏହାର ବିପରୀତରେ ମେଲର୍ମ୍ କହନ୍ତି, କବିତା ଭାବ ଦ୍ୱାରା ଲେଖାଯାଏ ନାହିଁ, ପଦଦ୍ୱାରା ଲେଖାଯାଏ । ଉଭୟ ଦୃଷ୍ଟିରେ ସତ୍ୟର ମାତ୍ରା ରହିଛି । କାବ୍ୟରେ, ସବୁ କଳାରେ, ପଦ ଓ ଭାବ, ଆକାର ଓ ବିଷୟ, ଭଙ୍ଗୀ ଓ ବସ୍ତୁ, ପ୍ରକାଶ ଓ ଅନୁଭୂତି ଅବିଭାଜ୍ୟ ଭାବରେ ଜଡିତ ରହିଥାଏ । ସତ୍ୟ ହିଁ ସୌନ୍ଦର୍ଯ୍ୟ, ସୌନ୍ଦର୍ଯ୍ୟ ହିଁ ସତ୍ୟ । ସତ୍ୟ ଉଚ୍ଚତମ ସତ୍ୟ ହେଲେ ମଧ୍ୟ, ସୌନ୍ଦର୍ଯ୍ୟ ଉତ୍କୃଷ୍ଟ ସୌନ୍ଦର୍ଯ୍ୟ ହେଲେ ମଧ୍ୟ, ଏକେ ଏକେ ଏକାକୀ କଳା ସୃଷ୍ଟି କରି ପାରନ୍ତି ନାହିଁ । ଯଦି ଏ ଦୁଇଟିରୁ ବାଛିବାକୁ ହୁଏ, ତେବେ ସୌନ୍ଦର୍ଯ୍ୟ ଉପରେ ହିଁ ପ୍ରାଧାନ୍ୟ ଦିଆଯାଇ ପାରେ । ସୌନ୍ଦର୍ଯ୍ୟର ସନ୍ଧାନରେ କଳାବିତ ପ୍ରାୟ ସତ୍ୟରେ ଉପନୀତ ହୋଇଥାଏ । କିନ୍ତୁ ସତ୍ୟର ସନ୍ଧାନରେ ସେ ଅନେକ ସମୟରେ ସୌନ୍ଦର୍ଯ୍ୟକୁ ଖୋଜି ପାଏ ନାହିଁ । କବିତା ଜୀବନ-ସମାଲୋଚନା ହେବା ପୂର୍ବରୁ, ତାକୁ କବିତା ହେବାକୁ ହେବ; ମୂଲ୍ୟବାନ ହେବା ପୂର୍ବରୁ କଳା-ସୌଷ୍ଠବ-ରସାଣିତ ଓ ଭାବ ଗମ୍ଭୀର ହେବା ପୂର୍ବରୁ ପଦ ଲଳିତ, ପୁଣି ଶିକ୍ଷଣୀୟ ହେବା ପୂର୍ବରୁ ମନୋରଞ୍ଜକ ହେବାକୁ ହେବ । ଇଂରେଜ-ସାହିତ୍ୟ-ସମ୍ରାଟ ସେକ୍‌ସପିଅରଙ୍କୁ ଗଦ୍ୟପ୍ରାଣ ଜନ୍‌ସନ୍ ନିନ୍ଦା କରି କହିଥିଲେ, ସେକ୍‌ସପିଅରଙ୍କ ମୁଖ୍ୟ ପ୍ରଯତ୍ନ ଶିକ୍ଷା ଦେବାରେ ନୁହେଁ, ମନକୁ ଆକର୍ଷଣ କରିବାରେ ଏହା ପର୍ଯ୍ୟବସିତ, ନୀତି-ଦର୍ଶନ-ବିହ୍ୱଳ ଏମେର୍‌ସନ୍ କହିଥିଲେ, ସେକ୍‌ସପିଅର ଆମକୁ କେତେଗୁଡ଼ିଏ ଚିତ୍ର ଦେଇଛନ୍ତି, କିନ୍ତୁ ନୀତି ନିୟମ ଦେଇ ନାହାନ୍ତି । କିନ୍ତୁ 'ହମ୍‌ଲେଟ୍' କି ନୀତି ନିୟମ ଲାଗି ଚିର କାଳ ବିଶ୍ୱ-ସାହିତ୍ୟ କୋଷରେ ଅମୂଲ୍ୟ ରତ୍ନ ହୋଇ ରହିଛି ? ଉଷାର କନକ ଅରୁଣିମା, ଅସ୍ତାକାଶର ଲୋହିତ ଦ୍ୟୁତି, ପ୍ରାବୃଟର ବିଦ୍ୟୁଲ୍ଲସିତ ତିମିର ଘନ ଗତି, ଶରତ୍‌ର ବିମଳ ଚନ୍ଦ୍ରିକା, ହେମନ୍ତର ସ୍ୱର୍ଣ୍ଣ-କେଦାର ମଧୁକାଳର କମନୀୟ କାନ୍ତି, ଅନନ୍ତ ଆକାଶର ଦିଗନ୍ତ ନୀଳିମା, ସାଗରର ଊର୍ମିସଙ୍କୁଳ ନର୍ତ୍ତନଶୀଳ ବକ୍ଷ, ଶ୍ୟାମବ ନାନୀର ଛବିଳ ଦୃଶ୍ୟ, ହିମାଳୟର ତୁଷାର ଧବଳ ଶୃଙ୍ଗ, ନିର୍ଝରିଣୀର କଳନାଦ, ଶିଶୁର ସରଳ ହାସ, କାମିନୀର ଶୃଙ୍ଗାରସାଣିତ ମାଦକଭରା ଯୌବନ, ଧନୀର ବିଳାସ, ଦରିଦ୍ରର କ୍ଷୁଧା, ନିର୍ଯାତିତର ବେଦନା, ହିଂସୁକର ରୋଷବହ୍ନି, ବିରହର କରୁଣ ଗୀତି, ପ୍ରଣୟର ପ୍ରହେଳିକା, ପ୍ରପଞ୍ଚର ପ୍ରବହମାନତା—ଏ ସବୁଥିରେ ନୀତି-ନିୟମ ଆଗେ କିଏ ଖୋଜି ବସୁଛି ? ତଥାପି ଏ ସବୁ କାବ୍ୟ-ଜୀବନର ଚିରକାଳ ଆଶ୍ରୟ କାବ୍ୟରେ ଶିକ୍ଷା ନ ଥାଇ ନାହିଁ; କିନ୍ତୁ ତାହା ଆହ୍ଲାଦଗୁଣର ବଶୀଭୂତ । କାବ୍ୟର ଉଦ୍ଦେଶ୍ୟ ଶିକ୍ଷାପୂର୍ଣ୍ଣ ଆନନ୍ଦ ଦାନ । କାବ୍ୟ ଶିକ୍ଷାପୂର୍ଣ୍ଣ ହୋଇପାରେ, ସତ୍ୟ ହୋଇପାରେ । କିନ୍ତୁ ସୁନ୍ଦର, ସରସ, ଚିତ୍ତାକର୍ଷକ ନ ହେଲେ ତାହା ଠିକ୍ କାବ୍ୟ ନୁହେଁ; ଗଦ୍ୟମୟ ଦର୍ଶନ ହୋଇପାରେ । ଅନ୍ୟ ଦିଗରେ, କବିତାରେ ଶିକ୍ଷା ଆଦୌ ନ

ରହିଲେ ତାହା ଉଚ୍ଚଧରଣର କବିତା ହେବ ନାହିଁ । ତଥାଚ ତାହା କବିତା । କିନ୍ତୁ ମୁଗ୍ଧ କରୁ ନ ଥିବା, କେବଳ ଶିକ୍ଷା ଦେଉଥିବା କବିତା କବିତା ନୁହେଁ; କବିତାରେ ନୀତିର ସ୍ଥାନ ନ ଥାଇ ନାହିଁ; ଜୀବନର ସମାଲୋଚନା ନ ହୋଇଥିବା କବିତାଠାରୁ ସେପରି ହୋଇଥିବା କବିତାର ସ୍ଥାନ ନିଶ୍ଚୟ ଉଚ୍ଚରେ । ବର୍ଣ୍ଣିତ ବିଷୟର ଗୁରୁତା ଦୃଷ୍ଟିରେ କାବ୍ୟର ଗୁରୁତା ମଧ୍ୟ ବଢ଼େ । ଗୋଟିଏ ଗୋଲାପର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ଅପେକ୍ଷା ଜୀବନର ଆଦର୍ଶ ବିଷୟରେ ଉଚ୍ଚ ଦରର କବିତା ଲେଖାଯାଇପାରେ । କିନ୍ତୁ କେବଳ ବିଷୟ ନିର୍ବାଚନ କବିତାର ମୂଲ୍ୟ ନିର୍ଦ୍ଦେଶ କରିବାରେ ସମର୍ଥ ହୁଏ ନାହିଁ । ସାମାନ୍ୟ ବିଷୟ ବର୍ଣ୍ଣିତ କବିତା ମଧ୍ୟ ଉନ୍ନତ ବିଷୟକ କବିତା ଠାରୁ କାବ୍ୟଗୁଣରେ ଅଧିକ ହୋଇପାରେ; ତଥାପି ତାହା ଆଦର୍ଶ କବିତାର ସ୍ଥାନ ଅଧିକାର କରିପାରିବ ନାହିଁ । ଉତ୍କୃଷ୍ଟ କାବ୍ୟର ଉତ୍କୃଷ୍ଟ ଗୁଣ । ସାହସ, ଦୟା, ମୈତ୍ରୀ, ଉଦାରତା, ତ୍ୟାଗ—ଏପରି କେବଳ କେତୋଟି ସଦ୍‌ଗୁଣ ସନ୍ନିବେଶ ଯେପରି ଗୋଟିଏ ଲୋକର ମୁହଁକୁ ସୁନ୍ଦର କରି ନ ପାରେ, ସେପରି କାବ୍ୟକୁ ମଧ୍ୟ କରିପାରେ ନାହିଁ । ସକ୍ରେଟିସ୍ ଏ ସବୁ ଗୁଣରେ ଭୂଷିତ ଥିଲେ, ତଥାପି ତାଙ୍କର ଆକୃତିର ବିରୂପତା ଇତିହାସ ପ୍ରସିଦ୍ଧ । ପୁଣି ଏ ସବୁ ଗୁଣର ବିପରୀତ ଭୀରୁତା ନିଷ୍ଠୁରତା, ଦ୍ୱେଷ, ସ୍ୱାର୍ଥ, କୁଟିଳତା, ନୀଚତା ଯେପରି ଗୋଟିଏ ଲୋକର ରୂପବନ୍ତ ମୁଖକୁ ମଧ୍ୟ ଘୃଣ୍ୟ, ଗୀଭତ୍ସ କରେ, କବିତାକୁ ମଧ୍ୟ ସେଇପରି କରେ । ସଦ୍‌ଗୁଣ ଅଭାବରେ କେତେ ରୂପବନ୍ତ ହୋଇଥିଲେ ସୁଦ୍ଧା ଯେପରି ଲୋକର ମୁଖ ସୁନ୍ଦର ବିବେଚିତ ହୋଇ ନ ପାରେ, କବିତା ମଧ୍ୟ ସେଇପରି । ବାହ୍ୟରୂପ ଅନ୍ତର ଅଭାବକୁ କେଭେ ପୂର୍ଣ୍ଣ କରି ନ ପାରେ । ଜର୍ଜ ଶାନ୍ତାୟନ ସ୍ପଷ୍ଟ କହିଛନ୍ତି, ହୀନ ଆଦର୍ଶ ଆଗରେ ଥୋଇଲେ, କାବ୍ୟ ନିଶ୍ଚୟ ହୀନ ହେବ । ଆମୋଦ ଦେବା କବିତାର ସ୍ୱଭାବ; ଶିକ୍ଷା ଦେବା ତାର କାର୍ଯ୍ୟ । ଏଠାରେ ହିଁ ନୀତିବାଦର ଜୟ । କିନ୍ତୁ କୁହାଯାଇଚି କବିତା ଏ କାର୍ଯ୍ୟ କରିବାକୁ ଯାଏ ନାହିଁ । କବିତାର ନିର୍ଦ୍ଦିଷ୍ଟ କାର୍ଯ୍ୟ ଲକ୍ଷ୍ୟ ନାହିଁ, ତାହା କେବଳ ଇଂଗିତ ବା ବ୍ୟଞ୍ଜନା ଦିଏ, ସୂଚାଏ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପ୍ରତି ସାବଧାନ ହେବା ନୀତିର କାର୍ଯ୍ୟ । ନୀତିଜ୍ଞ ଶିକ୍ଷା ଦିଏ; କବି ଦେଖାଇଯାଏ । ନୀତି-ବିଶାରଦ କହେ, 'ଜୀବନ ଏହି ଏହି ମାର୍ଗରେ ଚଳାଇବାକୁ ହେବ', କବି କହେ, 'ଜୀବନ ଏହିପରି, ଦେଖେ' । ଜଣେ ଉଦ୍‌ବୋଧନା ଦିଏ, ଅନ୍ୟ ଜଣକ ନଗ୍ନଚିତ୍ର ଉନ୍ମୋଚନ କରେ ।

ଜଣେ, ମନୁଷ୍ୟର କର୍ମଧାରକୁ ସଂଯତ କରିବାର ପ୍ରୟାସ କରେ; ଅନ୍ୟ ଜଣକ ଦୃଷ୍ଟିଶକ୍ତି ଜାଗ୍ରତ, ଗଭୀର କରିବା ପାଇଁ ସ୍ୱତଃ ଗାଇଯାଏ । କଳା ଆଶ୍ରୟର ନିନ୍ଦା କରେ ନାହିଁ; ତାକୁ ତୂଳୀରେ, ଶିଳା ଦେହରେ, ଗୀତ-ସ୍ୱରରେ ଫୁଟାଏ । କଳା ସଂସାର ପାଇ ଚିତ୍କାର କରେ ନାହିଁ, ସଂସାରକ ଜୀବନୀ-ଅଧ୍ୟାୟ ଫିଟାଏ । କଳା

ବ୍ୟଥା ଦୂର କରେ, ସୁସ୍ଥତା ଆଣେ; କିନ୍ତୁ ତହିଁରେ ତିକ୍ତ ଔଷଧ, ଚିକିତ୍ସକର ପଥ୍ୟାପଥ୍ୟ ନିର୍ଦ୍ଦେଶ ନଥାଏ, ତାହା ପ୍ରକୃତି ପୂରକ ସୁସ୍ଥତା ଭଳି ନୈସର୍ଗିକ, ସହଜ । କଳା ସାନ୍ତ୍ୱନା ଦିଏ, କିନ୍ତୁ ସେ ସାନ୍ତ୍ୱନାରେ ପୌରୋହିତ୍ୟ ନ ଥାଏ, ଜୀବନ ପରି ତାହା ଜୀବନ୍ତ । ଜୀବନକୁ ସାଧାନାର କଠୋର ପଥରେ ପଥିକ କରିବା, ବିଧି ନିଷେଧରେ ଶୃଙ୍ଖଳାବଦ୍ଧ କରିବା, ବ୍ରତ-ବିଧାନ ପାଳନରେ ସଂଗଠନ କରିବା କଳାର ବ୍ୟକ୍ତ ଉଦ୍ଦେଶ୍ୟ ନୁହେ ।

ମାନବିକତା ତା'ର ଭିତ୍ତି । କବି ନୈତିକ ଚରିତ୍ର ସ୍ଥାପନରେ ଆଗଭର ହୁଏ ନାହିଁ; ଏ ନୈତିକ ଚରିତ୍ର କିନ୍ତୁ ତା' କାବ୍ୟର ଫଳ ହୋଇପାରେ । ଏହି ଫଳ ପୁଣି ତାର କୃତିତ୍ୱର ମୂଲ୍ୟ ନିରୂପଣରେ ବିଶେଷ ମାପ ମଧ୍ୟ ହୋଇପାରେ । ଏଠାରେ ହିଁ ନୀତିବାଦ ଓ ରସବାଦର ସମ୍ମେଳନ, ସମନ୍ୱୟ । କାବ୍ୟର ସ୍ୱଭବ ଓ ମୁଖ୍ୟ ଲକ୍ଷ୍ୟ ପ୍ରେୟ ବୋଲି ନୀତିବାଦୀ ରସବାଦୀଠାରେ ମାନିଲେ, ସେ ପ୍ରେୟ ନିଶ୍ଚୟ ଶ୍ରେୟ ହେବା ଉଚିତ, ଏ କଥା ରସବାଦୀ ନୀତିବାଦୀଠାରେ ମାନିବାକୁ କୁଣ୍ଠିତ ହୁଏ ନାହିଁ । ନୀତିବାଦୀ ମରିସ୍ ଓ ସ୍ୱିନ୍‌ବର୍ଣ୍ଣଙ୍କୁ କବି ବୋଲି ମାନିଲେ, ବ୍ରାଉନିଙ୍ଗ୍ ଓ ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥ୍ ସେମାନଙ୍କଠାରୁ ଉତ୍କୃଷ୍ଟ କବି ବୋଲି ରସବାଦୀ ମାନିବାକୁ କୁଣ୍ଠା ଦେଖାଏ ନାହିଁ । ନିରଟ ଜୀବନ ଗ୍ରହଣଦୃଷ୍ଟିରେ କାବ୍ୟର ଅନେକାଂଶକୁ ଅବାସ୍ତବ ବୋଲି ଫିଙ୍ଗିଦେବା ଯେପରି ଏକ ପକ୍ଷରେ ସଙ୍କୀର୍ଣ୍ଣତାର ପରିଚୟ, ଅନ୍ୟପକ୍ଷରେ କଳା ସବୁବେଳେ ସ୍ୱପ୍ନ-ବିଭୋର, କଳାବିତ୍ ଯେତିକି ନିଜର ବେଷ୍ଟନୀ ପାଶୋରି ଦିଏ ସେତିକି ଉଚ୍ଚକୁ ଉଠେ, ଯାହା ବାସ୍ତବଗ୍ରସ୍ତ ଭିନ୍ନ ନୁହେ ତାହା କଳା ନୁହେ, ଏପରି ବୃଥା ଆଶା ବାନ୍ଧି କବିତାକୁ କେବଳ ଶୂନ୍ୟ-କଳ୍ପନାରେ ନିବଦ୍ଧ କରିବା ସେଇପରି ମୋହଗ୍ରସ୍ତ ମତର ସୂଚନା । ଏକଆଡେ ରୂପ ପ୍ରକାଶକ ଯେପରି କଳାକୁ ସ୍ୱତନ୍ତ୍ର ରଖିବାକୁ ଚାହେଁ, ନୈତିକ ମତାମତ ଓ ବ୍ୟକ୍ତିଗତ ତୃଷ୍ଣା-ବିରାଗ ରୁଚି-ଅରୁଚିରୁ ସ୍ୱାଧୀନ କରି ତହିଁରେ ସ୍ରଷ୍ଟାର ଏକୀଭୂତ ମୌଳିକ ବ୍ୟକ୍ତିତ୍ୱର ପ୍ରକାଶ ଚାହେଁ, ଅନ୍ୟଆଡେ ଭବ-ପୋଷାକ ସେଇପରି କଳାକୁ ଅସଂରମନାର ଦିବା ସ୍ୱପ୍ନରୁ ରକ୍ଷା କରି, ତା'କୁ ଜୀବନ ସଙ୍ଗେ ମିଳାଇ, ତାର ବୋଧଗମ୍ୟତା ଓ ସ୍ଥୈର୍ଯ୍ୟ ଉପରେ ଜୋର୍ ଦେବା ସ୍ୱାଭବିକ । ଉଭୟର ସମୀକରଣ, ସମ୍ମିଶ୍ରଣ ଏକାନ୍ତ ବାଞ୍ଛନୀୟ । ପୂର୍ଣ୍ଣ ବ୍ୟକ୍ତିତ୍ୱର ପ୍ରକାଶ ସଙ୍ଗେ ପ୍ରକାଶିତ ଦୃଷ୍ଟିପୂର୍ଣ୍ଣର ଅନୁରୂପ ହେଲେ ଅକ୍ଷୟ କଳା ସୃଷ୍ଟି ହୁଏ । ସେ ବ୍ୟକ୍ତିତ୍ୱ ଯେତେ ମହତ୍, ସେ ଦୃଷ୍ଟି ଯେତେ ବିଶାଳ ତଜ୍ଜନିତ କଳା ସେତିକି ମହତ୍, ସେତିକି ବିଶାଳ । ଏପରି ଉଚ୍ଚରୁ ଉଚ୍ଚସ୍ତରକୁ ଅତିକ୍ରମ କଲେ କଳା, ଦର୍ଶନ, ଧର୍ମ, ନୀତି, ସାହିତ୍ୟ, ବିଜ୍ଞାନ ସବୁଥିର ହୃତ୍‌ପିଣ୍ଡ ଏକୀଭୂତ ହୁଏ ।

କିନ୍ତୁ ଏ ସବୁ ସଙ୍ଗେ ଆମେ ଲଙ୍ଗିନସ୍‌ଙ୍କ ଉକ୍ତି ଅନୁଯାୟୀ କାବ୍ୟର ତୃତୀୟ କାର୍ଯ୍ୟ, ଅର୍ଥାତ୍ ଉତ୍ତେଜନା ଶକ୍ତିକୁ ଯେପରି ପାଶୋରି ନ ଯାଉଁ । କାବ୍ୟ ଏହି ଉତ୍ତେଜନା ବଳରେ ହିଁ ପାଠକକୁ ଆନନ୍ଦ ଦିଏ, ଶିକ୍ଷାଦିଏ । ଇଂରେଜୀ ସାହିତ୍ୟରେ ସିଡ୍‌ନି ଉଚ୍ଚ ଧରଣର କଳା ସୃଷ୍ଟି କରି ନାହାନ୍ତି; କିନ୍ତୁ ସେ ଠିକ୍ କହିଛନ୍ତି 'ଶିକ୍ଷା ଦେବାଠାରୁ ହୃଦୟ ସ୍ପର୍ଶ କରିବା, ମହତ୍ତର କ୍ରିୟା ।' କାବ୍ୟ ଆମ ମନରେ ପିପାସାକୁ ଉଦ୍ରେକ କରାଇ ଆନନ୍ଦ ଦିଏ; ପୁଣି ଅର୍ଜିତ ଜ୍ଞାନ-କାର୍ଯ୍ୟରେ ଲଗାଇବା ଆକାଂକ୍ଷାକୁ ଜାଗ୍ରତ କରାଇ ଶିକ୍ଷା ଦିଏ । ସେଥିପାଇଁ ସେଲି ଠିକ୍ କହିଛନ୍ତି, ''ନୈତିକ ଶ୍ରେୟର ମହନୀୟ ଯନ୍ତ୍ର (Great Instrument) କଳ୍ପନା; କାବ୍ୟ କାରଣକୁ ଅର୍ଥାତ୍ କଳ୍ପନାକୁ ଚାଳନ କରି କାର୍ଯ୍ୟ ଅର୍ଥାତ୍ ନୈତିକଶ୍ରେୟର ସ୍ୱତଃବିଧାନ କରେ ।' ଏପରି ଭାବରେ ହିଁ ଦର୍ଶନ ଅପେକ୍ଷା ଧର୍ମ କାହିଁକି ନୈତିକଜୀବନ ଗଠନରେ ଅଧିକ କାର୍ଯ୍ୟକାରୀ ହୁଏ, ତାହା ଜଣାଯାଏ । ଦର୍ଶନ, ଜୀବନର ଗୂଢ଼ ତତ୍ତ୍ୱ ଚିନ୍ତା-ଶୃଙ୍ଖଳାରେ ପ୍ରକାଶ କରେ; ସେଥିରେ ରହସ୍ୟ-ଚକିତ-କଳ୍ପନାକୁ ବେଶି ପ୍ରଶ୍ରୟ ଦିଏ । ଏଠାରେ ହିଁ କାବ୍ୟ ଓ ଧର୍ମ ସାରାଂଶରେ ଅଭିନ୍ନ, ଶାନ୍ତାୟନଙ୍କ ଏହି ଉକ୍ତିର ସତ୍ୟତା ପ୍ରମାଣିତ ହୁଏ । ମନୁଷ୍ୟକୁ ପୂର୍ଣ୍ଣ ପ୍ରକଟିତ ଜୀବନଯାପନ କରିବାରେ ଉଭୟ ସାହାଯ୍ୟ କରେ । ଜୀବନର ଏ ପୂର୍ଣ୍ଣ ପ୍ରକଟତା ନୈତିକତାର ଅନ୍ୟ ପାଖ । ତେଣୁ ଆଜିକାଲି ବିଜ୍ଞାନ ଓ ନ୍ୟାୟ ଜଗତରେ ଧର୍ମର ସ୍ପନ୍ଦନ କ୍ଷୀଣ ବୋଧହୋଇ ଆସୁଥିଲେ ସୁଦ୍ଧା, ତାର ପରିବର୍ତ୍ତନର ସେହି କ୍ଷେତ୍ରରେ ସେତିକି ପରିମାଣରେ କାବ୍ୟ ଆଦରଣୀୟ ହୋଇଛି । ଧର୍ମ ଓ କାବ୍ୟ ମନୁଷ୍ୟର ଆତ୍ମା-ରାଜ୍ୟକୁ ଆନ୍ଦୋଳନ କରେ, ପୁଣି ସୁସ୍ଥ ଜୀବନଯାପନ କରିବାରେ ସହାୟ ହୁଏ, ଜୀବନ୍ତ ମରଣ ଓ ଜଡ଼ତାରୁ ତାକୁ ରକ୍ଷା କରେ । ସୃଷ୍ଟି ଆରମ୍ଭରୁ ନୀତିଗୁଡ଼ିକ ଏକାପରି । ତହିଁର ସନ୍ଧାନରେ ବେଶି କିଛି ଆୟାସ ନାହିଁ । ସ୍କୁଲପିଲାଙ୍କ ପାଠ୍ୟ ପୁସ୍ତକର ପୃଷ୍ଠା ଭିତରେ ସେ ସବୁ ଦିଆଯାଇପାରେ । ସେ ସବୁ ଜାଣିବାରେ ବୈଶିଷ୍ଟ୍ୟ ନାହିଁ । ଅସଲ କଥା ହେଉଛି ସେ ସବୁକୁ କର୍ମମୟ, ପ୍ରାଣବନ୍ତ, ସକ୍ରିୟ କରିବାରେ । ସକ୍ରେଟିସ୍ କହିଥିଲେ ଜ୍ଞାନ ହିଁ ନୈତିକ ଶ୍ରେୟ, କିନ୍ତୁ କଥାଟି ସମ୍ପୂର୍ଣ୍ଣ ସତ୍ୟ ନୁହେ । ଏଣୁ ଏରିଷ୍ଟାଟଲ୍ ତାକୁ ସଂଶୋଧନ କରି କହିଲେ, ନୈତିକ ଶ୍ରେୟ କର୍ମଧାରାରେ ହିଁ ପ୍ରକାଶିତ ହୁଏ । ଅନ୍ତରତମ ଆତ୍ମିକ ଅନୁଭୂତିର କର୍ମପ୍ରବଣତା ହିଁ ନୈତିକ ହିତମାର୍ଗ ଉନ୍ମୁକ୍ତ କରେ । ରକ୍ତ ମାଂସ ଶରୀରରେ, ନଗ୍ନ ବାସ୍ତବ ପ୍ରକୃତି କ୍ରୋଡ଼ରେ ଏହି ଅନୁଭୂତିର ନିତ୍ୟ ବିକାଶ ପାଇଁ ପ୍ରତ୍ୟେକ ଯୁଗରେ ନବ ଜୀବନ, ନବ ଜାଗରଣ ଲୋଡ଼ା । ଯୁଗାନ୍ତରର ଏ ନବଜୀବନ, ନବ ଜାଗରଣ, ନବ ଉନ୍ମାଦନାର ସ୍ରୋତ ବୁହାଏ କାବ୍ୟ । ତାର କୁହୁକ ସ୍ପର୍ଶରେ ଜୀବନୀଶକ୍ତି ବିଦ୍ୟୁତ୍-ଚଞ୍ଚଳ ହୁଏ, ସୁପ୍ତ ଶିଥିଳ ବୃତ୍ତି ପୁନର୍ଜୀବିତ ହୁଏ, ନିଷ୍ପ୍ରଭ ଚକ୍ଷୁରେ ଜ୍ୟୋତି ଆସେ, ମନ୍ଦୀଭୂତ ଧମନୀରେ ଉଷ୍ଣ ରକ୍ତ ପ୍ରବାହିତ

ହୁଏ, ଜଡ ହୃଦୟରେ ପ୍ରେମର ପୁଲକ ସଞ୍ଚାରିତ ହୁଏ । ବ୍ୟକ୍ତିତ୍ୱର କୌଣସି ଭଗ ମୃତକଳ୍ପ ନୀରସ ନ ହେବା ପାଇଁ ସଞ୍ଜୀବନୀ ମନ୍ତ୍ର ଉଚ୍ଚାରଣ କରେ, ଅମୃତ ଧାର ଢ଼ାଳେ, କାବ୍ୟ । ଅର୍‌ନଲଡ୍‌ ଏଇ ଦୃଷ୍ଟିରେ ହିଁ କାବ୍ୟ, ଧର୍ମ ଓ ସଂସ୍କୃତିକୁ ଅଙ୍ଗୀଭୂତ କରିଥିଲେ । ତାଙ୍କ ବିବେଚନାରେ ସଂସ୍କୃତି ଯେପରି ପୂର୍ଣ୍ଣତାର ନିଃସ୍ୱାର୍ଥପର ଶିକ୍ଷା ଓ ସନ୍ଧାନ, କଳା ମଧ୍ୟ ସେପରି । ପୁଣି ଏଇ ଦୃଷ୍ଟିରେ ହିଁ ସେଲିଙ୍କ ଭବନାରେ କଳା ଏକୀଭୂତ କଳ୍ପନା ଶକ୍ତିର ପ୍ରକାଶ, ରିଚେର୍ଡ୍‌ସଙ୍କ ମତରେ ତାହା ଭବସମୂହର ବିଭିନ୍ନ ସ୍ତର ଭେଦୀ ସମସ୍ତ ସମ୍ଭାବ୍ୟ କ୍ରିୟା-ପ୍ରକାଶର ଉତ୍ତମ ନିୟନ୍ତ୍ରଣ । ବିଭିନ୍ନ ସମୟ ପ୍ରବର୍ତ୍ତିତ ଏସବୁ ମତର ପ୍ରୟୋଗ ପଦ ଭିନ୍ନ ଭିନ୍ନ କିନ୍ତୁ ପଦ-ଅର୍ଥ ବା 'ପଦାର୍ଥ' ଏକ ।.ସଂକ୍ଷେପରେ, କଳା ଜୀବନର ଭଗ୍ନାଂଶ ନୁହେ, କେବଳ ପ୍ରୀତି ବା ଆମୋଦ, ବିଗ୍ରହ ବା ଭବରେ ତାହା ସୀମାବଦ୍ଧ ନୁହେ, ତାହା ସମଗ୍ର ଜୀବନର ମୁକ୍ତ ସନ୍ଧାନରେ ପ୍ରବଳ ଉଚ୍ଛ୍ୱାସ । ସେ ଉଚ୍ଛ୍ୱାସ ବାଧାଶୂନ୍ୟ ଆତ୍ମିକ କ୍ରିୟାକୁ ପ୍ଲାବିତ, କ୍ଳେଶମୁକ୍ତ କରି ସର୍ବବିଧ କଲ୍ୟାଣ କରେ । ଏ ତଥ୍ୟ କିଛି ନୂତନ ଉଦ୍‌ଭବନା, ଅଜ୍ଞାତ ଆବିଷ୍କାର ନୁହେ । ବହୁ ପୂର୍ବରୁ ଉର୍ବର ହେଲେନିକ୍‌ ଚିନ୍ତା-ସମୃଦ୍ଧ ଯୁଗରେ ଏ କଥା ଏରିଷ୍ଟାଟଲ୍‌ କହିଛନ୍ତି ।



# ଇତିହାସର ଆର୍ଥନୀତିକ ଅନୁଶୀଳନ

ଏହି ଜଗତରେ ଗୋଟାଏ ଆରମ୍ଭଠାରୁ ନିର୍ଦ୍ଦିଷ୍ଟ ମାର୍ଗରେ ଶେଷ ପର୍ଯ୍ୟନ୍ତ ମାନବିକତାର କ୍ରମବିକାଶ ଇତିହାସର ଆଲୋଚ୍ୟ । ଅନେକ ପ୍ରତିକ୍ରିୟା ସତ୍ତ୍ୱେ ମାନବ ଜାତିର ସଭ୍ୟତା, ସଂସ୍କୃତି, ପ୍ରଗତିର ସଂକ୍ଷେପ ଲିପିହିଁ ଇତିହାସ । ଐତିହାସିକ ବିବୃତିର ଆର୍ଥନୀତିକ, ସାମାଜିକ, ବ୍ୟକ୍ତିଗତ, ଜୀବନମୂଳକ ତିନୋଟି ଆପାତ ବିଭଗ ।

ଆଧୁନିକ ଓ ପୌରାଣିକ ଉଭୟ ଯୁଗରେ ମାନବ-ନାଟିକାରେ ଅର୍ଥନୀତି ସୂତ୍ରର ଖେଳାହିଁ ସ୍ପଷ୍ଟ ଦେଖାଯାଏ । ମନୁଷ୍ୟକୁ ପ୍ରଥମେ ବଞ୍ଚି ରହିବାକୁ ହୁଏ ଏବଂ ବଞ୍ଚି ରହିବାକୁ ହେଲେ ଖାଦ୍ୟ, ପରିଧାନ, ବଂଶବୃଦ୍ଧି, ଜଳବାୟୁଗତ ଓ ସାମୟିକ ପରିସ୍ଥିତିର ବିପଦ ଓ ଅଭବରୁ ତାର ରକ୍ଷା ଅପରିହାର୍ଯ୍ୟ । ଏଥିପାଇଁ ସକଳ ବିଭଗୀୟ ଭୌତିକ ସଂପଦର ସଦ୍‌ବ୍ୟବହାର ବିନିମୟ ନକରି ସେ ରହିପାରେ ନାହିଁ । ଧର୍ମ ସାଧନାରେ 'ଶରୀର' ଆଦ୍ୟ ବୋଲି ଶାସ୍ତ୍ରକାର କହିଛନ୍ତି । 'ଅନ୍ନରୁଡ଼ିଲେ ଆୟୁହାନି, ଯୋଗ ସାଧିବୁ କାହାଘେନି' ବୋଲି ଭଗବତକାର ଠିକ୍ ପଗ୍ଭରି ଅଛନ୍ତି । ଜୀବନରେ ଅଧ୍ୟାତ୍ମ୍ୟ, ବୁଦ୍ଧିବୃତ୍ତି, ସୌନ୍ଦର୍ଯ୍ୟପିପାସା, ନୈତିକସ୍ପୃହାର ଗୌରବ ଅକ୍ଷୁଣ୍ଣ ରଖିବାକୁ ଗଲେ ଓ ତହିଁର ଭିତ୍ତି ଦୃଢ଼ କରିବାକୁ ହେଲେ ଶରୀରକୁ ପ୍ରଥମେ ସୁସ୍ଥ, ସବଳ, ଶକ୍ତିମାନ୍ କରିବାକୁ ହୁଏ । ସେଥିପାଇଁ ସୃଷ୍ଟି ଆରମ୍ଭରୁ ସବୁକାଳରେ ବିଖ୍ୟାତ ଦାର୍ଶନିକ, ଦ୍ରଷ୍ଟା, ଭବୁକ, ଜାତି-ସଙ୍ଗଠକ ଓ ବ୍ୟବସ୍ଥାପକମାନେ ଉଚ୍ଚନୀଚ, ଧନୀ-ଦରିଦ୍ର, ରଜା-ପ୍ରଜା ବ୍ୟକ୍ତି-ସମାଜ, ଇତ୍ୟାଦି ବିଭିନ୍ନ ଜାତି, ଶ୍ରେଣୀ, ସ୍ତର ଅବସ୍ଥା ସମନ୍ୱିତ କଠୋର, ବାସ୍ତବ, ଦୈନନ୍ଦିନ, ବ୍ୟାବହାରିକ ମନୁଷ୍ୟ-ଜୀବନ-ପ୍ରବାହରେ ଅର୍ଥର ପ୍ରବଳ ପ୍ରଭବ ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି । ଗଭୀର ଦୃଷ୍ଟିରେ ପ୍ଲେଟୋଙ୍କଠାରୁ ବଳି ସାମ୍ୟବାଦୀ କିଏ ନାହିଁ; ତାଙ୍କ ମତରେ ଅର୍ଜିତ ସଂପତ୍ତି (Private Property) ସମାଜର ଘୋର ଅନିଷ୍ଟକାରକ । ଏରିଷ୍ଟଟଲ କହିଛନ୍ତି 'ସମ୍ପଦ ସମାଜରେ ଉଚିତ ଭବରେ ବାଣ୍ଟିବା ହିଁ ଶାସନ ପଦ୍ଧତିର ଏକମାତ୍ର କାର୍ଯ୍ୟ ।' ହେରିଙ୍ଗଟନଙ୍କ ମତରେ 'ରଜନୀତିକ ଶକ୍ତି ପୋଇଲି, ଅର୍ଥନୀତିକ ଶକ୍ତି ରଣୀ । 'ଆଦାମ ସ୍ମିଥ୍, ସେଣ୍ଟ ସାଇମନ୍, ଲୁଇବ୍ଲଙ୍କ, ଟରଗଟ୍ ମଧ୍ୟ ଏହି ମତ ସମର୍ଥନ କରି ଦର୍ଶାଇଅଛନ୍ତି । ସଂପତ୍ତି ଅର୍ଜନ, ବଣ୍ଟନ ଓ

ବ୍ୟବହାରର ପ୍ରଣାଳୀ ହିଁ ମନୁଷ୍ୟ ସମାଜର ଅଭ୍ୟୁନ୍ନତି ବା ଅଧୋଗତିର ଏକମାତ୍ର କାରଣ । ମଣ୍ଟସ୍କ୍ୟୁ ଓ ବକ୍‌ଲଙ୍କ ଦୃଷ୍ଟିରେ କେବଳ ଜଳବାୟୁର ନିସର୍ଗ ନିୟମ ଇତିହାସ-ଚିତ୍ରକୁ ଆକୃତି କରିଛି । ଶେଷରେ ବିଖ୍ୟାତ ଜର୍ମାନ୍ ସମାଜବାଦୀ କାର୍ଲମାର୍କସଙ୍କ ପ୍ରଗ୍ରରରେ ଏହି ନୀତିର ପ୍ରୟୋଗ ବିଶ୍ଲେଷଣ ଓ କ୍ରିୟା ଚରମ ସୀମାକୁ ସ୍ପର୍ଶ କରିଛି । ଆଧୁନିକ ଜଗତର ଅଧିକାଂଶ ରାଷ୍ଟ୍ରୀୟ, ସାମାଜିକ, ଆର୍ଥନୀତିକ ବିପ୍ଳବ ପାଇଁ ମାର୍କସଙ୍କ ଭଳି ଆଉ କେହି ଦାୟୀ ନଥିବାର ଅନୁମିତ ହୁଏ । ଉତ୍କଟ ସମସ୍ୟା-ସଙ୍କୁଳ ବର୍ତ୍ତମାନ ଜଗତ ଇତିହାସର ଆର୍ଥନୀତିକ ଅନୁଶୀଳନୀ ପ୍ରସୂତ ବୋଲି କହିଲେ ଅତିରଞ୍ଜନ ହେବନାହିଁ । ପୁରାଣ ଯୁଗରୁ ଶ୍ରେଣୀରହିତ, ସମସ୍ତେ ସମାନ ଅଧିକାର ପ୍ରାପ୍ତ ବିଶ୍ୱଭ୍ରାତୃତ୍ୱ-ସଂପନ୍ନ ଅତ୍ୟାଚାରର ନିଷ୍ପୀଡ଼ନ ବିମୁକ୍ତ ମାନବିକ ସମାଜର ଯେଉଁ ସ୍ୱପ୍ନ ଏ ପର୍ଯ୍ୟନ୍ତ ଉହ୍ୟ ଥିଲା, ପ୍ଳେଟୋଙ୍କ 'ରିପବ୍ଲିକ୍' ଓ ଥୋମାସ୍ ମୁରଙ୍କ 'ୟୁଟୋପିଆ'ରେ ଯେଉଁଭବ କେବଳ ସଙ୍କେତରେ ପର୍ଯ୍ୟବସିତ ଥିଲା, ତାହା ଆଜି ମାର୍କସ ପ୍ରଭାବିତ ସୋଭିଏଟ ରୁଷିଆରେ ଗଣତନ୍ତ୍ରରେ ଯେପରି ସ୍ପଷ୍ଟ, ଜୀବନ୍ତ ହୋଇ ଫୁଟି ଉଠିଛି । ତାହା କେବେ ହୋଇ ନଥିଲା ବୋଲି ମନେ ହୁଏ । ବାସ୍ତବିକ ମାର୍କସ ଏ ଯୁଗର ଦେବତା । ତାଙ୍କ ପ୍ରଣୀତ "କେପିଟେଲ' ଏକ ମାନବ ଧର୍ମର ପ୍ରମାଣ ଗ୍ରନ୍ଥ ।

ବସୁଧାର ସକଳ ବିଭବ ଅର୍ଥ ପରିଚାଳିତ । ମୂଳଧନ ଓ ସମ୍ପତ୍ତିର ଭବନା ତହିଁରୁ ହିଁ ଜାତ । ବସୁନ୍ଧରା ରତ୍ନଗର୍ଭା । ଜଳ-ସ୍ଥଳ-ପରିବେଷ୍ଟିତ ଏହି ପୃଥିବୀରେ ମାନବ ପ୍ରଥମେ ନିଜର ଭୌତିକ ଓ ପାର୍ଥିବ ବ୍ୟକ୍ତିତ୍ୱ ଗଠନ ଓ ସ୍ଥାପନରେ ପ୍ରୟାସୀ ହୁଏ । ବିଭିନ୍ନ ମାନବ ଗୋଷ୍ଠୀର ଏହି ବିପୁଳ ପ୍ରୟାସ ହିଁ ଏ ପର୍ଯ୍ୟନ୍ତ ସଙ୍ଘଟିତ ସବୁ ସମର ସାମ୍ରାଜ୍ୟ ଉଦୟ ଓ ଧ୍ୱଂସ, ଅଭିଯାନ ଓ ଆକ୍ରମଣ, ମିଳନ ସଂଘର୍ଷ ପ୍ରଭୃତିର ଇତିହାସର ତରଙ୍ଗାୟିତ ଘଟଣାବଳିର ମୂଳ । ଜନସଂଖ୍ୟାର ଆଧିକ୍ୟ ଓ ସେହି ସଙ୍ଗେ ଖାଦ୍ୟ ସାମଗ୍ରୀର ଅଭବ, ସଂପତ୍ତି ବଢ଼ାଇବାର ତୃଷ୍ଣା, ଅଧିକାର ବ୍ୟାମୋହ, ଦାସ ବା ଅନ୍ୟ କୌଣସି ପ୍ରଥାଦ୍ୱାରା କାୟିକ ଶ୍ରମଲାଭ ଇତ୍ୟାଦି ପ୍ରବୃତ୍ତି ଅବସ୍ଥାରୁ ଯୁଦ୍ଧର ଉତ୍ପତ୍ତି । ସମ୍ପଦ ଅଧିକାରର ଅସମାନତା ସାମାଜିକ ସ୍ଥିତିରେ ଭେଦ ଆଣେ । ସେଥିରୁ ବିତ୍ତବାନ୍ ଓ କାଙ୍ଗାଳ ପ୍ରଭୁ ଓ ଦାସ, ମାଲିକ ଓ ଶ୍ରମିକ, ସାମ୍ରାଜ୍ୟବାଦୀ ଇତ୍ୟାଦି ଗୋଷ୍ଠୀ ଓ ସଂପ୍ରଦାୟ ମଧ୍ୟରେ ଘୋର ମନୋମାଳିନ୍ୟ ଓ ସମରର ଅଭିନୟ ହୁଏ । ପୌରାଣିକ ଗ୍ରୀସରେ ଏହା ହୋଇଥିଲା । ପେରିକ୍ଲିସ୍ ଏନାକ୍ସୋଗରସ୍, ଥ୍ୟୁସୀଡାଇଡସ, ପି. ଡ଼ି. ସେ, ସୋଫାକ୍ଲିସ୍ ୟୁରିପାଇଡ଼ସ୍, ଏରିଷ୍ଟୋଫେନସ୍, ହିପୋକ୍ରିଟସ୍ ଓ ସକ୍ରେଟିସ୍‌ଙ୍କ ସ୍ୱର୍ଣ୍ଣମୟ ଯୁଗ ଅବସାନର ଅବ୍ୟବହିତ ପରେ ବିଶୃଙ୍ଖଳା ପହଞ୍ଚିଲା । ଆର୍ଥିକ ଶକ୍ତିର ବ୍ୟାମୋହରେ, ବିଳାସର ଚାକଚକ୍ୟରେ ଭୁଲିଯାଇ ଏଥେନବାସୀ ପ୍ରପୀଡ଼ିତ

ପ୍ରଜାଙ୍କ ରକ୍ତଢ଼ାଳି ସାମ୍ରାଜ୍ୟ ପ୍ରତିଷ୍ଠାର ଆୟୋଜନ କଲେ । ସଙ୍ଗେ ସଙ୍ଗେ ଗ୍ରୀକ୍-ଦାସଗଣ ଶତ୍ରୁ ସଙ୍ଗେ ଯୋଗଦେଇ ଘୋର ଆତଙ୍କ ସୃଷ୍ଟି କଲେ । ଗ୍ରୀକ୍ ସାମ୍ରାଜ୍ୟ ଅଦୃଶ୍ୟ ହୋଇଗଲା । ରୋମ୍ ଇତିହାସରେ ମଧ୍ୟ ସେହି କଥା ପେଟ୍ରିସିଅନ୍ ପ୍ଲିବିନେ ସଂଘର୍ଷ କେବଳ ସମ୍ପତ୍ତି, ବାଣିଜ୍ୟ, ଶାସନକ୍ଷମତା ଓ ଅନ୍ତର୍ବିବାଦରେ ଅଧିକାର ପାଇଁ ଗାଲ୍‌ସମାନଙ୍କର ରୋମ୍ ଆକ୍ରମଣରେ ପେଟ୍ରିସିଅନ୍‌ମାନେ ନିଜର ଭୁଲ ବୁଝି ଯେଉଁମାନଙ୍କୁ ସେମାନେ ନିତାନ୍ତ ଘୃଣା ଚକ୍ଷୁରେ ଦେଖୁଥିଲେ ସେମାନଙ୍କୁ କେତେକ ଆର୍ଥିକ ସୁବିଧା ଦେଲେ ଓ ଉଭୟେ ମିଶି ଶତ୍ରୁକୁ ବିତାଡ଼ିତ କଲେ । ଆସନ୍ନ ବିପଦର ଘନଘଟା ଦୂରେଇଗଲା ସତ, କିନ୍ତୁ ଅଳ୍ପ ସମସ୍ୟା ପାଇଁ । ସମସ୍ୟା ରହିଲା, ସାମୟିକ ଆର୍ଥିକ ସୁବିଧାର ପ୍ରଦାନ ନୁହେଁ, ସମାନ ଅଧିକାରର ନ୍ୟାଯ୍ୟ ଦାବୀ । ଅପଚୟ-ବୀଜ ବୁଣିଲେ ବିନଷ୍ଟି-ଶସ୍ୟ ନିଶ୍ଚୟ ଆଦାୟ କରିବାକୁ ହୁଏ । ବାଣିଜ୍ୟ କଳହ ହେତୁ ରୋମ୍‌କୁ କାର୍ଥେଜ୍ ସଙ୍ଗେ ଯୁଦ୍ଧ କରିବାକୁ ପଡ଼ିଲା । ବୁଭୁକ୍ଷୁ ଜନତା ମାତି ଉଠିଲେ । ତାଙ୍କୁ ଦମନ କରିବାପାଇଁ ବିପୁଳ ସେନାବାହିନୀ ନିୟୋଜିତ ହେଲେ । ସେମାନେ ହିଁ ରୋମ୍ ସାମ୍ରାଜ୍ୟକୁ ଧୂଳିସାତ୍ କଲେ ।

ଇଂରେଜି ଇତିହାସରେ ମଧ୍ୟ ଏହି ନୀତିର ଉଦ୍ଦାମ ଅବାରିତ ଗତି । ଇଂଲଣ୍ଡର ରୋମାନ୍, ଏଙ୍ଗ୍ଲୋସେକ୍ସନ, ଦିନାମାନ୍, ନରମାନ୍ ଇତ୍ୟାଦି ଆକ୍ରମଣ, ଜମିଦାରୀ ପ୍ରଥା (Feudal system), ବ୍ୟବସାୟ ବିଭାଗ (Guild system) ସବୁ ଆର୍ଥନୀତିକ ଉଦ୍ଦେଶ୍ୟ ସଂଶ୍ଳିଷ୍ଟ । ନରମାନ୍ ଶାସନରେ କଠୋର ଆଇନ୍ ଦ୍ୱାରା ଜାତୀୟ ସମ୍ପଦକୁ ରକ୍ଷା କରାଯାଇଥିଲା, ମଧ୍ୟଯୁଗର ଧର୍ମ ଆନ୍ଦୋଳନ (Church movement) ଆପାତ ଧର୍ମ ସଂକ୍ରାନ୍ତ ହେଲେ ମଧ୍ୟ ଗଭୀର ଭାବେ ଆର୍ଥନୀତିକ ଥିଲା । ପ୍ରଭୂତ ଧନ ବଳରୁ ଧର୍ମ ପ୍ରଭୁତା (Papacy) ନିରଙ୍କୁଶ କ୍ଷମତା ବିସ୍ତାର କରିଥିଲା । VIII ହେନେରି ମଠବାଡ଼ି-ଦେବୋତ୍ତର ସବୁ ଉଠାଇ ଦେଇଥିଲେ ଓ ତାହାରି ପ୍ରୟୋଗରେ ଅଧୀନ ସାମନ୍ତବର୍ଗ ସୃଷ୍ଟିକରି ରାଜକ୍ଷମତା ବୃଦ୍ଧି କରିବାକୁ । ରାଣୀ ଏଲିଜାବେଥଙ୍କ ସମୟର ସ୍ପେନ୍ ଯୁଦ୍ଧର ପ୍ରଧାନ କାରଣ, ଔପନିବେଶିକ ଓ ବାଣିଜ୍ୟ ସମ୍ବନ୍ଧୀୟ ଶତ୍ରୁତା । ପ୍ରଥମ ଚାର୍ଲସଙ୍କ ସମୟରେ ପ୍ରବଳ ଜନବିଦ୍ରୋହ ଓ ଦଳ ସୃଷ୍ଟି ଆର୍ଥନୀତିକ । ଅଷ୍ଟାଦଶ ଶତାବ୍ଦୀର ଇଂଲଣ୍ଡ ଓ ଫ୍ରାନସ ମଧ୍ୟରେ ଘଟିଥିବା ଦ୍ୱିତୀୟ ଶତବର୍ଷ ଯୁଦ୍ଧ କେବଳ ବାଣିଜ୍ୟ ଓ ନୌବଳର ଦୀର୍ଘ ଭୀଷଣ ପ୍ରତିଯୋଗିତା ଲାଗି । ପ୍ରାତିନିଧ୍ୟ ବ୍ୟତିରେକେ ରାଜସ୍ୱ ଦେବାର ଓ ବିଦେଶୀ ମାଲ ଆମଦାନୀ କରିବାର ବାଧ୍ୟତା ଆମେରିକା ସ୍ୱାଧୀନତା ଯୁଦ୍ଧର ମୂଳକାରଣ । ଶେଷରେ ଇଂରେଜି ଇତିହାସ ଉପରେ ଏହି ଆର୍ଥନୈତିକ ପ୍ରଭାବ ବ୍ୟବସାୟ ବିପ୍ଳବ

(Industrial Revolution) ରେ ପୂର୍ଣ୍ଣତା ଲଭ କରିଥିଲା । ଯାତାୟାତର ମାର୍ଗକୁ ସୁଗମ ଓ ସଂକ୍ଷିପ୍ତ କରି, ବହୁତ ଦ୍ରବ୍ୟ ଉତ୍ପାଦନ, ଦେଶ ବିଦେଶରେ ତହିଁର ବିକ୍ରିର ହାଟ ସଂଗଠନ କରି, ଶ୍ରମିକ ଆଇନର ବ୍ୟବସ୍ଥା କରି, ବୈଜ୍ଞାନିକ ଓ ବିଶେଷ ଜ୍ଞାନମୂଳକ (Technical) ଜୀବନ ଦୃଷ୍ଟିର ବିକାଶ କରି, ବାଣିଜ୍ୟ ବ୍ୟବସାୟର ଅଦୃଷ୍ଟପୂର୍ବ, ଅଶ୍ରୁତପୂର୍ବ ଅଭୂତପୂର୍ବ ଉନ୍ନତି ସାଧନ କରି, ବହୁ ଉପନିବେଶକୁ ଧରି ସାମ୍ରାଜ୍ୟବାଦର ଭିତ୍ତିସ୍ଥାପନ କରି, ଶ୍ରମିକ ସଂଘ ଓ ରାଷ୍ଟ୍ରର ସୂଚନା ଦେଇ, ପ୍ରପୀଡ଼ିତ ଜାତିମାନଙ୍କର ସ୍ୱାଧୀନତା ଆନ୍ଦୋଳନର ବାଟ ଫିଟାଇ ଏହି ଆର୍ଥନୀତିକ ପ୍ରଭବ ରଖିବାର ଉଦ୍ୟମ ହୋଇ ଆସିଅଛି । ବିଲାତ ପାର୍ଲିଆମେଣ୍ଟ ସଭ୍ୟ ନିର୍ବାଚନରେ ମଧ୍ୟ ଏହି ନୀତି ପ୍ରବର୍ତ୍ତିତ ହୋଇ ଆସୁଅଛି । ଭୂସ୍ୱାମୀ ଧାତୁ-ବ୍ୟବସାୟୀ, ରେଳ-ଅଧିକାରୀ, ଭାରତ-ଫେରନ୍ତା "ନବାବ' ଶ୍ରମିକ ନେତା କ୍ରମଶଃ ପାର୍ଲିଆମେଣ୍ଟରେ ପ୍ରତିପତ୍ତି ବିସ୍ତାର କରିଥିବା କଥା ଇତିହାସରୁ ଜଣାଯାଏ । ଆଜି ବିଲାତରେ ସ୍ତ୍ରୀମାନେ ଭୋଟ ଅଧିକାର ପାଇଛନ୍ତି । କୌଣସି ଆଦର୍ଶ ବଳରୁ ନୁହେଁ କେବଳ ଗତ ମହାସମରରେ ଦେଶ ପାଇଁ ସେମାନେ କରିଥିବା ଆର୍ଥନୀତିକ ସେବାପାଇଁ ।

ଆର୍ଥିକ କାରଣରୁ ମଧ୍ୟ ବହୁ ରାଜନୀତିକ ରାଷ୍ଟ୍ରର ସୃଷ୍ଟି ହୋଇଅଛି, ହେଉଅଛି । ମହାଧନୀ ଆମେରିକା ଦେଶ ବାଣିଜ୍ୟ-ଶୁଳ୍କ-ବିରୋଧ ଓ ସମାନ ଭାବେ ଜାତୀୟ ଋଣ ପରିଶୋଧନ ନୀତି ଫଳରୁ ପ୍ରତିଷ୍ଠିତ ହୋଇଥିଲା । ବାଣିଜ୍ୟ ଓ ଯାତାୟାତ କଷ୍ଟର ଦୂରୀକରଣ ଅଷ୍ଟ୍ରେଲିଆ ରାଷ୍ଟ୍ର, ସ୍ୱର୍ଣ୍ଣହୀରକ ଖଣିର ଅନୁସନ୍ଧାନ, ଆଫ୍ରିକା ରାଷ୍ଟ୍ର ସ୍ଥାପନ ମାର୍ଗ କିପରି ଫିଟାଇଥିଲା, ତାହା ସମସ୍ତେ ଜାଣନ୍ତି ।

ସେ ଯାହାହେଉ, ବର୍ତ୍ତମାନ ସହସ୍ର ଘଟଣା ଥାଉ ଥାଉ ଅତୀତ ଦୃଷ୍ଟାନ୍ତ ଉଦ୍ଧାରର ପ୍ରୟୋଜନ କ'ଣ ? ଆଧୁନିକ ମାଞ୍ଚୁକେ, ଏବିସିନିଆ, ସ୍ପେନ, ଚାଇନା, ଯୁଗୋସ୍ଲୋଭିଆ, ପୋଲଣ୍ଡ, ବଲଟିକ୍ ଦେଶ ସମୂହର ଗତି କ'ଣ ? ଉପନିବେଶ ପାଇଁ, କଞ୍ଚାମାଲ (Raw material) ଆର୍ଥନୀତିକ ସୁବିଧା ପାଇଁ ଚତୁର୍ଦ୍ଦିଗରେ ଏ ଚିତ୍କାର କାହିଁକି ? ବାଣିଜ୍ୟ ଚୁକ୍ତି ଆଜି ଦେଶ ଦେଶ ମଧ୍ୟରେ ଏତେ ପ୍ରାଧାନ୍ୟ ଲାଭ କରିଅଛି କାହିଁକି ? ବାସ୍ତବିକ ଆଜିର ସମାଜ ଅର୍ଥନୀତି ଦ୍ୱାରା ହିଁ ସ୍ପଷ୍ଟ ପ୍ରଭାବିତ ।

ଏହି ବିସ୍ତାରିତ ନୀତି ତେଣୁ କଳା ଓ ସାହିତ୍ୟ କ୍ଷେତ୍ରକୁ ମଧ୍ୟ ପ୍ରଭାବିତ କରିଛି । ଜଗତର ଅନେକ ପ୍ରସିଦ୍ଧ ସାହିତ୍ୟିକଙ୍କୁ ଗ୍ରନ୍ଥ ପ୍ରଣୟନରେ ଏହି ନୀତି

କଥାବସ୍ତୁ ଓ ପ୍ରେରଣା ଯୋଗାଇଛି । ସ୍କଟ, କିଙ୍ଗସେ, ଡିକ୍‌ସନ୍ ପ୍ରଭୃତି ଔପନ୍ୟାସିକମାନେ ଯେପରି ମଧ୍ୟଯୁଗର ଆର୍ଥିକ ଚିତ୍ର, ଚାଷୀର ଅସହାୟ ଜୀବନ, ଆବିଷ୍କାର ଯୁଗର ସମ୍ପତ୍ତି ଉତ୍ସାହ, ଆଧୁନିକ କଳକାରଖାନା ଯୁଗରେ ଶ୍ରମିକର ନିସ୍ପେଷିତ ଜୀବନ ଚିତ୍ରଣ କରିଛନ୍ତି, ତାହା ଏଠାରେ ସ୍ମରଣୀୟ ।

ଜନ୍ମଭୂମି ଭାରତକୁ ଦୃଷ୍ଟି ଫେରାଇଲେ ମଧ୍ୟ ସେହି ଅବାଧଗତି । ମୌଳିକ ଭାରତୀୟ ଚିନ୍ତା କେବଳ ମୋକ୍ଷ ସାଧନାରେ ନିବିଷ୍ଟ ହୋଇନଥିଲା । ଜୀବନର ସକଳ ବିଭାଗ ତହିଁରେ ଠିକ୍ ଅନୁପାତରେ ବିଚାର କରାଯାଇଥିଲା । ଐହିକ କଲ୍ୟାଣର ଉପଯୁକ୍ତ ସ୍ଥାନ, ଧର୍ମ-ମୋକ୍ଷ-କାମ ସଙ୍ଗେ ଅର୍ଥର ଅଚ୍ଛେଦ୍ୟ ସମ୍ବନ୍ଧ ନିର୍ଦ୍ଦେଶ କରାଯାଇଥିଲା କେବଳ ରାଜ୍ୟରେ ତାହାର ଗତି ଆବଦ୍ଧ ଥିଲା, ଏପରି ନୁହେଁ, ସୂର୍ଯ୍ୟ, ବୃହସ୍ପତି, ଶୁକ୍ର, ଚାଣକ୍ୟ କାମାନ୍ଦକ ଇତ୍ୟାଦି ବିଚକ୍ଷଣ ରାଜନୀତିଜ୍ଞମାନେ ନିଖୁଣ ଭାବରେ ରାଷ୍ଟ୍ର-ବ୍ୟଷ୍ଟି, ସମଷ୍ଟି ଜୀବନରେ ଅର୍ଥନୀତିର ପ୍ରୟୋଗ କରିଥିଲେ । ମୌର୍ଯ୍ୟ, ଗୁପ୍ତ, କନିଷ୍କ ହର୍ଷବର୍ଦ୍ଧନଙ୍କ ବିଭବପୂର୍ଣ୍ଣ ସାମ୍ରାଜ୍ୟମାନ ଗୋଟିକ ପରେ ଗୋଟିଏ ସ୍ଥାପିତ ହୋଇଥିଲା । ସେତେବେଳେ ହିନ୍ଦୁ ଇତିହାସରେ ସ୍ୱର୍ଣ୍ଣମୟ ଯୁଗ; ପୁଣି ଆବହମାନ କାଳରୁ ଆର୍ଯ୍ୟାବର୍ତ୍ତ ବୈଦେଶିକ ଆକ୍ରମଣର ଲୀଳାସ୍ଥଳୀ ହୋଇଛି କାହିଁକି ? ମାଙ୍ଗୋଲୀୟ, ପାରସ୍ୟ, ଗ୍ରୀକ୍, ଯୁଚି, ଶକ, କୁଷାନ, ହୁନ, ଆଫଗାନ, ମୋଗଲ ଇତ୍ୟାଦି ଅସଂଖ୍ୟ ଜନତାର କୋଳାହଳପୂର୍ଣ୍ଣ ସଂଘର୍ଷ, ହତ୍ୟା ଲୁଣ୍ଠନ, ଅତ୍ୟାଚାରର ବାତ୍ୟା ହିନ୍ଦୁସ୍ଥାନ ବକ୍ଷରେ ବହିଯାଇଅଛି କାହିଁକି ? ଧନ ଆଶାରେ । ସପ୍ତଦଶ ଶତାବ୍ଦୀରୁ ଆରମ୍ଭ କରି ୟୁରୋପୀୟ ବଣିକ ଦଳ, ଏ ଦେଶ-ଦିଗ୍‌ବିଜୟରେ ଉଦୟ ହେଲେ କେବଳ ସାମ୍ରାଜ୍ୟ ପ୍ରତିଷ୍ଠା, ଦେଶଜୟ, ବାଣିଜ୍ୟ ପ୍ରସାରର ପ୍ରବଳ ଆସକ୍ତିରୁ. ସେତେବେଳେ ଭାରତ ରାଜ୍ୟ-ଭାଗ୍ୟ-ରବି ଅସ୍ତମିତ ହୋଇ ଆସୁଥିଲେ । ମୋଗଲ ସାମ୍ରାଜ୍ୟ ମୃତପ୍ରାୟ । ଆଉ କୌଣସି କେନ୍ଦ୍ର ଶକ୍ତିନାହିଁ । ଫଳରେ ଭାରତୀୟ ସ୍ୱାଧୀନତା-ମଣି ଅପହୃତ ହେଲା । ତହୁଁ ଦୀର୍ଘ ଦୁଇଶତ ବର୍ଷ ବ୍ୟାପୀ ଦୁର୍ବଳତା, ଅନ୍ଧକାର, ଦାରିଦ୍ର୍ୟ । ପୁଣି ଭାରତ ଆଜି ପ୍ରବୁଦ୍ଧ । ଆଜି ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ଯେଉଁ ବିଶାଳ ଜୀବନ-ଶକ୍ତି ଫୁଟି ଉଠିଛି ତାହା କିଏ ଅସ୍ୱୀକାର କରିବ ? ଏହି ଶକ୍ତି ଆପାତତଃ ରାଜନୀତିକ ସଂଘର୍ଷଜନିତ ବୋଲି ଧରାଗଲେ ମଧ୍ୟ, ଏହାର ମୂଳ ଯଥାର୍ଥରେ ଅର୍ଥନୀତିଗତ । କେବଳ ରାଜନୀତିକ ସ୍ୱାଧୀନତା ପାଇବାରେ ଆମର ଅଭାବ ଘୁଞ୍ଚିବନାହିଁ । ଆର୍ଥିକ ସମୃଦ୍ଧି ତା ସଙ୍ଗେ ଧରିବାକୁ ହେବ । ଏକଥା ଆଜି ଆମର ନେତୃବର୍ଗ ପରିଷ୍କାର ବୁଝିଲେଣି । ନିଜ ନିଜର କର୍ମଯୋଜନା ସେହି ଦୃଷ୍ଟିରେ ଗଢିଲେଣି । ସାମ୍ରାଜ୍ୟବାଦର ଅପନୋଦନଠାରୁ ବଳି ଆଜି ଆମ ଦେଶର ଦୃଢ଼ ଦାବୀ

ହେଉଛି, ଧନର ଠିକ୍ ବଣ୍ଟନ, ଲୋକସମୂହରେ ଅଭାବ ଦୂରୀକରଣ, ବାଣିଜ୍ୟ ବ୍ୟବସାୟର ଉନ୍ନତି, କୁଟୀର ଶିଳ୍ପର ପୁନରୁଦ୍ଧାର ମୂଳ ବ୍ୟବସାୟ (Key Industries) ରେ ରାଷ୍ଟ୍ରର ଅଧିକାର ଦେଶର ଲୋକଙ୍କ ପାଇଁ ଜାତୀୟ ସମ୍ପଦର ବିନିଯୋଗ ସେହି ସମ୍ପଦ ବିଦେଶକୁ ନ ଯିବାର ଉପାୟ, ସେନା ବିଭାଗ ଓ ସାମ୍ରାଜ୍ୟ ନୌକାର ସାହୀ (Imperial services) ର ଅତ୍ୟଧିକ ଖର୍ଚ୍ଚର କାଟ, ଜାତୀୟ ସଙ୍ଗଠନ (National Planning) ବିହିତ ପ୍ରଜାତନ୍ତ୍ର ଓ ଶ୍ରମିକ ଆଇନ-ପ୍ରଣୟନ, ଆଧୁନିକ ବୈଜ୍ଞାନିକ ଆବିଷ୍କାରର ସୁଲଭ ସ୍ୱଚ୍ଛନ୍ଦ ବ୍ୟବହାର, ଜାତୀୟ ସ୍ୱାସ୍ଥ୍ୟର ଅଭିବୃଦ୍ଧି, ବିଦେଶରେ ଭାରତୀୟ କୁଲିଆଙ୍କ ଅବସ୍ଥାର ଉନ୍ନତି, ଅଧିକ ପୁଷ୍ଟିକର ଖାଦ୍ୟ, ଆରାମ, ପ୍ରାଥମିକ ଶିକ୍ଷା ଇତ୍ୟାଦି । କହିବା ଅନାବଶ୍ୟକ ଏହିସବୁ ଦାବୀ ଏକାନ୍ତ ଆର୍ଥନୀତିକ ।

ଏ ସବୁ ବୁଝିଲେ ଐତିହାସିକ ଧାରା ଅନେକ ପରିମାଣରେ ଅର୍ଥନୈତିକ ଗ୍ରନ୍ଥରେ ଢ଼ଳା ହୋଇଛି ବୋଲି ମାନିବାକୁ ହୁଏ । କିନ୍ତୁ ଏହି ଅର୍ଥନୀତିର ସୀମା ସ୍ଥିର କରିବା କର୍ତ୍ତବ୍ୟ । ଜଗତରେ ସବୁକଥାର ସୀମା ଅଛି । ବ୍ରହ୍ମ କେବଳ ଅସୀମ । ଜୀବନ ଗୋଟିଏ ପରସ୍ପର ସଂଲଗ୍ନ, ପରସ୍ପର ସମ୍ବନ୍ଧ, ଜଟିଳ କର୍ମ ସମବାୟ । ତହିଁରୁ ଅଂଶବିଶେଷ ଉପରେ ଅତି ଜୋର ଦେଇ ସମୁଦାୟ ପ୍ରତି ଦୃଷ୍ଟି ନ ରଖିଲେ, ଜୀବନର ମୂଳ ତାତ୍ପର୍ଯ୍ୟ ବୁଝାଯାଇପାରେ ନାହିଁ । ଜୀବନ କେବଳ ଅନ୍ନମୟ ନୁହେ, ଏକଥା ଅତି ସରଳ ହେଲେ ମଧ୍ୟ, ତହିଁର ନିହିତ ଚିରନ୍ତନ ସତ୍ୟ ପ୍ରତି ଆମେ ସର୍ବଦା ଅବହେଳିତ ହେଉନାହୁଁ । ଶରୀର ଜୀବନ-ପ୍ରକାଶର ନିମିତ୍ତ । ଏହା ବୋଲି ଜୀବନ କେବଳ ଶାରୀରିକତା ଜୀବନର ସମସ୍ତ ସମ୍ଭାବନା, ଶକ୍ତି, ଦୈବୀ ଉଦ୍ଦେଶ୍ୟକୁ ସାରିଦିଏ, ଏପରି ବୁଝିବା ଅନ୍ତର୍ଦୃଷ୍ଟି ନୁହେଁ । ଯଦି ଜୀବନ କେବଳ ମୁଦ୍ରା ବା ବସ୍ତୁ ସଂଗ୍ରହର ତାଲିକା, ତେବେ ସୃଷ୍ଟି ଆରମ୍ଭରୁ ଉପାର୍ଜିତ ମନୁଷ୍ୟର ଅମୂଲ୍ୟ ସମ୍ପଦ ସାହିତ୍ୟ, କଳା, ଦର୍ଶନ କେଉଁ ତୁଳରେ ତୁଳିବୁ, କେଉଁ ଦରରେ ମୂଲେଇବୁ ? ଶରୀର ଭୂତ-ଶାନ୍ତିର ସୃଷ୍ଟି ହେଲେ ହେଁ ଅଧିକ ମୂଲ୍ୟବାନ୍ ସୃଷ୍ଟି ହେଉଛି । ମନ ଓ ବିଜ୍ଞାନ ଜୀବନର ଭୌତିକ-ମାତ୍ର (material) ଦୃଷ୍ଟି ଏ ଯୁଗରେ ନୁହେ, ସବୁ ଯୁଗରେ କେତେକଙ୍କ ଦ୍ୱାରା ପ୍ରଚାରିତ ହୋଇଛି । ଏହି ଦୃଷ୍ଟିରୁ ହିଁ ପ୍ରବଳର ଦୁର୍ବଳ ଉପରେ ଅତ୍ୟାଚାର, ଜୀବନ-ସଂଗ୍ରାମର ବିଶ୍ଳେଷଣ ସମର୍ଥିତ ହୁଏ । କିନ୍ତୁ ମନୁଷ୍ୟ ଜୀବନ ସେତିକିରେ ସରୁଥିଲେ ତାହା ଅତି ଅସାର ହୋଇଥାନ୍ତା । ମନୁଷ୍ୟ ଜୀବନର ଆହୁରି ଭବ ଲକ୍ଷ୍ୟ ଅଛି ବୋଲି, ତାହା ମହତ୍ ଭୌତିକତାର ସଂଶୋଧନ, ପୃଥିବୀରେ ସ୍ୱର୍ଗରାଜ୍ୟ ଅବତାରଣା ପ୍ରଚେଷ୍ଟା ଆଧ୍ୟାତ୍ମର ନିଷ୍କାମ ସୌନ୍ଦର୍ଯ୍ୟ ଓ ଅଖଣ୍ଡ ଆନନ୍ଦ ଅନୁଭୂତିରେ ଭୌତିକତାର ପ୍ରୟୋଗ ହିଁ ମନୁଷ୍ୟ ଜୀବନର ପରମାର୍ଥ ।

ମନୁଷ୍ୟ କେବଳ ଗୋଟାଏ କିଂଭୂତ କିମାକାର, ଅନ୍ଧ, ଚେତନାଶୂନ୍ୟ । ଉଦ୍ଦେଶ୍ୟହୀନ ଭୌତିକତାର ବିକାଶ—ଏହି ଧାରଣା ହିଁ ଇତିହାସକୁ ଅର୍ଥନୀତି ପ୍ରକାଶ, ପରମ୍ପରାରେ ପରିଣତ କରେ । କିନ୍ତୁ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ମାନବୀୟ ଚିନ୍ତା ଆହୁରି ଭିତରକୁ ଯାଇ ସ୍ଥିର କରିଛି, କେବଳ ମନୁଷ୍ୟ କାହିଁକି, ସମସ୍ତ ଜୀବନର ମୂଳ ଭୌତିକ ନୁହେ ଆତ୍ମିକ ଦୃଶ୍ୟମାନ ସମସ୍ତ ଜଗତରେ ହିଁ ଆତ୍ମିକତାର ବିକାଶ । ଅନ୍ନମୟ ପିଣ୍ଡ କେବଳ ବାହ୍ୟତମ, ସ୍ଥୂଳତମ ଆବରଣ, ଭିତରକୁ କ୍ରମେ କ୍ରମେ ଅଧିକ ଶ୍ୱାଶତ ଓ ରସବନ୍ତ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ ସତ୍ତା ରହିଛି । ଏହି ମୂଳାଧାର ହେଉଛି ଆତ୍ମା । ଇତିହାସର ଆର୍ଥନୀତିକ ଆଲୋଚନା, ଜୀବନମାର୍ଗରେ ଅନେକ ଦୁଃଖର ନିବାରକ, ପ୍ରତିଷେଧକ ହୋଇପାରେ । କିନ୍ତୁ ତାହା ସବୁ ନୁହେଁ । ଅର୍ଥନୀତିପ୍ରଧାନ ଭିତ୍ତି ଉପରେ ପ୍ରତିଷ୍ଠିତ ଆଧୁନିକ ସୋଭିଏତ୍ ଋଷିଆ ଆମର ଆଜି ଉଦ୍ଦୀପନାର କ୍ଷେତ୍ର ହୋଇଛି । ଅତି ଅଳ୍ପ କାଳରେ ତାର ଜାତୀୟ ସମ୍ପଦ ଓ ଶକ୍ତିର ଅଭିବୃଦ୍ଧି ଆମକୁ ଅବାକ୍ କରୁଛି ସତ୍ୟ, କିନ୍ତୁ ସେଥି ସଙ୍ଗେ ତାହାର ନାସ୍ତିକତା ଧର୍ମ ଓ ଆଦର୍ଶର ଅବମାନନା, ନୂତନ ଧରଣର ଅସମାନତା (Inequality), ପୀଡ଼ା ଓ ଅତ୍ୟାଚାର, ବ୍ୟକ୍ତିଗତ ସ୍ୱାଧୀନତାରେ ବାଧା, ରାଜ୍ୟର ଅବିଚାର ଭବୁକମାନଙ୍କୁ ବ୍ୟଥିତ କରୁଅଛି । ଜଣେ ଅନୁଭବୀ କହିଛନ୍ତି—''ଋଷିଆର ନୂତନ ଆର୍ଥିକ ବିକାଶ ଜାତୀୟ ଉତ୍ପାଦନ ଶକ୍ତି ବଢ଼ାଇଛି ସତ୍ୟ, କିନ୍ତୁ ଏଥିରୁ କେବଳ ଉଚ୍ଚ ଶ୍ରେଣୀର ଲୋକେ ଲାଭ ପାଉଛନ୍ତି । ଆଖିକୁ ଝଲସାଉଥିବା ଉଆସ, ନାଟ୍ୟଶାଳା, ପକ୍କା ଘରମାନ ନିର୍ମାଣରେ ଅଜସ୍ର ଧନ ବ୍ୟୟିତ ହେଉଅଛି । ଅନ୍ୟତ୍ର ଶ୍ରମିକଙ୍କ ବାସ ପୂର୍ବପରି ରହିଅଛି । ବର୍ତ୍ତମାନ ଋଷିଆରେ ସାମ୍ୟନାହିଁ, ବୈଷମ୍ୟ ବଢ଼ିଛି । ରୁଷ ପ୍ରଣାଳୀରେ ଏହି ବୈଷମ୍ୟ ଦେଖାଯାଉଛି । ଏବେ ବୃହତ୍ ଭୂଖଣ୍ଡମାନ ବ୍ୟକ୍ତିବିଶେଷଙ୍କ ଦଖଲରେ ଅଛି । ବିଶେଷ ଜ୍ଞାନୀ, ବୈଜ୍ଞାନିକ, କର୍ମୀ ଓ ଶ୍ରମିକ ବିଶେଷଙ୍କୁ ବ୍ୟକ୍ତିଗତ ଧନ ଉପାର୍ଜନ ଓ ବୃଦ୍ଧିର କ୍ଷମତା ଦିଆଯାଉଛି । ଷ୍ଟାଲିନ୍ ଏସବୁ ଜାଣନ୍ତି । କିନ୍ତୁ ସେସବୁ ଦୂର କରିବାକୁ ଚେଷ୍ଟା କଲେ । ଦେଶ ମଧ୍ୟରେ ଯୁଦ୍ଧ (Civil war) ହେବାର ଆଶଙ୍କାରେ ନୀରବ ରହନ୍ତି ।

ସଂକ୍ଷେପରେ ଆମର ବିଶ୍ୱାସ, ପ୍ରାଚୀନ ହିନ୍ଦୁ ଚିନ୍ତା ଏହି ବୈଷମ୍ୟର ସୁନ୍ଦର ସମାଧାନ କରିଛି । ଇହ ଓ ପର, ଭୌତିକ ଓ ଆତ୍ମିକକୁ ମିଳାଇ ବର୍ଣ୍ଣାଶ୍ରମ ବିଭାଗରେ ନିର୍ଣ୍ଣୟ କରିଛି । ଆଜି ହିନ୍ଦୁ ସମାଜରେ ଯେତେ ପ୍ରକାର ବିଶୃଙ୍ଖଳା ଥାଉନା କାହିଁକି, ବର୍ଣ୍ଣାଶ୍ରମର ସାମାଜିକ ଶୃଙ୍ଖଳା ସଙ୍ଗେ ବ୍ୟକ୍ତିଗତ ଜୀବନର ସୁଖ ଶାନ୍ତି ବିଧାନ ପ୍ରତି କେବେ ଅବହେଳା ଦେଖାଇପାରିବୁ ନାହିଁ । ଭୌତିକ ସମ୍ପଦ

ଜୀବନ ଧାରଣ ଓ ଉନ୍ନତିର ସହାୟକ । ଯୋଗ୍ୟତା ଅନୁଯାୟୀ ବିଭିନ୍ନ ଶ୍ରେଣୀର ଲୋକେ ତାକୁ ଧର୍ମ ଓ ନ୍ୟାୟ ମାର୍ଗରେ ଉପାର୍ଜନ, ରକ୍ଷା ଓ ବ୍ୟବହାର କରିବେ, ସମାଜର ସକଳ ସ୍ତରର ଆବଶ୍ୟକତାନୁଯାୟୀ ଜ୍ଞାନର ଆଲୋକ ବିକିରଣ କରିବେ, ସତ୍ୟ-ଶିବ-ସୁନ୍ଦର ଅନୁସନ୍ଧାନରେ ସମସ୍ତଙ୍କୁ ପ୍ରବର୍ତ୍ତାଇବେ । ବାସ୍ତବିକ ବୁଭୁକ୍ଷୁ ଲୋକଙ୍କୁ ଆତ୍ମା-ରାଜ୍ୟର କଥା କହିବସିବା ନିଷ୍ଠୁର ଉପହାସ; କିନ୍ତୁ ଅନ୍ୟପକ୍ଷରେ ଭୌତିକ ସମ୍ପଦ ସବୁ ବୋଲି ବିଚାରି ଜୀବନର ଉଚ୍ଚ ପରିପୂର୍ଣ୍ଣ ଆଦର୍ଶ ପ୍ରତି ଅନ୍ଧ ହେବା ଆହୁରି ଅମାନୁଷିକ କାର୍ଯ୍ୟ । ନିମିତ୍ତ ଓ ଲକ୍ଷ୍ୟ ଉଭୟର ଆନୁପାତିକ ଅବବୋଧ ରଖି ଗୋଟିକୁ ଅନ୍ୟର ଉପଲବ୍ଧିରେ ଯଥାର୍ଥ ଲଗାଇବା ବିବେଚନାର ଲକ୍ଷଣ ।



# ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ ସକ୍ରେଟିସ୍

ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀ ସମୟକୁ ସେତେବେଳର ୟୁରୋପୀୟ ସଭ୍ୟତା ମଧ୍ୟରେ ଘୋର ଭାବ-ନୀତି ବିଶୃଙ୍ଖଳାରେ ପହଞ୍ଚିଥିଲା । ଉଗ୍ର, ନରମପନ୍ଥୀ ଓ ଉଗ୍ର ଚରମପନ୍ଥୀଙ୍କ ମଧ୍ୟରେ ସାମଞ୍ଜସ୍ୟ ଆଣି ପରମ ସତ୍ୟ ଓ କ୍ଷଣିକ ମିଥ୍ୟା ମଧ୍ୟରେ ପ୍ରଭେଦ ଦର୍ଶାଇ ସମସ୍ତଙ୍କୁ ଯଥାର୍ଥ ପଥ ଓ ଠିକ୍ ଅନୁପାତର ନିର୍ଦ୍ଦେଶ ଦେବା ନିମନ୍ତେ ସେତେବେଳର ଜଣେ ଜ୍ଞାନ ଗରିଷ୍ଠ ବ୍ୟକ୍ତିର ଆବଶ୍ୟକ ପଡ଼ିଲା । ଧର୍ମର ଗ୍ଳାନି ହେଲେ ତାର ସଂସ୍ଥାପନା ପାଇଁ ଯୁଗେ ଯୁଗେ ମହାପୁରୁଷଙ୍କର ଆବିର୍ଭାବ ହୁଏ । ଏହି ଗୀତାବାଣୀ କେବେ ମିଥ୍ୟା ହେବାର ନୁହେ । ଏହି ଶାଶ୍ୱତ ସୃଷ୍ଟି ନିୟମ କ୍ରମେ ଠିକ୍ ଯେତିକିବେଳେ ଦେଖାଦେଲେ ଯୋଗଜନ୍ମା ଯୁଗ ପ୍ରବର୍ତ୍ତକ ବିରାଟ ଦୃଷ୍ଟିସମ୍ପନ୍ନ ସକ୍ରେଟିସ୍ । ତାଙ୍କର ଚିନ୍ତାଧାରା ଦୀର୍ଘ ଦୁଇ ସହସ୍ର ବର୍ଷ ଧରି ୟୁରୋପୀୟ ସଭ୍ୟତାକୁ ଗଢ଼ି ଆସିଅଛି । ଏବେ ମଧ୍ୟ ତାଙ୍କ ଆଦର୍ଶ ସେହି ସଭ୍ୟତା ତନ୍ତ୍ରରେ ପରିସ୍ଫୁଟ । ଗ୍ରୀକ୍ ଦର୍ଶନ ୟୁରୋପୀୟ ସଭ୍ୟତାର ଭିତ୍ତି, ସକ୍ରେଟିସ୍ ସେହି ଦର୍ଶନର ପ୍ରତିଷ୍ଠାତା । ଏ ଦୃଷ୍ଟିରେ ତାଙ୍କୁ ପାଶ୍ଚାତ୍ୟ ଦର୍ଶନର ମୂଳପିଣ୍ଡ କହିଲେ ଅତିରଞ୍ଜନ ହେବନାହିଁ ।

ଅଧିକାଂଶ ପ୍ରାଚୀନ ମହାପୁରୁଷଙ୍କ ଜୀବନୀ ପରି ସକ୍ରେଟିସ୍‌ଙ୍କ ବ୍ୟକ୍ତିଗତ ଜୀବନର ଘଟଣା ସମ୍ବନ୍ଧରେ ବେଶିକିଛି ଜଣାଯାଇନାହିଁ । ସେ ଏଥେନ୍ସ ନଗରୀରେ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ଶେଷଆଡକୁ ନିର୍ଦ୍ଧନ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜନକ ଥିଲେ କାରିଗର ଓ ଜନନୀ ଧାତ୍ରୀ । ପ୍ରତିଭା ବିକାଶ କୁଳ ବା ଧନସମ୍ପଦକୁ ଅପେକ୍ଷା କରେ ନାହିଁ । ବାସ୍ତବିକ ଅଭାବର କଷାଘାତ ତାକୁ ସୁଯୋଗ ଦିଏ, ଯେପରି ଉଚ୍ଚ ସ୍ଥିତିର ଅହମିକା ତାକୁ ଅନେକ ସମୟରେ ଦବାଇ ଦିଏ । ସେଥିପାଇଁ ପର କବି ଗାଇଛନ୍ତି, ପ୍ରତିକୂଳତାର ସଦ୍‌ବ୍ୟବହାର ଉତ୍କର୍ଷ ସାଧକ । ସକ୍ରେଟିସ୍‌ଙ୍କ ବାଲ୍ୟଶିକ୍ଷା କିପରି ହେଲା ଜଣାନାହିଁ; କିନ୍ତୁ ଧରାବନ୍ଧା ଶିକ୍ଷା ପ୍ରଣାଳୀ ପ୍ରତିଭା ବିକାଶରେ ସେତେ ପ୍ରୟୋଜନ ନାହିଁ । ପ୍ରକୃତ ଶିକ୍ଷାର୍ଥୀ ପକ୍ଷରେ ଜୀବନ ଗୁରୁ; ବିଶାଳ ଜଗତ ଉନ୍ମୁକ୍ତ ପୁସ୍ତକ । ଏ ସ୍ଥିତିରେ ସେତେବେଳେ ସଂସ୍କୃତିର ପ୍ରତିଷ୍ଠିତ କେନ୍ଦ୍ର ଏଥେନ୍‌ସରେ ସକ୍ରେଟିସଙ୍କ ବୁଦ୍ଧିବୃତ୍ତି ସ୍ଫୁରଣର ସହାୟକ ଶିକ୍ଷାର ଅନେକ ସୁଯୋଗ ମିଳିଥିବ । ଯଥାକାଳରେ ସକ୍ରେଟିସ୍ ପୈତୃକ

ବୃତ୍ତି କାରିଗରୀରେ ନିଜକୁ ଲଗାଇଲେ; କିନ୍ତୁ ତାଙ୍କର ପରମ ପୁରୁଷାର୍ଥ ସାଧନ କରିବାରେ ତାହା ଅତି ସଙ୍କୀର୍ଣ୍ଣ ପରିସର ହେଲା । ତାକୁ କେବଳ ଜୀବନ-ନିର୍ବାହର ଆଶ୍ରା କରି ସକ୍ରେଟିସ୍ ନିଜର ଅଖଣ୍ଡ ସତ୍ୟ ସାଧନ ଓ ଆତ୍ମବିଶ୍ଳେଷଣ ଆରମ୍ଭ କଲେ । ମନସ୍ୱୀ କ୍ରିୟାବାନ୍ ମାନବ ଏହିପରି ତାର ଭାଗ୍ୟ ଗଢ଼େ, ଭାଗ୍ୟ ତାକୁ ଗଢ଼ିପାରେ ନାହିଁ । ତାଙ୍କ ସାଧନାର ଆଗାର ହେଲା ବାସ୍ତବ ଦୈନନ୍ଦିନ ବିଚିତ୍ର ଜୀବନ, ସମର, ରାଜନୀତି, ବିବାହ, ମୈତ୍ରୀ, ପ୍ରେମ, ଗୃହରକ୍ଷା, ଶିଳ୍ପ, ବାଣିଜ୍ୟ, କବିତା, ବିଜ୍ଞାନ, ନୀତି । ବାସ୍ତବିକ ଜୀବନର ଏପରି କୌଣସି ବିଭାଗ ନଥିଲା ଯାହା ସେ ନିଜ ଆଲୋଚନାରେ ଆଣି ନଥିଲେ । ସକ୍ରେଟିସ୍ ବିବିକ୍ତ ଜୀବନର ନିଃସଙ୍ଗ ନିଃଶବ୍ଦତାରେ ତତ୍ତ୍ୱ ଖୋଜି ନଥିଲେ; କୋଳାହଳମୟ ଆବେଗ ଉଚ୍ଛ୍ୱାସପୂର୍ଣ୍ଣ ଦାଣ୍ଡ, ହାଟ, ବଜାର, ଯାନିଯାତ୍ରାର ଲୋକ ଗହଳରେ ନିବିଡ ଆନ୍ତରିକତା ନିର୍ଭର ପ୍ରାକୃତ କଥାବାର୍ତ୍ତାରେ ସେ ତାହା ଅନୁସନ୍ଧାନ କରିଥିଲେ । ମାନବିକତାର କୌଣସି ଅଂଶ ତାଙ୍କର ଅସ୍ପୃହଣୀୟ ନଥିଲା । ତାଙ୍କରି ଚିନ୍ତା ଥିଲା ଅତି ସୂକ୍ଷ୍ମ, ଉର୍ଦ୍ଧ୍ୱସ୍ଥଳା । ନ୍ୟାୟ ବାଦାନୁବାଦରେ ଦୋଷ ବାଛି ତଥ୍ୟ ଦେଖାଇବାରେ ତାଙ୍କ ପରି ଆଉ କେହି ନଥିଲେ । ତାଙ୍କର ସ୍ୱଭବ ଦୟାର୍ଦ୍ର, ଧୀର ଓ ମୃଦୁହାସ୍ୟଯୁକ୍ତ ଥିଲା; କିନ୍ତୁ ସେ ସମୟର ଉଚ୍ଚ ଚିନ୍ତା ବ୍ୟାଜରେ ପରିବ୍ୟାପ୍ତ ଶଠତା ମୂର୍ଖତା—ବୁଦ୍‌ବୁଦ୍‌ଗୁଡ଼ିକୁ ଉଦ୍ଭେଦ କରିବାରେ ସେ ନିର୍ମମ ଥିଲେ । ସକ୍ରେଟିସ୍ ବାକ୍ୟବୀର ନଥିଲେ, କର୍ମବୀର ଥିଲେ । ତାଙ୍କର ନିଷ୍କପଟ ସାଧୁତା, ନିଃସ୍ୱାର୍ଥ ସଂଯମ, ଉଦାର ସହନଶୀଳତା, ତ୍ୟାଗପୂତ ଜୀବନ ଅନନ୍ୟସାଧାରଣ ଥିଲା । ଦୀର୍ଘ ସତୁରୀ ବର୍ଷ ବ୍ୟାପୀ ଜୀବନକାଳରେ ସେ ଶାରୀରିକ ଓ ନୈତିକ ସାହସର ଉତ୍କୃଷ୍ଟ ପରିଚୟ ଦେଇଥିଲେ । ରଣ କ୍ଷେତ୍ରରେ ଯେପରି, ମରଣରେ ମଧ୍ୟ ସେହିପରି ଅବିଚଳିତ ସାହସ ଓ କଠୋର ପ୍ରତିଜ୍ଞା ଦେଖାଇଥିଲେ । ଯାହା ସତ୍ୟ ବୋଲି ଭାବୁଥିଲେ, ଅନ୍ୟର କ୍ରୋଧ ବା ଅନୁକମ୍ପା ପ୍ରତି ଦୃଷ୍ଟି ନ ରଖି ସେ ତାହା କରିଯାଉଥିଲେ । କାହାରି ପ୍ରତି ହିଂସା ନ ରଖି ସମସ୍ତଙ୍କୁ ସଦ୍‌ଭାବରେ ବାନ୍ଧି ସେ ଯେପରି ଭୀଷଣ ମରଣକୁ ଶାନ୍ତ ସଂଯମ ଭାବରେ ବରଣ କରିଥିଲେ, ତାହା ସମସ୍ତ ଜଗତ୍-ଇତିହାସରେ ଚିରକାଳ ଉଦ୍ଦୀପନାର ଗୋଟିଏ ଅତୁଳନୀୟ ଉପାଦାନ ହୋଇ ରହିବ । ନାସ୍ତିକବାଦ ପ୍ରଚାର କରି ଦେଶର ତରୁଣଙ୍କୁ ବିପଥଗାମୀ କରୁଛନ୍ତି ବୋଲି ମିଥ୍ୟା ଦୋଷରେ ନିଜ ଦେଶବାସୀଙ୍କ ଦ୍ୱାରା ପ୍ରାଣଦଣ୍ଡରେ ସେ ଦଣ୍ଡିତ ହେଲେ । ସବୁକାଳେ ନୂତନ ପନ୍ଥା ଦର୍ଶକ ମହାନ୍ ପୁରୁଷଙ୍କର ସଙ୍କୀର୍ଣ୍ଣ ରକ୍ଷଣଶୀଳ ମୂର୍ଖଜନତାର ହାତରେ ଏହି ଦଶା ହୁଏ । ମହାଧର୍ମ—ସଂସ୍ଥାପକ ଯିଶୁ ଦିନେ କ୍ରୁଶବିଦ୍ଧ ହୋଇଥିଲେ; ବୈଜ୍ଞାନିକ ଗାଲିଲିଓ, ସଂସ୍କାରକ ଟିଣ୍ଡେଲ୍ କାରାଗାରରେ ଅଶେଷ ଯନ୍ତ୍ରଣା ଅନୁଭବ କରିଥିଲେ । ଦାର୍ଶନିକ ସ୍ପିନୋଜା, ରୁଷ ବିପ୍ଳବଶେଖର ଟ୍ରଟସ୍କି ରାଜ୍ୟରୁ ବିତାଡ଼ିତ ହୋଇଥିଲେ; ପୁଣି ଏବେ ବିଖ୍ୟାତ

ଗାଣିତିକ ଆଇନ୍‌ଷ୍ଟାଇନ୍‌ ପ୍ରିୟ ମାତୃଭୂମିରୁ ନିର୍ବାସିତ । ସକ୍ରେଟିସ୍‌ଙ୍କୁ ରକ୍ଷା କରିବା ପାଇଁ ତାଙ୍କର ବନ୍ଧୁ କେତେଜଣ ଲୁଚି ପଳାଇବାର ସୁବିଧା କରି ତାଙ୍କୁ କହିବାରୁ ସେ ସ୍ମିତ ମୁଖରେ କହିଥିଲେ, "ମୁଁ ମୋର ଜୀବନରେ ରାଜ୍ୟ ଓ ତାର ଶୃଙ୍ଖଳା ପ୍ରତି କେବେ ଅଭକ୍ତି ଦେଖାଇ ନାହିଁ । ପୁଣି ସେପରି ନ କରିବାକୁ ସମସ୍ତଙ୍କୁ ପ୍ରବର୍ତ୍ତାଇଛି । ଏବେ ଏ ବୟସରେ ଛାର ପ୍ରାଣ ଲାଗି ଏପରି ଭୀରୁ କାପୁରୁଷର କାର୍ଯ୍ୟ କରିପାରିବି ନାହିଁ ।'' ବିଷପାତ୍ର ଆସିଲା, ନିଷ୍କମ୍ପ ହସ୍ତରେ ତାକୁ ଧାରଣ କରି ନିଜ ଦଣ୍ଡବିଧାନକାରୀଙ୍କୁ ଲକ୍ଷ୍ୟ କରି ସକ୍ରେଟିସ୍‌ କହିଲେ, ''ଆପଣମାନେ ମୋତେ ଏହି ଅନୁଗ୍ରହ କରନ୍ତୁ, ଭବିଷ୍ୟତରେ ମୋର ବଂଶଧରମାନେ ଯେତେବେଳେ ପାରିବେ ସେମାନେ ଯଦି ଭଲକୁ ଛାଡି ଭେଳକୁ ଧରନ୍ତି, ସଦ୍‌ଗୁଣ ଛାଡି ଧନ ଓ ଅଧର୍ମରେ ଆସକ୍ତ ହୁଅନ୍ତି, ଅପାର୍ଥିବ ବସ୍ତୁରେ ଅତି ଯତ୍ନଶୀଳ ଭଣ୍ଡ ହୁଅନ୍ତି, ତେବେ ନ୍ୟାୟାବତାର ତାଙ୍କୁ ଦଣ୍ଡ ଦେବେ, ଉଚିତ ମାର୍ଗ ବତାଇବେ ।'' ବିଷପାନ ହେଲା । ଜଣେ ମହାପୁରୁଷଙ୍କ ଜୀବନ-ନାଟିକାରେ ଯବନିକାପାତ ହେଲା; କିନ୍ତୁ ତାଙ୍କ ଆଲୋକିତ ଜ୍ଞାନ-ବର୍ତ୍ତିକା ଏବେ ମଧ୍ୟ ଜଳୁଛି ।

ସକ୍ରେଟିସ ଦେଖିବାକୁ ସୁନ୍ଦର ନଥିଲେ । ତାଙ୍କର ସ୍ଥୂଳ ଖର୍ବକାୟ, ନିଷ୍ପ୍ରଭ ଚକ୍ଷୁ, ଚେପଟା ନାସିକା, ବୃହତ୍‌ ପାଟି, ବହଳ ଓଷ୍ଠ, ଅଯତ୍ନ-ବିନ୍ୟସ୍ତବେଶ-ପରିପାଟୀ ତରୁଣ ସଙ୍ଘର ହାସ୍ୟ କୌତୁକର ଉପାଦାନ ଥିବା ଜଣାଯାଏ; କିନ୍ତୁ ଥରେ କେହି ତାଙ୍କ ମଧୁର ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଆସିଲେ, ଥରେ ତାଙ୍କର ଚମତ୍କାର ଆଳାପ ଆରମ୍ଭ ହେଲେ, ରୂପର ଏ ବୈକଲ୍ୟ କାହିଁ ଲୁଚିଯାଏ, ଅନ୍ତରତମ ମାନବ ବିକଶିତ ହୋଇଉଠେ ।

ଏ ଗଳ୍ପ ତାଙ୍କ ଜୀବନ ଘଟଣାର କ୍ଷୀଣ ପରିଚୟ । ବର୍ତ୍ତମାନ ତାଙ୍କ ଦର୍ଶନ ସମ୍ବନ୍ଧରେ ସଂକ୍ଷିପ୍ତ ଆଲୋଚନା କରାଯାଉ । ସୋଫିଷ୍ଟ ଦଳ ତାଙ୍କ ସମୟର ଠିକ୍‌ ପୂର୍ବର ଜ୍ଞାନର ଭିତ୍ତି ଚୂର୍ଣ୍ଣ କରି ନୀତି ଓ ରାଜ୍ୟ-ଚାଳନାରେ ଯେଉଁ ଭୟଙ୍କର ବିଶୃଙ୍ଖଳା ଜନ୍ମାଇ ଅହଙ୍କାର-ପତାକା ଉଡ଼ାଉଥିଲେ, ସକ୍ରେଟିସ୍‌ ତାହାର ଗତିରୋଧ କରିବା ନିଜର ପ୍ରଥମ କର୍ତ୍ତବ୍ୟ ମନେ କଲେ । ତାଙ୍କ ପକ୍ଷରେ ଦାର୍ଶନିକ ଚିନ୍ତା କେବଳ ଶୂନ୍ୟ କଳ୍ପନାବିଳାସ ନଥିଲା; ତାର ସାମାଜିକ ଓ ସଙ୍ଘ କାର୍ଯ୍ୟକାରିତା ସମ୍ବନ୍ଧରେ ସେ ଦୃଢ଼ ସଂକଳ୍ପ ଥିଲେ । ଅବିଶ୍ୱାସ ଯଦି ଜୀବନର ଶେଷକଥା ହୁଏ, ଶୂନ୍ୟବାଦ ଆପେ ଆପେ ପ୍ରତିଷ୍ଠିତ ହେବ । ସତ୍ୟାସତ୍ୟ, ହିତାହିତ, ଧର୍ମାଧର୍ମ ବିଚାର ଆଉ ରହିବ ନାହିଁ । ଏ ଅବିଶ୍ୱାସ ଢେଉ ରୋକିବାକୁ ହେଲେ ସତ୍ୟର ସ୍ୱରୂପ ଅନୁସନ୍ଧାନ କରିବାକୁ ପଡ଼ିବ; ଜ୍ଞାନ କୁଞ୍ଚିକା ହିଁ ଅନ୍ତର୍ନିହିତ ତତ୍ତ୍ୱ ମୁକ୍ତ କରିବ । ଏ ଭାବନାରେ ପ୍ରଦୀପ୍ତ ହୋଇ ମାନବୀୟ ଚିନ୍ତାର ସମ୍ୟକ୍‌ ଉପଯୋଗିତା ଉପରେ ଦୃଢ଼

ଆସ୍ଥା ରଖି ମହାମନା ସକ୍ରେଟିସ୍ ନିଜ ଯୁଗର ବିଭିନ୍ନ ସମସ୍ୟାମାନଙ୍କର ସନ୍ତୋଷ ଜନକ ସମାଧାନ ନିମନ୍ତେ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । କୌଣସି ବିଶିଷ୍ଟ ଦର୍ଶନ ପ୍ରଣାଳୀ ଯଥାଯଥ ସନ୍ନିବେଶ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା; କେବଳ ସର୍ବସାଧାରଣଙ୍କ ମନରେ ସତ୍ୟ ଓ ନୀତି ପ୍ରତି ଗଭୀର ଆଗ୍ରହ ଜନ୍ମାଇ ସେମାନଙ୍କୁ ସତ୍ ଜୀବନପାଇଁ ଚିନ୍ତାରେ ପ୍ରବର୍ତ୍ତନା ଦେବା ତାଙ୍କର ଏକାନ୍ତ କାମ୍ୟଥିଲା । ଧାରାବାହିକ ଯଥାକ୍ରମ (Methodology) ଅପେକ୍ଷା ଜ୍ଞାନ-ଅର୍ଜନର ଅଦମ୍ୟ ପିପାସା ଜାଗୃତି ଉପରେ ତାଙ୍କର ଦୃଷ୍ଟି ନିବଦ୍ଧ ଥିଲା । ସଂକ୍ଷେପରେ ତାଙ୍କର ନିୟୋଜନା ଅତୀନ୍ଦ୍ରିୟ ଦିବାସ୍ୱପ୍ନ ନ ହୋଇ କ୍ରିୟାମୂଳକ ଥିଲା । ସେ ନିୟୋଜନାର ନିଜେ ସେ ସଶରୀର ଅବତାର ହୋଇ ଅନ୍ୟମାନଙ୍କୁ ତାହା ଅନୁସରଣ କରିବା ନିମନ୍ତେ ଦୀପ୍ତ ଚେତନା ଦେଇଥିଲେ, ପନ୍ଥା ଫିଟାଇଥିଲେ ।

ସେ କହିଥିଲେ ସତ୍ୟ ଉପଲବ୍ଧି କରିବାକୁ ହେଲେ ଅସଂଲଗ୍ନ, ବିଶୃଙ୍ଖଳ ଅନିର୍ଦ୍ଦିଷ୍ଟ, ଶୂନ୍ୟ ମନୋବୃତ୍ତିଗୁଡିକରେ ଚିନ୍ତାଶକ୍ତିକୁ ଭାରାକ୍ରାନ୍ତ କରିବା ଅନୁଚିତ । ମନୁଷ୍ୟର ମନୋରାଜ୍ୟ ଅଧିକାଂଶତଃ କୁସଂସ୍କାର, ଅସମୀଚୀନ ମତ, ଅପରୀକ୍ଷିତ ଅନ୍ଧବିଶ୍ୱାସ ଓ ଜଟିଳ ଅର୍ଥଶୂନ୍ୟ ପ୍ରହେଳିକାରେ ଆବୃତ ରହେ । ବାସ୍ତବିକତାରେ ଚିନ୍ତା ସୌଧ ଏହି ବାଲୁକାମୟ ଭିତ୍ତି ଉପରେ ନିର୍ମିତ ହୋଇ ବିରୁଦ୍ଧ ମତର ପ୍ରଥମ ତୋଫାନ ପ୍ରବାହରେ ଧୂଳିସାତ୍ ହୁଏ । ଆମର କର୍ତ୍ତବ୍ୟ ପ୍ରଥମେ ଆମର ମାନସିକ ଭାବଗୁଡ଼ିକ ତନ୍ନତନ୍ନ କରି ପରୀକ୍ଷା କରିବା, ସେଗୁଡ଼ିକର ପ୍ରକାଶର ଭାଷାର ପ୍ରକୃତ ଅର୍ଥବୋଧ କରିବା, ଏ ଉଭୟ ମଧ୍ୟରେ ନିହିତ ସମ୍ବନ୍ଧ ସ୍ଥିର କରିବା, ନିର୍ଦ୍ଦେଶକାରକ ଲକ୍ଷଣସୂଚକ ଶବ୍ଦ ସଂଯୋଜନାରେ ନିର୍ଦ୍ଧାରିତ ଚୂଡାନ୍ତର ସିଦ୍ଧାନ୍ତରେ ଉପନୀତହେବା । ଅନ୍ୟର ମତାମତଗୁଡ଼ିକର କାରଣ ଅନୁସନ୍ଧାନ କରି ଠିକ୍ ମୂଲ୍ୟନିର୍ଦ୍ଦେଶ କରିବା ଓ ବାସ୍ତବ ଜୀବନ ପୀଠ ଉପରେ ସେଗୁଡ଼ିକର ସଂଶୋଧନ ସମ୍ମାର୍ଜନ କରିବା । ସଂକ୍ଷେପରେ ମନୁଷ୍ୟତା ଠିକ୍ ବିଚାରରେ ଜଣାଯାଏ, ଅନୁମାନରେ ନୁହେଁ ।

ସୋଫିଷ୍ଟ କହେ ବିଶ୍ୱ ସତ୍ୟ, ମୌଳିକ ଜ୍ଞାନ ବୋଲି କିଛି ନାହିଁ । ବିଭିନ୍ନ ଲୋକ ବିଭିନ୍ନ ମତ ପୋଷଣ କରନ୍ତି; ମତ ମତ ମଧ୍ୟରେ ସଂଘର୍ଷ ହୁଏ; ଉଭୟ ମତର ସତ୍ୟତା ଅଛି । ସକ୍ରେଟିସ୍ ବାଦ କହେ, ନା, ଏ ଭ୍ରମାତ୍ମକ ଧାରଣା । ବିଚାରରେ ଭିନ୍ନତା ଦେଖାଯାଏ ସତ୍ୟ; କିନ୍ତୁ ଏ ମତ ସଂଘର୍ଷ ଭିତରେ ସାମଞ୍ଜସ୍ୟ, ସମନ୍ୱୟ, ଏକୀକରଣର ଯେଉଁ ସାମଗ୍ରୀଟିକ ଥାଏ, ତାକୁ ଖୋଜି ବାହାର କରିବା ଆମର କର୍ତ୍ତବ୍ୟ । ଏହି ସାମଗ୍ରୀଟିକୁ ସମସ୍ତେ ମାନନ୍ତି ଓ ଏହି ସାମଗ୍ରୀହିଁ ବିଶ୍ୱବ୍ୟାପକ ସୁବିବେଚନା (universal judgement)ର ଭିତ୍ତି ହୁଏ । ସକ୍ରେଟିସ୍ ଏହି ରୀତି ତାଙ୍କର ସବୁ ବାଦାନୁବାଦ, ତର୍କବିତର୍କରେ ଅତି ବୁଦ୍ଧିମାନ ଭାବରେ ପ୍ରୟୋଗ କରି

ବିଶ୍ୱବ୍ୟାପକ ପ୍ରାଥମିକ ସତ୍ୟ ସ୍ଥିର କରି ବାସ୍ତବ ଘଟଣାକୁ ତହିଁର ସଂଶ୍ଳେଷଣରେ ବୁଝିବାକୁ ଶିଖାଉଥିଲେ । ଏହାହିଁ ପରବର୍ତ୍ତୀ କାଳରେ ପାଶ୍ଚାତ୍ୟ ଦର୍ଶନରେ ସତ୍ୟ ପରୀକ୍ଷାର ଗୋଟିଏ ମୁଖ୍ୟତମ ପନ୍ଥା (Solartic Method) ରୂପେ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ସକ୍ରେଟିସ୍ ଯେତେବେଳେ ତର୍କ ଆରମ୍ଭ କରନ୍ତି, ପ୍ରତିପକ୍ଷଠାରୁ ସେ ଊଣା ଜାଣନ୍ତି ଓ ତାଙ୍କଠାରୁ କିଛି ଶିଖିବାକୁ ଆସିଛନ୍ତି, ଏହି ଅଭିପ୍ରାୟ ଦେଖାନ୍ତି । ତାଙ୍କର ଏ ଶ୍ଳେଷାତ୍ମକ ପନ୍ଥା (Solartic Irony)ର ଉପାଦେୟତା ଦର୍ଶନ ପୃଷ୍ଠାରେ ପ୍ରସିଦ୍ଧ । କିପରି ଅଜ୍ଞାତ ଭାବରେ ସେ ପ୍ରତିପକ୍ଷଙ୍କୁ ପରସ୍ପର ବିରୁଦ୍ଧ ମତ ସମ୍ପୃକ୍ତ କରିଦେଇ ନିଜର ଅକ୍ଷୁଣ୍ଣ ଅଭ୍ରାନ୍ତ ମତ ଆଡ଼କୁ ଟାଣି ଆଣନ୍ତି, ତାହା ନ୍ୟାୟ-ଭଙ୍ଗୀ ଇତିହାସରେ ଚିର ସ୍ମରଣୀୟ ହୋଇ ରହିବ; କିନ୍ତୁ ଏ ଆକର୍ଷଣର ଅଯୌକ୍ତିକ ବାଧ୍ୟତାର ଗନ୍ଧ ନ ଥାଏ । ବିରୁଦ୍ଧ ମତର ଟୋଟି ଚିପିଦେବା ତାଙ୍କର ଉଦ୍ୟମ ନଥିଲା; ବିରୁଦ୍ଧବାଦୀଙ୍କ ମନରେ ସ୍ୱାଧୀନ ନିର୍ଭୀକ ନିରପେକ୍ଷ ଚିନ୍ତା ଫୁଟାଇବା ତାଙ୍କ ଲକ୍ଷ୍ୟ ଥିଲା । ସେ ବାସ୍ତବ ପ୍ରକୃତିରୁ ସହସ୍ର ସହସ୍ର ଘଟଣା ଆଣି ପ୍ରତିପକ୍ଷଙ୍କ ଆଗରେ ଥୋଉଥିଲେ । ସେଗୁଡ଼ିକୁ ବୋଧକରି ନିଜ ଭ୍ରାନ୍ତ ମତର ଯଥାସମ୍ଭବ ସଂଶୋଧନ ସେମାନଙ୍କ ଦ୍ୱାରାହିଁ କରାଉଥିଲେ । ତାଙ୍କୁ ଗୂଢ଼ ବାକ୍ୟ ଜାଲରେ ବିସ୍ମୟା-ଭିଭୂତ ଅବାକ୍ କରିଦେବାକୁ ସେ ଚାହିଁନଥିଲେ । ଶେଷରେ ପ୍ରତିପକ୍ଷ ନିଜ ଅସଂଯତ, କିଂଭୂତକିମାକାର ଭାବ-ନିଚୟସମ୍ଭୂତ ମାର୍ଜିତ, ରୁଚିକର, ସ୍ପଷ୍ଟ, ସଂହତ ପ୍ରତିକୃତି ଦେଖି ନିଜେ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ ଓ ସକ୍ରେଟିସ୍‌ଙ୍କ ଆଲୌକିକ ପ୍ରତିଭା ଅସଙ୍କୋଚରେ ମାନି ଉପକୃତ ହେଉଥିଲେ । ବାସ୍ତବିକ ଏ କ୍ରିୟାରେ ସକ୍ରେଟିସ୍ ପୈତୃକ ବୃତ୍ତି କାରିଗରୀରୁ ସଞ୍ଚିତ ଅନୁଭୂତି କମ୍ ଲଗାନ୍ତି ନାହିଁ । ବିବେକୀ ପକ୍ଷରେ ଜୀବନର ସାମାନ୍ୟ କଥାଟି ମଧ୍ୟ ଠିକ୍ ବ୍ୟବହୃତ ହୁଏ ।

ସକ୍ରେଟିସ୍‌ଙ୍କ ବାଦାନୁବାଦର ଏ ଅପୂର୍ବଭଙ୍ଗୀ ସମ୍ବନ୍ଧରେ କେତୋଟି କୌତୁହଳୋଦ୍ଦୀପକ ଶିକ୍ଷଣୀୟ ଦୃଷ୍ଟାନ୍ତ ପ୍ରସିଦ୍ଧ ଗ୍ରୀକ୍ ଐତିହାସିକ ଓ ପରିବ୍ରାଜକ ଜେନୋଫୋନ (Xenophon) ତାଙ୍କର ବିଖ୍ୟାତ "ମେମୋରବିଲିଆ" (Memorabilia) ଗ୍ରନ୍ଥରେ ଦେଇଛନ୍ତି । ଥରେ ୟୁଥିଡ଼ିମସ୍ ନାମକ ଜଣେ ଯୁବକ ବଡ ରାଜନୀତିଜ୍ଞ ଓ ଶାସକ ହେବାର ପ୍ରବଳ ଆସକ୍ତି ସକ୍ରେଟିସ୍‌ଙ୍କ ଆଗରେ ପ୍ରକାଶ କଲେ; କିନ୍ତୁ ସକ୍ରେଟିସ୍ ଜାଣିଥିଲେ, ସେ ଦିଗରେ ଯୁବକର ସାଧନା ଓ ଯୋଗ୍ୟତା ଅତିକମ । କିପରି କୌଶଳରେ ତାଙ୍କୁ ନିଜର ଅଯୋଗ୍ୟତା ନିଜେ ମନେଇଥିଲେ, ତାହା ଉଭୟଙ୍କ କଥୋପକଥନରୁ ଜଣାଯିବ ।

ସକ୍ରେଟିସ୍—ଶାସକ ଓ ରାଜନୀତିଜ୍ଞ ନ୍ୟାୟବାନ୍ ହେବେ, ଏହା ସ୍ୱତଃସିଦ୍ଧ । ତୁମେ ନିଶ୍ଚୟ ନ୍ୟାୟବାନ୍ ।

ୟୁଥିଡ଼ିମସ୍—ହଁ, ସେଥିରେ ସନ୍ଦେହ କଣ ?

ସକ୍ରେଟିସ୍—ଆଚ୍ଛା କେଉଁ କାର୍ଯ୍ୟ ନ୍ୟାୟ ତା ତ ତୁମେ ବେଶ ଅବଗତ ଥିବ ?

ୟୁଥିଡିମସ୍—ନିଶ୍ଚୟ ନ୍ୟାୟ ଓ ଅନ୍ୟାୟ ମଧ୍ୟରେ ପ୍ରଭେଦ ମୁଁ ଭଲରୂପେ ଜାଣେ ।

ସକ୍ରେଟିସ୍—ଆଚ୍ଛା, ମନେକର ବର୍ତ୍ତମାନ ଆମେ ଏଠାରେ ଦୁଇପ୍ରସ୍ଥ କରି ନ୍ୟାୟାନୁମୋଦିତ କାର୍ଯ୍ୟ ଯଥାକ୍ରମେ ଲେଖିବା ।

ୟୁଥିଡ଼ିମସ୍—ତାହାହିଁ ହେଉ ।

ସକ୍ରେଟିସ୍—ହଁ ଏଇ ଲେଖିଲି; ମିଥ୍ୟା କେଉଁ ପ୍ରସ୍ଥରେ ଲେଖିବି ?

ୟୁଥିଡ଼ିମସ୍—ଏ କଣ ! ଏଥିରେ ସଂଶୟ ଅଛି ? ନିଶ୍ଚୟ ଅନ୍ୟାୟ କୋଟୀରେ ଲେଖାଯିବ ।

ସକ୍ରେଟିସ୍—ବେଶ୍ ଶଠତା ?

ୟୁଥିଡ଼ିମସ୍—ସେଥିରେ ହିଁ ।

ସକ୍ରେଟିସ୍—ପୁଣି ଚୋରି ?

ୟୁଥିଡ଼ିମସ୍—ସେଇ ବିଭଗରେ ।

ସକ୍ରେଟିସ୍—ଦାସ ପ୍ରଥା ?

ୟୁଥିଡ଼ିମସ୍—ତହିଁରେ ହିଁ ।

ସକ୍ରେଟିସ୍—ତେବେ ଏଥିରୁ କୌଣସିଟି କେଉଁ ନ୍ୟାୟ-କୋଟୀରେ ଗଣାଯାଇ ପାରିବ ନାହିଁ ?

ୟୁଥିଡ଼ିମସ୍—କଦାପି ନୁହେ, ତାହା ଅଶ୍ରୁତପୂର୍ବ, ଅସମ୍ଭବ ।

ସକ୍ରେଟିସ୍—ଆଚ୍ଛା, ମନେକର ଜଣେ ସେନାନାୟକ ତାଙ୍କ ଦେଶ ଆକ୍ରମଣ, ଲୁଣ୍ଠନ, ଅତ୍ୟାଗ୍ରର ପୀଡନ କରିଥିବା ଶତ୍ରୁବର୍ଗଙ୍କୁ ଜିଣି ଦାସତ୍ୱ ଶୃଙ୍ଖଳରେ ଆବଦ୍ଧ କଲେ; ତା କଣ ତାଙ୍କର ଅନ୍ୟାୟ ହେବ ?

ୟୁଥିଡ଼ିମସ୍—କଦାପି ନୁହେ ।

ସକ୍ରେଟିସ୍—ଯଦି ସେ ସେମାନଙ୍କର ଧନ ଅପହରଣ କରନ୍ତି ବା ତାଙ୍କଠାରେ "ଶଠେ ଶାଠ୍ୟ" ନୀତି ଆଚରଣ କରନ୍ତି, ତେବେ ?

ୟୁଥିଡ଼ିମସ୍—ଠିକ୍ ହେବ । ତେବେ......ମିତ୍ରବର୍ଗଙ୍କଠାରେ ଏପରି ବ୍ୟବହାର କରିବା ଅଲଗା କଥା ।

ସକ୍ରେଟିସ୍—ତେବେ ମାନୁଛ, ଏହି କାର୍ଯ୍ୟଗୁଡ଼ିକ ଦେଶକାଳ ପାତ୍ର ଘେନି ଉଭୟ କୋଟୀରେ ବିଗ୍ଭର କରାଯାଇପାରେ ।

ୟୁଥିଡିମସ୍—ହଁ ।

ସକ୍ରେଟିସ୍—ଆଚ୍ଛା, ବର୍ତ୍ତମାନ ତୁମ କହିବା ଅନୁସାରେ ମିତ୍ରବର୍ଗଙ୍କ କଥା ଆଲୋଚନା କରିବା । ମନେକର, ଜଣେ ସେନାଧକ୍ଷ ଦେଖିଲେ ତାଙ୍କର ସୈନିକଦଳ ରଣକ୍ଷେତ୍ରରୁ ବଡ ବିଶୃଙ୍ଖଳ ଓ ହତୋତ୍ସାହ ହୋଇ ଇତସ୍ତତଃ ପଳାୟନ କରୁଅଛନ୍ତି । ସେ ତାଙ୍କୁ 'ଆମର ଆଉରି ଅନେକ ସୈନ୍ୟ ଆସୁଛନ୍ତି' ବୋଲି ଗୋଟିଏ ମିଥ୍ୟା ସମ୍ବାଦ ଦେଇ, ଠକାଇ, ତାଙ୍କୁ ସେହି ଅବସ୍ଥାରୁ ଉଦ୍ଧାର କଲେ ଓ ତାରି ଫଳରେ ସେମାନେ ଶତ୍ରୁଙ୍କୁ ପରାସ୍ତ କଲେ । ତେବେ ?

ୟୁଥିଡ଼ିମସ୍—ଏହା ମଧ୍ୟ ଅନ୍ୟାୟ ହେବ ନାହିଁ ।

ସକ୍ରେଟିସ୍—କିନ୍ତୁ ଏବେ ତୁମେ କହୁଥିଲ ମିତ୍ରବର୍ଗଙ୍କୁ ଠକିବା ଅଲଗା କଥା ।

ୟୁଥିଡିମସ୍—ନା, ତୁମକୁ ପାରିବି ନାହିଁ, ସକ୍ରେଟିସ୍ । ମୋ କଥା ମୁଁ ପ୍ରତ୍ୟାହାର କରିନେଉଛି ।

ସକ୍ରେଟିସ୍—କିନ୍ତୁ ଆଉ ଗୋଟିଏ କଥା । ଜ୍ଞାତ ଅନ୍ୟାୟ ଓ ଅଜ୍ଞାତ ଅନ୍ୟାୟ, ଏ ଦୁଇଟିରୁ କେଉଁଟି ଗର୍ହିତ ବୋଲି ତୁମେ ବିବେଚନା କର ?

ୟୁଥିଡ଼ିମସ୍—ବାସ୍ତବିକ ସକ୍ରେଟିସ ମୋର ପୂର୍ବପୋଷିତ ମତ ସବୁ ଓଲଟପାଲଟ ହୋଇଯାଇଛି । ମୋ କଥାରେ ଆଉ ଆତ୍ମପ୍ରତ୍ୟୟ ଜନ୍ମୁ ନାହିଁ । ମୋତେ କ୍ଷମା କରିବେ ।

ଏବେ ଆମ ପକ୍ଷରେ ଲୋକ-ଶାସନର ଏ ପରୀକ୍ଷା ଯୁଗରେ ଆମ ଦେଶର କେତେ 'ୟୁଥିଡ଼ିମସ୍' ଏପରି ଦେଖାଯାଉଛି ଓ ଆମର ଏ ଦୃଷ୍ଟାନ୍ତ ମୂଳରୁ କଣ ଶିଖିବାର ଅଛି, ତାହା ଏଠାରେ ବିଗ୍ଭର୍ଯ୍ୟ ।

ଆଉ ଥରେ ସକ୍ରେଟିସ୍ ଜଣକ ସଙ୍ଗେ କଥା ହେଉ ହେଉ କହିଲେ, "ଅମୁକ ଜଣେ ଲୋକ ଉତ୍ତମ ନାଗରିକ" କିନ୍ତୁ ସେ ଜଣକ

ପ୍ରତିବାଦକରି କହିଲା – 'ନା, ତାଙ୍କ ଠାରୁ ଅମୁକ ଲୋକ ଆହୁରି ଉତ୍ତମ' । ସକ୍ରେଟିସ୍ ଭଲ ଭବେ ଜାଣିଥିଲେ, ତାର ଏ କହିବାର ମୂଲ୍ୟ ନାହିଁ । ସେ କେବଳ ବାହାଦୁରୀ ଦେଖାଇବା ପାଇଁ କିଛି ନା କିଛି ଗୋଟାଏ ନା' କହି ଦେଇଛି । ·ତେଣୁ ସେ କହିଲେ, ଆଚ୍ଛା ଆମର ଏ କଳହ ନିଷ୍ପତ୍ତି କରିବା ପାଇଁ ମୂଳକୁ ଯିବା । ·ପ୍ରଥମେ ନାଗରିକ ଯୋଗ୍ୟତା ଓ କର୍ତ୍ତବ୍ୟର ପରିସର ସମ୍ପର୍କରେ ଆଲୋଚନା କରିବା ଉଚିତ ନୁହେ କି ?

ଶ୍ରୋତା— କହିଲେ, ତାହା ହିଁ କରଯାଉ ।

ସକ୍ରେଟିସ୍—ଆଚ୍ଛା, ତେବେ ଉତ୍ତମ ନାଗରିକ ପ୍ରଜାଙ୍କୁ ପୀଡା ନ ଦେଇ ରାଜ୍ୟର ଆୟ ବଢ଼ାଇ ତାକୁ ତାଙ୍କର ବୃହତ୍ତମ କଲ୍ୟାଣ ସାଧନରେ, ସୁଖଶାନ୍ତି ବିଧାୟକରେ ବ୍ୟୟ କରିବା ଉଚିତ ନୁହେ କି ?

ଶ୍ରୋତା— ନିଶ୍ଚୟ ।

ସକ୍ରେଟିସ୍—ପ୍ରବଳ ଶତ୍ରୁଙ୍କୁ ପରାଜୟ କରିବା ଦୁର୍ଦ୍ଧର୍ଷ ବିକ୍ରମ ତାଙ୍କର ଥିବା ଉଚିତ ତ ?

ଶ୍ରୋତା— ଠିକ୍ ।

ସକ୍ରେଟିସ୍—ରାଜଦୌତ୍ୟରେ ଖୁବ୍ ନିପୁଣ ହୋଇ ଶତ୍ରୁଙ୍କୁ ମିତ୍ର କରିବା କୌଶଳ ତାଙ୍କର ଥିବା ଉଚିତ ତ ?

ଶ୍ରୋତା— ହଁ ।

ସକ୍ରେଟିସ୍—ବାକ୍ଚାତୁର୍ଯ୍ୟ ଓ ପାରଙ୍ଗମତାରେ ଶାସିତଙ୍କର ଦଳଗତ କଳହ ସବୁ ଦୂର କରି ଜାତୀୟ ଏକତା ଆଣିବା ହିଁ ତାଙ୍କର ଏକାନ୍ତ କର୍ତ୍ତବ୍ୟ ।

ଶ୍ରୋତା— ହଁ ।

ସକ୍ରେଟିସ୍—ତେବେ ତୁମେ କହିବା ଲୋକ ଏ ସବୁ କରିପାରିବ ତ ? ସେ ଜ୍ଞାନୀ, ସାହସୀ, ରାଜନୀତି ଧୂରନ୍ଧର ତ ?

ଶ୍ରୋତା— କହିପାରିବି ନାହିଁ ।

ଏପରି ସରଳ, ସୁବୋଧ୍ୟ, ସର୍ବଜନାଦୃତ, ସାଧାରଣଜ୍ଞାତ ଦୃଷ୍ଟାନ୍ତମାଳା ପ୍ରୟୋଗରେ ସାର ସଂଗ୍ରହ କରି ଐକାନ୍ତିକ ଭାବନା ଓ ନିୟମିତ ଆଲୋଚନା ଫଳରେ କି ସମୁଜ୍ଜ୍ୱଳ ଲୋକଶିକ୍ଷା ସକ୍ରେଟିସ ଦେଉଥିଲେ,

ତାହା ଅବର୍ଣ୍ଣନୀୟ । ତାଙ୍କର ତତ୍ତ୍ୱାନୁସନ୍ଧାନରେ ବିଭିନ୍ନ ଦୃଷ୍ଟାନ୍ତରୁ ନିଃସର୍ଗ ନିୟମ ଆବିଷ୍କାରକ ସାଧାରଣାନୁମାନସିଦ୍ଧ (induction) ଓ କେତୋଟି ପ୍ରାଥମିକ ନିଃସର୍ଗ-ନିୟମ ଦୃଷ୍ଟିରେ କୌଣସି ବିଭିନ୍ନ ଘଟଣାର ସତ୍ୟାସତ୍ୟ ପର୍ଯ୍ୟବେକ୍ଷଣୀୟ ସିଦ୍ଧାନ୍ତ (deduction) ଉଭୟ ସୂତ୍ର ଅପର୍ଯ୍ୟାପ୍ତ କ୍ରମେ ବ୍ୟବହୃତ ହେଉଥିଲା ।

ସକ୍ରେଟିସ୍‌ଙ୍କ ମତରେ ଜ୍ଞାନ ସମସ୍ତଙ୍କର ପ୍ରାପ୍ୟ; କିନ୍ତୁ ସେଥିପାଇଁ ଆବଶ୍ୟକ ସାଧନା, ସଯତ୍ନ ପ୍ରଚେଷ୍ଟା ଲୋଡ଼ା । ଜ୍ଞାନ ବିଚ୍ଛିନ୍ନ ଓ କ୍ଷଣିକ ନୁହେଁ; ତାହା ବିଶ୍ୱଜନୀନ, ସର୍ବାଙ୍ଗୀନ ଓ ସର୍ବବ୍ୟାପୀ । ସୋଫିଷ୍ଟମାନେ ଏଠାରେ ହିଁ ଭୁଲ କରୁଥିଲେ; କିନ୍ତୁ ସେମାନଙ୍କ ସହିତ ସେ ଏକମତ ହୋଇଥିଲେ ଗୋଟିଏ ବିଷୟରେ । ଉଭୟଙ୍କୁ ବାହ୍ୟ ଜଡ଼ ପ୍ରକୃତି ଓ ଅତୀନ୍ଦ୍ରିୟ ଆତ୍ମ ରାଜ୍ୟ ସ୍ପର୍ଶ କରି ନ ଥିଲା । ଅନ୍ୟମାନେ ସକ୍ରେଟିସ୍‌ଙ୍କ ଆଗରେ ବିଶ୍ୱ, ଈଶ୍ୱର, ସୃଷ୍ଟି ଆଦି ବଡ଼ ବଡ଼ ପ୍ରସଙ୍ଗ ପକାଇବାବେଳେ ସେ ନୀରବ ରହୁଥିଲେ । ସେ କହୁଥିଲେ ଏ ପାଗଳାମୀ କାହିଁକି ? ମାନବିକତାର ଦୃଢ଼ ସାଧନା କ୍ଷେତ୍ର ଛାଡ଼ି ଏ ପାରଲୌକିକ ଛାୟା ସ୍ପୃହା କାହିଁକି ? ଆମେ କି କେବେ ହେଁ ଭୂତସ୍ରଷ୍ଟା ହୋଇଯିବା ? ସମୀର, ଲହରୀ, ଋତୁ ପର୍ଯ୍ୟଟନ କି କେବେ ଆମ ଆଜ୍ଞା ମାନି ଚଳିବ ? •ଗଛ ପଥରରୁ କ'ଣ ଶିଖିବାର ଅଛି ? ନା, ଏଥିରେ ଆମର ପ୍ରୟୋଜନ ନାହିଁ । ମାନବ-ଜୀବନର ପ୍ରୟୋଜନ ସଂଖ୍ୟା ତ ଅସଂଖ୍ୟ ପଡ଼ିଅଛି । ପାପପୁଣ୍ୟ, ସୁନ୍ଦର ବିରୂପ, ମହତ୍ କୁତ୍ସିତ, ସଚ୍ଚରିତ୍ର ଦୁଶ୍ଚରିତ୍ର, ଶାସକ ଶାସିତ—ଏ ସବୁର ଭେଦ ଜାଣିଲେ ଯଥେଷ୍ଟ । ଏ ଜ୍ଞାନ ହିଁ ଆମକୁ ଉନ୍ନତ କରିବ ।

ମନୁଷ୍ୟର ସକଳ ପ୍ରକାର ଯାତନା, କ୍ଳେଶ, ଦୁଃଖର ଉପଶମ ନିର୍ମଳ ବିବେଚନା ପ୍ରଣୋଦିତ ଜ୍ଞାନରେ ହିଁ ସକ୍ରେଟିସ୍ ଦେଖୁଥିଲେ । ସେ ତାଙ୍କର ଅନୁସନ୍ଧାନ ପ୍ରଣାଳୀ ଜୀବନର ସବୁ ସମସ୍ୟାରେ, ବିଶେଷତଃ ନୀତି ଓ ବ୍ୟବହାର ସୀମାରେ ପ୍ରୟୋଗ କରିଥିଲେ । ସେ ସମୟର ଉଗ୍ର ଚରମପନ୍ଥୀମାନେ ନୀତିମୂଳକ ବ୍ୟବହାର-ଗୁଡ଼ିକୁ ସୁବିଧାବାଦୀ, ସମୟସେବୀର ଦୃଷ୍ଟିରେ ଦେଖୁଥିଲେ । 'ଜୋର ଯା'ର ମୂଲକ ତା'ର' କଥା ହିଁ ତାଙ୍କର ପସନ୍ଦ ହେଉଥିଲା । ଅନ୍ୟ ପକ୍ଷରେ ଉଗ୍ର ନରମପନ୍ଥୀ ଦଳ ସେଗୁଡ଼ିକ ସ୍ୱତଃସିଦ୍ଧ ଦୈବନିବନ୍ଧନ ବୋଲି ଗ୍ରହଣ କରି ବିଚାର-ସୀମାର ବାହାରେ ରଖି ତହିଁ ପ୍ରତି ସମସ୍ତଙ୍କର ଅନ୍ଧମାନ୍ୟ ଲୋଡ଼ୁଥିଲେ । ସକ୍ରେଟିସ୍ ଏ ଉଭୟେ ଉତ୍କଟ ମତାନ୍ଧତାର ପରିଶୁଦ୍ଧ ସମନ୍ୱୟ ଆଣିବା ପାଇଁ ମୂଳ, ଭୁଲ ଓ ନିର୍ଭୁଲର ପ୍ରଭେଦର ଗୋଟାଏ ଜ୍ଞାନମୂଳକ ସାର୍ବଜନୀନ ମାପ (Standard)

ସ୍ଥାପନରେ ପ୍ରୟାସୀ ହୋଇଥିଲେ । ତାଙ୍କର ପ୍ରଧାନ ବିଗ୍ରର୍ଯ୍ୟ ଥିଲ, "ମୋର ଜୀବନ କେଉଁ ମାର୍ଗରେ ମୁଁ ଚଳାଇବି" ? ବିବେଚନାର ପନ୍ଥା କ'ଣ ? ବିବେକୀ ପ୍ରାଣୀ ମନୁଷ୍ୟର କର୍ତ୍ତବ୍ୟ କ'ଣ ଯାହା ବ୍ୟକ୍ତିଗତ 'ମୁଁ'କୁ ସନ୍ତୁଷ୍ଟ କରେ, ସେ ଭଲ; ଯାହା ତହିଁରେ ବାଧାଦିଏ ତା' ଖରପ"—ଏ ସୋଫିଷ୍ଟ ଉକ୍ତି କଦାପି ସତ୍ୟ ହୋଇନପାରେ । ଭଲ-ମନ୍ଦର ନିଶ୍ଚୟ ଦେଶ-କାଳପାତ୍ର ଅସ୍ପଷ୍ଟ ବିଶ୍ୱବ୍ୟାପକ ମାପ ଅଛି । ସେ ମାପ କ'ଣ ? ଜଗତରେ ସବୁଠାରୁ ହିତ କ'ଣ, ଯା' ଦୃଷ୍ଟିରେ ଅନ୍ୟ ସବୁ ·ହିତକର ହୁଏ ?

ସକ୍ରେଟିସ୍ କହନ୍ତି, ନିର୍ମଳ ଜ୍ଞାନ ହିଁ ଏହି ସର୍ବବାଦୀସମ୍ମତ ହିତ । ଉଚିତ ବ୍ୟବହାର ପାଇଁ ଉଚିତ ଜ୍ଞାନ ଲୋଡ଼ା । ସାଗରର ତରଙ୍ଗାକୁଳ ବକ୍ଷ ଉପରେ ନୌକା ଚଳାଇବା ପାଇଁ ଯେପରି ଚାଳକର ନୌଗଠନ ଓ ଚାଳନର ସମ୍ୟକ୍ ଜ୍ଞାନ ଆବଶ୍ୟକ, ରାଜ୍ୟ ଶାସନରେ ସେହିପରି ରାଜ୍ୟର ପ୍ରକୃତି ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ସ୍ପଷ୍ଟ ଧାରଣା ନିତାନ୍ତ ପ୍ରୟୋଜନ । ମନୁଷ୍ୟ ସଂଯମ, ନ୍ୟାୟ, ସାହସ, ପବିତ୍ରତା ଓ ତାର ସବୁ ବିପରୀତ କ'ଣ ନ ବୁଝିଲେ, ସତ୍‌ପଦାର୍ଥ ହୃଦୟଙ୍ଗମ ନ କଲେ, ସେ ସତ୍‌ପଥଗାମୀ ହୋଇ ନ ପାରେ । କୌଣସି ମନୁଷ୍ୟ ଜାଣିଶୁଣି ଭୁଲ କରେ ନାହିଁ, ନଜାଣି ଭଲ କରେ ନାହିଁ । ଭଲ ଛାଡ଼ି ମନ୍ଦରେ ପ୍ରବର୍ତ୍ତିବା ମନୁଷ୍ୟ-ସ୍ୱଭାବ-ବିରୁଦ୍ଧ । ଦୁଇଟି ମନ୍ଦରୁ ଗୋଟିଏ ବାଛିବାକୁ ବାଧ୍ୟ ହେଲେ, ବଡଟିକୁ ଛାଡ଼ି କମ୍ ଅହିତକରଟି ସେ ଗ୍ରହଣ କରେ । ଏଠାରେ ପ୍ରଶ୍ନ ଉଠିପାରେ—କିନ୍ତୁ ମନୁଷ୍ୟ ଅନେକ ସମୟରେ ଭଲ କ'ଣ ଜାଣେ, ତଥାପି ମନ୍ଦରେ ପ୍ରବର୍ତ୍ତେ । କିନ୍ତୁ ସକ୍ରେଟିସ୍‌ଙ୍କ ଏ ମତ ଅବାନ୍ତର । ଯେଉଁଠାରେ ସେପରି ହୁଏ ସେଠାରେ ଜାଣିବାକୁ ହେବ ଯେ ସେ 'ଏହା ଭଲ, ଏହା ମନ୍ଦ' ବୋଲି କେବଳ କଥାରେ କହୁଛି, କିନ୍ତୁ ତତ୍‌ସଂକ୍ରାନ୍ତ ଜ୍ଞାନ ତାର ଆହୁରି ପରିପକ୍ୱ, ଗମ୍ଭୀର, ବିଶଦ, ବ୍ୟବହାର-ନିୟନ୍ତ୍ରିତ ହୋଇନାହିଁ । କେବଳ ତା'ର ବୁଦ୍ଧିବୃତ୍ତିକୁ ସ୍ପର୍ଶମାତ୍ର କରିଛି, କ୍ରିୟା-ଶକ୍ତି ତା' ଦ୍ୱାରା ଆଲୋଡ଼ିତ ହୋଇନାହିଁ । ପୁଣି ବ୍ୟକ୍ତିଗତ ସୁଖର ସଂକୀର୍ଣ୍ଣ ଦୃଷ୍ଟିରେ ମଧ୍ୟ ନୀତିର ପ୍ରୟୋଜନ । ସବୁ ହିତକର ଓ ଉଦାର କାର୍ଯ୍ୟର ଏକମାତ୍ର ଲକ୍ଷ୍ୟ, ଜୀବନକୁ କ୍ଲେଶ ମୁକ୍ତ କରିବା । ସତ୍ୟ ହିଁ ଶିବ ଓ ସୁନ୍ଦର । ସତ୍ ଚିତ୍ ଆନନ୍ଦ ଅଭେଦ୍ୟ, ଏକ । ଭୌତିକ ସମ୍ପଦରୁ, ସାଂସାରିକ ଓ ସୌଭାଗ୍ୟରୁ ମଙ୍ଗଳ ଆସେ ନାହିଁ; ଏସବୁ ପରମ ମଙ୍ଗଳରୁ ଉପୁଜେ । ଆତ୍ମଚିନ୍ତା ଏ ମଙ୍ଗଳ ସାଧନର ଏକମାତ୍ର ପନ୍ଥା । ଏଠାରେ ସକ୍ରେଟିସ୍ କ୍ରମେ ଭାରତୀୟ ମୂଳଚିନ୍ତା ଆଡକୁ କିପରି ଢ଼ଳିଛନ୍ତି, ତାହା ବିଶଦ୍ ଆଲୋଚ୍ୟ ।

କୁହାଯାଇଛି, ସକ୍ରେଟିସ୍ କୌଣସି ନିର୍ଦ୍ଦିଷ୍ଟ ମତବାଦର ପ୍ରଚାର କରି-ନଥିଲେ; କିନ୍ତୁ ତାଙ୍କର ତିରୋଧାନ ପରେ ଶିଷ୍ୟୋପଶିଷ୍ୟମାନେ ତାଙ୍କ ଦର୍ଶନର ବିଭିନ୍ନ ବିଭାଗରୁ ଗୋଟିକ ଗୋଟିକ ଉପରେ ଜୋର ଦେଇ ବିଭିନ୍ନ ମତବାଦ ସ୍ଥାପନ କରିଥିଲେ । ଚିନ୍ତା ପରମ୍ପରାରେ ଏ ଚିରନ୍ତନ ସ୍ଥିତି । ପ୍ରଥମେ ମହାପୁରୁଷ ସମାଜରେ ଆଲୋକ ବିକିରଣ କରନ୍ତି, ଶିଷ୍ୟ ପୁରୁଷାନୁକ୍ରମେ ତାଙ୍କ ପ୍ରଚାରିତ ତଥ୍ୟ ତାତ୍କାଳୀକ ପରିସ୍ଥିତି କଳନାରେ ବିଭିନ୍ନ ଦୃଷ୍ଟିକୋଣରୁ ପ୍ରଯୁଜ୍ୟ ହୋଇ ବିଭିନ୍ନ ମତବାଦ ସୃଷ୍ଟି ହୁଏ । ପ୍ରଥମେ ଏ ମତବାଦ ସବୁ ଆନ୍ତରିକ ହୃଦୟବତ୍ତାରେ ବିକଶିତ, ସକ୍ରିୟ, ପ୍ରଗତି ପରାୟଣ, ମଙ୍ଗଳମୟ ରହେ; କିନ୍ତୁ କାଳକ୍ରମେ ମତାନ୍ଧତା ତହିଁରେ ପ୍ରବେଶ କରେ, ବାକ୍‌ବିତଣ୍ଡା, ସ୍ୱାର୍ଥରକ୍ଷାରେ ମଜ୍ଜି ରହିବାରୁ ତହିଁରୁ ଜୀବନ ସମ୍ପର୍କ ତୁଟିଯାଏ । ସେତେବେଳେ ତହିଁର ଯଥୋଚିତ ସଂସ୍କାର ଆବଶ୍ୟକ ହୁଏ । ସକ୍ରେଟିସ୍ ଦର୍ଶନ କ୍ରମେ ତାଙ୍କର ବିଖ୍ୟାତ ଶିଷ୍ୟ ପ୍ଲେଟୋଙ୍କ ଦ୍ୱାରା ଅଭିବୃଦ୍ଧି ହୋଇ ମେଗାରିଏନ, ଷ୍ଟୋଇକ୍, ଏପିକ୍ୟୁରିଏନ୍ ଇତ୍ୟାଦି ବିଭିନ୍ନ ଦଳ-ମାର୍ଗରେ କିପରି ଗତି କରେ, ତାହା ପରେ କୁହାଯିବ ।



# ପ୍ରାଚୀନ ଭାରତରେ ସ୍ୱାସ୍ଥ୍ୟରକ୍ଷା

( ୧ )

ପ୍ରାଚୀନ ଭାରତ କେବଳ ଆଧ୍ୟାତ୍ମିକ ଚିନ୍ତା, ପାରଲୌକିକ ସ୍ୱସ୍ତି ସାଧନାରେ ସବୁ ଶକ୍ତି-ସାମର୍ଥ୍ୟ ବିନିଯୋଗ କରି ଐହିକ କଲ୍ୟାଣ, ସାଧାରଣ ସୁଖ-ସ୍ୱାଚ୍ଛନ୍ଦ୍ୟ ଅବହେଳା ଦେଖାଇଥିଲା, ଏହି ଧାରଣା ଏବେ ଆମର ପାଶ୍ଚାତ୍ୟ-ଶିକ୍ଷା-ଲୋକପ୍ରାପ୍ତ କେତେକଙ୍କ ମନରେ ବଦ୍ଧମୂଳ ହୋଇଥିବାର ଜଣାଯାଏ । ଏପରି କହିବାରେ ଲାଭବାନ କେତେ ଜଣ ପାଶ୍ଚାତ୍ୟ ତଥାକଥିତ ମନୀଷୀ ପୁଣି ସେମାନଙ୍କର କଥାରେ ତାଳ ଧରିବା ଏ ଦେଶର କେତେ ପକ୍ଷଶିଷ୍ୟଙ୍କର ଏପରି ପ୍ରଚାର କରିବାରେ ସ୍ୱାର୍ଥ ସ୍ପଷ୍ଟ । ସୁଖର କଥା ଏପରି ସ୍ୱାର୍ଥପୂର୍ଣ୍ଣ ପ୍ରଚାରର ବିଷଦୁଷ୍ଟ ମୂଳ ଦିଶିଛି । ପୌରାଣିକ ଭାରତ-ପରମ୍ପରାର ସଂସ୍କୃତି-ଭୂତି-ରତ୍ନର ମୂଲ୍ୟ ସମାଲୋଚନାକଷଟିରେ କଷା ହେଉଛି । ଜଣାପଡ଼ିଛି, ବାସ୍ତବ ବିଷୟଭୂତ ଇନ୍ଦ୍ରିୟଗ୍ରାହ୍ୟ ଜୀବନର କୌଣସି ବିଭାଗ ପ୍ରତି ଆମ ପ୍ରାଚୀନ ବିଜ୍ଞମାନେ ତାଚ୍ଛଲ୍ୟ ଦେଖାଇ ନ ଥିଲେ । ପ୍ରତ୍ୟେକ ବସ୍ତୁର ଠିକ୍ ଆନୁପାତିକ ମୂଲ୍ୟ ବୁଝି ଲୋକସଂଗ୍ରହରେ ତାକୁ ପ୍ରୟୋଗ କରିଥିଲେ । ତନ୍ମଧ୍ୟରୁ ସାଧାରଣ ଶାରୀରିକ ସ୍ୱାସ୍ଥ୍ୟରକ୍ଷା କରିବାରେ, ସେ ରକ୍ଷା ପାଇଁ ବ୍ୟବସ୍ଥିତ ଅନୁଷ୍ଠାନଗୁଡ଼ିକର ସୁକର ପରିଚାଳନା ନିମନ୍ତେ ଯେଉଁ ସବୁ ନିୟମ ପ୍ରଣାଳୀ ପ୍ରାଚୀନ ଭାରତର ଶାସକ ଓ ସ୍ୱାସ୍ଥ୍ୟରକ୍ଷାକବର୍ଗ ପ୍ରଣୟନ କରିଥିଲେ, ତହିଁର କିଞ୍ଚିତ୍ ସୂଚନା ଦେଇ ଆମ ଆଧୁନିକ ସଭ୍ୟତାଦୃପ୍ତ ଜଟିଳ ସ୍ୱାସ୍ଥ୍ୟରକ୍ଷା ପଦ୍ଧତି ତୁଳନାରେ ତାହା ନ୍ୟୂନ ନୁହେଁ, ଏହା ଦେଖାଇବା ଏ କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।

ସ୍ୱାସ୍ଥ୍ୟ ସବୁଥିର ମୂଳ । ଅସୁସ୍ଥତାପରି ଜୀବନର ଅନ୍ୟ କୌଣସି ଅଭିଶପ୍ତ କଥା ନାହିଁ । ଆରୋଗ୍ୟଠାରୁ ବଳି ସମ୍ପତ୍ତି ନାହିଁ, ଏ କଥା ପ୍ରବାଦ ହୋଇଛି । ସ୍ୱାସ୍ଥ୍ୟ (Health-Hale-Whole) ସାମୁଦାୟିକ ଅର୍ଥରେ ବ୍ୟବହୃତ । ଶରୀର, ଇନ୍ଦ୍ରିୟ, ମନ, ମେଧା, ସ୍ମୃତି, ସବୁଥିର ସ୍ୱାସ୍ଥ୍ୟ ବା ଅସ୍ୱାସ୍ଥ୍ୟ ଅଛି । ଅଥଚ ସ୍ୱାସ୍ଥ୍ୟ ସାଧାରଣରେ ଶାରୀରିକ ପ୍ରକରଣରେ ହିଁ ଧରାଯାଏ । ଇଂରେଜିରେ ଉକ୍ତି ଅଛି, ସୁସ୍ଥ ମନ ସୁସ୍ଥ ଶରୀରରେ ହିଁ ରହେ । ଦେହ ସବୁ ସାଧନାର ପୀଠ । ଜନ-ସମାଜ ପରିସ୍ଥିତିରେ

ପୁଣି ସ୍ୱାସ୍ଥ୍ୟକୁ ଦୁଇଟି ଦିଗରୁ ଆଲୋଚନା କରାଯାଇପାରେ— ବ୍ୟକ୍ତିଗତ ଓ ସର୍ବସାଧାରଣ । ଶେଷୋକ୍ତ ପ୍ରକରଣଟି ଏଠାରେ ଆଲୋଚ୍ୟ ।

ସିନ୍ଧୁ-ସରସ୍ୱତୀ-ତୀର ଉପକଣ୍ଠରେ ବେଦ ସୂକ୍ତର ମନ୍ତ୍ର ଝଙ୍କାରରେ ଆର୍ଯ୍ୟ ମୁନି-ଋଷି ଆକୁଳପ୍ରାଣରେ ସଙ୍ଗୀତ-କଣ୍ଠରେ, କାବ୍ୟସ୍ଫୂର୍ତ୍ତ ହୃଦୟରେ କେବଳ ମୋକ୍ଷ, ବୈରାଗ୍ୟ, ସ୍ୱର୍ଗ ପରାଭକ୍ତି, ଲୟ, ନିଃଶ୍ରେୟସ୍ କାମନା କରି ନ ଥିଲେ; ବ୍ୟଷ୍ଟି ଓ ସମଷ୍ଟି ସ୍ୱାସ୍ଥ୍ୟ ମଧ୍ୟ ସେମାନଙ୍କର ଏକାନ୍ତ ଅଭୀଷ୍ଟ ଥିଲା । ବିଶ୍ୱ-ଶକ୍ତି ଆଗରେ ଅଧିକ ଆଗ୍ରହରେ ବଳିଷ୍ଠ ବପୁ, ସୁସ୍ଥ ଅଙ୍ଗ-ପ୍ରତ୍ୟଙ୍ଗ, ଦୀର୍ଘ ଜୀବନ, ସକଳ ପ୍ରକାର ରୋଗ ଯନ୍ତ୍ରଣା ଓ ଅକାଳ ମୃତ୍ୟୁରୁ ମୁକ୍ତି, ବଳ, ଭୁକ୍ତି, କାନ୍ତି, ଧୃତି ଲାଗି ସେମାନେ ପ୍ରାର୍ଥନା କରିଥିଲେ । ଶରଦ ଶତ ଦେଖିବା, ଶୁଣିବା, ବଞ୍ଚିବା ପାଇଁ ତାଙ୍କର ଏକାନ୍ତ ଇଚ୍ଛା ଥିଲା । ସେମାନେ ଔଷଧିରେ ପୂର୍ଣ୍ଣଗୁଣ ଆଶା କରୁଥିଲେ, ମନୁଷ୍ୟ ଓ ପ୍ରାଣୀ ଜଗତର ସର୍ବାଙ୍ଗୀନ ମଙ୍ଗଳ ଚାହୁଁଥିଲେ, ଦୁଗ୍ଧବତୀ ଗାଭୀର କ୍ଷୀରରେ ପୁଷ୍ଟି ଅନୁଭବ କରୁଥିଲେ ।

( ୨ )

ଠିକ୍ ଏହିପରି ପରିଷ୍କାର ଆବାସ, ପ୍ରଜାଙ୍କ ପାଇଁ ନିର୍ମଳ ସ୍ୱାସ୍ଥ୍ୟକର ପାନୀୟ ଓ ବ୍ୟାବହାରିକ ଜଳ, ସଂକ୍ରାମକ ରୋଗ ନିବାରଣ, ସଂକ୍ରମିତ ରୋଗୀଙ୍କ ପୃଥକ୍ ନିବାସ, ସଂକ୍ରମିତ ସ୍ଥଳର ଶୁଦ୍ଧୀକରଣ, ଟିକା ପ୍ରଦାନ, ସମସ୍ତଙ୍କ ପାଇଁ ଯଥେଷ୍ଟ ପୁଷ୍ଟିକର ଖାଦ୍ୟ; ବାଟ ଘାଟ ଓ ଘର ଦ୍ୱାରର ପରିଚ୍ଛନ୍ନତା, ସର୍ବସାଧାରଣଙ୍କ ଉପକାର ପାଇଁ ସୁଲଭ ଶସ୍ତା ଗୁଣପ୍ରଦ ଚିକିତ୍ସା ବ୍ୟବସ୍ଥା ଇତ୍ୟାଦି ଉପରେ ଆମ ପ୍ରାଚୀନ ସ୍ୱାସ୍ଥ୍ୟ-ବିଧାୟକମାନେ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ । କୁହାଯାଇଛି, ପ୍ରାଚୀନ ଭାରତରେ ଧର୍ମ ଓ ଆସ୍ତିକତା ବଳବତ୍ତର ଥିଲା; ତାହା ବୋଲି କିନ୍ତୁ ସ୍ୱାସ୍ଥ୍ୟ ପ୍ରତି ଅନାସକ୍ତି କେଉଁଠି ଦେଖାଯାଉ ନଥିଲା । ସ୍ୱାସ୍ଥ୍ୟ-ଚେତନା ଲୋକଙ୍କ ମନରେ ଜାଗରୁକ କରିବା ଜନନାୟକ ଓ ସ୍ୱାସ୍ଥ୍ୟବିଭାଗ କର୍ମଚାରୀମାନେ ନିଜର ପ୍ରଥମ କର୍ତ୍ତବ୍ୟ ମନେ କରୁଥିଲେ । ସ୍ୱାସ୍ଥ୍ୟଶିକ୍ଷା ଯେପରି ପୂର୍ଣ୍ଣାଙ୍ଗ ଭାବରେ ଲୋକେ ପାଇବେ ତାର ସୁନ୍ଦର ବିଧାନ କରିବା ଦ୍ୱାରା ସାଧାରଣ ଧର୍ମୀୟ ଓ ନୈତିକ ଜୀବନ ସଙ୍ଗେ ସ୍ୱାସ୍ଥ୍ୟରକ୍ଷା ବିଧିଗୁଡ଼ିକ ଅବିଚ୍ଛେଦ୍ୟ ଭାବରେ ଗ୍ରଥିତ ହୋଇଥିଲା । ଦୀର୍ଘଜୀବନ ସେତେବେଳେ ସାଧାରଣ ପ୍ରତ୍ୟକ୍ଷ ଥିଲା । ଅକାଳ ମରଣ କର୍ମବିପାକ, ଅଭିଶାପ ବୋଲି ଧରାଯାଉଥିଲା । ଏହାର ପ୍ରାୟଶ୍ଚିତ୍ତ ପାଇଁ ପୁଣି ନିଷ୍ପାପ ଜୀବନ, ପୁଣ୍ୟକର୍ମର ନିୟମ ଥିଲା । ଏପରି ପବିତ୍ର ନିଷ୍ପାପର ଜୀବନ ପୁଣି ଅନ୍ୟ ଦିଗରେ ବ୍ୟକ୍ତି ଓ ସମୂହ ସ୍ୱାସ୍ଥ୍ୟରକ୍ଷାର କାର୍ଯ୍ୟକାରୀ ସୋପାନ

ହେଉଥିଲା । ଅଭଙ୍ଗ ସ୍ୱାସ୍ଥ୍ୟ, ଅଙ୍ଗସୌଷ୍ଠବ ରକ୍ଷା କରିବା ଯୋଗୀମାନଙ୍କ ଯୋଗ-ସାଧନାର ଅପରିହାର୍ଯ୍ୟ ଥିଲା । କ୍ଷୀଣସ୍ୱାସ୍ଥ୍ୟ ଘେନି ଯୋଗସିଦ୍ଧି କେଭେ ଲାଭ ହୋଇପାରିବ ନାହିଁ, ଏ କଥା ଯୋଗାଶାସ୍ତ୍ରର ପ୍ରଥମ ପ୍ରତିପାଦ୍ୟ ବିଷୟ ଥିଲା ।

ଆଲୋଚିତ ବିଷୟର କେତୋଟି ଯୁକ୍ତିଯୁକ୍ତ ପ୍ରମାଣ ମାନ୍ୟବର ଲାଟ ଲର୍ଡ଼ ଏମ୍ପଥିଲଙ୍କ King's Institute of preventive medicinesର ଦ୍ୱାରୋଦ୍‌ଘାଟନ ସମ୍ପର୍କରେ ପ୍ରଦତ୍ତ ଭାଷଣରୁ କେତେକାଂଶରୁ ଜଣାଯାଏ । ସେ କହିଥିଲେ, "ଏ ଦେଶରୁ ବହୁ ଶତାବ୍ଦୀ ପୂର୍ବରୁ ଯେଉଁ ଜ୍ଞାନାଲୋକ ଦେଶବିଦେଶକୁ ବ୍ୟାପିଥିଲା, ଏବେ ତାର କେତୋଟି ରଶ୍ମି ହିଁ ଭାରତୀୟ ବ୍ରିଟିଶ୍ ଶାସକମାନେ ଏ ଦେଶକୁ ଫେରାଇ ଆଣୁଛନ୍ତି । ଆମେ ଯେତେବେଳେ ବୈଜ୍ଞାନିକ ଉପାୟରେ ପରିଶୁଦ୍ଧ ମ୍ୟୁନିସିପାଲ୍-ଜଳ ପ୍ରଣାଳୀ, ଚିକିତ୍ସା ବିଦ୍ୟାଳୟ, ହାସପାତାଲ ଇତ୍ୟାଦି ପ୍ରତିଷ୍ଠିତ କରୁ, ମହାମାରୀ-ବିସୂଚି-ବସନ୍ତ ଇତ୍ୟାଦି ସଂକ୍ରାମକ ରୋଗ ପ୍ରସାରର ନିରୋଧ ପାଇଁ ସରକାରୀ ନିୟମ ପ୍ରଣୟନ କରୁ, ଲୋକଙ୍କ ସ୍ୱାସ୍ଥ୍ୟ ଦିଗରେ ସତର୍କ ଦୃଷ୍ଟି ଦେବା ପାଇଁ ଜିଲ୍ଲାବୋର୍ଡ଼ ଇତ୍ୟାଦି ସ୍ୱାୟତ୍ତ-ଶାସନ-ଅନୁଷ୍ଠାନଗୁଡ଼ିକ ଉପରେ ଦାୟିତ୍ୱ ଲଦୁ, ସେତେବେଳେ ଆମର ପରିଷ୍କାର ଜାଣିବା ଉଚିତ ଆମେ ଏ ସବୁଦ୍ୱାରା କୌଣସି ନୂତନ ଉଦ୍ଭାବନ ୟୁରୋପର କୌଣସି ନବ ଆବିଷ୍କାର ଏ ଦେଶକୁ ଦେଉ-ନାହୁଁ । କେବଳ ଏ ଦେଶରେ ସହସ୍ର ସହସ୍ର ବର୍ଷ ପୂର୍ବେ ଯାହା କରାଯାଇଥିଲା, ଯାହା ଇତିମଧ୍ୟରେ ଇତିହାସର ପୃଷ୍ଠା ଛଡ଼ା ସାଧାରଣ-ବିସ୍ମୃତି ଗର୍ଭରେ ଲୋପ ପାଇ ଆସୁଥିଲା, ତାର ଅପୂର୍ଣ୍ଣ ପୁନରାବୃତ୍ତି ମାତ୍ର କରୁଛୁ । ମୁଁ ଆଲୋଚନା କରି ଦେଖିଛି ସଂକ୍ରାମକ ରୋଗ ଦୂରୀକରଣର ଆଧୁନିକ ବ୍ୟବସ୍ଥା ଓ ସେହି ସମ୍ବନ୍ଧେ ହିନ୍ଦୁ ଚିକିତ୍ସାଶାସ୍ତ୍ରରେ ଦିଆଯିବା ବ୍ୟବସ୍ଥାରେ ତିଳେ ହେଲେ ପ୍ରଭେଦ ନାହିଁ । ଆମେ ମଧ୍ୟ କ୍ରମେ ବୁଝି ଆସୁଛୁ ନିର୍ମଳତା ରକ୍ଷା କରିବାରେ ସେହି ଶାସ୍ତ୍ରରେ ଦିଆଯିବା ନୀତି-ନିୟମଗୁଡ଼ିକ କି ସାରଗର୍ଭକ, ଅଭ୍ରାନ୍ତ । ଏ ଦିଗରୁ ବିଚାର କଲେ ମୋର ମନେହୁଏ ମହାପ୍ରାଣ ବ୍ୟବସ୍ଥାପକ ମନୁ ଏପର୍ଯ୍ୟନ୍ତ ବିଦିତ ଜଗତର ସର୍ବପ୍ରଧାନ ସ୍ୱାସ୍ଥ୍ୟରକ୍ଷକ ଓ ସଂସ୍କାରକଙ୍କ ମଧ୍ୟରୁ ଜଣେ ।'

ଏ ସମ୍ପର୍କରେ ପୁଣି ଆଉ ଜଣେ ଦକ୍ଷ ଅନୁଭବୀ ପାଶ୍ଚାତ୍ୟ ସ୍ୱାସ୍ଥ୍ୟ-ମନୀଷୀଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ । ସେ କହିଛନ୍ତି, "ଅନ୍ୟ ସବୁ କଥାରେ ପ୍ରାଚୀନ ହିନ୍ଦୁମାନେ ଅନ୍ୟ ସମସ୍ତଙ୍କ ଅପେକ୍ଷା ଉତ୍କୃଷ୍ଟ ଥିଲେ, ସେପରି ଜଳର ପ୍ରାଧାନ୍ୟ ଓ ମୂଲ୍ୟ ନିରୂପଣ କରିବାରେ ଓ ତାକୁ ନିର୍ମଳ ରଖିବାରେ ଉତ୍କୃଷ୍ଟ ଥିଲେ ।" ଏ ଉକ୍ତିର ପ୍ରମାଣରୂପେ କେତୋଟି ଶିକ୍ଷଣୀୟ ଦୃଷ୍ଟାନ୍ତ ହିନ୍ଦୁ ଚିକିତ୍ସାଶାସ୍ତ୍ରରୁ ଦେଇ ପୁଣି ସେ କହିଥିଲେ, ପ୍ରାଚୀନ କାଳରେ ସଂକ୍ରାମକ ରୋଗବେଳେ ସ୍ୱାସ୍ଥ୍ୟ-କର୍ମଚାରୀମାନେ ଲୋକସମୂହଙ୍କୁ

ଟିକା ଦେବାର ବନ୍ଦୋବସ୍ତ ଥିଲା । ଗବେଷଣା ସ୍ଥିର କରିଛି ଜେନେର୍‌ଙ୍କ ଆବିଷ୍କାରର ବହୁପୂର୍ବରୁ ବସନ୍ତ ନିବାରଣ ପାଇଁ ଟିକା ଦେବାର ବୈଜ୍ଞାନିକ ତତ୍ତ୍ୱ ହିନ୍ଦୁ ବୈଜ୍ଞାନିକମାନେ ଆବିଷ୍କାର କରିଥିଲେ । ଜେନେର୍ ତାର କେବଳ ପୁନରାବିଷ୍କାର କରିଥିଲେ । ୟୁରୋପରେ ଏ ବୈଜ୍ଞାନିକ ତତ୍ତ୍ୱ ଜେନେର୍‌ଙ୍କ ପୂର୍ବରୁ ପ୍ରଚଳିତ ଥିଲା । କନ୍‌ଷ୍ଟାଣ୍ଟିନୋପ୍‌ଲ୍‌ସ୍‌ରୁ ତାହା ସେଠାକୁ ପ୍ରସରିଥିଲା । କନ୍‌ଷ୍ଟାଣ୍ଟିନୋପ୍‌ଲ୍‌ସ୍ ଓ ନିକଟ ପ୍ରାଚ୍ୟଅଞ୍ଚଳକୁ ଖ୍ରୀଷ୍ଟ ଯୁଗର ପ୍ରଥମେ ପ୍ରଥମେ ଭରତରୁ ଯେ ଏ ତତ୍ତ୍ୱ ଶିକ୍ଷା-ସୂତ୍ରରେ ଆସିଥିଲା, ତହିଁରେ ଆଉ ସନ୍ଦେହର ଅବକାଶ ନାହିଁ । ଟିକା ଦିଆଯିବା ସମ୍ବନ୍ଧେ ଧନ୍ୱନ୍ତରିରେ ଲେଖାଅଛି, ବସନ୍ତ ଘା' ରସକୁ ଗାଈର ପଣ୍ଠାରେ ବା ମନୁଷ୍ୟର କାନ୍ଧ ଓ କହୁଣୀ ମଧ୍ୟବର୍ତ୍ତୀ କୌଣସି ସ୍ଥାନରେ ଛୁଞ୍ଚିମୁନରେ ପ୍ରବେଶ କରାଇ ଦିଅ; ତାହା ରକ୍ତରେ ମିଶି ବସନ୍ତଜ୍ୱର ସୃଷ୍ଟି କରିବ । ଏହାହିଁ ସହଜ ସରଳ ଟିକା ।"

ଜଳବାୟୁ ନିୟମକୁ ଅନୁସରଣ କରି ଘର ତିଆରି କରିବା କଥା ଏ ଦେଶ ପକ୍ଷରେ କିଛି ନୂଆଁ ନୁହେ । ତାହା ବେଦ ପରି ପୁରାତନ । ପ୍ରାଚୀନ ଭରତରେ ସ୍ୱାସ୍ଥ୍ୟ ବିଭଗୀୟ କର୍ମଚ୍ଚାରୀମାନେ ଉନ୍ନତ ଜମି ଉପରେ ବୈଜ୍ଞାନିକ ପ୍ରଣାଳୀରେ ଘର ତିଆରି କରିବାରେ ବହୁତ ଯତ୍ନ କରୁଥିଲେ । ନିୟମ ଥିଲା, "ଘର ଚାରିପାଖ ଫଳପୁଷ୍ପଭରା ନତ ବୃକ୍ଷଲତାରେ ପରିପୂର୍ଣ୍ଣ ରଖିବାକୁ ହେବ । ଘରର ପ୍ରାକାର ଚତୁଷ୍କୋଣବିଶିଷ୍ଟ, ସମତଳ, ଚିକ୍‌କଣ, ଅଭ୍ୟନ୍ତର ଆଡକୁ କିଞ୍ଚିତ ଆନତ ଥିବା ଉଚିତ । ଘରର ନିକଟରେ ଝରଣା ବାମ ଦିଗରୁ ଦକ୍ଷିଣକୁ ବହିଯାଉଥିବା ଉଚିତ । ଘରର ଚତୁର୍ଦ୍ଦିଗ ଭୂମି ଉର୍ବର ଶକ୍ତ, ସୁଗନ୍ଧଯୁକ୍ତ, ଏକବର୍ଣ୍ଣ ବିଶିଷ୍ଟ ସାରବାନ ଥିବା ଉଚିତ । ତହିଁର ଯେକୌଣସି ସ୍ଥାନରେ ପ୍ରାୟ ଚାରିହାତ ଖୋଳିଲେ ପାଣି ଦେଉଥିବା ସ୍ଥାନର ଜଳବାୟୁ ନାତି-ଉଷ୍ଣ ନାତିଶୀତଳ ଅର୍ଥାତ୍ ସମଥିବା ଆବଶ୍ୟକ । (୧)

ପ୍ରସୂତି-ଆଗାର ନିର୍ମାଣ ସମ୍ବନ୍ଧେ ପ୍ରାଚୀନ ଭରତର ସର୍ବୋତ୍କୃଷ୍ଟ ଭେଷଜ ଚରକ ଲେଖିଛନ୍ତି, "ପ୍ରଥମେ ସେ ସ୍ଥାନରୁ ହାଡ, ଖପରା, କାଙ୍କରା, ଗୁଡ଼ି ପରିଷ୍କାର ରୂପେ ବାହାର କରିଦେବାକୁ ହେବ । ନିର୍ବାଚିତ କ୍ଷେତ୍ର ସୁବାସିତ, ଆମୋଦଯୁକ୍ତ ହେବା ଉଚିତ । ଆଗାରର ଦ୍ୱାର ପୂର୍ବ ବା ଭିତରକୁ ମୁହଁଥିବା ଆବଶ୍ୟକ ।" ଶିଶୁ-ଆଗାର ସମ୍ବନ୍ଧେ ପୁଣି ସେ ଗ୍ରନ୍ଥରେ ଲେଖା ଅଛି, "କାରିଗର ଏପରି ଗୋଟିଏ ବଖରା ନିର୍ମାଣ କରିବେ ଯାହାକି ପ୍ରଶସ୍ତ, ଆଲୋକିତ, ବାୟୁସଞ୍ଚାଳିତ, ଦୃଢ଼, ଉତ୍ତପ-ଯୁକ୍ତ, ପୁଣି ଭୀଷଣ ଜନ୍ତୁ ସର୍ପାଦି, ସରୀସୃପ, ମୂଷିକ, ମକ୍ଷିକା ଇତ୍ୟାଦିଙ୍କ ଦ୍ୱାରା

(୧) Ram Ra 3 The Architecture of the Hindus.

ଅନାକ୍ରମିତ ହୋଇଥିବ । ପୁଣି ତହିଁରେ ଶିଶୁର ପଥ୍ୟରନ୍ଧନ, ଶୟନ, ମଳମୂତ୍ର-ବିସର୍ଜନ ଇତ୍ୟାଦି ପାଇଁ ଭିନ୍ନ ଭିନ୍ନ ସ୍ଥାନ ନିର୍ଦ୍ଦିଷ୍ଟ ଥିବାକୁ ହେବ । ଘରେ ନିର୍ମଳ ଜଳ, ଔଷଧ ବାଟିବା ପାଇଁ ଖଲ ଇତ୍ୟାଦିର ଅଭାବ ଆଦୌ ରହିବାକୁ ହେବନାହିଁ । ଶିଶୁର ଶଯ୍ୟା ପୁଣି ତା ଉପରେ ବିଛାଯାଉଥିବା ଚାଦର ଇତ୍ୟାଦି ଶୁଭ୍ର, କୋମଳ, ହାଲୁକା, ସୁବାସିତ ହେବା ଆବଶ୍ୟକ । ସେ ସବୁ ଯେପରି ଝାଳ, ମଇଳା, ଛାରପୋକ ଇତ୍ୟାଦି ପୋକ ବା ମଳମୂତ୍ର ଦ୍ୱାରା ଦୂଷିତ ନ ହୁଏ ତହିଁପ୍ରତି ସର୍ବଦା ତୀକ୍ଷ୍ଣ ଦୃଷ୍ଟି ଦେବାକୁ ହେବ । ଶିଶୁକୁ ନୂଆ ନୂଆ ଲୁଗାପଟା ଯୋଗାଇବାର ସାମର୍ଥ୍ୟ ନଥିଲେ, ପୁରୁଣା ମଇଳା ଲୁଗାକୁ ବାରମ୍ବାର ଧୋଇ ସଫା-ରଖିବାକୁ ହେବ, ବିଛଣା ଇତ୍ୟାଦି ବାଷ୍ପଦ୍ୱାରା ନିର୍ମଳ କରି ଭଲରୂପେ ଶୁଖାଇ ବ୍ୟବହାର କରିବାକୁ ହେବ । ଏହି ବାଷ୍ପ-ପ୍ରୟୋଗ ପୁଣି ସଫା କରିବା କାର୍ଯ୍ୟରେ ନିମ୍ନଲିଖିତ ଦ୍ରବ୍ୟଗୁଡ଼ିକ ଘୃତ-ସଂଯୋଗରେ ବଡ଼ କାର୍ଯ୍ୟକାରୀ -ଯବ, ବଚ, ସୋରିଷ, ଗୁଗ୍‌ଗୁଳ, ବୟସ୍ଥା, ଜଟିଳ, କୋରକ, ଗୁଳୁମି, ପଳାଙ୍କଶ ଇତ୍ୟାଦି ।" ଶିଶୁପାଳନ ସମ୍ବନ୍ଧେ ଏପରି ଅନେକ ତଥ୍ୟ ମିଳେ । ଏଥିରୁ, ବର୍ତ୍ତମାନ ଆମ ମନକୁ ଲକ୍ଷ୍ୟଥିବା ଶିଶୁମଙ୍ଗଳ Child welfare), ମାତୃମଙ୍ଗଳ (Maternity welfare), ଧାତ୍ରୀବିଦ୍ୟା (Midwifery), ସେବା ଶୁଶ୍ରୂଷା (Nursing), ଶିଶୁ-ସ୍ୱାସ୍ଥ୍ୟ-ସପ୍ତାହ (Health & Baby week) ଇତ୍ୟାଦି କଥାଗୁଡ଼ିକର ସାର ପ୍ରାଚୀନ ଭାରତରେ ଥିଲା, ଏ କଥା ଅବିଶ୍ୱାସ କରି ହେଉନାହିଁ । ତେବେ ଆକାର ବା କାର୍ଯ୍ୟକାରିତା ପ୍ରଣାଳୀରେ ଭିନ୍ନତା ରହିବା ସ୍ୱାଭାବିକ ।

ପ୍ରାଚୀନ ଭାରତରେ ପୁଣି ପୁଣ୍ୟଶାଳା ସର୍ବତ୍ର ଦେଖାଯାଉଥିଲା । କଙ୍ଗାଳ, ଅଭାବଗ୍ରସ୍ତ, ଦୁର୍ଦ୍ଦଶାପନ୍ନ ଲୋକେ ତହିଁରୁ ଔଷଧ, ଖାଦ୍ୟ, ପରିଧାନ ଅନ୍ୟାନ୍ୟ ଅତ୍ୟାବଶ୍ୟକ ଜିନିଷପତ୍ର ପାଉଥିଲେ । ଏଣୁ ଏ ଦେଶରେ ଧର୍ମଯାତ୍ରୀ, ପଥିକ, ଦେଶ ପର୍ଯ୍ୟଟକମାନଙ୍କର ବିଶେଷ ଅସୁବିଧା ହେଉ ନଥିଲା । ପ୍ରସିଦ୍ଧ ଚୀନ ପରିବ୍ରାଜକ-ପଣ୍ଡିତ ହୁଏନ୍‌ସାଂଙ୍କର ବିବରଣୀରୁ ଦେଖାଯାଏ, ସେତେବେଳେ ଉଦାରଚେତା ନରପତିମାନେ ମତିପୁରଠାରେ ଗୋଟିଏ ବିଶାଳ ପୁଣ୍ୟଶାଳା ପ୍ରତିଷ୍ଠିତ କରିଥିଲେ, ସେଥିପାଇଁ ଅନେକ ଭୂସମ୍ପତ୍ତି ଖଞ୍ଜିଥିଲେ । ବିଧବା, ପିତୃମାତୃହୀନ ଶିଶୁ, ଶୋକ-ସନ୍ତପ୍ତ ସହାୟଶୂନ୍ୟ ଲୋକଙ୍କୁ ଉପଯୁକ୍ତ ଖାଦ୍ୟ, ଔଷଧ ଦାତବ୍ୟରେ ଯୋଗା ଯାଉଥିଲା । ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟଙ୍କ ସମସମାୟିକ ଅନ୍ୟତମ ଚୀନ ବିଦୂଷୀ-ପର୍ଯ୍ୟଟକଙ୍କ ବୃତ୍ତାନ୍ତରୁ ଜଣାଯାଏ, ପାଟଳିପୁତ୍ର ନଗରୀରେ ଅନେକ ଆରୋଗ୍ୟଶାଳା ସେତେବେଳେ ପ୍ରତିଷ୍ଠିତ ଥିଲା । ଏ ସବୁ ଧନୀ ସମ୍ଭ୍ରାନ୍ତ ଗୃହସ୍ଥଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଜାତି, ଧର୍ମ, ସ୍ୱଦେଶ, ବିଦେଶ ନିର୍ବିଶେଷରେ ସବୁ ଦରିଦ୍ର, ନିଃସହାୟ, ନିରାଶ୍ରୟ, ପଙ୍ଗୁ, ରୋଗୀ ଲୋକେ ସେଠାକୁ ଯାଇ ସକଳ ପ୍ରକାର ଆବଶ୍ୟକୀୟ ସାହାଯ୍ୟ ସହାନୁଭୂତି ପାଉଥିଲେ । ବୈଦ୍ୟମାନେ ସେମାନଙ୍କ ରୋଗ

ପରୀକ୍ଷା କରି ତଦନୁଯାୟୀ ଖାଦ୍ୟପେୟ, ଔଷଧ ଏପରିକି ସେମାନଙ୍କର ସୁଖ-ସ୍ୱାଚ୍ଛନ୍ଦ୍ୟ ବିଧାୟକ ସବୁ ପ୍ରକାର ବ୍ୟବସ୍ଥା କରୁଥିଲେ । ରୋଗମୁକ୍ତ ହେବା ପରେ ସେମାନେ ସୁବିଧାକ୍ରମେ ସେଠାରୁ ବିଦାୟ ନେଉଥିଲେ । "ଏତେ ପୂର୍ବରୁ ଏପରି ଅନୁଷ୍ଠାନମାନ ଜଗତରେ ଆଉ କୌଣସି ସ୍ଥାନରେ ଦେଖାଯାଉ ନ ଥିଲା । ଆଧୁନିକ ଖ୍ରୀଷ୍ଟିଆନ୍ ଦାତବ୍ୟ ଅନୁଷ୍ଠାନମାନଙ୍କୁ ଆଗେଇବା ଦ୍ୱାରା ଏମାନଙ୍କର ସ୍ଥିତିରୁ ଜଣାଯାଉଥିଲା, ସେତେବେଳର ଲୋକେ କିପରି ଉଦାର ଚରିତ୍ର ଥିଲେ ପୁଣି ପୁଣ୍ୟ-ଶ୍ଳୋକ ଅଶୋକଙ୍କ ତିରୋଧାନର ବହୁଶତାବ୍ଦୀ ପରେ ମଧ୍ୟ ତାଙ୍କର ଧର୍ମ-ପ୍ରତିଭା କିପରି ମଙ୍ଗଳମୟ ଫଳ ଉତ୍ପାଦନରୁ ବିରତ ହୋଇ ନ ଥିଲା । ୟୁରୋପର ସର୍ବପ୍ରଥମ ଆରୋଗ୍ୟଶାଳା ପାରିସ୍‌ରେ "ମେଇସନ୍ ଡ୍ୟୁ" ଖ୍ରୀଷ୍ଟପର ସପ୍ତମ ଶତାବ୍ଦୀରେ ପ୍ରତିଷ୍ଠିତ ହେବା ଜଣାଯାଏ ।" *

ବୌଦ୍ଧଗ୍ରନ୍ଥମାନଙ୍କରୁ ଦେଖାଯାଏ, ସେତେବେଳେ ଅନେକ ଲୋକ ବେସରକାରୀ ଭାବରେ ମଧ୍ୟ ରୋଗୀ, ଦୁର୍ବଳଙ୍କ ନିମନ୍ତେ ଅନେକ ଦାତବ୍ୟ ଆରୋଗ୍ୟ-ଶାଳା, ପାନ୍ଥଶାଳା ନିର୍ମାଣ କରୁଥିଲେ । ବୁଦ୍ଧଦାସଙ୍କ ପୁତ୍ର ଉପତିସୋ ଗର୍ଭିଣୀ, ଅନ୍ଧ, ରୋଗୀ ପଙ୍ଗୁଙ୍କ ପାଇଁ ଆରୋଗ୍ୟଶାଳା ବସାଇଥିଲେ । ଧାତୁସେବନ ମଧ୍ୟ ସେହି ଅଭିପ୍ରାୟରେ ସେହିପରି କରିଥିଲେ । ● ଆଉ ଜଣେ ମହାଦାତା ବୁଦ୍ଧଦାସ ସେହିପରି ବିକଳାଙ୍ଗ, ବିରୂପ, ବିପର୍ଯ୍ୟସ୍ତ ଲୋକଙ୍କ ପାଇଁ କେତେଗୁଡ଼ିଏ ଆଶ୍ରୟସ୍ଥଳ ନିର୍ମାଣ କରି ତହିଁରେ ଯୋଗ୍ୟ ଚିକିତ୍ସକଙ୍କୁ ନିଯୁକ୍ତ କରିଥିଲେ । ତହିଁରୁ ଜଣକ ଉପରେ ଭାର ଦିଆଯାଇଥିଲା—ସେ ଦେଶର ମୁଖ୍ୟ ରାସ୍ତାମାନଙ୍କ ଉପରେ ପ୍ରାୟ ଦଶ ମାଇଲ ଭିତରେ ଯେତୋଟି ଗ୍ରାମ ଥିବ, ସେ ସବୁର ଚିକିତ୍ସା-ବିଧାନ (Medical Relief) ପ୍ରତି ଦୃଷ୍ଟି ଦେବେ ।

କେବଳ ଲୋକଙ୍କ ପାଇଁ ନୁହେଁ, ଗୃହପାଳିତ ଜନ୍ତୁମାନଙ୍କ ପାଇଁ ମଧ୍ୟ ସେପରି କରାଯାଉଥିଲା । ଅଷ୍ଟାଦଶ ଶତାବ୍ଦୀର ଏପରି ଗୋଟିଏ ଚିକିତ୍ସାଳୟର ଚିତ୍ର ଦିଆହୋଇଛି । ଜଣେ ପ୍ରସିଦ୍ଧ ପାଶ୍ଚାତ୍ୟ ଦର୍ଶକ ସେ ସମ୍ବନ୍ଧରେ କହିଛନ୍ତି, "ସୁରଟ୍‌ର ଏ ଚିକିତ୍ସାଳୟ ଦ୍ରଷ୍ଟବ୍ୟ । ବୃହତ୍ ପ୍ରାଚୀର ପରିବେଷ୍ଟିତ ବିଶାଳ ଭୂମିରେ ତାହା ଅବସ୍ଥିତ । ଭିନ୍ନ ଭିନ୍ନ ଜନ୍ତୁଙ୍କ ପାଇଁ ଭିନ୍ନ ଭିନ୍ନ ଖଞ୍ଜାରେ ବିଭକ୍ତ । ରୋଗୀ ଜନ୍ତୁଙ୍କୁ ଅତି ସାବଧାନରେ ଏଠାରେ ଚିକିତ୍ସା କରାଯାଏ ପୁଣି ଅକର୍ମଣ୍ୟ

---

* Smith's Early History of India P. 280.

● Mahawanso, Ps. 249, 256.

ବୃଦ୍ଧ ବୟସରେ ସେମାନେ ଏଠାରେ ଶାନ୍ତିପୂର୍ଣ୍ଣ ଆଶ୍ରୟ ଲାଭ କରନ୍ତି ।" • ଆଉ ଜଣେ ଦର୍ଶକ କହିଛନ୍ତି 'ଯଦି କୌଣସି ଜନ୍ତୁର କୌଣସି ଅଙ୍ଗ ଭଙ୍ଗିଯାଏ, ସେ ଅକର୍ମଣ୍ୟ ହୋଇଯାଏ, ତେବେ ତାର ପୋଷକ ତାକୁ ଏଠାରେ ଆଣି ଛାଡ଼ିଦିଏ । ପୋଷକର ଜାତି, ଧର୍ମ ନିର୍ବିଶେଷରେ ସେ ଜନ୍ତୁକୁ ଗ୍ରହଣ କରାଯାଏ । ମୁଁ ଦେଖିଛି, ଏ ଚିକିତ୍ସାଳୟରେ ଘୋଡ଼ା, ଖେଚର, ଷଣ୍ଢ, ମେଣ୍ଢା, ଛେଳି, ମାଙ୍କଡ଼, ନାନାଜାତିର ପାରା ଓ କୁକୁଡ଼ା ଅନେକ ପ୍ରକାରର ପକ୍ଷୀ ଅଛନ୍ତି । ଗୋଟାଏ କୌତୁହଳର କଥା, ଏଠାରେ ଗୋଟିଏ କଇଁଛ ଅଛି । ତାହା ସେଠାରେ ପଞ୍ଚସ୍ତରି ବର୍ଷ ହେଲା ଅଛି ବୋଲି କଥିତ । ଆଉ ଗୋଟିଏ ଦ୍ରଷ୍ଟବ୍ୟ ଏହି, ଏଠାରେ ମୂଷା, ଓଡ଼ଶ ସେହିପରି ଅନ୍ୟାନ୍ୟ ଘୃଣିତ ପ୍ରାଣୀଙ୍କ ପାଇଁ ମଧ୍ୟ ଗୋଟିଏ ବିଶିଷ୍ଟ ଖଞ୍ଜା ଅଛି । ସେମାନଙ୍କୁ ଖାଦ୍ୟଦେବାର ବ୍ୟବସ୍ଥା ଅଛି ।" •

ରୋଗର ଚିକିତ୍ସା, ସେବା ସମ୍ବନ୍ଧେ ହିନ୍ଦୁଶାସ୍ତ୍ରରେ ଫଳଶ୍ରୁତି ଯଥେଷ୍ଟ । ଋଷି ସମ୍ବର୍ତ୍ତ କହନ୍ତି, ରୋଗର ନିରାକରଣ ପାଇଁ ଯେ ଔଷଧ, ଅନ୍ୟାନ୍ୟ ଖାଦ୍ୟ, ଅନ୍ୟାନ୍ୟ ଉପକରଣ ଯୋଗାଏ, ସେ ନିଜେ ସବୁ ରୋଗରୁ ମୁକ୍ତହୋଇ ଦୀର୍ଘଜୀବନ, ସୁଖ ଲାଭକରେ । ଅଗସ୍ତ୍ୟଙ୍କ ମତରେ ଯେ ରୋଗୀକୁ ବିନା ଖର୍ଚ୍ଚରେ ଅନ୍ନ, ଔଷଧ ଯୋଗାଏ ସେ ପୂର୍ଣ୍ଣସ୍ୱାସ୍ଥ୍ୟ, ଆନନ୍ଦର ଅଧିକାରୀ ହୁଏ । ସୌରପୁରାଣ ଏ ଉକ୍ତିର ପୂର୍ଣ୍ଣ ସମର୍ଥନ କରେ । ନନ୍ଦିପୁରାଣରେ ଲେଖାଅଛି, ଯେଉଁଲୋକ ଚକ୍ଷୁପୀଡ଼ା ଶାନ୍ତିପାଇଁ ଅଞ୍ଜନ ଦିଏ, ମରଣ ପରେ ସେ ସୂର୍ଯ୍ୟଲୋକକୁ ଯାଏ; ଇହଲୋକରେ ମଧ୍ୟ ସେ ରୂପବନ୍ତ, ଭାଗ୍ୟବନ୍ତ, ନୀରୋଗ ନେତ୍ର ହୁଏ । ଧର୍ମ, ଅର୍ଥ କାମ, ମୋକ୍ଷ—ଚତୁର୍ବର୍ଗ ସାଧନପାଇଁ ପୂର୍ଣ୍ଣସ୍ୱାସ୍ଥ୍ୟ, ବଳିଷ୍ଠ ଶରୀର ଅପରିହାର୍ଯ୍ୟ । ସେହେତୁ ଔଷଧ, ପରିଧାନ, ବିଦୂଷୀ ଭିଷକ, ଅସ୍ତ୍ର ଚିକିତ୍ସକ, ଭୃତ୍ୟ, ଚିକିତ୍ସାଶାସ୍ତ୍ର ପାଠରତ ଛାତ୍ରଙ୍କୁ ବସା ସଜ୍ଜା ଇତ୍ୟାଦି ଖଞ୍ଜା ହୋଇଥିବା ଆରୋଗ୍ୟଶାଳା ଯେ ପ୍ରତିଷ୍ଠିତ କରେ, ରୋଗୀ, ଦୁଃସ୍ଥର ଚିକିତ୍ସା ବ୍ୟବସ୍ଥା କରେ, ସେ ବାସ୍ତବିକ ସକଳ ପୁଣ୍ୟ ଐଶ୍ୱର୍ଯ୍ୟ, ପୁଷ୍ଟି, ମୁକ୍ତିର ଅଧିକାରୀ ହୁଏ । ସ୍କନ୍ଦପୁରାଣରେ ଲେଖାଅଛି, ମହାବୈଦ୍ୟଙ୍କୁ ଯେ ପୁରସ୍କୃତ କରେ ପୁଣି ସର୍ବ ଉପକରଣଯୁକ୍ତ ଆରୋଗ୍ୟଶାଳା ପ୍ରତିଷ୍ଠିତ କରେ,ତାହାର ପୁଣ୍ୟଫଳ କହିବାର ନୁହେଁ ।

ସେତେବେଳେ କେବଳ ଔଷଧ ଦେବାରେ ନୁହେଁ । ଆରୋଗ୍ୟଶାଳାର ନିର୍ମାଣ ପ୍ରକାର ଉପରେ ମଧ୍ୟ ତୀକ୍ଷ୍ଣ ଦୃଷ୍ଟି ଦିଆଯାଉଥିଲା । ପ୍ରାଗ୍-ଐତିହାସିକ

---

• Hamilton—Description of Hindustan, Vol, I. P.718.

• Cooke—Things Indian, Art Pinjrapole.

ଆୟୁର୍ବେଦର ସର୍ବଶ୍ରେଷ୍ଠ ଉପାସକ ଚରକ ଏ ସମ୍ପର୍କରେ ଲେଖିଛନ୍ତି, "ସ୍ଥାପତ୍ୟ ଯୁଗରେ ବିଦ୍ୟା Science Engineering ବିଶାରଦ (Skilled Engineer) ଆରୋଗ୍ୟଶାଳା ପାଇଁ ଗୋଟିଏ ଦୃଢ଼ ପ୍ରଶସ୍ତ କୋଠା ତିଆର କରିବେ । ତହିଁର ଗୋଟାଏ ପାଖରେ ମୁକ୍ତବାୟୁ ବିଚରଣ କରୁଥିବ; ଅନ୍ୟ ତିନୋଟି ପାଖ ଶୀତଳ ହୋଇଥିବ । ପାରିପାର୍ଶ୍ୱିକ ପ୍ରାକୃତିକ ଦୃଶ୍ୟ ମନୋରମ, ଆରାମଦାୟକ ହୋଇଥିବ । କୋଠାଟି ଅନ୍ୟ କୌଣସି ବୃହତ୍ତର କୋଠାଦ୍ୱାରା ଘୋଡାଇ ହୋଇଯାଇ ନ ଥିବ; ଧୂମ, ଧୂଳି ତହିଁରେ ଲଗିବାର ନୁହେଁ; ସୂର୍ଯ୍ୟଙ୍କ ପ୍ରଖର କିରଣ ଠିକ୍ ତା ଉପରେ ପଡିବ ନାହିଁ । ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ— ସବୁ ମାନବିକ ଇନ୍ଦ୍ରିୟର ଅରୁଚିକର, ବିରକ୍ତିକର, ଘୃଣାଜନକ କୌଣସି ପଦାର୍ଥ ତହିଁରେ ରଖିବାର ନୁହେଁ । କୋଠାର ତଳ-ଉପରକୁ ଯିବା ଆସିବା ପାଇଁ ପ୍ରଶସ୍ତ ସିଡ଼ି ଥିବ । କାଠରେ ତିଆରି ବଡ଼ ବଡ଼ ଖଲ ଓ ଶିଳୁପା ଥିବ । କୋଠା ଚାରିପାଖରେ ପାଇଖାନା, ସ୍ନାନଘର, ରନ୍ଧନଶାଳା ଇତ୍ୟାଦି ନିର୍ମାଣ ପାଇଁ ବିସ୍ତୃତ ଜାଗା ଥିବ । ଆରୋଗ୍ୟଶାଳାରେ ଆୟୁର୍ବେଦରେ ଗଭୀର ଅଭିଜ୍ଞଶାସ୍ତ୍ରୀ, ଅସ୍ତ୍ର ଚିକିତ୍ସକ, ବିଚକ୍ଷଣ ସେବାଶୁଶ୍ରୂଷାକାରୀ, ହର୍ଷୋତ୍‌ଫୁଲ୍ଲ ସଙ୍ଗୀ ଥିବେ । ସେବକମାନେ (Nurses) ନିର୍ମଳସ୍ୱଭାବ, ଉଦାରଚେତା, ଉତ୍ତମ-ଆଚରଣ ପ୍ରିୟ, ସଦ୍‌ଗୁଣବିଶିଷ୍ଟ ହୋଇଥିବେ । ଭିନ୍ନଭିନ୍ନ ପ୍ରକାର ରୁଚିକର ବ୍ୟଞ୍ଜନ ରାନ୍ଧିବା, ସ୍ନାନ କରାଇବା, ଘଷା-ମଜା କରିବା, ରୋଗୀକୁ ଉଠାଇ ଚଳାଇବା, ଶଯ୍ୟା ସଫାସୁତରା ରଖିବା ଇତ୍ୟାଦି ସେବାର ବିଭିନ୍ନ କ୍ରିୟାରେ ସେମାନେ ଦକ୍ଷ, ନିପୁଣ, ଚତୁର ହୋଇଥିବା ଉଚିତ । ଔଷଧର ବିଭିନ୍ନ ଉପାଦାନ ମିଶାଇ ତିଆର କରିବା ଲୋକଙ୍କ ସେ ଦିଗରେ ପୂର୍ଣ୍ଣ ଅଭିଜ୍ଞତା ଥିବା ଆବଶ୍ୟକ । ସଙ୍ଗୀଗଣ Companions ମଧୁର ସ୍ୱରଯନ୍ତ୍ର ସଙ୍ଗୀତକାର, କଥକ ହୋଇଥିବା ଉଚିତ । ଲୋକ-ଗୀତ Folk Songs ଢ଼ଗ-ଢମାଳି, ପ୍ରବଚନ, ଗଳ୍ପ, ଆଖ୍ୟାୟିକା, ପୁରାଣ, ଇତିହାସ ଇତ୍ୟାଦିରେ, ଆମୋଦ ପ୍ରମୋଦରେ ସେମାନଙ୍କର ଗଭୀର ପ୍ରବେଶ ଥିବା ଆବଶ୍ୟକ । ରୋଗୀର ମୁଖଭଙ୍ଗୀ, ଚାହାଣି ବା ଠାରରୁ ଅଭିପ୍ରାୟ ବୁଝି ତାର ଅନୁମତ ଆଚରଣ କରିବାକୁ ହେବ । ସ୍ଥାନୀୟ ଜଳବାୟୁ, ହାବଭାବ ସମ୍ବନ୍ଧେ ତାଙ୍କର ସମ୍ୟକ୍ ଜ୍ଞାନ ଥିବା ଆବଶ୍ୟକ । ଆରୋଗ୍ୟଶାଳାର ସଂଲଗ୍ନରେ ଗୋଟିଏ ଗୋଶାଳା ରଖିବାକୁ ହେବ । ତହିଁରେ ଧୀରସ୍ୱଭାବ, ସୁସ୍ଥ, ପ୍ରଚୁର ଦୁଗ୍‌ଧବତୀ ଅମୃତବହା ଗାଈ ରଖିବାକୁ ହେବ । ଆରୋଗ୍ୟଶାଳାର ସାଜସଜ୍ଜା, ଅସ୍ତ୍ରାଗାର, ଔଷଧ ଭଣ୍ଡାର ପୂର୍ଣ୍ଣ ବିଜ୍ଞାନସମ୍ମତ, ଉଦ୍ଭାବନଶୀଳ ହୋଇଥିବା ଉଚିତ ।" ●

---

● Charaka Samhita, I. XV; Mukherjee Surgical Inst of the Hindus.

କୌଟିଲ୍ୟ ସାଧାରଣ ଆରୋଗ୍ୟ ସମ୍ବନ୍ଧେ ମଧ୍ୟ ବିଶେଷ ଆଲୋଚନା କରିଛନ୍ତି । ତାଙ୍କ ସମୟକୁ ଲକ୍ଷ୍ୟକରି ସେ କହିଛନ୍ତି, "ଲୋକଙ୍କ ସ୍ୱାସ୍ଥ୍ୟରକ୍ଷା ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରଜାଙ୍କ ସ୍ୱାସ୍ଥ୍ୟରକ୍ଷା ସକାଶେ ରାଜ୍ୟ ସବୁପ୍ରକାର ବନ୍ଦୋବସ୍ତରୁ ନିବର୍ତ୍ତ ନ ଥିଲା । ସାଧାରଣରେ ସବୁ ଜନ-କେନ୍ଦ୍ର-ମାନଙ୍କରେ ବୈଦ୍ୟ, ଚିକିତ୍ସକ ରଖା ଯାଉଥିଲେ । ଅର୍ଥଶାସ୍ତ୍ରର ଜନପଦ ନିବେଶ ଅଧ୍ୟାୟରେ ପୁଣି ସେ ଲେଖିଛନ୍ତି, "ପଲ୍ଲୀମାନଙ୍କରେ ଚିକିତ୍ସକ ରଖା ଯାଉଥିଲେ । ସେମାନଙ୍କର ଭରଣପୋଷଣ ପାଇଁ ଜମି ଖଞ୍ଜା ଯାଉଥିଲା । ସହରମାନଙ୍କରେ ସ୍ୱାସ୍ଥ୍ୟରକ୍ଷା, ରୋଗୀମାନଙ୍କର ଚିକିତ୍ସା, ନାଗରିକମାନଙ୍କ ସାଧାରଣ ସ୍ୱାସ୍ଥ୍ୟ ଜଗିବା 'ନାଗରିକ'ର ବାଧ୍ୟତାମୂଳକ କର୍ତ୍ତବ୍ୟ ଥିଲା । ଏହି ଉଦ୍ଦେଶ୍ୟରେ ତାଙ୍କ ଇଲାକାରେ ଅନେକ ଚିକିତ୍ସକ ନିଯୁକ୍ତ କରାଯାଉଥିଲେ । ଏ ତ ସର୍ବସାଧାରଣ ବ୍ୟବସ୍ଥା ଥିଲା । ସଂକ୍ରାମକ ରୋଗ ପ୍ରସାରବେଳେ ତାକୁ ହଠାତ୍ ଆୟତ୍ତ କରି ଦୂରକରିବା ପାଇଁ ଆଶୁବ୍ୟବସ୍ଥା କରାଯାଉଥିଲା । ଖାଦ୍ୟସାମଗ୍ରୀରେ ବ୍ୟଭିଚାର (Adulteration of foodstuffs) ବନ୍ଦ କରିବା, ଜଳବାୟୁର ନିର୍ମଳତା ରକ୍ଷାକରିବା ପାଇଁ ତୀକ୍ଷ୍ଣ ଦୃଷ୍ଟି ଦିଆଯାଉଥିଲା । ପଲ୍ଲୀର ବାଟଘାଟ, ନାଳବନ୍ଧ ନିର୍ମଳ କରାଇବା ପାଇଁ ରାଜକୀୟ କର୍ମଚାରୀମାନେ ରହୁଥିଲେ । ଯେକୌଣସି ପ୍ରକାରେ ଲୋକ ସ୍ୱାସ୍ଥ୍ୟରେ ବାଧାପାଇବା ଲୋକଙ୍କୁ କଠିନ ଦଣ୍ଡ ଦେବାର ବିଧିଥିଲା । ସହରର ପାଣିନାଳ ନିୟମିତ ପରିଦର୍ଶନ କରାହେଉଥିଲା । ଯେଉଁମାନେ ବାଟରେ ମଳମୂତ୍ର ବିସର୍ଜନ କରୁଥିଲେ, ଘର ଆଗରେ ମଇଳା ଜମା କରୁଥିଲେ, ଦାଣ୍ଡରେ ମୃତଜନ୍ତୁ ପକାଇ ରଖୁଥିଲେ, ଜନନିବାସ ମଧ୍ୟରେ ଶବ ପୋତି ରଖୁଥିଲେ, ସେମାନଙ୍କୁ ନଗର ମାଜିଷ୍ଟ୍ରେଟମାନେ ଦଣ୍ଡ ଦେଉଥିଲେ । ମାଂସହାଟ ଓ ଭୋଜନାଳୟରେ ବିକ୍ରି ହେଉଥିବା ପଦାର୍ଥ ଦୂଷିତ ନା ନୁହେଁ, ଏହା ପରୀକ୍ଷା କରିବାର ଭାର 'ସୂନାଧ୍ୟକ୍ଷ'ଙ୍କୁ ଦିଆଯାଉଥିଲା । ସାଧାରଣ କାର୍ଯ୍ୟ ବିଭାଗ (Public Works Department) ବନ୍ଧ, ଘାଟ, ସଡକ ଇତ୍ୟାଦି ନିର୍ମାଣ ଓ ମରାମତି କରିବାରେ, ଲୋକସ୍ୱାସ୍ଥ୍ୟ ରକ୍ଷା ଦିଗରେ ଯତ୍ନଶୀଳ ହେଉଥିଲେ । ●

( ୩ )

ଏ ସବୁରୁ ଜଣାଯାଏ, ପ୍ରାଚୀନ ଭାରତରେ ସ୍ୱାସ୍ଥ୍ୟରକ୍ଷା ପ୍ରଣାଳୀ କିପରି ନିୟନ୍ତ୍ରିତ, ମଙ୍ଗଳକର ଲୋକ ଉନ୍ନତି ବିଧାୟକ ଥିଲା । କାଳଚକ୍ରର ଗତିରେ, ଉତ୍ଥାନ

---

● Artha Sastra, Chap. XXI; N C. Banerjee, Kautilya exposition of his social, ideal, and political Vols I.& II.

ପତନର ଶାଶ୍ୱତ ବିଧିରେ ଏ ଦେଶର ଜୀବନ-ଶକ୍ତି କ୍ଷୀଣ ହୋଇ ଆସିବା ସଙ୍ଗେ ସଙ୍ଗେ ରାଜନୈତିକ, ଆର୍ଥିକ, ସାମାଜିକ, ସବୁ ଦିଗରେ ତାହାର ଯେପରି ଗ୍ଳାନି ପହଞ୍ଚିଲା, ଏ ଦିଗରେ ମଧ୍ୟ ସେପରି ହେଲା । ଏବେ କିନ୍ତୁ ଜାଗରଣ ଆସିଛି । ତଥାପି ସଂଗଠିତ ଉଦ୍ୟମ ଯୋଜନାରେ ତାହା ଆହୁରି ପ୍ରକାଶିତ ହୋଇନାହିଁ । ପୁଣି ଏଠାରେ ଭୁଲିଯିବାର ନୁହେଁ, ସଭ୍ୟତାର ଦ୍ୱାହି କେତେଦୂର ମାରମୁଖ । ଲବୁକଙ୍କ ମତରେ, ଆଧୁନିକ ସଭ୍ୟତା ଭୌତିକ ବିଜ୍ଞାନର ପ୍ରସାର କରିଛି ସତ୍ୟ; କିନ୍ତୁ ଶାରୀରିକ, ମାନସିକ, ଆତ୍ମିକ, କୌଣସି ଦିଗରେ ଲୋକଙ୍କୁ ସ୍ୱସ୍ଥତା ଆଣିଦେଇ ନାହିଁ । ତାହାର ସଂଘର୍ଷରେ, ବାହ୍ୟ ଜଡ଼ ପଦାର୍ଥର କ୍ଷିପ୍ରତାରେ, ଆଦର୍ଶହୀନ ଅର୍ଥହୀନ ଚଞ୍ଚଳତାରେ ମନୁଷ୍ୟର ଆଧ୍ୟାତ୍ମିକ ବୈଶିଷ୍ଟ୍ୟ ଲୁଚିଯାଉଛି । ସେଥିପାଇଁ ପରା ଆଜି ସ୍ୱାସ୍ଥ୍ୟବିଜ୍ଞାନର ଅସମ୍ଭାବିତ ଉନ୍ନତି ହୋଇଥିଲେ ସୁଦ୍ଧା, ଚିକିତ୍ସା-ପ୍ରଣାଳୀରେ ଅଦ୍ଭୁତ ଅଦ୍ଭୁତ ଆବିଷ୍କାର ହେଉଥିଲେ ସୁଦ୍ଧା, ଏଲୋପଥି, ୟୁନାନି, ହୋମିଓପଥି, ଇଲେକ୍ଟ୍ରୋପଥି, ନେଚରୋପଥି, ଏକ୍ସରେ, ରେଡ଼ିଅମ୍—ଏ ସବୁ ସତ୍ତ୍ୱେ, ଆମର ସବୁ ମେଡ଼ିକଲ୍ ସ୍କୁଲକଲେଜ ସତ୍ତ୍ୱେ ରୋଗୀସଂଖ୍ୟା ବଢ଼ୁଛି, ନୂଆ ନୂଆ ରୋଗ ବାହାରୁଛି, ବଡ଼ଲୋକେ ସାଧାରଣରେ ନିମିଷକ ମଧ୍ୟରେ ହୃଦ୍‌ରୋଗ Heart failureରେ ଇହଲୀଳା ଶେଷ କରୁଛନ୍ତି । ସ୍ତ୍ରୀଟିଆ ଲୋକେ କେଉଁଆଡ଼ର ନ ହୋଇ କଷ୍ଟଭୋଗ କରୁଛନ୍ତି, ଭାରତୀୟର ହାରାହାରି ଆୟୁ କମିଯାଉଛି । ଚିକିତ୍ସାରେ ଦେଶଗତ, ଜାତିଗତ, କାଳଗତ, ବ୍ୟକ୍ତିଗତ ରୁଚି, ପାରିପାର୍ଶ୍ୱର ସ୍ଥିତିଗତି ବିଚାର୍ଯ୍ୟ । ଗୋଟିଏ ଧରଣର ଚିକିତ୍ସା ଦେଶକାଳପାତ୍ର ଭେଦରେ କଲ୍ୟାଣପ୍ରଦ ହୋଇ ନ ପାରେ । ଏ ଦେଶର ଏ ସବୁକୁ ଧରି ତ୍ରିଦୋଷର ମୌଳିକ ଭିତ୍ତି ଉପରେ କାୟଚିକିତ୍ସା, ଅଙ୍ଗଚିକିତ୍ସା, ରସାୟନ, ଅଗଦତନ୍ତ୍ର, ଶଲ୍ୟତନ୍ତ୍ର ଇତ୍ୟାଦି ଅଷ୍ଟାଙ୍ଗ ଯୋଗରେ, ଦିନଚର୍ଯ୍ୟା, ରାତ୍ରିଚର୍ଯ୍ୟା, ଋତୁଚର୍ଯ୍ୟା, ବ୍ରହ୍ମଚର୍ଯ୍ୟା ଇତ୍ୟାଦି ସ୍ଥିତିରେ ପ୍ରାଚୀନ ଆୟୁର୍ବେଦର ବିଶାଳ ହର୍ମ୍ୟ ଗଢ଼ା ହୋଇଥିଲା । ଗବେଷଣା, ବିଜ୍ଞାନର ଆଲୋକ, ପ୍ରତ୍ୟକ୍ଷ ଅନୁଭୂତି, ପୃଷ୍ଠପୋଷକତାର ଅଭାବରେ, ଶାସକଶାସିତ ଉଭୟଙ୍କ ଅବହେଳାରେ ତାହାର ଘୋର ଅବନତି ଘଟିଛି, ତହିଁରେ ବ୍ୟଭିଚାର ପଶିଛି । କିନ୍ତୁ ତାହାଙ୍କ ସମ୍ୟକ୍ ଶୋଧନ ସଙ୍ଗେ ପୁଷ୍ଟି, ପ୍ରସାର ନିତାନ୍ତ ଲୋଡ଼ା । ସେଥିସଙ୍ଗେ ପୁଣି ତୁଳନାତ୍ମକ ବିଚାର ଲୋଡ଼ା ଆଧୁନିକ ସଭ୍ୟତାର ସତ୍ୟାସତ୍ୟ—ହିତାହିତ ପରୀକ୍ଷା ବିଶ୍ଳେଷଣ, ଲକ୍ଷ୍ୟ ଅବଧାରଣ ଲୋଡ଼ା ।



# ଛଣାଖାପାଟଣା ଓଡ଼ିଆ ସମସ୍ୟା

ଓଡ଼ିଆ ମାତ୍ରେ ଜାଣନ୍ତି ଓ କହନ୍ତି, ଏଥିପୂର୍ବେ ଯେଉଁ ବିକ୍ଷିପ୍ତ ଓଡ଼ିଆ ଅଞ୍ଚଳଗୁଡିକ ଚାରି ଭାଗରେ ବିଭକ୍ତ ହୋଇ ବିହାର, ବଙ୍ଗ, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ସଙ୍ଗେ ଲଞ୍ଜ ପରି ଯୋଡ଼ା ହୋଇଥିଲା, ତାକୁ ଏକାଠି କରି, ୧୯୩୫ ସାଲ ଭାରତ-ଶାସନ-ଆଇନ ଅନୁଯାୟୀ ଯେଉଁ ନୂତନ ପ୍ରଦେଶ ଗଢ଼ାଗଲା, ତହିଁରେ ସେହିସବୁ ଅଞ୍ଚଳରୁ ଅଧିକାଂଶ ଭୁକ୍ତ କରାଗଲା । କିନ୍ତୁ ବାକୀତକ ଅଦ୍ୟାବଧି ସେହି ବିଭିନ୍ନ ପ୍ରଦେଶର ଉପାନ୍ତ ଭଳି ରହିଅଛି । ଉତ୍ତର-ଗର୍ଭା ସିଂହଭୂମି, ବୀର ପ୍ରସବିନୀ ମେଦିନୀପୁର, ପଦ୍ମପୁର, ଫୁଲଝର, ଗଞ୍ଜାମର କେତେକାଂଶ ଓଡ଼ିଶା ପ୍ରଦେଶକୁ ଆସିନାହିଁ । ଏପରି ଅସଂପୂର୍ଣ୍ଣ ଓ ବିକଳାଙ୍ଗ ପ୍ରଦେଶ ଗ୍ରହଣ କରିବା ଉଚିତ କି ନାହିଁ ଏ କଥା ଦେଇ ମଧ୍ୟ ଉପରୋକ୍ତ ଆଇନ ପ୍ରକାଶର ଅବ୍ୟବହିତ ପରେ ଓଡ଼ିଶା ନେତୃମଣ୍ଡଳରେ ଚାଞ୍ଚଲ୍ୟ ଉଠିଥିଲା । ଶେଷରେ "କାନ୍ଦୁଥିବା, ଯାହା ମିଳୁଥିବ ବାନ୍ଧୁଥିବା," ନୀତିରେ ପ୍ରଦେଶ ଗୃହୀତ ହେଲା । କିନ୍ତୁ ସେପରି କରିବାରେ ଏତିକି ଆଶା ଥିଲା, ବର୍ତ୍ତମାନ ପ୍ରଚଳିତ ଆଇନ ଅନୁସାରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟର ବୈଶିଷ୍ଟ୍ୟ ଫୁଟି ଉଠିବ ଓ ସେପରି ସ୍ଥଳେ ଓଡ଼ିଆଙ୍କର ଗୋଟାଏ ପ୍ରଦେଶ ବୋଲି ନ ଥିଲେ ସେମାନଙ୍କର ସମୂହ ସ୍ୱାର୍ଥରକ୍ଷା ହୋଇପାରିବ ନାହିଁ । ଘର ବୋଲି ନିଜର ଗୋଟାଏ ଥିଲେ, ପରିତ୍ୟକ୍ତ ଅଞ୍ଚଳ ଓଡ଼ିଆବାସୀଙ୍କ ଦୁରବସ୍ଥାର ମଧ୍ୟ ସହଜରେ ପ୍ରତିକାର ହୋଇପାରିବ ଓ ସେଗୁଡ଼ିକ କ୍ରମଶଃ ମାତୃ-ଦେଶରେ ଯୋଗ କରିବା ନିମନ୍ତେ ବିଭିନ୍ନ ଭାରତୀୟ ପ୍ରାଦେଶିକ ସରକାର, କେନ୍ଦ୍ର ତଥା ବିଲାତ ସରକାରଙ୍କ ସଙ୍ଗେ ଲଢ଼େଇ ଭିଡ଼େଇ କରିବା ଓ କରାଇବା ପାଇଁ ଗୋଟାଏ ସୁଯୋଗ ମିଳିବ । ଏବେ ଉପରୋକ୍ତ ଆଇନ ପ୍ରଚଳିତ ହୋଇ କେତେବର୍ଷ ବିତିଗଲଣି । ତଥାପି ପରିତ୍ୟକ୍ତ ଓଡ଼ିଆମାନଙ୍କ ପାଇଁ ଓଡ଼ିଶା ସରକାର ଓ ସର୍ବସାଧାରଣ ସରକାରୀ ଓ ବେସରକାରୀ ଭାବରେ କ'ଣ କରିଅଛନ୍ତି ତାହା ଆଖିକି ଦିଶୁନାହିଁ । ଅବଶ୍ୟ ବେସରକାରୀ ଭାବରେ ଓଡ଼ିଶା ମନ୍ତ୍ରିମଣ୍ଡଳ, ବ୍ୟବସ୍ଥାପକ ଓ ନେତୃବୃନ୍ଦଙ୍କ ସହାନୁଭୂତି ଏ ଦିଗରେ ରହିଛି ଏହା ଜଣାପଡ଼ୁଛି । କିନ୍ତୁ ସଂହତ ବଳିଷ୍ଠ ଉଦ୍ୟମ ହେଉନାହିଁ । ଏ ମଧ୍ୟରେ ଏହି ପରିତ୍ୟକ୍ତ ଅଞ୍ଚଳଗୁଡ଼ିକ ଓଡ଼ିଶାରେ ମିଶାଇବା ପାଇଁ ଓଡିଶା ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ ଗୃହୀତ ହୋଇଅଛି । ପ୍ରସ୍ତାବଟି ଶୀଘ୍ର କାର୍ଯ୍ୟକାରୀ

ହେବାର ଦେଖିଲେ ସୁଖୀ ହେବୁ । ଅନ୍ୟ ପକ୍ଷରେ ଓଡ଼ିଶା ସରକାର କେବଳ ସବୁ କରିବେ, କିନ୍ତୁ ଲୋକେ ଗୁହିଁ ବସିବେ, ଏପରି ଭାବିବା ଅସୁନ୍ଦର । ବର୍ତ୍ତମାନ ଲୋକ ପ୍ରଚଳିତ ଶାସନ, ଗଠନ-ମୂଳକ, ଲୋକ-ପାଳକ, ସୁସ୍ଥ ଲୋକମତ ଜାଗରଣ ହିଁ ସରକାରଙ୍କୁ ବିହିତ ଇଙ୍ଗିତ ଦେବ । ଏ ଦିଗରେ ପରିତ୍ୟକ୍ତ ଓଡ଼ିଆମାନଙ୍କର ବହୁତ ଦାୟିତ୍ୱ ଓ ଗୁରୁତର କର୍ତ୍ତବ୍ୟ ଅଛି । ଶୃଙ୍ଖଳବଦ୍ଧ ସଂଯତ ଭାବରେ ନ୍ୟାଯ୍ୟ ଆନ୍ଦୋଳନ ଚଳାଇ ନିଜର ପ୍ରକୃତ ଅଭାବ ଅଭିଯୋଗ କର୍ତ୍ତୃପକ୍ଷଙ୍କ ସମ୍ମୁଖରେ ଉପସ୍ଥାପିତ କରି, ଜାତୀୟ ଆଦର୍ଶ ଅନୁସରଣରେ ସେସବୁର ସମାଧାନ କରିବା ପାଇଁ ସର୍ବଦା ଜାଗରୁକ ଥିବା ଉଚିତ । ଏ ସମ୍ବନ୍ଧେ ପ୍ରଥମେ ପରିତ୍ୟକ୍ତ ଅଞ୍ଚଳଗୁଡ଼ିକର ଠିକ୍ ବିବରଣ ପ୍ରକାଶ ଅତ୍ୟନ୍ତ ଆବଶ୍ୟକ । ଏହି କ୍ଷୁଦ୍ର ଲେଖାରେ ମୋତେ ଜଣାଥିବା ମାନ୍ଦ୍ରାଜୀ ଓଡ଼ିଆଙ୍କ ଅବସ୍ଥା ଓ ଅଭାବର କେତୋଟି ବିଚ୍ଛିନ୍ନ ସଂକେତ ମାତ୍ର ଦେଉଛି । ଅଧିକ ଅଭିଜ୍ଞ ଲୋକେ ଅଧିକ ପ୍ରସଙ୍ଗ ପକାଇ କର୍ମ-ଯୋଜନା ପ୍ରସ୍ତୁତ କରିବେ । ଏ ମଧ୍ୟରେ 'ନବଭାରତ'ରେ ପଣ୍ଡିତ ଗୋଦାବରୀଶ ମିଶ୍ର ସିଂହଭୂମି ଓଡ଼ିଆ ସମସ୍ୟା ସମ୍ବନ୍ଧେ ଲେଖିଥିଲେ । ସେହିଭଳି ବଂଗ ଓ ମଧ୍ୟପ୍ରଦେଶୀ ଓଡିଆଙ୍କ ବିବରଣ ମଧ୍ୟ ଶୀଘ୍ର ପ୍ରକାଶ ହେବା ଦରକାର ।

ମାନ୍ଦ୍ରାଜୀ ଓଡ଼ିଆ ସମସ୍ୟା ପ୍ରକୃତରେ ବିଶାଖାପାଟଣା ଓଡିଆ ସମସ୍ୟା । ବର୍ତ୍ତମାନ ମାନ୍ଦ୍ରାଜରେ ଥିବା ଓଡ଼ିଆ ନିବାସୀ ଅଞ୍ଚଳମାନଙ୍କ ମଧ୍ୟରେ ପୁରୁଣା ବ୍ରହ୍ମପୁର ତାଲୁକା ଭିତରୁ ଦକ୍ଷିଣ-ପଶ୍ଚିମ ଦିଗରେ ଏକାବନ ଖଣ୍ଡ ଗ୍ରାମ, ପୁରୁଣା ଇଚ୍ଛାପୁର ତାଲୁକା ଭିତରୁ ଚିକିଟୀ ଇନାମ୍ କେତେଖଣ୍ଡ ଗ୍ରାମ (ଚିକିଟୀ ଜମିଦାରୀ ଓଡ଼ିଶାରେ ମିଶିଅଛି), ଇଚ୍ଛାପୁର, ପୁରୁଣା ସୋମପେଣ୍ଟ ତାଲୁକାରେ ଥିବା ବୁଡାରସିଙ୍ଗି, ତରଳା, ମଞ୍ଜୁଷା, ଟିକାଲି, ଜଳନ୍ତର ଓ ବାରୁଆ ଜମିଦାରୀ, ପାରଳା ଜମିଦାରୀର ପ୍ରାୟ ଚାରିଭାଗରୁ ତିନିଭାଗ (କେବଳ ଗୋଟିଏ ଭାଗ ଓଡ଼ିଶାରେ ମିଶିଅଛି), ଜୟପୁରର ମାଡ଼୍ଗୁଲ ଏଷ୍ଟେଟ ଅନ୍ୟାନ୍ୟ କେତେକ ମାଳ ସମତଳ ପ୍ରଦେଶ (ବାକୀସବୁ ଓଡ଼ିଶାରେ ମିଶିଛି) ପ୍ରଧାନ । ୧୯୩୧ ଜନଗଣନାରୁ ମୁଁ ଯେତେଦୂର ଲେଖା ଯୋଖା କରିଛି, ଏ ଅଞ୍ଚଳଗୁଡ଼ିକର ଜନସଂଖ୍ୟା ତୁଳନାରେ ଓଡ଼ିଆ ସଂଖ୍ୟା ତଳେ ଦିଆଯାଉଛି :—

| ଅଞ୍ଚଳର ନାମ | ମୋଟ ଜନସଂଖ୍ୟା | ଓଡିଆ ସଂଖ୍ୟା |
|---|---|---|
| ପୁରୁଣା ବ୍ରହ୍ମପୁର ତାଲୁକାର ୫୧ ଖଣ୍ଡ ଗ୍ରାମ | | ୧୮୨୫୩ |
| ମଞ୍ଜୁଷା ଜମିଦାରୀ | ୫୪୩୧୯ | ୯୪୯୮ |

| | | |
|---|---|---|
| ବୁଡ଼ାରସିଙ୍ଗି ଜମିଦାରୀ | ୩୩୭୨ | ୨୫୩୭ |
| ଜଳନ୍ତର ଜମିଦାରୀ | ୩୫୪୧୭ | ୧୨୬୫୯ |
| ଚିଟ୍ଟି ଇନାମ୍ | ୧୬୧୪୦ | ୨୯୪୬ |
| ବାରୁଆମାଲୁକ୍ଦାରୀ | ୧୧୩୮୭ | ୨୫୮୧ |
| ଟିକ୍କାଲି ଜମିଦାରୀ | ୧୫୨୨୩୬ | ୧୦୧୪୦ |

ଗ୍ରାମ୍ୟ ସଂଖ୍ୟା ଓ ଜନସଂଖ୍ୟା ତୁଳନାରୁ ଦେଖାଯାଏ—

| ଅଞ୍ଚଳର ନାମ | ମୋଟ ଗ୍ରାମ ସଂଖ୍ୟା | ସଂପୂର୍ଣ୍ଣ ଓଡ଼ିଆ ଥିବା ଗ୍ରାମ ସଂଖ୍ୟା | ଶତକଡ଼ା ୭୦-୯୯ ଓଡିଆଥିବା ଗ୍ରାମସଂଖ୍ୟା | ଶତକଡ଼ା ୫୦-୬୯ ଓଡ଼ିଆ ଥିବା ଗ୍ରାମ ସଂଖ୍ୟା |
|---|---|---|---|---|
| ପୁରୁଣାବ୍ରହ୍ମପୁର ତାଲୁକା | ୫୧ | X | X | ୪ |
| ମଞ୍ଜୁଷା | ୧୪୮ | ୭ | ୮ | ୫ |
| ବୁଡ଼ାରସିଙ୍ଗି | ୨୦ | ୯ | ୭ | ୨ |
| ଜଳନ୍ତର | ୧୦୩ | ୧୭ | ୧୫ | ୮ |
| ବାରୁଆ | ୫ | X | X | ୧ |
| ଟିକାଲି | ୩୫୪ | X | ୬ | ୨ |
| ପାରଳା | ୭୩୨ | ୯ | ୨୨ | ୩୬ |

"ସୋମପେଣ୍ଟ ତାଲୁକାର ସବୁ ଅଞ୍ଚଳରେ ତେଲୁଗୁ ଓ ଓଡିଆ ଭଷା ପ୍ରଚଳିତ, କିନ୍ତୁ ଅନୁପାତରେ ତେଲୁଗୁ ବେଶି, ମଧ୍ୟଭଗରେ ଓଡ଼ିଆ ବେଶି, କିନ୍ତୁ ସମୁଦ୍ରତଟ ଅଞ୍ଚଳରେ ତେଲୁଗୁ ବେଶି । ଟିକାଲି ତାଲୁକାର ସମୁଦାୟ ଭଗରେ ଓଡିଆ ପ୍ରଚଳିତ, କିନ୍ତୁ ଅଧିକାଂଶ ଉତ୍ତର-ପଶ୍ଚିମ କୋଣରେ ଓ ଟିକାଲି-ରଘୁନାଥପୁର ଚତୁର୍ଦିଗରେ । ପାରଳା ତାଲୁକାରେ ପ୍ରଚଳିତ ଭଷା ତେଲୁଗୁ, କିନ୍ତୁ ଓଡ଼ିଆ ଓ ଶବର ଭଷାର ମଧ୍ୟ ଉତ୍ତମ ପ୍ରାତିନିଧ୍ୟ ଅଛି—ଶବର ତାଲୁକା କେନ୍ଦ୍ରରେ ଓ ପର୍ବତ-ମାଳା ସୀମାରେ ଓ ଓଡିଆ କେନ୍ଦ୍ର ଓ ଉତ୍ତରରେ ବିଶେଷ ଭବରେ ଦେଖାଯାଏ ।" (୧୯୩୧ ଜନଗଣନା ପୁସ୍ତକ) । ଉପରେ ଦିଆଯାଇଥିବା ପାରଳାର ୭୩୨ ଗ୍ରାମରୁ ୧୮୮ ଖଣ୍ଡରେ ଶବର ଅଛନ୍ତି । ସେଥି ମଧ୍ୟରୁ ୪୫ ସମ୍ପୂର୍ଣ୍ଣ ଶବର, ୩୫ରେ ଶତକଡ଼ା

୬୦-୯୯ ଓ ୨୬ରେ ଶତକଡ଼ା ୫୦-୬୯ । ଶବରମାନେ କନ୍ଧ, ଭିଲ୍ଲ, ସାନ୍ତାଳ ଭଳି ଅନାର୍ଯ୍ୟ ଜାତି ବୋଲି ନିଆଯାଉ ଅଛନ୍ତି । ବର୍ତ୍ତମାନ ଭାରତୀୟ ଶାସନ ପଦ୍ଧତିର ବ୍ୟବସ୍ଥା ଅନାର୍ଯ୍ୟମାନଙ୍କ ଦୃଷ୍ଟିକୋଣକୁ ଧରି ହେଉ ନାହିଁ । ଏପରି ନହେବା ଉଚିତ୍ କି ନୁହେଁ ସେ ଅଲଗା କଥା । ପୁଣି ଶବର କୃଷ୍ଟିର ଓଡ଼ିଆ କୃଷ୍ଟି ସଙ୍ଗେ ଯେତେ ସାମଞ୍ଜସ୍ୟ ରହିଛି, ତେଲୁଗୁ ସଙ୍ଗେ ସେତେ କଦାପି ରହିବ ନାହିଁ । ଭାଷାତତ୍ତ୍ୱବିତ୍-ମାନେ ସ୍ଥିର କରିଅଛନ୍ତି ଓଡିଆ ଭାଷା ମୂଳତଃ ଶାବରୀ ପ୍ରାକୃତର ଗ୍ରନ୍ଥରେ ଗଢ଼ା ଯାଇଅଛି । ଏଣୁ ନ୍ୟାୟତଃ ଶବରମାନେ ଓଡିଆଙ୍କ ସଙ୍ଗେ ରହିଲେ ପାରଳାର ଆହୁରି କେତେକ ଗ୍ରାମ ଓଡ଼ିଶାକୁ ଆସିବା ଉଚିତ୍ । ପୁଣି ଉପରେ ଦିଆଯାଇଥିବା ହିସାବରୁ ଦେଖାଯାଏ, ବୁଡ଼ାରସିଙ୍ଗି ମାନ୍ଦ୍ରାଜ ପ୍ରଦେଶରେ ରହିବାର ଆଦୌ କାରଣ ନାହିଁ । ବାକୀ ସବୁ ତାଲୁକାରେ ଓଡ଼ିଆମାନେ କେନ୍ଦ୍ର ଓ ଉତ୍ତର-ପଶ୍ଚିମ କୋଣରେ ଏକତ୍ରିତ ଥିବାରୁ ସମୁଦ୍ର-ତଟ ଅଞ୍ଚଳ ଛାଡ଼ିଦେଇ ଓଡିଆ ଅଞ୍ଚଳଗୁଡ଼ିକ ଓଡ଼ିଶାକୁ ଆସିବାପରି ସୀମା-ରେଖା ଟଣାଯିବା ଉଚିତ ।

ଉପରେ ଦିଆଯିବା ସବୁ ଅଞ୍ଚଳଗୁଡିକ ମାନ୍ଦ୍ରାଜପ୍ରଦେଶର ଅନ୍ତିମ ଉତ୍ତରରେ ଅବସ୍ଥିତ ବିଶାଖାପାଟଣା ଜିଲ୍ଲାରେ ବର୍ତ୍ତମାନ ଅଛି । ସେ ସବୁ ପୁରୁଣା ଗଞ୍ଜାମରେ ଥିଲ, ଓଡିଶା ପ୍ରଦେଶ ଗଠନ ପରେ ରହିଯାଇ ପୁରୁଣା ବିଶାଖାପାଟଣା ଜିଲ୍ଲାରେ ମିଶିଲ । ତା ଆଗରୁ ପୁରୁଣା ବିଶାଖାପାଟଣା ଜିଲ୍ଲାରେ ଅନେକ ଓଡ଼ିଆ ଅଛନ୍ତି ଏ କଥା ସମସ୍ତେ ଜାଣନ୍ତି । ସେଠାରେ ଶୃଙ୍ଗାବରପୁକୋଟାର ଜନସଂଖ୍ୟା ୫୩୬୨ ଓ ତହିଁରୁ ଶତକଡା ୩୦ ଓଡ଼ିଆ । ଗୋଲକୋଣ୍ଡା, ଗୁଡ଼େମ୍, ସାଲୁର ଇତ୍ୟାଦିରେ ଓଡ଼ିଆ ମଧ୍ୟ ଅଛନ୍ତି । ବୀରବିଲ୍ଲୀ ତାଲୁକା (ଏହା ଭିତରେ ଜୟପୁର ଜମିଦାରୀର ମାଡ଼ୁଗୁଲ ଅଞ୍ଚଳ ଅଛି)ରେ ଓଡିଆ ଅଛନ୍ତି । ପାଲକୋଣ୍ଡା ତାଲୁକାରେ କେବଳ ଶତକଡ଼ା ୧୦ ତେଲୁଗୁ । ସବୁ ଅଞ୍ଚଳଗୁଡିକରେ ତେଲୁଗୁ ଓ ଓଡ଼ିଆମାନଙ୍କ ସଙ୍ଗେ ଅଧିକାଂଶ ଅନାର୍ଯ୍ୟ ଲୋକେ କନ୍ଧ, ଗଦବା, ପରଜା, ପଇଦି, ଶବର, କୋୟା, ଇତ୍ୟାଦି ଅଛନ୍ତି । କୁହାଯାଇଅଛି, ଏମାନେ ଓଡିଆଙ୍କ ସହିତ ମିଶିବାପରି ତେଲୁଗୁଙ୍କ ସହିତ ମିଶି ପାରନ୍ତି ନାହିଁ । ଏହାଛଡା କେବଳ ବିଶାଖାପାଟଣା ଜିଲ୍ଲାରେ ନୁହେଁ, ମାନ୍ଦ୍ରାଜ ପ୍ରଦେଶର ଉତ୍ତରଖଣ୍ଡ ଯାକ ଯେଉଁ ଶିଷ୍ଟକରଣ ସଂପ୍ରଦାୟ ବ୍ୟାପିଅଛନ୍ତି, ସେମାନଙ୍କ ମାତୃଭାଷା ଓ ସଂସ୍କୃତି ଓଡିଆ ଏବଂ ଗତ ଜନ ସୁମାରିରେ ସେମାନେ ନିଃସନ୍ଦେହରେ ଓଡିଆ ବୋଲି ଧରା ଯାଇଅଛନ୍ତି । ତଥାପି ଦୁଃଖର ବିଷୟ ସେମାନେ ଓଡିଆ ନୁହନ୍ତି ବୋଲି ସମୟେ ସମୟେ ପ୍ରଚାର କରଯାଉଥାଏ । ଏ ଅଯୌକ୍ତିକ ପ୍ରଚାର ବନ୍ଦ ହେବା ଉଚିତ । ମୋଟ ଉପରେ ଗତ ଜନଗଣନାରୁ

ଜଣାପଡୁଛି ଯେ ମାନ୍ଦ୍ରାଜ ପ୍ରଦେଶରେ ବର୍ତ୍ତମାନ ସୁଦ୍ଧା ପ୍ରାୟ ୫ ଲକ୍ଷ ଓଡିଆ ଅଛନ୍ତି ● । ଏମାନେ ମାନ୍ଦ୍ରାଜରେ ରହିବେ କି ଓଡିଶାକୁ ଯିବେ ସେ ସ୍ୱତନ୍ତ୍ର କଥା— ଶାସନସଂକ୍ରାନ୍ତ, ସରକାରୀ, ବଡ଼ଲୋକୀ, କଷ୍ଟସାଧ୍ୟ କଥା । ଏ ଭିତରୁ ଲୋକେ ମଧ୍ୟ ଅଛନ୍ତି ଯେଉଁମାନେ ଓଡ଼ିଶାର ଆର୍ଥିକ ଅନାଟନ ଦୃଷ୍ଟିରେ ଓ ମାନ୍ଦ୍ରାଜର ଉନ୍ନତ ଶାସନ ଶୃଙ୍ଖଳା ଦୃଷ୍ଟିରେ ବର୍ତ୍ତମାନର ସ୍ଥିତି ବଦଳିବା ଚାହାନ୍ତି ନାହିଁ, ଏ କଥା ମନେ ରଖିବାକୁ ହେବ । ଏଣୁ ଦେଶମିଶଣ ଠାରୁ ବର୍ତ୍ତମାନ ଅଧିକ ଆଭିମୁଖ୍ୟ ମାନ୍ଦ୍ରାଜୀ ଓଡିଆଙ୍କର କିପରି ସମୁଚିତ ସ୍ୱାର୍ଥ ରକ୍ଷା ହୋଇ ପାରିବ । ସେପରି ହେଲେ ସେମାନଙ୍କ ନ୍ୟାଯ୍ୟ ସ୍ୱାର୍ଥରେ ବର୍ତ୍ତମାନ କି ବାଧା ପଡିଛି ଓ ତାହା କିପରି ଘୁଞ୍ଚିବ ଏହାର ଆଲୋଚନା ହେବା ଉଚିତ୍ ।

କହିବା ଅନାବଶ୍ୟକ ଭାଷା, ଜାତି, ସଂସ୍କୃତି ଓ ସାମାଜିକ ଜୀବନର ମୂଳପିଣ୍ଡ ଓ ଭାଷା ଉପରେ ହିଁ ବର୍ତ୍ତମାନ ବାଧା । ଏ ମଧ୍ୟରେ ମାନ୍ଦ୍ରାଜ ସରକାର ରେଜିଷ୍ଟ୍ରେସନ୍ ବିଭାଗରେ ଓଡ଼ିଆ ଦସ୍ତାବିଜ ଗ୍ରହଣ କରାଯିବ ନାହିଁ ବୋଲି ଆଦେଶ କରିଥିଲେ । କିନ୍ତୁ ଓଡ଼ିଆଙ୍କ ଆନ୍ଦୋଳନ ଫଳରେ ସେହି ଆଦେଶ ଆଂଶିକ ରଦ୍ଦ ହୋଇଅଛି । ମାନ୍ଦ୍ରାଜ ରେଜିଷ୍ଟ୍ରେସନ ବିଭାଗୀୟ ଇନସ୍ପେକ୍ଟର ଜେନେରଲ ଏ ସମ୍ବନ୍ଧେ ମୋ ନିକଟକୁ ଲେଖିଛନ୍ତି --

"Necessary instructions have already been issued to the Sub-Registrar of Ichapuram, Sompeta & Patapatnam to accept Oriya documents for registration and that there is no case at present for recommending to Government the inclusion of Oriya as a commonly used language in the other Subdistricts of the Vizagapatam District."

---

● ଏ ସଂଖ୍ୟା ଠିକ୍ ନୁହେ ବୋଲି ଜନଗଣନା କର୍ତ୍ତୃପକ୍ଷ ନିଜେ ସ୍ୱୀକାର କରିଅଛନ୍ତି । ଓଡ଼ିଆ ଭଣ୍ଡାରୀ, ଗୁଡ଼ିଆ ଓ ଧୋବାଙ୍କୁ 'ମାଙ୍ଗଲି', 'ନେଲି' ଓ 'ଚାକଲି' ବୋଲି, ପଣ୍ଡାଙ୍କୁ 'ପାଣ୍ଡୁଲି' କରି ନାମ ଆଗରେ "ଇଣ୍ଟିପେରୁ" ଘର ନାମ ବସାଇ ଅନେକ ଓଡ଼ିଆଙ୍କୁ ତେଲୁଗୁ ବୋଲି ନିଆଯାଇଅଛି । ଆସନ୍ତା ୧୯୪୧ ଜନଗଣନାରେ ଓଡ଼ିଆମାନଙ୍କ ସଂଖ୍ୟା ଯେପରି ଭ୍ରମଶୂନ୍ୟ ଭାବରେ ଲିଖିତ ହେବ ତାହାର ବନ୍ଦୋବସ୍ତ ଆଜିଠାରୁ ହେବା ଉଚିତ ।

ଏ ସମ୍ବନ୍ଧେ ଓଡ଼ିଆନିବାସୀ ଟିକାଲି, ହିରମଣ୍ଡଳମ୍, ପାର୍ବତୀପୁର, ସାଲୁର, ପାଲକୋଣ୍ଡା ଇତ୍ୟାଦି ସବ୍‌ରେଜିଷ୍ଟ୍ରାର କଚେରିମାନଙ୍କରେ ମଧ୍ୟ ଓଡିଆ-ମାନଙ୍କର ଅସୁବିଧା ଦୂର କରିବାକୁ ଯତ୍ନ ହେବା ଉଚିତ୍ ।

କିନ୍ତୁ ସବୁଠୁଁ ଶିକ୍ଷା ବିଭାଗରେ ହିଁ ଏହି ଭାଷା ବାଧା ଉତ୍କଟ ଭାବରେ ପଡ଼ିଛି । ମାନ୍ଦ୍ରାଜ ସର୍କାରଙ୍କ ବର୍ତ୍ତମାନ ଆଦେଶ ହାଇସ୍କୁଲମାନଙ୍କରେ ଶିକ୍ଷା ମାଧ୍ୟମ (Medium of Instruction) ମାତୃଭାଷାରେ ହେବ ଓ ଏହି ଆଦେଶ ପ୍ରଦେଶର ଅଧିକାଂଶ ସ୍କୁଲରେ କାର୍ଯ୍ୟକାରୀ ହୋଇ ସାରିଲଣି । କିନ୍ତୁ ଦୋଭାଷୀ ସ୍କୁଲମାନଙ୍କ ପାଇଁ ବର୍ଷେ ଦୁଇବର୍ଷ ଛାଡ ଦିଆଯାଇଥିଲା । ଏବେ ଆସନ୍ତା ସ୍କୁଲ ବର୍ଷ ଆରମ୍ଭରୁ ଅର୍ଥାତ୍ ଜୁନ୍ ଠାରୁ ଏହି ଆଦେଶ ଏହି ସ୍କୁଲମାନଙ୍କରେ ମଧ୍ୟ ଚଳିବ । ଆଉ ଛାଡ ଦିଆଯାଇପାରିବ ନାହିଁ । ଏକଥା ବିଶାଖାପାଟଣା ଶିକ୍ଷାଧିକାରୀ ମୋତେ ସ୍ପଷ୍ଟ କହିଥିଲେ । ଇଂରେଜି ବଦଳରେ ମାତୃଭାଷାରେ ଶିକ୍ଷା ଦିଆଯିବା ଆଧୁନିକ ଜାତୀୟ-ଜାଗରଣର ଗୋଟାଏ ଅପରିହାର୍ଯ୍ୟ ଅଂଶ ଓ ସ୍ପୃହଣୀୟ, ଏଥିରେ କିଏ ଆପତ୍ତି କରୁନାହିଁ । କିନ୍ତୁ କ୍ଷୋଭର ବିଷୟ, ବିଶାଖାପାଟଣା ଜିଲ୍ଲାର ଦେଶୀୟ ଭାଷା କେବଳ ତେଲୁଗୁ ବୋଲି ଧରାଯାଇଅଛି, ଓଡିଆର ନାମ ଗନ୍ଧ ସୁଦ୍ଧା ନାହିଁ । ଏପରି ସ୍ଥଳେ ଆସନ୍ତା ବର୍ଷ ଜୁନ୍ ଠାରୁ ଓଡିଆ ପିଲାଏ ଗଣିତ, ଇତିହାସ, ଭୂଗୋଳ, ବିଜ୍ଞାନ ଏସବୁ ବିଷୟ ତେଲୁଗୁରେ ପଢ଼ିବା ପାଇଁ ବାଧ୍ୟ ହେବେ । ଏଠାରେ ଆମ୍ଭେମାନେ ସଂଗ୍ରହ କରିଥିବା ବିଶାଖାପାଟଣା ଜିଲ୍ଲାର କେତୋଟି ହାଇସ୍କୁଲର ସମୁଦାୟ ଛାତ୍ରସଂଖ୍ୟା ତୁଳନାରେ ଓଡ଼ିଆ ଛାତ୍ରସଂଖ୍ୟାର ହିସାବ ଦିଆଗଲା—

| ସ୍କୁଲର ନାମ | ସମୁଦାୟ ଛାତ୍ରସଂଖ୍ୟା | ମାତୃଭାଷା ନେଇ ପଢ଼ୁଥିବା ଓଡ଼ିଆ ଛାତ୍ରସଂଖ୍ୟା | ତେଲୁଗୁ ନେଇ ପଢ଼ୁଥିବା ଓଡ଼ିଆ ଛାତ୍ରସଂଖ୍ୟା | ମୋଟ ଓଡିଆ | ଶତକଡା |
|---|---|---|---|---|---|
| ଟିକାଲି ବୋର୍ଡ ହାଇସ୍କୁଲ | ୨୨୫ | ୬୨ | ୩୯ | ୧୦୧ | ୪୦ |
| ମଞ୍ଜୁଷା ରଜା ,, | ୨୨୨ | ୧୧୦ | — | ୧୧୦ | ୫୦ |
| ଇଚ୍ଛାପୁର ସୁରଙ୍ଗୀ ,, | ୩୨୪ | ୮୮ | ୧୦ | ୯୮ | ୩୦ |
| ପାଲ୍‌କୁଣ୍ଡା ବୋର୍ଡ ,, | — | ୭୬ | ୩୩ | ୧୦୯ | — |

| | | | | | |
|---|---|---|---|---|---|
| ପାର୍ବତୀପୁର ବୋର୍ଡ଼ ହାଇସ୍କୁଲ | ୪୦୦ | ୨୮ | ୪୨ | ୭୦ | ୧୮ |
| ବିଶାଖାପାଟଣା ଏ.ବି.ଏନ୍. କଲେଜ | — | — | — | ୨୦୦ | — |
| ସି.ବି.ଏମ୍. ହାଇସ୍କୁଲ ଇତ୍ୟାଦି | | | | | |

ବର୍ତ୍ତମାନର ଆଦେଶ ପ୍ରଚଳିତ ହେଲେ କେବଳ ଏହି ଓଡ଼ିଆ ପିଲାଏ ଯେ ତେଲୁଗୁ ମାଧ୍ୟମରେ ପଢ଼ିବେ, ତାହା ନୁହେ, ଚିରକାଳ ପାଇଁ ପଢ଼ିବେ । ଏହି ଆଦେଶ କେବଳ ହାଇସ୍କୁଲର ଶେଷ ତିନି କ୍ଲାସ ପାଇଁ ଓ ଇଂରେଜି ଓ ମାତୃଭାଷା ଛାଡ଼ି ଅନ୍ୟାନ୍ୟ ବିଷୟ ପାଇଁ । କିନ୍ତୁ ଏ ମଧ୍ୟରେ ଆଉ ଗୋଟିଏ ଆଦେଶ ଜାରି କରାଯାଇଛି ଯେ ଓଡିଆ ପିଲାଏ ମିଡ଼ିଲସ୍କୁଲମାନଙ୍କରେ ପ୍ରଥମ ତିନି କ୍ଲାସ ପର୍ଯ୍ୟନ୍ତ କେବଳ ଶିକ୍ଷା ମାଧ୍ୟମ କାହିଁକି, ମାତୃଭାଷା ରୂପେ ମଧ୍ୟ ଓଡିଆ ପଢ଼ି ପାରିବେ ନାହିଁ । ଏହି ଆଦେଶ ଅନୁସାରେ ଆଉ ତଳ ପାହିୟା ଓଡ଼ିଆ ପଣ୍ଡିତ ଆବଶ୍ୟକ ନାହିଁ । ତେଣୁ ଏ ମଧ୍ୟରେ କେତୋଟି ସ୍କୁଲରୁ ସେମାନଙ୍କୁ ବରଖାସ୍ତ କରା ଯାଇଅଛି ଓ କ୍ରମେ ସବୁ ସ୍କୁଲରେ ହେବ । ଏହାର ବିଷମୟ-ଫଳ ସମସ୍ତେ ଟିକିଏ ଅବଧାରଣ କରନ୍ତୁ । ଓଡ଼ିଆ ପିଲାଏ ପ୍ରାଥମିକ (Elementary) ସ୍କୁଲମାନଙ୍କରେ ତେଲୁଗୁ ଭଲରୂପେ ନ ଜାଣିଲେ ମିଡ଼ିଲ୍ ଓ ହାଇସ୍କୁଲମାନଙ୍କରେ କିପରି ତେଲୁଗୁ ମାତୃଭାଷା ଓ ମାଧ୍ୟମ ରୂପେ ପଢ଼ିବେ ଓ କଷ୍ଟେମଷ୍ଟେ ସେପରି ପଢ଼ିଲେ ସ୍ୱୀୟ ମାତୃଭାଷାର କି ସତ୍ତା ରହିବ ? ପ୍ରାଥମିକ ଶିକ୍ଷା ବିଭାଗରେ ମଧ୍ୟ ବାଧା ପଡିଛି । ହଜାର ହଜାର ଓଡିଆ ପ୍ରବାସ କେନ୍ଦ୍ରମାନଙ୍କରେ ଓଡ଼ିଆ ପ୍ରାଥମିକବିଦ୍ୟାଳୟ ଆଦୌ ନାହିଁ । ତେଲୁଗୁ ବିଦ୍ୟାଳୟମାନଙ୍କ ସଙ୍ଗେ ଯେଉଁଠାରେ ସ୍ଥାନେ ସ୍ଥାନେ ଗୋଟିଏ ବା ଦୁଇଟି ପୃଥକ୍ ଓଡ଼ିଆ ଶ୍ରେଣୀ ଯୋଡ଼ା ଯାଇଛି, ସେ ସବୁ କ୍ରମଶଃ ଉଠାଇ ଦିଆଯାଉଛି । ପୁଣି ମାନ୍ଦ୍ରାଜ ସରକାର ଆଦେଶ କରିଛନ୍ତି, ଆସନ୍ତା ବର୍ଷ ପୂର୍ବରୁ ସବୁ ପ୍ରାଥମିକ ସ୍କୁଲରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପୂର୍ଣ୍ଣ ରହିବ, ସେପରି ନ ରହିଲେ ସ୍କୁଲ ମଞ୍ଜୁର ହୋଇ ପାରିବ ନାହିଁ । ପୁଣି ପଞ୍ଚମ ଶ୍ରେଣୀ ରଖିଲେ ଉପର ପାହିଆ ଟ୍ରେନିଂ ପ୍ରାପ୍ତ ଓଡ଼ିଆ ଶିକ୍ଷକ ଆବଶ୍ୟକ । କିନ୍ତୁ ସେପରି ଶିକ୍ଷକଙ୍କର ବର୍ତ୍ତମାନ ଅଭାବ, ଯେହେତୁ ଏ ପ୍ରଦେଶରେ ଓଡ଼ିଆମାନଙ୍କୁ ମାତୃଭାଷାରେ ଗୁରୁଟ୍ରେନିଂ ଦେବାର କୌଣସି ବ୍ୟବସ୍ଥା କରାଯାଇ ନାହିଁ । ଏପରି ସ୍ଥଳେ ଏହି ଅଭାବର ଛଳନା କରି ଅନେକ ଓଡ଼ିଆ ପ୍ରାଥମିକ ସ୍କୁଲ ଉଠାଇ ଦିଆଯାଇପାରେ । ଏଠାରେ କୁହାଯାଇପାରେ, ବିଶାଖା-ପାଟଣା ସହରର ତିନିଗୋଟି ପ୍ରାଥମିକ ସ୍କୁଲରେ ଶହ ଶହ ଓଡ଼ିଆ ଛାତ୍ର ଏବେ ଅଛନ୍ତି । ଏ ସ୍କୁଲଗୁଡ଼ିକ ଜୟପୁରର ସ୍ୱନାମଧନ୍ୟ, ଦକ୍ଷିଣ ଓଡିଶା ଜାତୀୟତାର ପ୍ରାଣ ମହାରାଜା ବିକ୍ରମଦେବ ବର୍ମାଙ୍କ ଆନୁକୂଲ୍ୟରେ ଅନେକ ବର୍ଷ ପୂର୍ବେ ପ୍ରତିଷ୍ଠିତ ହୋଇଥିଲା । କେତେବର୍ଷ ପାଇଁ ଓଡ଼ିଆରେ ପଢ଼ାଗଲା । କିନ୍ତୁ ବର୍ତ୍ତମାନ ଓଡିଆ

ପିଲାଏ ତେଲୁଗୁରେ ପଢ଼ନ୍ତି । ସଂକ୍ଷେପରେ କହିଲେ ମାନ୍ଦ୍ରାଜ ସରକାରୀ ମହଲର ନୀତି ଫଳରେ କ୍ରମଶଃ ଓଡ଼ିଆଭାଷାର ଲୋପ ହୋଇଯିବା ସମ୍ଭାବନା, ଅବଶ୍ୟ ସରକାରଙ୍କର ଏହା ସ୍ପଷ୍ଟ ଉଦ୍ଦେଶ୍ୟ ବୋଲି କିଏ କହୁନାହିଁ । କିନ୍ତୁ କୌଶଳ ସହକାରେ ପ୍ରଚ୍ଛନ୍ନ ଗତିରେ ଯେପରି କାର୍ଯ୍ୟ କରାଯାଉଛି, ତାର ଫଳ ଏହା ନିଶ୍ଚୟ ହେବ । ବର୍ତ୍ତମାନ ସୁଦ୍ଧା ସ୍କୁଲମାନଙ୍କରୁ ପୃଥକ୍ ଓଡ଼ିଆ ଶ୍ରେଣୀ ଉଠାଯାଉଛି, ଆଦୌ ଓଡ଼ିଆ ନ ଜାଣିବା ଲୋକେ ଓଡ଼ିଆ ବତାଉ ଅଛନ୍ତି । ଓଡ଼ିଆ ଛାତ୍ରଙ୍କୁ ଆର୍ଥିକ ଦିଗରୁ ସରକାରୀ ବୃତ୍ତି ଇତ୍ୟାଦି ପାଇବାର ଯଥେଷ୍ଟ ସୁବିଧା କରାଯାଉ ନାହିଁ । ଏ ଦିଗରେ ଏତିକି ମନେ ରଖିବାକୁ ହେବ ଏ ପ୍ରଦେଶରେ ଓଡ଼ିଆ ଛାତ୍ର-ମାନେ ଅନେକ ଦିନରୁ ଏ ପର୍ଯ୍ୟନ୍ତ ଅଧା-ବେତନ ଦେଇ ପଢିବା ସୁବିଧା ପାଇ ଆସୁଛନ୍ତି । କିନ୍ତୁ ଅଳ୍ପ ଦିନରେ ସେ ସୁବିଧା ମଧ୍ୟ ଯେପରି ଉଠିନ ଯାଏ, ସେ ଦିଗରେ ଦୃଷ୍ଟି ଦେବା ବାଞ୍ଛନୀୟ । ଏଠାରେ ଆଉ ଗୋଟିଏ କଥା ଦେଖିବାର ଅଛି । ଉପରୋକ୍ତ ହିସାବରୁ ଦେଖାଯିବ, ଏବେ ମଧ୍ୟ ଏ ଜିଲ୍ଲାରେ ଅନେକ ଓଡ଼ିଆ ଛାତ୍ର ତେଲୁଗୁ ମାତୃଭାଷା ରୂପେ ପଢନ୍ତି । ନିଜ ମାତୃଭାଷା ଶିକ୍ଷାରେ ଅସୁବିଧା ଘଟୁଥିବାରୁ ଅବଶ୍ୟ ସେମାନେ ବାଧ୍ୟ ହୋଇ ଏହା କରୁଥିବେ । ଏ ସବୁ ଅସୁବିଧା ଦୂର କରିବାକୁ ହେଲେ ଉତ୍କୃଷ୍ଟ ପନ୍ଥା ହେଉଛି, ପ୍ରାଥମିକ ଶିକ୍ଷାଠାରୁ ଆରମ୍ଭ କରି ମେଟ୍ରିକ ଶିକ୍ଷା ଶେଷ ପର୍ଯ୍ୟନ୍ତ ଓଡ଼ିଆ ପିଲାମାନଙ୍କ ପାଇଁ ପୃଥକ୍ ସ୍କୁଲ ବା ସାଧାରଣ ସ୍କୁଲ-ମାନଙ୍କରେ ପୃଥକ୍ ଶ୍ରେଣୀ ରଖି ଉପଯୁକ୍ତ ଓଡ଼ିଆ ଶିକ୍ଷକମାନଙ୍କ ଦ୍ୱାରା ସେମାନଙ୍କୁ ପଢ଼ାଇବା । ଅବଶ୍ୟ ଏପରି କରିବାକୁ ହେଲେ ମାନ୍ଦ୍ରାଜ ସରକାର, ସ୍ୱାୟତ୍ତ ଶାସନ ବିଭାଗ ଓ ସ୍ଥାନୀୟ ପରିଚାଳକମାନଙ୍କୁ କେତେକ ପରିମାଣରେ ଅଧିକ ଅର୍ଥ ବ୍ୟୟ କରିବାକୁ ହେବ । କିନ୍ତୁ ସମାନ ଭାବରେ ରାଜସ୍ୱ ଦେଉଥିବା ପାଞ୍ଚ ଲକ୍ଷ ଓଡ଼ିଆଙ୍କ ପାଇଁ ଜୀବନ-ମରଣ-ସମସ୍ୟା ଶିକ୍ଷା ଦିଗରେ ସରକାର ଏତକ ନ କଲେ ଓ କରାଇଲେ ପ୍ରାଦେଶିକ ସଙ୍କୀର୍ଣ୍ଣତା ଯୋଗୁଁ ନ୍ୟାୟ ପ୍ରତି ଅବହେଳା ଦେଖାଗଲା ବୋଲିଯିବ ନାହିଁ କି ? ସେପରି ବ୍ୟବସ୍ଥା ହେବା ପର୍ଯ୍ୟନ୍ତ ବର୍ତ୍ତମାନ ପ୍ରଚଳିତ ଇଂରେଜି ମାଧ୍ୟମରେ ଶିକ୍ଷା ଦେବାର ବ୍ୟବସ୍ଥା ରହୁ । ଇଚ୍ଛାପୁର, ମଞ୍ଜୁଷା ଓ ଟିକାଲି ହାଇସ୍କୁଲମାନଙ୍କରେ ଏହି ବ୍ୟବସ୍ଥା ସରକାର ଅସ୍ଥାୟୀ ଭାବରେ ବର୍ଷେ ଲେଖାଏଁ ରଖିବାକୁ ଅନୁମତି ଦେଉଅଛନ୍ତି । କିନ୍ତୁ ତାହା ସ୍ଥାୟୀ ଭାବରେ ସବୁ ଦୋଭାଷୀ ସ୍କୁଲମାନଙ୍କରେ ଦିଆଯିବା ଉଚିତ ।

ଆମ୍ଭେମାନେ ଜାଣୁ ଏ ସଂଖ୍ୟାଲଘୁ ସମସ୍ୟା ସବୁ ବଡ ଜଟିଳ ଓ କେବଳ ମାନ୍ଦ୍ରାଜୀ ଓଡ଼ିଆଙ୍କ ମଧ୍ୟରେ ନୁହେ, ଭାରତବ୍ୟାପୀ ତଥା ପୃଥିବୀବ୍ୟାପୀ ରହିଛି । ଏ ସମସ୍ୟା ଯୋଗୁଁ ୟୁରୋପରେ ତୁମୁଳ ଯୁଦ୍ଧର ସୂତ୍ରପାତ ହେଉଛି, ଦେଶ ଦେଶ ଦଖଲ କରାଯାଉଛି । ଭାରତରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ଏହାକୁ ଆହୁରି ଗୁରୁତର

କରିଛି । ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତି ମାନିଲେ ସବୁ ପ୍ରଦେଶର ସୀମା ଅଞ୍ଚଳରେ ଏପରି ସଂଖ୍ୟାଲଘୁ ନିଶ୍ଚୟ ରହିବେ ଓ ସେମାନଙ୍କର ନ୍ୟାଯ୍ୟ ଦାବୀ ଓ ମୌଳିକ ସ୍ଥିତି କିପରି ରକ୍ଷା ହେବ, ତାହା ଚିନ୍ତାଶୀଳ, ଦୂରଦୃଷ୍ଟିସମ୍ପନ୍ନ ଶାସକମାନେ ସ୍ଥିର କରିବା ଉଚିତ ।

ବର୍ତ୍ତମାନ ବିଧାନ ଅନୁସାରେ ମାନ୍ଦ୍ରାଜରେ ଓଡ଼ିଆ ଶିକ୍ଷାର୍ଥୀମାନେ ଅପରିଣତ ବପୁ ଓ ମସ୍ତିଷ୍କ ଘେନି ପାଞ୍ଚଟି ଭାଷା ପଢ଼ିବେ —ମାତୃଭାଷା ଓଡ଼ିଆ, ପ୍ରାଦେଶିକ ଭାଷା (ତେଲୁଗୁ), ରାଷ୍ଟ୍ରଭାଷା ହିନ୍ଦୁସ୍ଥାନୀ, ମୂଳ ଭାଷା (ସଂସ୍କୃତ), ଆନ୍ତର୍ଜାତିକ ଭାଷା ଇଂରେଜି । ମାତୃଭାଷା ନ ପଢ଼ିଲେ ତ ମନୁଷ୍ୟତା ରହିବ ନାହିଁ, ରାଷ୍ଟ୍ରଭାଷା ନ ପଢ଼ିଲେ ଭାରତୀୟ ନାଗରିକତା ଲୋପ ହେବ, ମୂଳଭାଷା ନ ପଢ଼ିଲେ ପ୍ରାଚୀନ ପରମ୍ପରା ରକ୍ଷା ହୋଇ ପାରିବ ନାହିଁ, ପ୍ରାଦେଶିକ ଭାଷା ନ ପଢ଼ିଲେ ଦୈନନ୍ଦିନ ଜୀବନରେ କଷ୍ଟ ହେବ ଓ ଆନ୍ତର୍ଜାତିକ ଭାଷାନଭିଜ୍ଞ ହେଲେ ଜଗତର ଚିନ୍ତାଧାରା ବୋଧ ହୋଇପାରିବ ନାହିଁ । ପୁଣି ହିନ୍ଦୁସ୍ଥାନୀ ପଢ଼ିବାରେ ହିନ୍ଦୀ (ଦେବନାଗରୀ) ଓ ଉର୍ଦ୍ଦୁ ଦୁଇଟି ଭାଷା ଓ ଲିପିରେ ଉପଯୁକ୍ତ ପ୍ରବେଶ ଆବଶ୍ୟକ । ପୁଣି ଆଧୁନିକ ରାଜନୀତି, ବାଣିଜ୍ୟ, ବିଜ୍ଞାନରୁ ଆରମ୍ଭ କରି ଦର୍ଶନ, କଳା, ସାହିତ୍ୟ ଇତ୍ୟାଦିରେ ଧୁରୀଣ ହେବାକୁ ହେବ, ପଣ୍ଡିତ ହୋଇଯିବାକୁ ହେବ ! ଏ ମହତ୍ ଆକାଂକ୍ଷାର ପୂରଣ କେତେଦୂର ବାସ୍ତବ ଓ କେତେଦୂର କଳ୍ପନା ହେବ, ସୁଧୀବର୍ଗ ବିଚାର କରି କରନ୍ତୁ ।

ମାନ୍ଦ୍ରାଜୀ ଓଡ଼ିଆ ଶିକ୍ଷାର୍ଥୀଙ୍କର ଆଉ ଗୋଟିଏ ଅସୁବିଧା ହୁଏ । ସାଧାରଣ ଶିକ୍ଷା ସମାପ୍ତି ପରେ ଟେକ୍‌ନିକେଲ୍ ଶିକ୍ଷା ପାଇବା ଇଚ୍ଛା କରି, ସେହି କଲେଜ-ମାନଙ୍କରେ ସ୍ଥାନ ପାଇଁ ଆବେଦନ କଲେ, ସେମାନେ ଉତ୍ତର ପାଆନ୍ତି, ସେମାନେ ଓଡିଆ, ଓଡ଼ିଶାରେ ଚେଷ୍ଟା କରିପାରନ୍ତି, ଓଡ଼ିଶାରେ ଚେଷ୍ଟା କଲେ ଜବାବ ମିଳେ, ସେମାନେ ପ୍ରାଦେଶିକ ନୁହନ୍ତି । ଏପରି ତ୍ରିଶଙ୍କୁ ଅବସ୍ଥା ସେମାନଙ୍କୁ ଭୋଗିବାକୁ ହୁଏ ।

ସରକାରୀ ଚାକିରୀ ବିଭାଗ ଆଲୋଚନା କଲେ ପ୍ରାଦେଶିକ ପବ୍ଲିକ ସର୍ଭିସ କମିଶନ ଆଗରେ ସେମାନଙ୍କର ସେହି ଅବସ୍ଥା । ଏ ସମ୍ବନ୍ଧେ ବେଶି ନକହି ନିମ୍ନରେ କେତୋଟି ବହୁଦିନ ପୂର୍ବେ ଜାରି ହୋଇଥିବା ସରକାରୀ ଆଦେଶର ନକଲ ଦେଉଛୁଁ—

G. O. No 2024, Judicial, dated 15, December 1899 :—

"X X X It is necessary to declare that in every court both Oriya and Telegu shall be regarded as the

language of the court. Accordingly under section 645 of the Code of the Civil Procedure. His Excellency the Governor in Council is pleased to declare that both Telegu and Oriya shall be regarded as the language of the court in every Criminal and Civil Court within the district of Ganjam. 50% of the clerical establishment in the court of Sompeta and 25% of the Chicacole court should consist of persons acquainted with Oriya X X X. In future applications should never be made for grant of magisterial power to persons who are not acquainted with both the languages."

"X X X In future all Oriya speaking witnesses and parties must be examined in Oriya and their statements recorded in that language." (Ganjam Gazette dated 2nd March 1891)

"X X X A preparation of the establishments of the District Munsiffs' Courts is to consist of person acquainted with Oriya to the extent necessary to enable them to perform their duties efficiently with the use of that language alone."

G. O. No 1935, Home (judicial) dated 28th Aug 1919—

"X X X The Government are pleased to declare that the test of the sufficiency of knowledge of Oriya passed by a candidate selected for appointment in the clerical branch of the public service in the Ganjam District shall be his ability to read and write Oriya manuscript with fair fluency and correctness."

କହିବା ଅନାବଶ୍ୟକ ଏ ସବୁ ଆଦେଶ ପୁରୁଣା ଗଞ୍ଜାମର ବର୍ତ୍ତମାନ ଓଡ଼ିଶାରେ ମିଶିଥିବା ଓ ମାନ୍ଦ୍ରାଜରେ ଯାଇଥିବା ଉଭୟ ଅଞ୍ଚଳ ପ୍ରତି ପ୍ରଯୋଜ୍ୟ । କିନ୍ତୁ ଶେଷୋକ୍ତ ଅଞ୍ଚଳରେ ଏବେ ଏହି ଆଦେଶଗୁଡ଼ିକ ପାଳିତ ହେଉନାହିଁ । ସୋମପେଣ୍ଟ ଓ ଚିକାକୋଲ କୋର୍ଟମାନଙ୍କରେ ଓଡ଼ିଆ ନାହାନ୍ତି ପୁଣି ସବୁ କୋର୍ଟ କଚେରୀରେ ଓଡ଼ିଆ ଲୋକେ କଥାବାର୍ତ୍ତା, ଜବାନବନ୍ଦି, କାଗଜପତ୍ର ଇତ୍ୟାଦିରେ ଅବୁଝା ହୋଇ ଭୟଙ୍କର ଅସୁବିଧା ଭୋଗ କରୁଅଛନ୍ତି । ଆବଶ୍ୟକ ସଂଖ୍ୟାରେ ଓଡ଼ିଆ କର୍ମଚାରୀ ନିଯୁକ୍ତ ହେଉ ନାହାନ୍ତି ।

ବିଶାଖାପାଟଣା ଓଡ଼ିଆ ସମସ୍ୟା ସମ୍ବନ୍ଧେ ଆହୁରି ଅନେକ କହିବାର ଅଛି । କିନ୍ତୁ ଏ କ୍ଷୁଦ୍ର ପ୍ରବନ୍ଧର ପରିସର ମଧ୍ୟରେ ତାହା ସମ୍ଭବ ନୁହେଁ । ଏ ଦିଗରେ ଜନମତ ଜାଗ୍ରତ ହେଉ । ଏ ଜିଲ୍ଲାରେ ଇଚ୍ଛାପୁର, ମଞ୍ଜୁଷା, ଟିକାଲି, ବିଶାଖାପାଟଣା, ପାଲକୋଣ୍ଡା, ପାର୍ବତୀପୁର, ସାଲୁର ଇତ୍ୟାଦି ସ୍ଥଳରେ କେତୋଟି ସ୍ଥାନୀୟ ଉତ୍କଳ ସମାଜ ଏ ଦିଗରେ ମନ ପ୍ରାଣଦେଇ କାର୍ଯ୍ୟ କରୁଛନ୍ତି । କିନ୍ତୁ ଉପଯୁକ୍ତ ଅର୍ଥ ଓ ସହାନୁଭୂତି ଅଭାବରୁ ବେଶି କିଛି ହୋଇପାରୁ ନାହିଁ । ଏ କାର୍ଯ୍ୟରେ ଓଡ଼ିଶା ନେତୃବର୍ଗଙ୍କ ଶୁଭ ଦୃଷ୍ଟି ପଡୁ । ପ୍ରବାସୀ, ପରଦେଶୀ ଓଡ଼ିଆଙ୍କ ମଧ୍ୟରେ ଭାଷା, ସଂସ୍କୃତି, ଆଚାର ବ୍ୟବହାରର ମୌଳିକତା ରକ୍ଷା ହେଉ । ସେଥିପାଇଁ ଆବଶ୍ୟକୀୟ ପ୍ରଚାର ଓ ଶିକ୍ଷା ପ୍ରଚାର ହେଉ । ଏ ସମ୍ପର୍କରେ ଆମ୍ଭେମାନେ ବିଶେଷତଃ ଓଡ଼ିଶା ପ୍ରାଦେଶିକ କଂଗ୍ରେସ କମିଟିର ସମର୍ଥ ସଭାପତି ଓ ସମ୍ପାଦକ, ଓଡ଼ିଶା ଓ ମାନ୍ଦ୍ରାଜର ଲୋକପ୍ରିୟ, ବିଚକ୍ଷଣ ମନ୍ତ୍ରୀମଣ୍ଡଳ ଓ ବ୍ୟବସ୍ଥାପକଙ୍କ ବଦାନ୍ୟ ସହଯୋଗ କାମନା କରୁଅଛୁଁ ।

ସେଥି ସଙ୍ଗେ କହି ରଖୁଛୁଁ ଆନ୍ଦୋଳନ ତଥ୍ୟନିର୍ଭର, ଉପଯୁକ୍ତ କାରଣ-ସଂବଳିତ, ସୌହାର୍ଦ୍ଦ୍ୟସମ୍ପନ୍ନ ହେବା ଆବଶ୍ୟକ । 'ଆନ୍ଦୋଳନ' 'ଆନ୍ଦୋଳନ' ଚିତ୍କାର କରି ଅପ୍ରିୟତା ଅର୍ଜନ କରିବା ଉଦାରଚେତାର କାର୍ଯ୍ୟ ନୁହେଁ । କେବଳ ସଂଖ୍ୟାଲଘୁ ଭିତ୍ତିଉପରେ ସାମୟିକ ପଡ଼ୁଥିବା ବାଧା ଦୂର କରିବାକୁ ପ୍ରସ୍ତୁତରହି ସର୍ବଦା ସଂଖ୍ୟା-ବହୁଳ (Majority)ଙ୍କ ସଙ୍ଗେ ସାମ୍ୟ ରଖି ସାଧାରଣ ଆର୍ଥିକ, ସାମାଜିକ, ରାଜନୀତିକ ଜୀବନରେ କାନ୍ଧକୁ କାନ୍ଧ ପକାଇ ସମସ୍ତଙ୍କ ଦୁଃଖ ସୁଖ ସହିତ ନିଜକୁ ଭାଗୀ କରାଇ ମହାଭାରତୀୟ ଜାତୀୟତାର ଉଦ୍‌ବୁଦ୍ଧ ହୋଇ, ମହତ୍ ଆଦର୍ଶର ଚେତନା ରଖି ବିଶାଖାପାଟଣା ଓଡ଼ିଆ ତଥା ସମସ୍ତ ସଂଖ୍ୟାଲଘୁଙ୍କୁ ଏଣିକି ଚଳିବାକୁ ହେବ । ବିଶାଖାପାଟଣା ଓଡ଼ିଆ ପ୍ରତ୍ୟେକ ନିଜ ଦୈନନ୍ଦିନ ଜୀବନ ଯାପନ ପାଇଁ ତେଲୁଗୁ ଭାଷାରେ ଆବଶ୍ୟକୀୟ ପ୍ରବେଶ ରଖିବା ବାଞ୍ଛନୀୟ । ଜାତି-ସ୍ୱାତନ୍ତ୍ର୍ୟ ଲୋଡ଼ା ବୋଲି ସାଂପ୍ରଦାୟିକ ସଂଘର୍ଷ, ଦଳଗତ ମନୋବୃତ୍ତି, ଅହେତୁକ କଳି କନ୍ଦଳ ଆମର ହାନିକାରକ ।

# ହନୁମାନ କବିଚନ୍ଦ୍ରଙ୍କ କବିତା

ଇତିପୂର୍ବେ (ସହକାର ୧୯ଶ ଭଗ ୧ମ ସଂଖ୍ୟା) ଗଞ୍ଜାମର ଗଡ଼ପ୍ରତିଷ୍ଠିତ, ବିଗତ ଶତାବ୍ଦୀର କବି ପିତାପୁତ୍ର ସ୍ୱର୍ଗୀୟ ହନୁମାନ କବିଚନ୍ଦ୍ର ରାୟଗୁରୁ ଓ ଗୋବିନ୍ଦ ରାୟଗୁରୁଙ୍କ ଜୀବନୀ ଆଲୋଚିତ ହୋଇ, କ୍ରମଶଃ ତାଙ୍କ କବିତାର ସଂକ୍ଷିପ୍ତ ପରିଚୟ ଦେବାର ସୂଚନା ଦିଆଯାଇଥିଲା । ଏହି ପ୍ରବନ୍ଧରେ କବିଚନ୍ଦ୍ରଙ୍କ କାବ୍ୟକଳାର କେତୋଟି ବିଚ୍ଛିନ୍ନ ସଙ୍କେତ ମାତ୍ର ଦିଆଯାଇଅଛି । ନିକଟରେ ପ୍ରକାଶିତ ହେଉଥିବା "ରାୟଗୁରୁ ଗ୍ରନ୍ଥାବଳୀ"ରୁ ସହୃଦୟ ପାଠକ ତହିଁର ମୌଳିକ ରସ ଆସ୍ୱାଦନ କରିବେ, ସୌଷ୍ଠବ ବୋଧ କରିବେ ।

ହନୁମାନଙ୍କ କବିତାବଳୀ ମଧ୍ୟରେ ପାର୍ଥସାରଥି ଜଣାଣ, ବ କାରଦି କ୍ଷ କାରନ୍ତ ଜଣାଣ, ବୃନ୍ଦାଦି ଗୋପୀମାନଙ୍କ ଜଣାଣ, ଚତୁସ୍ତ୍ରିଂଶ ଭିକ୍ଷା ଗୀତ, ଜଗଦୀଶ୍ୱରଙ୍କ ଜଣାଣ ଓ ଚୌପଦୀ ଜଣାଣ ପ୍ରଧାନ । ଏହା ଛଡ଼ା କେବଳ କେତୋଟି ଛୋଟ ଚୌପଦୀ, ଢୁମ୍ପା ଓ କୋଇଲି (କିଶୋର ଓ ରମଶ୍ୟାମ) ହସ୍ତଗତ ହୋଇ-ଅଛି । ଜଣାଣ ମାଳାରେ କବିଙ୍କର ପ୍ରାୟ ସମୁଦାୟ ଶକ୍ତି ବିନିଯୋଗ ହୋଇଥିବାର ଅନୁମିତ ହୁଏ । ଭଗବତ ପ୍ରେରଣା ଓ ଆଧ୍ୟାତ୍ମିକ ଚିନ୍ତା ତାଙ୍କ କବିତା ପ୍ରାଣର ସଞ୍ଜୀବନ ମନ୍ତ୍ର । ମନସ୍ତତ୍ତ୍ୱର ନିବିଡ଼ ଛାୟାରେ ତାଙ୍କ କାବ୍ୟ-ଶରୀର ଆବୃତ । କବିଚନ୍ଦ୍ର କବିତା ଆଦିରସ ନିର୍ଭର ନୁହେ । ଗୋଟିଏ ଦୁଇଟି ଚୌପଦୀରେ କବି ଶୃଙ୍ଗାରିକର ଯେଉଁ ଆଭସ ଦେଇଛନ୍ତି ତାହା ଗଦ୍ୟମୟ; ଜୀବନ୍ତ ପରି ବୋଧ ହେଉନାହିଁ । ଅବଶ୍ୟ ଏହି କ୍ଷୁଦ୍ର ପରିସର ମଧ୍ୟରେ ସ୍ଥାନେ ସ୍ଥାନେ ମୃଦୁଶବ୍ଦ ଯୋଜନାର ଲଳିତ ଭଙ୍ଗୀରେ ପ୍ରେମର ସରଳ ମଧୁରତା ଫୁଟି ଉଠିଅଛି—

ଘନ ସୁନ୍ଦର ସୁକେଶୀ ଘେନାଘେନି କେତେ କହଇ ହସି
ଘାରେ ତ ପୀରତି ଶଶୀ .....
ଲବେ କହିବ ପାରି, ଝରଇଲ ମତେ ନିକି କିଶୋରୀ
ଝରଇଲ କଣ୍ଠେ ବାରି......
କଜ୍ଜଳ ଜଳଦ କେଶ ରଚନା···
କନକ ସୁନ୍ଦର ସ୍ୱଚ୍ଛ ରଞ୍ଜନା

\+ + +

ଖେଳାଇ ସ୍ୱଚ୍ଛଭୁଚ୍ଛ ଖେଳ ନର୍ତ୍ତନ ଗୁଚ୍ଛ ଶେଷକୁ
ଝରଶିରେ ଫୁଲ

ତଥାପି ମୋଟ ଉପରେ କବିଚନ୍ଦ୍ର-କବିତା—ସୈକତ ପ୍ରଣୟ ତରଙ୍ଗ ଉଦ୍‌ବେଳିତ ହୋଇନାହିଁ । ତରୁଣର ସମ୍ପୂର୍ଣ୍ଣ, ବସନ୍ତର ମାଦକତା, ମଳୟର ମଧୁରସ୍ପର୍ଶ, କୋକିଳର କୁହୁତାନ, ସୁମନ ସୌରଭ, ବାହ୍ୟ ପ୍ରକୃତିର ଚିତ୍ରଣ, ନିକୁଞ୍ଜ ସଞ୍ଚାର, ଅଭିସାର ପଥ, ବିରହିଣୀର ବ୍ୟାକୁଳତା, ସୌନ୍ଦର୍ଯ୍ୟ ପିପାସା, ଯାଦୁକରର ରହସ୍ୟ ତହିଁରେ କ୍ୱଚିତ ଅନୁଭୂତ ହୁଏ । କିନ୍ତୁ ସେଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ସେଥିଯୋଗୁଁ ହନୁମାନଙ୍କ ପ୍ରତିଭାର ସମ୍ପୂର୍ଣ୍ଣ ବିକାଶ ହୋଇନାହିଁ, ଏହା କୁହାଯାଇ ନ ପାରେ । ତାଙ୍କର ଶୈଳୀ ଓ ରଚନା ପରିପାଟୀରୁ ଜଣାଯାଏ ସେ କୌଣସି ରସାନଭିଜ୍ଞ ନୁହନ୍ତି; କିନ୍ତୁ ଜୀବନର ସକଳ ବିଭାଗ କୌଣସି ବ୍ୟକ୍ତିବିଶେଷଙ୍କ ଦ୍ୱାରା ଅଭିବ୍ୟଂଜିତ ହୋଇ ନ ପାରେ । ସେକସ୍‌ପିଅରଙ୍କ ଭଳି ଜଗତ ପ୍ରସିଦ୍ଧ କବି-ଶ୍ରେଷ୍ଠ ମଧ୍ୟ "ମାତୃତ୍ୱ" (motherhood) ବିଭାଗକୁ ଆକ୍ଷରିକ କଳା ରଞ୍ଜିତ କରି ନାହାନ୍ତି । ପୁଣି କବି ସଂସାର ଲୀଳାଖେଳାରୁ ବହିର୍ଭୂତ ନୁହଁନ୍ତି । ନିଜ ଦେଶ, କାଳ, ପାତ୍ର, ସାମାଜିକ ବ୍ୟବହାର, ବେଷ୍ଟନୀର ପରିପାର୍ଶ୍ୱ ତାଙ୍କ ମନୋ-ବୃତ୍ତିକୁ ଅନେକାଂଶରେ ଗଢ଼ିଥାଏ । କବିଙ୍କ ଲେଖାରୁ ତାଙ୍କ ସମୟ ରୁଚି, ଅଭିପ୍ରାୟ, ତାତ୍‌କାଳିକ ସଭ୍ୟତା ଓ ସଂସ୍କୃତି ଅନେକ ପରିମାଣରେ ଧରାଯାଏ । ସେଥିପାଇଁ ସମାଲୋଚକମାନେ ମହାକବିଙ୍କ ଲେଖାରୁ ତାଙ୍କ ଶିକ୍ଷା, ଦୀକ୍ଷା, ପ୍ରକୃତ ଜୀବନ ରହସ୍ୟ ଇତ୍ୟାଦିର ଅବଗତ ନିମନ୍ତେ ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରନ୍ତି । ଏଠାରେ ଏହି ନୀତି ଅନୁସରଣରେ ହନୁମାନଙ୍କ ଲେଖାରୁ କେତୋଟି ପ୍ରୟୋଜନୀୟ ପଂକ୍ତି ଉଦ୍ଧାର କରୁଅଛୁଁ ।

କୀନାଶ ଦୂତଙ୍କ ଠାରୁ ଭୟ ମୋର ନୋହିବ କିରୂପେ ହରି
କୃଷ୍ଣ ରାଧେ ରାଧେ ଗୋବିନ୍ଦ ବୋଲି ମୋ ଜୀବନ ଯିବ ବାହାରି
କଳିଯୁଗେ ଦ୍ୱିଜ ଜନମ ଲଭି ମୁଁ ନ କଲି ଯେ ସାଧୁସେବା,
କିଞ୍ଚିତରେ ତୁମ୍ଭ ନାମ ନ ଭଜିଲି ଆଉ ଅତିଥିଙ୍କ ସେବା
କଳତ୍ର ସୁତା ସୁତ ବନ୍ଧୁ ସୁମିତ୍ର ପ୍ରତିଷ୍ଠା ଜଳରେ ବୁଡ଼ି,
କାନ୍ଦୁଛି ଏବେ ଦୀନବନ୍ଧୁଙ୍କ ଆଗେ ରଖିବଟି କି ମୋ ପ୍ରୌଢ଼ି

+ + +

ନଅ ନଅ କହି ଉଦର ପୋଷଇ ଗୁଡ଼ିଅଛି ତୁମ୍ଭ ସେବା,
ଛବିକରି ମାତ୍ର ରୁପତିକି କରେ ରୁଇ କରେ ଅଙ୍ଗ ଶୋଭା

+ + +

ଜପ ତ ନକରେ କ୍ଷଣେ ତୁମ୍ଭ ନାମ ଜନମଠାରୁ ମୋହର
ଜରାବସ୍ଥାରେ ମୋ ଡକୁଛି ଜୀବନ ଯିବ ଜଗନ୍ନାଥ ପୁର ।

ରେ ବାସଲ୍ଲ—

ବରଦ କୃପାମୟ ବିଧୁମୁଖ ଉଦୟ
ନୋହିବ କି ଏ କାନନରେ ।
ବ୍ୟର୍ଥ ହେବ ଜୀବନ ପରା ଆମ୍ଭର ଧନ ସବୁତ ଘନଶ୍ୟାମରେ
ଗୋ ବିମ୍ବୁମୁଖୀ ।
ବେଗେ ସେ ପଳାଇବେ ଅବା ବେଡ଼ାଇ ଗଲେ ଗୋ ଖୋଜିବା
ବିଚକ୍ଷଣିଏ ପରା ବୋଲଅ ବନ୍ଧୁ ଧରା ପଡ଼ିବେ ତୁମ୍ଭ ହାତେ ଅବା
ରେ ମଧୁର
ନୀରସ ବାଳକାକୁ ଲ୍ଳା ଡର ନାହିଁ ଲବେ ତୁମ୍ଭର ।
ନାରୀଙ୍କ ପାଲଟାବାସ ଚୋରିକରି ରଖିଲ ପରା ନୀପପର ।
ନୀରଜ ନେତ୍ରୀଙ୍କି ବଂଶୀ ସ୍ୱନେ ଡ଼ାକି ନିଶି ଅର୍ଦ୍ଧେ ବନେ ନେଇ
ନିୟମ ଲଙ୍ଘିଣ ନାନାବାଗେ କହି ଲୁଚିଲ ଏକାନ୍ତେ ଯାଇ ।

\+ \+ \+

ଖଜା ପୁଳି ଖାଇ ସୁଖେ ବସିଅଛ ନୀଳଶିଖରୀ ଶିଖରେ ।
କ୍ଷୀର ସିନ୍ଧୁଜାଙ୍କୁ ପାଶରେ ବସାଇ ବୋଲ ଦରିଦ୍ରଙ୍କୁ ମାରେ ।
ଖଣ୍ଡ ପଣ ସବୁ ତୁମ୍ଭର ଜାଣିଲି ଗୀତାରେ କହିବା କଥା ।
ଖଟିଲେ ଥରେ ମୋ ପାଦେ ସବୁ ଦେବି ବୋଲିବା କଥାଟା ବୃଥା
ଖାଲି ମିଛ କିମ୍ବା କହ ଯେ ଆପଣ ସର୍ବଲୋକ ପ୍ରଭୁ ହୋଇ

\+ \+ \+

ଘାଣ୍ଟି ମାରିବାକୁ ଆରତ ଲୋକଙ୍କୁ ମିଛେ ବାନ୍ଧିଅଛି ବାନା

\+ \+ \+

ହାବୁଡ଼େ ପଡନ୍ତ ଯଦି ମୋର ତୁମ୍ଭେ ଜଙ୍ଗନ ରୂପକୁ ଧରି
ହାରିବକି ନାହିଁ ଜଣାପଡ଼ନ୍ତାଟି ହାଟକ ବସନ ଧରି ।

ସେ ଉନ୍ମାଦ ଭାବ ଯେପରି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି ସେଥିରୁ କବି ଜଣେ ଭକ୍ତ ଶିରୋମଣି ଏଥିରେ ଶଙ୍କା ନାହିଁ । ଭକ୍ତି ସର୍ବଥା ବୈରାଗ୍ୟଗତ ପ୍ରାଣ । କବିଚନ୍ଦ୍ରଙ୍କ ବୈରାଗ୍ୟ ସ୍ପଷ୍ଟ ଜଣାଯାଏ । କିନ୍ତୁ ତାହା ଶୈବ ବୈରାଗ୍ୟ ପରି କଠୋର ନୁହେ । ସେ ଚତୁର୍ବର୍ଗ ଫଳ କାମନା କରି ହୃଦୟର ଅନ୍ତର୍ନିହିତ ବେଦନାକୁ ଇଷ୍ଟଦେବ ଶ୍ରୀକୃଷ୍ଣ ଭାବରେ ତନ୍ମୟ ହୋଇ ଛନ୍ଦୋବଦ୍ଧ କରିଅଛନ୍ତି । ତାଙ୍କ କାମନାର ଆତିଶଯ୍ୟ ଚତୁସ୍ତ୍ରିଂଶ ଭିକ୍ଷା ଗୀତରେ ଆହୁରି ବିଶଦ୍ ଭାବରେ ପଦ୍ୟକୃତ ହୋଇଅଛି—

ନିତ୍ୟକୃତ୍ୟ ବିଧି ଚଳିବାକୁ ମୋର ନାହିଁ କିଛି ଯେ ଉପାୟ
ନିପଟ ଅରକ୍ଷିତଙ୍କ ପରି କର ନ ଲଗଇ ମୋ ବିଷୟ
ନାନା ଦେଶଫେରି ପେଟ ପୋଷିବାକୁ କେତେ ମୁଁ ମରିବି ବୁଲି
ନାହିଁ ଗ୍ରହସମ ହେବି ମୁଁ ଏଥର କୁଟୁମ୍ବ ଭ୍ରମରେ ବୁଡ଼ି
ନିସତ ହୋଇଣ କିସ ହେବ ଲାଗିଥିଲେ ଏ ସଂସାରେ ପଡ଼ି ।
ନ' ଘଡ଼ିରେ ହେଲେ ତୁମ୍ଭ ଭୋଗକୁ ତ ନ ମିଳଇ କିଛି
ନିତି ଅତିଥିଙ୍କ ପୂଜା କାହୁଁ ହେବ ଲୋକରେ ବୋଲିବେ ଛି ଛି ।

X X X

ଟଳିବ ଏ ଜୀବ ଟଙ୍କା ନ ମିଳିଲେ ସରିବ ମହତ୍ତ୍ୱ ମୋର
ଟମକ ଦେଲେଣି ସରକାର ଘର ଘର ମୋ ବିକାଇବାକୁ
ଟାକିଛି ମାତର ତୁମ୍ଭ ବେନିକର—ଟେକା ଦେଖି ବଞ୍ଚିବାକୁ ।

X X X

ଟେକି ପ୍ରଥମରୁ ବଡ଼ କରିଦେଲ ଏ କାଳକୁ କଲ ରଙ୍କ
ପହିଲୁ କହୁଛି ପାଶୋରି ଦେଉଛ ଭୋଗ ଖାଇ ଚଉଷଠି
ପାକ କରିବାକୁ ଶାକସରିକି ମୋ ନ ଦେଲେ ଯେ ଏକ ମୁଠି ।

X X X

ଶାକ ପାକକରି ବଞ୍ଚନ୍ତି ମୁଁ ହେଲେ କଲ କିମ୍ପା ସୁକୁମାର

X X X

ହଜିଗଲ ମୋର ସଉଦା ସବୁ ତ ହାଟବାଟେ ଯାଇ କରି ।
ହାଡ଼ିପରି ଲୋକେ ବିଗ୍ରର କରି ମୋ ଆବର ଦେଲେ ତ ସାରି

X X X

କ୍ଷେତ୍ରକୁ ତୁମ୍ଭର ଯାଇ ମୁଁ ଜାଣନ୍ତି ଖରଚ ମୋ ହାତେ ନାହିଁ
କ୍ଷୀଣ ବିତ୍ତ ହୋଇ ପନ୍ଥାରେ ଗଲେ ତ ନାବିକେ ତ ନେବେ ନାହିଁ ।

X X X

ଯୋଡାଏ ମାସର ମାତ୍ର ବର୍ଣ୍ଣନ ଜାଣି ସିଲ ହେବ ଅବଧାନ ।
ଜାତ ତ ପିତୃପିତାମହ ଆଦି ଯେ ଯତ ଯାବତ ଏ ଦ୍ୱାରୁ ସଂପାଦି
ଜବର ଏଣୁ ମାଗିବାର ବଳ ଯେଣୁ ଶ୍ରୀଦେଉ ଅଟ ମୋ କପାଳ
ଜଣକ ବିନା ପାରିବାକୁ ଆଉ ଜଗତେ ମତେ ନ ଜାଣଇ କେହୁ
ଯାଇଥାଇ ମୁଁ ପିଣ୍ଡକୁ ନ ଦେଲେ ଜନେ ବୋଲିବେ ଗ୍ଭଡିଲେ ।

ଏଥିରୁ ଜଣାଯାଏ ଅନ୍ତିମକାଳରେ ଜରାବସ୍ଥାରେ କବି ବ୍ୟାଧିଗ୍ରସ୍ତ ହୋଇ ଉତ୍କଟ ଦାରିଦ୍ର୍ୟ ପ୍ରପୀଡ଼ିତ ହୋଇଥିଲେ । କିନ୍ତୁ ବିବେକି ପକ୍ଷରେ ଦୁଃଖ ଗୁଣର ଚିହ୍ନର ଗ୍ରାହକ । ଇଂରେଜୀରେ ଅଛି Sweet are the uses of adversity. ଏହି ତୀବ୍ର ଅଭାବ କବିଙ୍କୁ କାବ୍ୟ ରଚନାରେ ଉନ୍ମାଦ ଆଣିଦେଇଥିଲା । ପୁଣି ସେ ଯେଉଁ ଦ୍ରବ୍ୟ ସମ୍ଭାର ଆଶା କରୁଥିଲେ, ତାହା କେବଳ ଉଦର ପରିପୋଷଣ ପାଇଁ ନୁହେ । ତୀର୍ଥାଟନ, ଅତିଥି ସତ୍କାର, ପୂର୍ବପୁରୁଷଙ୍କ ସଦ୍‌ଗତି ବିଧାନ, ଈଶ୍ୱର ନିବେଦନ ନିମିତ୍ତ; ଏହା ତାଙ୍କ ସାଧୁ ସ୍ୱଭାବର ପରିଚୟ ।

ହନୁମାନ ବିଭିନ୍ନ ରାଜାମାନଙ୍କ ପୃଷ୍ଠପୋଷକତାରେ ଉନ୍ନତ ହୋଇଥିଲେ ସୁଦ୍ଧା ସେଥିଯୋଗୁଁ ସେ ଦରବାରୀ ଆଲୋକ ଭଳି ଦାସଚେତନ ହୋଇ, ନିଜ ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖି, ସେହି କାଳର ଶାସକ ରାଜନ୍ୟବର୍ଗ ବିଳାସ୍-ବ୍ୟସନ-ଅସଂଯତ ଜୀବନ ପ୍ରତି ଯେପରି ଆକ୍ରୋଶ କରିଥିଲେ, ତାହା ବର୍ତ୍ତମାନର ସାମ୍ୟବାଦ-ପ୍ରବଳ ଯୁଗରେ ସମସ୍ତଙ୍କୁ କୌତୂହଳ ବୋଧହେବ—

ଡ଼ରନ୍ତି ଦୂରରୁ ଦେଖିଲେ ତ ନୃପେ ଖରଚ ଲାଗିବ ବୋଲି
ଡରଇ ଖାଇବ ଯେଉଁ ଲୋକ ତାକୁ ଧନ ଦେବ ମନ୍ଦି ଫୁଲି ।

X X X

ରାଜନମାନେ ତ ହୋଇ ମଦମତ୍ତ ନ ଗୃହାନ୍ତି ପରଲୋକ,
ରାଧାମାଧବଙ୍କ ନାମ ଯେ ଧରଇ ନ ଦିଅନ୍ତି ତାକୁ ଭିକ ।
ରତିହେଲେ ମାତି ପରଦାରରତିତ ରୋଷେ ଭକ୍ଷନ୍ତି ଗୁମାନେ,
ରାମକୃଷ୍ଣ ହରି ବୋଲିବାର ଥାଉ ନ ଶୁଣନ୍ତି ଥରେ କାନେ ।
ରହି ନଉକର ତାଙ୍କ ମନଧରି ବଞ୍ଚିବାକୁ ନାହିଁ କାଳ,
ରାବଣପରାୟେ ରତିରଙ୍ଗେ ମାତି ବୃଥାରେ ନିଅନ୍ତି କାଳ ।

X X X

କବିଚନ୍ଦ୍ରଙ୍କ ଲେଖା ରସ ଓ ଭାବ ଦୃଷ୍ଟିରୁ ସୀମାବଦ୍ଧ ସତ୍ୟ, ତଥାପି ଶବ୍ଦ ବିଭବ, ପ୍ରୟୋଗର ଯାଥାର୍ଥ୍ୟ, ଅଳଙ୍କାରବାହୁଲ୍ୟ ତାଙ୍କର ବୈଶିଷ୍ଟ୍ୟ । ତାଙ୍କର ପ୍ରତ୍ୟେକ ପଂକ୍ତିରେ ଶ୍ରୁତି, ପୁରାଣ, ଇତିହାସ ଓ ପରମ୍ପରାର ଦୃଷ୍ଟାନ୍ତ ପୂରି ରହିଅଛି । ସଂସ୍କୃତରେ ପାଣ୍ଡିତ୍ୟ ଥିବାରୁ ସେ ମୌଳିକ, ତତ୍‌ସମ ଓ ତଦ୍‌ଭବ ପଦ ଯେପରି ରୁଚିର ଓ ଭାବ-ସମ୍ମୋହନ କରି ବ୍ୟବହାର କରିଅଛନ୍ତି, ଦେଶଜ ବା ପ୍ରାଦେଶିକ ଓ ଗ୍ରାମ୍ୟ ପଦାବଳୀକୁ ଆହୁରି ଅର୍ଥପୂର୍ଣ୍ଣ, ରସମୟ ଓ ମନୋରଞ୍ଜନ କରି ଥୋଇଅଛନ୍ତି । ଅଥଚ କୌଣସିଠାରେ ଅଶ୍ଳୀଳତା ଦୋଷ ନାହିଁ । ସାଧୁଶିଷ୍ଟ ବ୍ୟବହାର ମର୍ଯ୍ୟାଦାରେ

ସାଧାରଣ ଜୀବନ କଥିତ ସରଳ ଭାଷାର ମୌଳିକତା, ଗୌରବର ଉପକାରିତା ରକ୍ଷା କରାଯାଇଅଛି । ସେଥି ସଙ୍ଗେ ସଙ୍ଗେ ଅନେକ ବୈଦେଶିକ ଶବ୍ଦ ପଦ ମଧ୍ୟ କବିଚନ୍ଦ୍ର ନିଜ କବିତାରେ ଲଗାଇଅଛନ୍ତି । କେବଳ ଲଗାଇଅଛନ୍ତି ନୁହେଁ, ସେ ସବୁର ପ୍ରଣୟନ ଚାତୁର୍ଯ୍ୟ ବଳରେ ନିଜସ୍ୱ କରି ନେଇଅଛନ୍ତି । ଅନ୍ଧ ଅନୁକରଣରେ କୃତ୍ରିମ ଛାପ ତା ଉପରେ ପଡ଼ିନାହିଁ ।

ଗଣ, ରଙ୍କରତନ, ଉଣା, ରସରସିକ, କଡି, କନା, ଲେଢ଼ା, ନଉକର, ଖେଦା, ଗଣ୍ଡମୂର୍ଖ, ଘନସୁନ୍ଦର, ବିଳମ୍ବ, ଘରବୁଢ଼ା, ଭୁଞ୍ଜିବ, ନିପଟ, ଆଡୋଟ, ଚିଡୋଇବି, ଚିନାଏଁ, ଛୁର, ଛେଚି, ବାନା, ଝୁରି, ଝିମିଟେ, ଝାଡ଼ି, ଝୋଲ, ଝାଳ, ଝରେ, ନିଶଟେକା, ନିରେଖ, ନିସତ, ଟାକିଛି, ଟୋକା, ଟିକେ, ଟାପ, ଟପା, ଟାଉ, ଟିପା, ଟିପି, ଟେକ, ଠାବ, ଢ଼େରୁନ୍ତୁ, ଡାହାଣ, ଡୁଂକୁର, ଢ଼ୋକେ, ତାଟକା, ଚଦିବା, ନାକର ନାଗର, ବେଲି, ବତିଶା, ଉହାଣ, ମାଗଣା, ରହା, ଲଟ, ଲଖ, ହାଲିଆ, ଖଟଣୀ, ଢ଼ଳି, ଢ଼ୋକରି, ଢୋକେ, ଲୋକହସା, ଉଗାଣ୍ଡି, ଟିକି, ଭେଳିକି, ଉଛୋଚ, ଖଚୁଆ ମାହାର, ସାବତ, ହାବୁଡ଼େ, ଲଗଡ, ଲେଷଡି, ଲଡି, ପେଲି, ଲଞ୍ଚ, ମଞ୍ଜି, ହରବର, ଗୁହାଣ୍ଡି, ବିଡ଼ୁଛି, ସଧ, ତମ......

ଏହିପରି ଅସଂଖ୍ୟ ପଦର ବହୁଳ ଓ ସୁଲଭ ପ୍ରୟୋଗ ଦେଖିଲେ ଓଡ଼ିଆ ଭାଷାର ଗ୍ରାମ କେଉଁଠାରେ ଓ ବଂଶୀୟ ବିକୃତିରୁ ତାହା କିପରି ପୃଥକ୍ ତାହା ସହଜରେ ବୁଝାଯାଏ । ବିତଣ୍ଡା ବା ଜଳ୍ପର ପ୍ରୟୋଜନ ନାହିଁ ।

ଆହରଣ ସୂତ୍ରରେ କବିଚନ୍ଦ୍ର—ଟେଣ୍ଡା, ତନ୍ଦର, ଡ଼ାବୁ, ବାଇଦା, ଘାବର (ତୈଲଙ୍ଗିୟ) ଖିଆଲ, ଖରପ, ଆଖର, ଖୁନିଦାର, ଖାତର, ଲତଖୋର, ଫଜିତ, ଫତୁଣ୍ଡି, ଫିରିଆଦ, ଫରମାସ, ଆବୁର, ଫରବି, ଖୁଲସ, ଜବର (ଯାବନିକ) କଂପାତ, ରିପୋଟ (ଇଂରଜୀ) ପ୍ରଭୃତି ପଦଗୁଡ଼ିଏ ଯେପରି ବ୍ୟବହାର କରିଅଛନ୍ତି ତାହା ଅତି କୌତୂହଳୋଦ୍ଦୀପକ ।

ଅଧ୍ୟାପକ ଶ୍ରୀଯୁକ୍ତ ଗିରିଜାଶଙ୍କର ରାୟ ଇତିମଧ୍ୟରେ 'ନବଭାରତ'ରେ ଦେଖାଇଛନ୍ତି ସହଚର ଓ ପୁନରାବୃତ୍ତ ଶବ୍ଦ ଓଡ଼ିଆ ଭାଷାରେ ଗୋଟିଏ ବିଶିଷ୍ଟ ସମୃଦ୍ଧି । କହିବା ବାହୁଲ୍ୟ କବିଚନ୍ଦ୍ର ଏହି ସମୃଦ୍ଧିକୁ ଉପେକ୍ଷା ନ କରି ଆହୁରି ବୃଦ୍ଧି କରିଅଛନ୍ତି । ତାଙ୍କର ବ୍ୟବହୃତ—

ଘେନାଘେନି, ଛଅନଅ, ଚକମକ, ଥୋପଥୋପ, ବୁଝାମଣା, ଭେଲେ ଭେଲେ, ହାନିଲାଭ, ହଟନଟ, କଲବଲ, ହଟହଟା, ହୁକୁହୁକୁ, ଥଳକୁଳ, ଦାବା-ଦରବାର, ଚଦି ଚଦି, ଥନ ଥନ—

ତହିଁର ଉଦାହରଣ—

କଳିଂଦଜାକୂଳ ଶ୍ରୀନନ୍ଦ ମୃଗ୍ଯୁଙ୍କ କୁଶିକୁସୁମ ତଳପ
ଲକ୍ଷଚନ୍ଦ୍ର ଉଜ୍ଜଳ କଞ୍ଜଳ ଦଳାକାଳ ଇନ୍ଦ୍ରନୀଳ ହେବ ।

ର-ର-ଅନୁପ୍ରାସ

"ଗ୍ରେଟହୋଇ ମେରୁ ମନ୍ଦରଗିରିକୁ କରଇ ଚଢ଼ିବା ମନ
ଛାଗହୋଇ ବାଘ ଗିଳିବା ପାଇଁକି କଲପରି ମୋର ମନ

ସୋରିଷକୁ ମେରୁ ସମ କରିପାର କର ଶଇଳକୁ ରେଣୁ
ସମୁଦ୍ରକୁ ସ୍ଥଳ ସ୍ଥଳକୁ ଜଳଧି ତୃଣକର ବଜ୍ର ଯେଣୁ ।"

ର-ଅତିଶୟୋକ୍ତି ଓ ବିପକ୍ଷତାର୍ଥ—

ପରନାରୀରେ ରତ ହେବାର ଉଚିତ ନୁହଇ ବଡ଼ଲୋକଙ୍କର
ପରମ ପୁରୁଷ ସେ ପର ବୋଲନ୍ତି ରସେ ରସାଇ କିମ୍ପା କଲେ ପର-
ଗୋ ପଙ୍କଜାକ୍ଷୀ
ପଶ୍ଚୁ ନାହିଁ ତାଙ୍କୁ ଯାଇ ପାଶକୁ ଡକାଇ ଅଣାଇ
ପେଷି ମୁରଲୀଦୂତ ପଞ୍ଚମ କରି ଗୁତ ପେଷିଲେ ବନରେ କିମ୍ପାଇ ।

ର-ଶ୍ଳେଷ ଓ ବକ୍ରୋକ୍ତି—

ହେବେ ଜୀମୂତଦଳିତ ସୁନ୍ଦରକାଣ୍ଡ......
ମକରଧ୍ୱଜ କର ଶରେ
ଗଜବର ଗତି ଜିଣା ଗତି......

ଇତ୍ୟାଦି ସମାସ ହୃଦୟଙ୍ଗମ କଲେ କବିଙ୍କର ରସବନ୍ତ ଲେଖନୀ ଓ ପାଣ୍ଡିତ୍ୟର ଉତ୍କର୍ଷ ଜଣାଯାଏ ।

ଗୋଟିଏ ଭବନାବସ୍ତୁର ପର୍ଯ୍ୟାୟକ୍ରମେ ଶବ୍ଦପ୍ରାଚୁର୍ଯ୍ୟ ବିଧିରେ ବହୁତୋମୁଖୀତା ପ୍ରକାଶ କରିବା ଛଟାର ଦୃଷ୍ଟାନ୍ତ ସ୍ୱରୂପ କବିଙ୍କର—ପାର୍ଥସଖା, ସୃଷ୍ଟିକର୍ତ୍ତା, ରଜୀବାକ୍ଷ, ରକ୍ଷନାଶି, ସ୍ଥାଣୁସେବ୍ୟ, ଚନ୍ଦ୍ରଚୂଳ, ତେଜୋମୟ, ଛଦ୍ମମୋହନ, ଠଣ ଲପନ, ତମାଳସୁନ୍ଦର, ସୋଣବିନ୍ୟାସ, ଝସ ମୂରତି, ଛନ୍ଦୋମୟ, ଘନଦ୍ୟୁତି, ଇତ୍ୟାଦି, ଗୂରୁହାସୀ, ଛଟକାକ୍ଷୀ, ଠଣିମୁଖୀ, ଡ଼ାକିକଟୀ, ତନୂଦରୀ, ଜବାଧରି, ଧୀରହାର ଇତ୍ୟାଦି ନିଆଯାଇପାରେ ।

ଯେ କୌଣସି କବିଙ୍କର ଲେଖା ଉପରେ ପ୍ରାଚୀନ ଓ ସମସାମୟିକ ଲେଖାର ପ୍ରଭବ ପଡ଼ିବା ଓ ତାଙ୍କର ନିଜ ଭଷା କାହିଁକି ଅନ୍ୟାନ୍ୟ ଭଷାର ସୁଧୀ ଓ ଚିନ୍ତାଶୀଳମାନଙ୍କ ସଙ୍ଗେ ଭବ ସାମଞ୍ଜସ୍ୟ ରହିବା ସ୍ୱାଭବିକ । ମନୁଷ୍ୟ ପ୍ରକୃତି ଏକ, ଅନନ୍ତ, ଅସୀମ, ଦେଶକାଳ ବ୍ୟାପ୍ତ । କବିଚନ୍ଦ୍ର ଏହି ନିଃସର୍ଗ-ନିୟମର ବହିର୍ଭୂତ ନୁହନ୍ତି । ତାଙ୍କର ଭକ୍ତିବିହ୍ୱଳ, କରୁଣ ଆବେଗପୂର୍ଣ୍ଣ—

କରୁଣାନିଧି ମୁଖ ଚାହିଁ କେଉଁ ନିରେଖ କହଇ ବେନିକର ଯୋଡ଼ି
କୃପାଳୁ ହୋଇ ମୋର ଦୁଃଖ ଯାହା ନ ହର କରିବି ନିତି କେତେ ରଡ଼ି
ହେ କଞ୍ଜନେତ୍ର ।
କାହୁଁ ଶିଖିଲ କୃପଣତା କି ଅବା କରମେ ମୋ ଧାତା
କରିଅଛି ଲେଖନ ବୋଲି ହୁଅ ମଉନ ହେ ତିନି ଜଗତର ପିତା
ହେ କଞ୍ଜନେତ୍ର......।

ଶୁଣିଲବେଳେ ଅମର କବି ଦୀନକୃଷ୍ଣଙ୍କର—

କୃପାସିନ୍ଧୁ ବଦନ କରି ଅବଲୋକନ କେଉଁ କରମହୀନ ଜନ
କାକୁସ୍ୱତର ହୋଇ କରଯୋଡ଼ି ଜଣାଇ ଗରୁଡ଼ସ୍ତମ୍ଭ ସନ୍ନିଧାନ
ହେ ମହାପ୍ରଭୁ ।
କୃପା ସରିତ ପତି ହୋଇ କରମ ହୀନ ଜନ ତହିଁ
କରୁଣା ହେଲନାହିଁ କିମ୍ବା ହେ ଭବଗ୍ରାହୀ କହ ମୁଁ ବିଚିତ୍ର ମଣଇ
ଘୋଟି ଘୋଟି ମୁଁ କିତବମୂଳ ଘୋରି ତହିଁରେ ଘୋର ଜାଙ୍ଗଳ
ଘଟିଲେ ପିଇବି ହଳାହଳ ଘଟି ନ ଧରି ସମୁଦ୍ରେ ତରିକା ମତି ହେ ।

ପାଠ କଲବେଳେ କବିସୂର୍ଯ୍ୟ ଚମ୍ପୂର—

ଘୋଟି କିତବମୂଳ ଘୋରି ଘୋର ଜାଙ୍ଗଳ
ଜହର ତୁଲେ ତାହା ପିଇଲୁ ଗୋ,
ଘଟି ସରିକି କରେ ନାହିଁକି ବିବେକରେ
ମହାର୍ଣ୍ଣବରେ ଅବଗାହିଲୁ ଗୋ ।

"ନିର୍ଦ୍ଧନ କରି ତ ଦେଇ ଏଣୁକରି ନାଶିବାର ହେଲମୂଳ" ଚିନ୍ତା କଲବେଳେ ଇଂରେଜୀ କବି Grayଙ୍କର Chill Penury freezes the genial current of the soul ସ୍ୱତଃ ମନରେ ଉଦିତ ହୁଏ ।

ପ୍ରାଚୀନପନ୍ଥୀ କବିଚନ୍ଦ୍ରଙ୍କର କବିତା କାମୋଦୀ ଇତ୍ୟାଦିର ଗଗ ସମସ୍ତ ଯତିପାତ, ଉପଧାନିୟମ ରକ୍ଷାକରି ଅଦ୍ୟୋପ୍ରାନ୍ତ ବର୍ଣ୍ଣମାଳାର ପ୍ରଥମ ଅକ୍ଷର କ୍ରମେ ଆରମ୍ଭ ଓ ଶେଷ କରଯାଇ ଭଣତି ପ୍ରଭୃତି କାବ୍ୟର ସକଳ ଲକ୍ଷଣ ଓ ନିବନ୍ଧନ ସୁଦୃଢ଼ ଓ ତହିଁରେ ଆଧୁନିକ କବିତାର ଛନ୍ଦ ବିଶୃଙ୍ଖଳା ନାହିଁ, ଏହା କହିବା ଅନାବଶ୍ୟକ ।

ଜଗିବାକୁ ଆଉ କାଳ ନାହିଁ ମୋତେ ଯାହା ଇଚ୍ଛା ତାହା କର,
ଯାଇ ନରକରେ ବାସ କଲେ ହେଲେ ନାହିଁ ମୋ ତହିଁକି ଡର ।

x x x

ଟୁବୁକରି ଯେବେ ସଂସାର ଜଳଧି ଟୋପରେ ମୁଁ ଯିବି ବୁଡ଼ି,
ଟଳମଳ ହେବ ବୋଲେ ହନୁମାନ ଶେଷଦେବେ ରସା ଛାଡ଼ି ।

x x x

ତବ ନାମାମୃତ ପାନ କରୁଥିବା ସାଧୁଙ୍କ ଚରଣ ସେବି,
ତିଳେ ହେଲେ ଯେବେ ପାଆନ୍ତି ମୁଁ କରି ରହନ୍ତି କି ଏତେ ଭବି ।
ତନୁଜ ଅନୁଜ ଆଦି କୁଟୁମ୍ବଙ୍କ ମୋହରେ ପଡ଼ି ମୋ କାଳ,
ତୁଟି ଏକପରି ଦେଲିଣି ମୁଁ ସାରି ମୋହର ଆୟୁଷ କାଳ ।

x x x

ଥାଳିଏ ଅନ୍ନ ମୁଁ ଅତିଥିଙ୍କି ଡାକି ଦେଇ ନାହିଁ ଭଲ କରି,
ଥଟା କଥା ମାତ୍ର କହଇ ଦାଣ୍ଡରେ ଗୁମାନରେ ରହି ପୂରି ।

x x x

ଦର ଉଚ୍ଚ କରିବାକୁ ନୁହେ ଚିତ୍ତ କୁଟୁମ୍ବ ମୋହରେ ପଡି,
ଦରିଦ୍ର ଜନମ ଦେଇଛ ତ ଜାଣି ଦେବି କାହୁଁ ଦ୍ରବ୍ୟ ଲୋଡ଼ି ।
ଦାତା ବୋଲଇବା ପାଇଁ ଖ୍ୟାତି କାମେ କହଇ ଗୁଣଗୁଡ଼ାଏ,
ଦାନବାରି କୃପା ନୋହିବାରୁ ଦାନ ବାରିକି ମୁହିଁ ଲୋଡ଼ାଏ ।
ଦୁଷ୍ଟଜୀନ କୁକୁଳୀନ ବୋଲି ବୋଲି ଯହୁଁ ପରଶଂସା କରି,
ଦନ୍ତମାଳି ଖସି ରସା ପୂରିଲଣି ତୃଷ୍ଣି ମୋ ନାହିଁ ଆଉରି ।

x x x

ନାସ୍ତିକମାନଙ୍କ ସଙ୍ଗୀ ବାଲ୍ୟ ଦିନୁ ନିପଟ ମୁଁ କରି କରି,
ନିୟମ ଯେତେକି ସଂସାରରେ ଅଛି ସବୁ ଦେଇଅଛି ସାରି ।

x x x

ବୟସ ପନ୍ଦର ଗଣ୍ଡା ଭୋଗ ହେଲା ବାକି ଆଉ କେତେ କାଳ,
ବତିଶା ବୈଦ ଲୋକଙ୍କର ହୋଇ ବାଧିଲେ ମୁହିଁ ବିକଳ ।
ବାଡ଼ିଧରି ଚାଲିବାକୁ ବଳନାହିଁ ବାହୁରେ ଜନମି ବାତ,
ବକ୍ର ହେଉଅଛି ଏହି ସମୟକୁ ତନ୍ତ୍ରଘ୍ରେର ଚକ୍ର ହାତ ।

x x x

ଭ୍ରମ ଏ ସଂସାର ଭୋଗୀ ଅଜଗର ଭେକରେ ମରଇ ଚଳି,
ଭେକ ପରି ମତେ ବେକଆଡ଼ୁ ଧରି ପାଦ ଯାଏ ଦେବ ଗିଳି ।
ଭଲନାଟ ଦେଖିବାକୁ ବିଚାରିଛି ଉଲେ ଉଲେ ଦେଇ ଡ଼ାକ,
ଭଇ ବତିଶା ମୋ ସମସ୍ତେ ତେଜିଲେ ସକଳ ତୁମ୍ଭେ ହିଁ ଏକ
ଭଗୀରଥ ସୁତା ନୀରେ ଥରେ ମଥା ବୁଡ଼ିବାକୁ ଆଜ୍ଞା ହେଉ ।

x x x

ଲକ୍ଷ୍ୟ ନାହିଁ ମୋର ଶମନ ଦଣ୍ଡକୁ ଲଞ୍ଜୁଅ ମୁଁ ଘର ବୁଡା,
ଲାଜ ନାହିଁ ମୁଖେ ଲେସଡ଼ଇ ଦାନ୍ତ ଲାଗିଲିଟି ମୁଁ ବାପୁଡୀ ।
ଲକଳା ଭୋଗରେ କାଳ ପୂରଇ ମୁଁ ଲଗଡ଼େ କାଟଇ ଚିଟା,
ଲୋଭୀ ମୋହ ପରି ଜଗତରେ ନାହିଁ ଲେଙ୍କଡ଼ା ପରିଧାନତା ।

x x x

ସକଳ ପୁରାଣମାନଙ୍କୁ ତୁମ୍ଭର ରଖାଇ ସାଇତି ଘରେ,
ସର୍ବଜ୍ଞ ପୁରୁଷଙ୍କର ସୁଚରିତ ନ ଶୁଣଇ ହେଲେ ବାରେ ।

x x x

କ୍ଷୀଣ ହେଲଣି ମୋ ଶରୀର ଚିନ୍ତାରେ ବିପଦ ଦେଉଛି ଢାଳି,
କ୍ଷେତ୍ରକୁ ତୁମ୍ଭର ଯିବାକୁ ବିଚାର କରୁଅଛି ବସି ଭଳି ।
କ୍ଷାଳିତ କରିବି ତୁମ୍ଭ ପଦନୀରେ ମୋ ମସ୍ତକ ଯେଉଁ କାଳେ,
କ୍ଷଣଦା ଅହ ମୋ ସଫଳ ହୋଇବ ପାନକଲେ ତହୁଁ ଢ଼ାଳେ ।

x x x

ଉଦ୍ଧୃତାଂଶମାନଙ୍କରୁ ଜଣାଯାଏ ପ୍ରକାଶିତ କବିତା ହନୁମାନଙ୍କର ସ୍ଥବିର ବୟସର । ଐହିକ ବାସନାର କ୍ଷଣିକତାରେ ବିଚଳିତ ହୋଇ, ସଂସାର ଜଞ୍ଜାଳରେ ତ୍ରସ୍ତ ହୋଇ, ପରଲୋକ ଉପରେ ଦୃଷ୍ଟି ନିବଦ୍ଧ କରି, ବିଶ୍ୱଶକ୍ତିର ଅନୁକମ୍ପା ଭିକ୍ଷାକରି ସେ ଆକୁଳ ପ୍ରାଣରେ ଗାଇ ଯାଇଛନ୍ତି । କର୍ମକାଣ୍ଡର ବାହ୍ୟ ଆଡମ୍ବର ନାମ ଦେବାଦେବୀ ଆରାଧନା ତାଙ୍କୁ ତୃପ୍ତ କରିପାରି ନାହିଁ । ଇହ ଓ ପୂର୍ବଜନ୍ମକୃତ ପାପର ଅନୁତାପ, ସଦ୍‌ଚିନ୍ତା, ସତ୍‌ସଙ୍ଗ, ସଦ୍‌କାଳକ୍ଷେପ ନିମିତ୍ତ ଉଦ୍‌ବିଗ୍ନ ହୋଇ, ପ୍ରକୃତ

ବୈଷ୍ଣବ ବ୍ରତ ଗ୍ରହଣ କରି, ଭକ୍ତିମାର୍ଗରେ ନାମ ସ୍ମରଣ, ଅର୍ଚ୍ଚନ, ବନ୍ଦନ, କୀର୍ତ୍ତନ ଇତ୍ୟାଦିରେ ଶେଷଜୀବନ ଅତିବାହିତ କରିବାକୁ ସେ ଉତ୍କଣ୍ଠା ଦେଖାଇଅଛନ୍ତି । ତହିଁର ଦାସ୍ୟ, ସଖ୍ୟ ଇତ୍ୟାଦି ଷଡଭବ—

ବିଦ୍ୟୁତ୍ରୁ ପ୍ରାଣ ଚଞ୍ଚଳ,
ବିହି ଏବେ ମୋତେ କରି ଆକୁଳ କୋଇଲି ଆଲୋ
ବିଧି ମାନସ ହେଲା ସଫଳ...
ଶିଶୁଦିନ ଅବୁଝାଣ ।
ଶୁଭ ଦିନେ କଲେ ସୁନା ଭୂଷଣ କୋଇଲି ଆଲୋ,
ସବୁ ହଜାଇ ଆସଇ ବନ.........
ଝାଡ ବନେ ଫୁଲ ପଡ଼ି ଝଡ଼ି ଝଡି ଯାଉଅଛନ୍ତି ସଡ଼ି
ଝୁରେ ତା ଦେଖି ମୁଁ ମୁହଁ ପୋଡ଼ି......
ତମାଳ ଦଳ ଛିଣ୍ଡାଇ,
ତେରଛି ଶିରେ ଖୋସିବାରେ ଘୁହିଁ
ତେଡେ ଶରଧା ଭଙ୍ଗିଲା ବିହି.........



# ଗୋବିନ୍ଦ ରାଜଗୁରୁଙ୍କ କବିତା

ଗଞ୍ଜାମର ବିଗତ ଶତାବ୍ଦୀର ପ୍ରତିଷ୍ଠିତ କବି ରାଜଗୁରୁ ପିତାପୁତ୍ରଙ୍କ ଜୀବନୀ ଓ କବିଚନ୍ଦ୍ର କବିତାର ସଂକ୍ଷିପ୍ତ ଆଲୋଚନା ଇତିପୂର୍ବେ 'ସହକାର'ରେ କରାଯାଇଅଛି । ଏଠାରେ 'ରାଜଗୁରୁ ଗ୍ରନ୍ଥାବଳୀ'ର ତୃତୀୟ ଭାଗରେ ସନ୍ନିବିଷ୍ଟ ଗୋବିନ୍ଦ ରାଜଗୁରୁଙ୍କ କବିତା ଉପରେ ଯତ୍‌କିଞ୍ଚିତ୍ ଆଲୋଚନା କରାଯିବ ।

ହନୁମାନ ଗୋବିନ୍ଦ ତୁଳନାରେ ପ୍ରଥମେ ଆଖିକି ଦିଶେ । କବିଚନ୍ଦ୍ରଙ୍କ ସୀମାବଦ୍ଧ ଲେଖା ତୁଳନାରୁ ଗୋବିନ୍ଦଙ୍କ ରଚନାର ବିସ୍ତାର ଓ ବିଭିନ୍ନ ରୁଚିସମ୍ପନ୍ନତା । ଏହି ଭିନ୍ନତାର ଗୋଟିଏ ପ୍ରଶସ୍ତ ବିଭାଗ ସଙ୍ଗୀତ । ହନୁମାନ ପ୍ରାଚୀନ ଧରଣରେ ଦୁଇ ଚାରିଟା ରାଗିଣୀ ଓ ଛନ୍ଦକୁ ମିଳାଇ ସମସ୍ତ କବିତା ଲେଖିଅଛନ୍ତି । ଗୋବିନ୍ଦ ବିଳାଭରି ପୁରବୀ, ହିନ୍ଦୁସ୍ଥାନୀ, କାଫି, ତୋଡ଼ିପରଜ, ମାରୁଆ, ଆନନ୍ଦ ଭୈରବୀ, କଲ୍ୟାଣୀ, ବେଗଡ଼ା, ବଙ୍ଗଳା, ସୁରଟ, ଶାବରି, ପଞ୍ଚମବରାଡ଼ି, ଖମାଚ, ଭୈରବୀ, କାମୋଦୀ, ଧନାଶ୍ରୀ, ମୁଖାରବି, ଆରବୀ, ସାରଙ୍ଗ ବେରେଜ, ବେହାଗ, ବେଲାବଳୀ, କେଦାର ଇତ୍ୟାଦି ରାଗ, ଖେଟ, ତ୍ରିପଟା, ରୂପକ, ଆଦିଝୁଲ୍ଲ ଇତ୍ୟାଦି ତାଳ ଓ ଲୟ ସମନ୍ୱିତ ମୌଳିକ ସଙ୍ଗୀତ ରଚନାରେ କୃତିତ୍ୱ ଦେଖାଇଅଛନ୍ତି । ଏହାଛଡ଼ା କେବଳ ଓଡ଼ିଆରେ ନୁହେଁ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ବ୍ରଜଭାଷା, ତେଲୁଗୁ ଇତ୍ୟାଦି ଆଶ୍ରୟ ଓ ମିଶ୍ରିତ ଭାଷାରେ ମଧ୍ୟ କେତୋଟି ଚୌପଦୀ ରଚନା କରି ବିଭିନ୍ନ ଭାଷାନୁଭିଜ୍ଞତା ଦର୍ଶାଇଅଛନ୍ତି । କାବ୍ୟକଳାର ମାଧୁର୍ଯ୍ୟ ସଙ୍ଗୀତ-ବନ୍ଧରେ ପୂର୍ଣ୍ଣ ବିକଶିତ ହୁଏ ବୋଲି ସମାଲୋଚକମାନେ କହନ୍ତି । ବିଶ୍ୱଜୀବନ ସଙ୍ଗୀତମୟ ବୋଲି ପ୍ରାଚ୍ୟ ଦର୍ଶନରେ କାହିଁକି, ପାଶ୍ଚାତ୍ୟ ଦର୍ଶନରେ ମଧ୍ୟ ଆଦ୍ୟରୁ ପିଥାଗୋରସ୍ ଇତ୍ୟାଦି ଦ୍ରଷ୍ଟାମାନେ କହିଅଛନ୍ତି (Universal harmony and music of the spheres of Pythegores.) । ଭାରତୀୟ ପରମ୍ପରା ସଙ୍ଗୀତକୁ ଅତି ଉଚ୍ଚସ୍ଥାନ ଦେଇଆସିଛି । ସୃଷ୍ଟି, ସ୍ଥିତି, ପ୍ରଳୟ ସଙ୍ଗୀତକାରକ । ବିଧି ଉଦ୍ଦେଶ୍ୟ ସଫଳୀକୃତ ସହ ଜଗତ ବୈରସ, ମହାତାଣ୍ଡବ, ନଟଶିବାସା ଓ ଲାସ୍ୟ, ପରାଶକ୍ତି ଉଭୟ ସହଯୋଗରେ ଉତ୍‌ପତି ହୁଏ ବୋଲି 'ଆନନ୍ଦଲହରୀ'ରେ କଥିତ ଅଛି । ଭୁଜ ପରିଘ ସଂଘଟ୍ଟନ ଓ ଛଞ୍ଚଳ-ଜଟା-ତାଡନରେ ପ୍ରକମ୍ପନ ଆଣି ବିନାଶରେ ମଧ୍ୟ ସଂସାର ରକ୍ଷା କାରଣରେ

ରୁଦ୍ର ତାଣ୍ଡବ ନୃତ୍ୟ କରି ବିଭୂତି ସାଧାରଣ ଦୃଷ୍ଟିରେ ଧ୍ୱଂସକାରକ ପ୍ରତିପାଦନ କରନ୍ତି ବୋଲି 'ମହିମ୍ନ'ରେ କୁହାଯାଇଅଛି । ପୌରାଣିକଯୁଗର ଶ୍ରୀକୃଷ୍ଣ-ଗୋପୀଙ୍କ ମଧୁର ବଂଶୀ ସ୍ୱନ ମୁଖରିତ ଯମୁନା-ଶ୍ୟାମ-ତୀରର ନୃତ୍ୟ-ଗୀତ ଏ ଦେଶର ଭବରାଜ୍ୟକୁ ଅନବରତ ବିହ୍ୱଳିତ କରି ଆସୁଅଛି । ବିଜ୍ଞାନ ଦୃଷ୍ଟିରେ ସଙ୍ଗୀତଶାସ୍ତ୍ର ସାମବେଦର ମନ୍ତ୍ର-ଝଙ୍କାରରେ ଆରମ୍ଭ କରାଯାଇ ଭରତ ଇତ୍ୟାଦି ଋଷିଙ୍କ ସମୟରୁ ମଧ୍ୟଯୁଗର ଭକ୍ତ ଗାୟକ ଓ ମିଆଁ ତାନ୍‌ସେନ୍ ଇତ୍ୟାଦିଙ୍କୁ ଧରି ଆଧୁନିକ ସମୟ ପର୍ଯ୍ୟନ୍ତ ଯେପରି ସମୃଦ୍ଧ ହୋଇ ଉଠିଅଛି, ତାହା ସୁଧୀମାନେ ଜାଣନ୍ତି । ସଂକ୍ଷେପରେ ଐତିହାସିକ କ୍ରମ ରକ୍ଷାକରି ଗୋବିନ୍ଦ ରାୟଗୁରୁଙ୍କ ସଙ୍ଗୀତପଟୁତା ସମସ୍ତଙ୍କର ଆଦରଣୀୟ ହେବ ।

ପିତାପୁତ୍ର କବିତା ତୁଳନାରେ ଆଉ ଗୋଟିଏ କଥା କବିଚନ୍ଦ୍ରଙ୍କ ସରଳ, ଦେଶଜ ଭଷା ଆଗରେ ଗୋବିନ୍ଦଙ୍କର ଟିକିଏ ସାଂସ୍କୃତିକ ନିଷ୍ଠାକିଷ୍ଟତା । ଏହାବୋଲି ଗୋବିନ୍ଦ ଯେ ଦେଶଜ ଶବ୍ଦ ବ୍ୟବହାର କିମ୍ବା ପ୍ରାଞ୍ଜଳ ଭବରେ ମନୋଭବ ପ୍ରକାଶ କରିନାହାନ୍ତି, ତାହା ନୁହେଁ । ଫନ୍ଦାଫେଡ଼, ଫରମାସି, ଜଗାଇ, ମିତଣୀ, ଛଇକା, ଲିହିଛି, ବଡ଼ଶି, କାଛେଣି, ମାଫଠାଣି, ପରଶ, ସାଙ୍ଗେଣି, ସମଜାର ଗୁମାନ ସଙ୍ଗତାର, ଅନା, ଫୁଲଇ, ଗୋଲଇ, ଢୁଲଇ, ଠେସ, ଭେଟାଇ, ଗଣ୍ଡିରେ, ଭଣ୍ଡିବ, ଥୋଇବ, ଗଣ୍ଡାକ, ବନ୍ଦିଆର, ତଳିପା, ବିନତି, ପଶି, ଲେଟିଆ, କଟିଆ, ହଟିଆ, ଲମ୍ପଟିଆ, ଆଲଟ, ଛଡି, ଝାଳିଲ, ଦାଉ ଇତ୍ୟାଦି ସର୍ବଜନ ବ୍ୟବହୃତ ଶବ୍ଦ ଓ ଇତ୍ୟାଦି

'ତୋ ମଧୁର ଗିର ନ ଶୁଣିବାରେ
ମୋର ହୃଦୟ ସନ୍ତାପ ପାଇ କି ପାରେ ।
ବିଚିତ୍ର ତୋ ଚରଣ-କଞ୍ଜ ଅଲକ୍ତ
ଚିତ୍ର କରୁଛି ବୋଲି ଘେନିବୁ ମାତ୍ର ।

ପଣ୍ଡିତାବର ଅଙ୍ଗଯାକରେ ତୋର, ମଣ୍ଡି ଦେଇଛି ରମା ମୁଁ ଅଳଙ୍କାର
ଗୋଳି ସ୍ତନ ଯୁଗେ ଘନ ଚନ୍ଦନ, ବୋଳି ଦେଇଛି ବୋଲି ଘେନିବୁ ଧନ

x x x x

ଟେକିଛି ବାହୁବେନି ଦୀନରକ୍ଷଣ ଚିନ୍ତି, ଚାକିଛି ମୁଁ ସେ ଅନାତପକୁ ନିତି
ଠକପଣ କରି କାଳକୁ ହରେ, ଠାବ ଦିଅ ହେ ପତିତପାବନ ପୁରେ ।

ଡ଼ରି ଏବେ ଘୁମୁରେ ଯୋଡ଼ି ମୁଁ କର, ଡାକି ଦେଉଛି ରଖ ହେ ବିଶ୍ୱମ୍ଭର
ଢ଼କ୍‌କା ବାଜୁଛି ସଂସାରେ ତୁମ୍ଭ ଗୁଣ, ଢ଼ାଙ୍କି ରଖୁ କିମ୍ପାଁତେ କୃପା ଈକ୍ଷଣ ।''

ହୃଦ୍ୟ ଅଥଚ ସାଧୁ ସଂଯତ ଭଷା ଏହାର ଉଦାହରଣ । ତଥାପି ସ୍ଥାନେ ସ୍ଥାନେ ସାମାନ୍ୟ ଅବୋଧ୍ୟତାର ପରିହାର୍ଯ୍ୟ ଦୋଷ ଗୋବିନ୍ଦଙ୍କ ଯେପରି ରହିଅଛି ଏକଥା ମାନିବାକୁ ହୁଏ—

'କ୍ରୂର କୌଣପ ବୃନ୍ଦ ସଂହାରି
ଦୂରକଲେ ତ୍ରିପୁରର ଭୟହାସ୍ତି
ହିରଣାକ୍ଷଜ ରକ୍ଷଣେ ଧରି
ଶୀର ମୂରତି ମନୁଜକେଶରୀ

X X X

ବିଭଧ୍ୱପ ଅନୁଜଙ୍କୁ ମାରି
ଚିନ୍ତାବ୍‌ଧିରୁ ଦେବଙ୍କୁ ଉଦ୍ଧାରି ।
ସିତାଂଶୁ ଲପନ ତିନିପୁରି
ତିନ୍ତାଇଲେ ଯଶ ପୀୟୂଷରେ ଆପଣ ହେ
ହିତାଖଣ୍ଡଜ ତବାଂଘ୍ରିଧାନ ଚିନ୍ତାରେ ଶ୍ରୀଗମ ମୋହନ ।' ଇତ୍ୟାଦି ।

ଆଲୋଚିତ ବିଷୟର ତୁଳନାତ୍ମକ ସମାଲୋଚନାର ଆଉ ଗୋଟିଏ ବିଭଗ ହେଉଛି—ଗୋବିନ୍ଦ କବିତାରେ ଆଦିରସ ବିସ୍ତୃତ ଅଥଚ ଯଥୋଚିତ ବର୍ଣ୍ଣନା । କୁହାଯାଇଅଛି—ହନୁମାନ କବିତା ସମୟ, ରୁଚି ଓ ଅଭିପ୍ରାୟ ଦୃଷ୍ଟିରେ ଭକ୍ତିରସ ପ୍ରଧାନ ହୋଇ ଶୃଙ୍ଗାରର ଅଭବାପନ୍ନ ହୋଇଅଛି । ପିତୃ ଋଣ ପୁତ୍ର ଅପର୍ଯ୍ୟାପ୍ତ ଭବରେ ସୁଝିଅଛନ୍ତି । ଅବଶ୍ୟ ପୂର୍ଣ୍ଣତାରେ ବେଶୀ କିଛି ନୂତନତା ନାହିଁ । ପ୍ରଣୟର ସେହି ଚିରଚରିତ ଆଲମ୍ବନ, ଉଦ୍ଦୀପନ, ବିଭବ ଓ ଅନୁଭବ କବିଙ୍କର ନିଜ ଭଷାରେ କହିଲେ କନକ ଅଙ୍ଗଶୋଭିନୀ, ସନକମନମୋହିନୀ ମଦାଳସା, ବଣାମୃଗ-ଖଞ୍ଜରିଟ-ବରଦୃଶା, ରସବତୀ, ସୁରତିଦାୟିନୀ, ସାରସନୟନା, ଯୋଷାବର, ନାସ୍ତିଶିରହୀର, ହରିଣାଙ୍କ—ସଲଜ୍ଜକଞ୍ଜଲପନା, ନବନୀରଦ-ଅଞ୍ଜନା-ନୀଳକେଶୀ, ମଞ୍ଜୁଳ-କାଞ୍ଚନ-ଶୋଭଙ୍ଗୀ, ହୀରକ କୁଞ୍ଜକଳି-ବରଦଶନା, ପୀରତି-ବତ୍ସଳା, କୁନ୍ଦନ ବରନା, ମନ-ମୀନ-ବଡ଼ଶୀ ହରିଗିରିଗର୍ବ-ଗଞ୍ଜନୀ, ଧୂର୍ଜଟୀ ପରକେଳି ପ୍ରବୀଣା ବାନ୍ଧବୀସ୍ତି, କାଶୀ-କୁନ୍ଦହାସା, ଛଣା ସୁଧାଜିଣା ଭଷା, ଦରବାସରେ ହାସ ପ୍ରକାଶ, ବନ୍ଧୁକାଧରର ମଧୁରତର ମଧୁ ମନସିଜରସ ନିମଜ୍ଜନ, ନେତ୍ରାଞ୍ଚଳ ଶର, କମଳାବିଳାସ-ବିରଚନ ଶଶାପରି ଘନ ଅଙ୍କେଖେଳା, ଉରୁପରିରମ୍ଭ, ବାହୁମୃଣାଳବେଷ୍ଟନ, ଅଣିମାଦି ସପଭିଦାନ, ସ୍ୱଟୁକ୍ତି, ଗଣ୍ଡଚୁମ୍ବନ, ଉରଜେ କରଜଘାତ, ପୃଗନାଗବଲ୍ଲୀ-ସ୍ଥମନ,

ଘନସାରେ ମିଶା ଚନ୍ଦନ-ଭୂଷା, ଘନକାଳ, ବିଦ୍ୟୁଚ୍ଚହଟ, ବଳାହକରମାରମାର୍ଗଣ ପରି ଇନ୍ଦ୍ର କାର୍ମୁକ, ହୃଦରେ ଜକ, ପଞ୍ଚବିଶିଖ ପରପଞ୍ଚ, ଶଙ୍କରପର ପରତାପ, ରତିପତି ଶର ସହିତର ବ୍ୟଥା ଇତ୍ୟାଦି ପ୍ରଣୟାନୁଭୂତି ଚିର ନୂତନ । ଭବ କଷଟିରେ ଯେତେ ମାଜିଲେ ତେତେ ଉଜ୍ଜ୍ୱଳ ଝଟକୁଥିବ । ଏହି ନୀତିରେ ଗୋବିନ୍ଦଙ୍କର ଏହା ସାହିତ୍ୟିକ ବିଭଗରେ ଦ୍ୱିରୁକ୍ତି, ଶୁଷ୍କତାର ଭୟ ନାହିଁ ।

ଛନ୍ଦରେ କହି ମୋତେ, ରହି କାହା ସଙ୍ଗତେ
ଚନ୍ଦନ ଭୂଷା କୁସୁମ ବାସ କଲେ ବସି..... .
ଆହା ସେ ରସରଙ୍ଗୀ ଯାହା କଲେ ଗୋ ସଙ୍ଗୀ
କାହା ଆଗେ କହିବି କିସ,
ଘହା ତ ଦିଶୁ ନାହିଁ ସାହା ମୋ କେହି ନାହିଁ
ଆହାର ସୁଧା ସମ ହୋଇଲଣି ବିଷ ।

x x x

ଶ୍ୟାମବନ୍ଧୁ ଛାଡ଼ି ଯା ରହିଲେ ଗୋ
ଦେଇ ମୋତେ ଦୁଃଖ ଦଶା
କୋଟିଏ କଳପ ହୋଇଲଣି ସଖି
ଗୋଟିଏ ପାପ ନିଶା......
ବିଷ ହୋଇଲଣି ସୁବାସ ପ୍ରସୂନ
ମଳୟଜ ଘନସାର
କିସ କହିବି ସୁଧାଂଶୁ ମୟୂଖ
ଦେଲଣି ପ୍ରଚଣ୍ଡ କର ।
ଦିଗଯାକ ମୋତେ ଦିଶିଲଣି ତମ
ବୁହାଇ ନୀର ନେତ୍ରରୁ
ଅଶନରୁ ମନ ତେଜିଲା ବହନ
ବସନ ହେଲଣି ଗୁରୁ ।

x x x

ସଜାଡ଼ି ମୁଁ ଥିଲି ପାନ, ଯୋଗାଡ଼ି—
ଚୂଆ ଚନ୍ଦନ, କୁସୁମ ଭୂଷଣ,
ବାସି କରଇବା ମନ ଥିଲା ଯେବେ
କାହିଁକି କହିଲେ ଗୋ ।

ଦେହକୁ ଛୁଇଁ କରି ନିୟମ ଥିଲେ କରି
ତା ଏବେ ଦେଇ ପାଶୋରି
ଯାହା କଲ ଏତେ ସରି ଆହା ବନ୍ଧୁ
କି ଦଣ୍ଡ ବିହିଲେ ଗୋ ।

X X X

ବୁଲି ବନ ଅୟନ ଖୋଜୁ ଯେ ଗୋପୀଜନ
ଭୁଲାଇବାର କି ପସନ୍ଦ,
ହର ଆରଧି ବର ପାଇ ତୁମ୍ଭଙ୍କୁ ବର
କରିଛୁ କିମ୍ପା ଏତେ ଛନ୍ଦ;
ତନୁ କଷଟିରେ ତୋ ତନୁ-କୁନ୍ଦନ
ହସି ରସି କଷିବାର;
ଅକଳଙ୍କ ସୁଧା ମୟୂଖ-ଲପନା
ସକଳ ସୁଖ ସହାର ।
ଯାଚି ଦେବା ପରି ନଚାଇ ଭ୍ରୂବଲ୍ଲୀ
ଭର୍ଷିବା ସରସ ଗିର
ବନଜଚାରୁ-ନୟନା ଝରଜର
କରାଇ ଦେବାକୁ ଦୂର ।
ଆସିବା ବେଳେ ମୋ ପାଶେ ଶଂପା—
ଗୋଶ୍ରି କମ୍ପାଇବା ପୟୋଧର
ବଳାହକ-କଳା ଲଳିତ କୁନ୍ତଳା
ଗଳା ମରକତ ହାର
ପରିଣତ ବିମ୍ବାଧର ମୋ ବକ୍ଷରେ
ହେଳା ଖେଳା କରିବାର ।"

\+ \+

ଇତ୍ୟାଦି ପଂକ୍ତିମାନଙ୍କରେ ନାୟିକା-ଭେଦରେ ଅଭିସାରିକା, ବିପ୍ରଲବ୍ଧା, ବସନସଜ୍ଜା ଅବସ୍ଥାର ବିରହ ବିଧୁରର, ବିକଳ ଦଚ ଚେତନାର, ମଳିରେ, ବିଳାସ-ଲେଳ ଚିତ୍ରର ଯେଉଁ ବର୍ଣ୍ଣନା କରଯାଇଅଛି, ତାହା କୌଣସି କବି ପକ୍ଷେ ସାମାନ୍ୟ କଳା କୁଶଳତା ଓ ଭବୁକତାର ପରିଚୟ ନୁହେଁ ।

ଶୃଙ୍ଗାର ବର୍ଣ୍ଣନାର ଆତିଶଯ୍ୟ ହେତୁ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅଶ୍ଳୀଳତା ଦୋଷରେ ଦୁଷ୍ଟ ବୋଲି ଉଞ୍ଜୀୟ (ଆନ୍ଦୋଳନ ସମୟରୁ ଆଧୁନିକ) ସମାଲୋଚନାର ଯେଉଁ ଧାର ବହି ଆସିଅଛି ତାହା କବିସମ୍ରାଟ ଉପେନ୍ଦ୍ରଙ୍କ ପଦାଙ୍କ ଅନୁସରଣକାରୀ ସବୁ କବି ତଥା ଗୋବିନ୍ଦଙ୍କ ପକ୍ଷରେ ମଧ୍ୟ ପ୍ରଯୁଜ୍ୟ; କିନ୍ତୁ ସେହି ବିବଦମାନ ଅଧ୍ୟାୟ ଏଠାରେ ଘାଣ୍ଟିବାର ଆବଶ୍ୟକତା ନାହିଁ । ଏତିକି କହିଲେ ଯଥେଷ୍ଟ, ସୂଚିତ ଦୋଷ ସ୍ଥାନେ ସ୍ଥାନେ ରହିପାରେ ଓ ଅଛି ଅଥଚ ସେ ସବୁ ଶବ୍ଦାଡ଼ମ୍ବର, ଅଳଙ୍କାର ଛଟା ଓ ରଚନାପାକରେ ଲୁକ୍କାୟିତ ହୋଇ ବୁଝାମଣାରେ ପାଣ୍ଡିତ୍ୟ ସାପେକ୍ଷ ହୋଇଛି । ଅପର ପକ୍ଷରେ ଆମ୍ଭର ଆଧୁନିକ କବିତାରେ ମନସ୍ତତ୍ତ୍ୱ, ବାସ୍ତବ ପ୍ରକୃତି ଓ ବିଶ୍ୱପ୍ରେମ ପ୍ରଣୟର ଯେଉଁ ଉଲଗ୍ନ, ବିକୃତ, ଅସଙ୍ଗତ ଚିତ୍ର ବେଳେବେଳେ ଦିଆଯାଉଅଛି, ତହିଁର ସମ୍ମାର୍ଜନ ନିତାନ୍ତ ଆବଶ୍ୟକ, ଏହା ଅନେକ କହନ୍ତି ।

କହିବା ନିଷ୍ପ୍ରୟୋଜନ ଶୃଙ୍ଗାର ବର୍ଣ୍ଣନା ପରମ୍ପରା ଭଙ୍ଗୀ ଗୋବିନ୍ଦ କବିତାରେ ମଧ୍ୟ ରାଧାକୃଷ୍ଣ ରୂପରେ ଦିଆ ଯାଇଅଛି । ରାଧାକୃଷ୍ଣ ଭବ-ଜଳଧିର ଅତଳ ଗର୍ଭରେ ଭାରତୀୟ ସଂସ୍କୃତିର ଗଭୀର ତତ୍ତ୍ୱ, ଭକ୍ତି ପ୍ରେମ-ଜ୍ଞାନ କର୍ମସାଧନର ଯୋଗ-ପଥ, ଉତ୍କୃଷ୍ଟ ସାହିତ୍ୟ, ଦର୍ଶନ, ଧର୍ମର ଚୂଡାନ୍ତ ରୂପକ ଅସଂଖ୍ୟ ମଣିମାଣିକ୍ୟ ରହିବା ସଙ୍ଗେ ସଙ୍ଗେ ତୁଳସୀ ପଢ଼ିଆ ଖ୍ୟାତିରେ କାମୁକର ଇନ୍ଦ୍ରିୟ ପରତନ୍ତ୍ର ଲୋଲୁପତା ରୂପକ ଭୟଙ୍କର ଜଳଜନ୍ତୁର ଅଭାବ ନାହିଁ । ସେ ଯାହାହେଉ, ବର୍ତ୍ତମାନ ଆଲୋଚିତ କବିତାବଳୀରେ ସେହି ଲୋଲୁପତାର କ୍ୱଚିତ ଆଭାଷ ସ୍ଥାନେ ସ୍ଥାନେ ରହିଥିଲେ ସୁଦ୍ଧା, ସେ ସବୁ ଉହ୍ୟ । ମୋଟ ଉପରେ ତରଳ ଅଥଚ ମାର୍ଜିତ ରୁଚି କବିତାବଳୀକୁ ସମ୍ମୋହନ କରିଅଛି । କବିଙ୍କ ନିଜ ଭାଷାରେ—

"କଟିତଟେ ପୀତପଟ ଶିରରେ ଶିଖି ମୁକୁଟ
ସଙ୍ଗେ ଘେନି ବ୍ରଜଭଟ ରଙ୍ଗେ ଯେ ବୁଲନ୍ତି ବନ
ଅଶେଷ ଗୁଣ ବିଭବ ଶେଷ ନୋହିବାରୁ ଲବ
ଭବ ବିରଞ୍ଚି ବାସବ ଯା ପଦେ କରନ୍ତି ଧ୍ୟାନ
ନଟ-ନିବହ ମୁକୁଟ ମଣ୍ଡନ ହୋଇ ଉଚ୍ଚାଟ
ବ୍ରଜାଙ୍ଗନା ପଟଳୀର ପଟ ହରଣେ ହୋଇ ଲମ୍ପଟ
ବାନ୍ଧିଲେ ଯେ ନୀପ ପାଶେ ଧରି ପରା ଜଟ
ରାଧା ମୁଖାମ୍ବୁଜ ମଧୁଲିଟ ଗୋପ ନଗରୀ ନାଗର ବିଟ
ସ୍ୱହୃଦୟ ତଳରେ ଖଟ କରି ବଟ-ଦଳ-ପୁଟ ଶୟନ ଯେ ।"

ସେହି କୁଙ୍କୁମ ମଜା ଘନରସ ·ମଳୟଜ ପଟିଆ, ବାସବ ନୀଳମଣି, ଘନ-ମଞ୍ଜୁଳ-ମୂରତି, କୋଟି ସୁଧାକର ନିନ୍ଦିତ ଆନନ, ; ଅସୀତ ଭୁଜଙ୍ଗୀ, ଗରବ ଭଙ୍ଗି ଦିଆଉଛୁ, ନୀପମୂଳେ ନବଯୁବା, ତ୍ରିଭଙ୍ଗୀ ଛନ୍ଦ, ନବଜଳଧର ଦ୍ୟୁତି ପ୍ରକାଶ, ଅକଳଙ୍କପୂର୍ଣ୍ଣ ବିଧୁଲପନ, ସକଳଶୋଭ ସପଦ, ମଣିମୟ ହାର ଉରଦେଶ, ମଧୁର ମୁରଳୀଧର ଶ୍ରୀକର, ନୟନକଟାକ୍ଷ ଧୀର ସମୀର, ବସନ୍ତ ରଗିଣୀଗାନ, ଚମ୍ପକ-ମଗର-ଶର ଭ୍ରମର, କୁନ୍ଦମଲ୍ଲୀ ପ୍ରସ୍ଫୁଟିତ ଯମୁନାତର, ଗୋରଚନା ଚିତା, ବନମାଳ, ବ୍ରଜନାରୀମଣି, ସଜନୀମେଳ ଅନେକଗୁଡ଼ିଏ କବିତାର କଥାବସ୍ତୁ । ତହିଁ ଉପରେ ନିର୍ମିତ ସୌଧ ମନୋହର, ଏହା କିଏ ଅସ୍ୱୀକାର କରିବେ ନାହିଁ ।

କୁହାଯାଇଅଛି ସଙ୍ଗୀତ ଗୋବିନ୍ଦଙ୍କର ଗୋଟିଏ ଅଧିକ ବିଭବ । ସେହି ବିଭବଟି ତାଙ୍କର 'ଅଭିନବ ଚୌପଦୀ ରତ୍ନାକର'ରେ ସନ୍ନିବେଶିତ ହୋଇ ରହିଅଛି । ତାହା ଛଡା ଆଉ ଗୋଟିଏ ଅଧିକା ବିଭବ ଚମ୍ପୂ । 'କିଶୋର ଚନ୍ଦ୍ରାନନ' ସାଦୃଶ୍ୟରେ 'ବୃନ୍ଦାବନଚନ୍ଦ୍ର' ରଚିତ ହୋଇଅଛି ଓ ପ୍ରଥମର ସୌନ୍ଦର୍ଯ୍ୟ ଦ୍ୱିତୀୟରେ ଦେଖିବାକୁ ମିଳେ । ଏହାଛଡା ପିତାଙ୍କ ଲେଖା ଅନୁକରଣରେ ଗୋବିନ୍ଦ ମଧ୍ୟ ଅନେକ ଜଣାଣ ଲେଖିଅଛନ୍ତି । ଏଥିରେ କେତୋଟିର ପ୍ରଭୂତ ଅବକାଶ ଓ ବାହୁଲ୍ୟ ବର୍ଣ୍ଣନାରେ ଓଡ଼ିଆତ୍ୱ ସମ୍ପୂର୍ଣ୍ଣ ରକ୍ଷିତ ହୋଇଅଛି । 'ବିଦେଶାନୁଚିନ୍ତା ଚିଟାଉ' ରଚନା ପ୍ରଣାଳୀର ଆଉ ଗୋଟିଏ ଅଧିକା ବିନ୍ୟାସ ।

ସାଧାରଣରେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରକୃତି ଚରିତ୍ରଟା ବାସ୍ତବମୂଳକ (Realistic) ବା ରହସ୍ୟବାଦମୂଳକ Romantic) ନୁହେଁ; କିନ୍ତୁ ଅତିମାତ୍ରାରେ ଆଦର୍ଶବାଦମୂଳକ ଓ ନିୟମାତ୍ମକ (Idealstic and Classical); ସମାଲୋଚନାର ଏହି ତଥ୍ୟ କେତେକାଂଶରେ ସତ୍ୟ ଓ ଗୋବିନ୍ଦ ସେଥିରୁ ବାହାର ନୁହଁନ୍ତି; ତଥାପି ଏହି ପରିସର ମଧ୍ୟରେ ତାଙ୍କର ପ୍ରାକୃତିକ ଶୋଭର ବ୍ୟଞ୍ଜନ ମନୋ-ମୁଗ୍ଧକର ।

କଷାବାସ ପରିଧାନ କଲାପରି
ଦିଗଙ୍ଗନାମାନେ ଗଲେଣି ଦିଶି
କାସାରଜମାନଙ୍କରେ ଷଟ୍‌ପଦ
ଆଶା ବୋହି ମୋଦେ ଗଲେଣି ବସି ।
ରସାଳୁହରୁ ବସା ତେଜି ବାୟସେ,
ଅସାର ବଚନ ଦେଲେଣି ଭଷି ।
ଉଷା ସମୟକୁ ଜାଣି ତାମ୍ରଚୂଡ଼େ,
ସୁସାରଗୀର ରଚିଲେଣି ଘୋଷି ।

ମଣାରକେଶା ଘୋଷା ଏ ନିଦ୍ରା ଗୁଡି
ବସାଦିକବାରେ ଗଲେଣି ରସି ।
ଈଶାନନାଥ ସଦନର ଘୋଷ
ଫସାରଯାକେ ଗଲଣି ବିଳସି । ଇତ୍ୟାଦି ।

କୁହାଯାଇଅଛି କବିଚନ୍ଦ୍ର କବିତାରେ ଆତ୍ମଜୀବନ ପ୍ରକାଶର ଅନେକ ସାମଗ୍ରୀ ଅଛି; କିନ୍ତୁ ଗୋବିନ୍ଦଙ୍କ କବିତାରେ ତାହାର ନିତାନ୍ତ ଅଭାବ । ଗୋବିନ୍ଦ ନିଜର ବ୍ୟକ୍ତିଗତ ଆଶା ଆକାଙ୍‌କ୍ଷା, ସୁଖ, ଦୁଃଖ ଅଭାବ ଅନୁଭବକୁ ସ୍ୱକୀୟ କବିତାରଜ୍ୟରେ ପ୍ରସରଇ ନାହାନ୍ତି । ତହିଁର କ୍ଷୀଣ ସଙ୍କେତ ଯାହା ସ୍ଥାନେ ସ୍ଥାନେ ଦିଆଯାଇଅଛି, ସେ ସବୁ ଅତି ଅସ୍ପଷ୍ଟ । କାବ୍ୟାମୋଦରେ ସେ ଆତ୍ମହରା ହୋଇ ବ୍ୟକ୍ତିତ୍ୱକୁ ତହିଁର ଅଗାଧ ସଲିଳ ରଶିରେ ନିମଜ୍ଜନ କରିଅଛନ୍ତି । ତଥାପି ଯେତେଦୂର ଜଣାଯାଉଅଛି ଧର୍ମ ଓ ସମ୍ପ୍ରଦାୟ ଦୃଷ୍ଟିରେ ସେ ପିତାଙ୍କ ପରି ପ୍ରକୃତ ବୈଷ୍ଣବ ଭକ୍ତ । ଚୈତନ୍ୟ ଲୀଳାରେ ନିତାଇ, ନିମାଇ ନାମରେ ତାଙ୍କର ଅଖଣ୍ଡ ବିଶ୍ୱାସ ।

"କଳି କଳୁଷ ନାଶନ ନିଧିରେ ବଳାଇବାରୁ ମନ
ପୂର୍ବ ତପୁ ସଚୀ ଗର୍ଭ କ୍ଷୀରଧିଜାତ ପୂର୍ଣ୍ଣ କଳାକର ।
ପାପିଗଣ ନିସ୍ତାରଣେ ହରି ନିଜ ନାମକୁ କରି ପ୍ରଚାର ।
ସନ୍ନ୍ୟାସ ଧର୍ମ ଭରତ ନିତ୍ୟାନନ୍ଦ ଦ୍ୱୈତାଦି ସହିତ ।
ରାଧିକା ରସ ଚିନ୍ତି ସତତ ଗାନ ନର୍ତ୍ତନେ ହୋଇ ପର
ଅମର କିନ୍ନର ମୁନିବର ଉରଗ ବନ୍ଦ୍ୟ ତ୍ରିଜଗତେଶ୍ୱର ।

\+ \+ \+

ଗୋବିନ୍ଦ କବିତା ଶୃଙ୍ଗାରରସ ପ୍ରଧାନ ହେଲେହେଁ ଅଚଳା ଭକ୍ତି, ନିର୍ମଳ ଗୌରବ ଓ ନୀତିର ଆଦର୍ଶ ତହିଁରେ ନଥାଇ ନାହିଁ ।

"ବନ୍ଧୁ-ସୁତ-ବିତ୍ତ ଯେତେ ରେ
ତୋ ଅନ୍ତକାଳେ ନ ଯିବେ କେହି ସାଥିରେ ।

କାହା କୁହାରେ ରହି, ବାହାବଳ ଦେଖାଇ,
ଯାହା ହେଉଛୁ ତୁହି, ସାହା ନୋହିବେ କେହି,
ପଡି ତୁ ଏ ଭବ ତାପରେ;
କରିବା ପାପ ଅଙ୍ଗରୁ କର ଲେପରେ ।

ହିତ ବଚନ ଛାଡ଼ି, ଅହିତ ସଙ୍ଗ ଲୋଡ଼ି
ମୋହିତ ମଦେ ଜଡି, ରହିଛୁ ତୁ ଯେ ବୁଡ଼ି ।”

x x x

“ମନଟି ଏ ଭବ ବନ୍ଧରେ ପଡ଼ି ଯାହା
ହେଉଛୁ ବିଷୟ ଗନ୍ଧେ ଅନ୍ଧରେ ।”

x x x

“ଅସଜ୍ଜନ ସଂସର୍ଗ ତେଜି ହୁଅ ସାଧୁ ସଙ୍ଗ ପର ରେ
ଗୁରୁମନ୍ତ୍ର ଉପାସନ କରି ହରି ନାମକୁ ଉଚ୍ଚାର ରେ
କହୁଛି ତୋରେ ।”

x x x

“ହେ ସକଳ ଆତ୍ମମୟ
ଭକ୍ତ ବନ୍ଧୁ ମୃତ୍ୟୁଞ୍ଜୟ ।” ଇତ୍ୟାଦି ।

ରଚନା-ପ୍ରଣାଳୀ, ଶୈଳୀ ଓ ନିବନ୍ଧରେ ଗୋବିନ୍ଦ ପିତାଙ୍କ ର୍ରକ୍ଷା କରି ଅଛନ୍ତି । ଶେଷରେ କବିଙ୍କର ମାଳୋତ୍ପ୍ରେକ୍ଷା, ଉପମା, ବିପରୀତାର୍ଥ ଅନୁପ୍ରାସ ଇତ୍ୟାଦିର କେତୋଟି ଦୃଷ୍ଟାନ୍ତ ଦେଇ ବାହୁଲ୍ୟ ଭୟରୁ ପ୍ରବନ୍ଧର ଉପସଂହାର କରୁଅଛୁଁ । ଆଶା କରେ ମହଜ୍ଜନ-ମାନସ-ଚିରହଂସ ନୀରକ୍ଷୀର ପରି ଏହି ଗ୍ରନ୍ଥାବଳୀର ଦୋଷ ଗୁଣ ବାଛି ନେବେ :—

ଶୀର ଭୂଷା ରତନ ହେଲା ପାଷାଣ୍ଡ ସାନ
ବରଜି ଭୂଗୀର୍ବାଣ ଯପନେ ଦେଲି ଦାନ
ସୁରସରିତେ ବୁଡିଲି, କ୍ରୂର ଜନଙ୍କୁ ଲୋଡ଼ିଲି ।
ଚଢ଼ି ମୁଁ ଗିରିଚୂଳ, ଲଭିଲି ରସାତଳ ।
କଲି ସୁଧା କବଳ, ପାନେ ହେଲା ଗରଳ ।
ପଞ୍ଜରୀ ପଢ଼ା ଶାରିକା, ଦେଲା ଯେ ମଣ୍ଡୂକ ତକା,
କରେ ଥିବା କୁନ୍ଦନ ହେଲା ପିତ୍ତଳ ଜ୍ଞାନ,
ଛାଡ଼ି ଗଜ ଆସନ, ଲୋଡ଼ିଲି ଖର ଯାନ,
ବାସିବା ଯାତି ବର୍ଜିଲି, ବସି କୁସୁମ ଅର୍ଜିଲି
ନାଶି ଦେଲି ମୁଁ ପିକ, ପୋଷି ରଖିଲି କାକ ।

x x x

'ଶ୍ରୀମୁଖ ପଙ୍କଜ ତାର ଅଳକାବଳୀ ଭ୍ରମର
କେଳି କରନ୍ତି କି ଲୋଭେ ମକରନ୍ଦର ।
ନଚାଇ ଶୁଭ୍ର ଭ୍ରୂବଲ୍ଲୀ, ବଜାଇ ଶିଂଘା ମୁରଲୀ
ଟାଳି ଦେବ ନିକ୍ଷେ ସତୀ-ଧୃତି ମନ୍ଦର ।
ଥାଉ ଆଉ ଲକ୍ଷିବାର, ରଙ୍ଗିମା ପଣେ ଅଧର—
ଶୋଭକୁ ଜିଣିଛି ଜବା କୁରୁବିନ୍ଦର ।
ଦେଖିଲେ ତୋ ସୁଷମା ପୁଲେମଜା ରମା ଉମା
ଦାସୀ ନ ହେବେ କି ସେ ପଦାରବିନ୍ଦର ।"

x x x

"କାଳୀ କପାଳିନୀ ନୀଳ ସୁଚେଳିନୀ
ଶୂଳିନୀ ନର ଶିର ମାଳିନୀ ।"

x x x

ଖଟାଇ ପାଖରେ ରଖ ଖଟି ମୁଁ କଲେ ପରଖ
ଖୁରି ଅର୍ଦ୍ଧନ ତେଜିବି ତୋ ସେବାରେ ନିତି କି ରେ
ଖିଆଲ ପ୍ରସଙ୍ଗେ ଜଣେ କରଥ ସଙ୍ଗିନୀ ଗଣେ
ଖିଲଇବି ବିଡ଼ିଆ ତୋ ମୁଖ-ନିଶାପତି କି ରେ ।
ନୀଳଘନ କୋକିଳ ଭୃଙ୍ଗ କାଳିନ୍ଦୀ ଜଳ
ଆଦିରେ ବିଷ ମତି ରହିଲା ମା ।
ଡ଼ୋକାଇ କାମ-ଅମଳ ଯୁବା ସୃଷ୍ଟିକି କେବଳ
ନାଶିବାକୁ ଘଟାଇଲା ବିଧିକି ଏ ଦେହ...ଇତ୍ୟାଦି ।



# ଇଚ୍ଛାପୁର କବି ସମ୍ମିଳନୀ

ସ୍ୱତନ୍ତ୍ର ପ୍ରଦେଶ ଘୋଷଣା ଫଳରେ ଉତ୍କଳରେ ଆନନ୍ଦର ତରଙ୍ଗ ଖେଳି-ଯାଇଅଛି । ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ଉତ୍କଳୀୟଙ୍କର ସମଷ୍ଟୀକରଣରେ ଜାତୀୟତାର ପୂର୍ଣ୍ଣତା ପରିସ୍ଫୁଟ ହେବାର ଆଶା ଦେଖାଯାଉଅଛି । କିନ୍ତୁ ଏହି ପୂର୍ଣ୍ଣତା କେବଳ ରାଜନୈତିକ, ସାମାଜିକ ବା ଅର୍ଥନୈତିକ ସ୍ୱଚ୍ଛଳତାର ପରିଣତିରେ ପର୍ଯ୍ୟବସିତ ହୋଇପାରିବ ନାହିଁ । ଜାତିର ପ୍ରତିଭ ଅବବୋଧ, ଆଦର୍ଶ ପ୍ରତିଷ୍ଠା ଓ ଦୀପ୍ତ-ଚେତନା ପ୍ରତ୍ୟକ୍ଷୀଭୂତ କରିବାକୁ ଗଲେ ସାହିତ୍ୟ ଓ କଳାକୁ ବାଦ ଦିଆଯାଇ ନପାରେ । ବ୍ୟକ୍ତିଗତ ଓ ଜାତୀୟ ଜୀବନର ମାନସିକ, ତାତ୍ତ୍ୱିକ ଓ ଆଧ୍ୟାତ୍ମିକ ଜୀବନ ପ୍ରବାହର ନିରଙ୍କୁଶ ଗତି ଉନ୍ମୋଚିତ ହେବ କଳା ଓ ସାହିତ୍ୟରେ ।

ଉତ୍କଳରେ କଳା ଓ ସାହିତ୍ୟୋନ୍ନତିର ପ୍ରବଳ ସଂହତି ଉଦ୍ୟମ ଏପର୍ଯ୍ୟନ୍ତ ଦେଖା ଯାଇନାହିଁ । ଏ ଦିଗରେ ଯେଉଁ କେତୋଟି ଅନୁଷ୍ଠାନ ଅଛି, ସେଗୁଡ଼ିକ ବ୍ୟକ୍ତିଗତ ଅଶେଷ କଲ୍ୟାଣ ସାଧନ କରୁଥିଲେ ହେଁ କବି, ପଣ୍ଡିତ, ଦାର୍ଶନିକ, ବୈଜ୍ଞାନିକ, ବିଜ୍ଞଠାରୁ ଆରମ୍ଭ କରି ଜନସାଧାରଣ ପର୍ଯ୍ୟନ୍ତ ସମାଜର ସକଳ ସ୍ତର, କର୍ମଜୀବନର ସକଳ କ୍ଷେତ୍ର, ଭବ-ରାଜ୍ୟର ସୂକ୍ଷ୍ମ ସୀମାକୁ ଏକତ୍ର, ଉଚ୍ଛ୍ୱସିତ, ପ୍ଲାବିତ କରି ପୁରାତନ ଓ ନୂତନ ମଧ୍ୟରେ ସମନ୍ୱୟ ସ୍ଥାପନ କରି, ସତ୍ୟ ଓ ସୌନ୍ଦର୍ଯ୍ୟର ପ୍ରତିଷ୍ଠାକରି, ଜାତିକୁ ସରସ-ସୁନ୍ଦର ମଧୁମୟ କରି କୌଣସି ସ୍ୱଚ୍ଛ-ସଲିଳା ପୂତ-ମନ୍ଦାକିନୀ ଏ ପର୍ଯ୍ୟନ୍ତ ବୋହିବାର ଦେଖା ଯାଉନାହିଁ । ଯେଉଁ କଳା ଓ ସାହିତ୍ୟ ରହସ୍ୟ-ବୈଚିତ୍ର୍ୟ-ବୈବିଧ-ବୈପରୀତ୍ୟ ସଙ୍କୁଳ ଜୀବନର ଜଟିଳ ସମାଧାନରେ ପ୍ରବୃତ୍ତ, ସୃଷ୍ଟିର ସାର୍ଥକତା ଉପଲବ୍ଧି, ଅନୁଭୂତିର ସୂକ୍ଷ୍ମ ବିଶ୍ଳେଷଣ, ଚରମ ଆନନ୍ଦ ଅନୁଭୂତି ଯାହାର ଲକ୍ଷ୍ୟ, ସେହି ସାହିତ୍ୟ ଓ କଳାର ନୈସର୍ଗିକ ସୁଷମା ସତ୍ତା, ପାରସ୍ପରିକ ସମ୍ବନ୍ଧ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ଓ କର୍ତ୍ତବ୍ୟ ଏପର୍ଯ୍ୟନ୍ତ ଅବଧାରିତ ହୋଇପାରିନାହିଁ । କିନ୍ତୁ ଜାତିର ସୂକ୍ଷ୍ମ ଚିନ୍ତା ସମନ୍ୱିତ ଅନ୍ତଃକରଣର ବହିଃ ପ୍ରକାଶର ଏହି ପ୍ରକୃଷ୍ଟ ସମୟ ଓ ସେଥିପାଇଁ କବି ସମ୍ମିଳନୀର ସୃଷ୍ଟି ।

କବି ସମ୍ମିଳନୀର ପ୍ରାଥମିକ ଅଧିବେଶନ ଗତ ଫେବୃଆରୀ ତା ୪ ଓ ୫ ରିଖରେ ଇଚ୍ଛାପୁର (ଗଞ୍ଜାମ) ଠାରେ ଚିକିଟିର ରାଜାସାହେବ ଶ୍ରୀଶ୍ରୀ ରାଧାମୋହନ ଗଜେନ୍ଦ୍ର ଦେବଙ୍କ ସଭାପତିତ୍ୱରେ ସୁନ୍ଦରରୂପେ ଅନୁଷ୍ଠିତ ହୋଇଯାଇଅଛି ।

ସମ୍ମିଳନୀର ଅଭ୍ୟର୍ଥନା ସମିତିର ଅଧିକାଂଶ ସଭ୍ୟ ଇଚ୍ଛାପୁର, ସୁରଙ୍ଗୀ ହାଇସ୍କୁଲର ଶିକ୍ଷକ, ସଭାପତି ସୁରଙ୍ଗୀ ରାଜାସାହେବ ଶ୍ରୀଶ୍ରୀ ପୂର୍ଣ୍ଣଚନ୍ଦ୍ର ରାଜା ହରିଚନ୍ଦନ ଜଗଦ୍ଦେବ ଏବଂ ସହକାରୀ ସଭାପତି ଟିକ୍କିଟି ଯୁବରାଜ ସାହେବ ଶ୍ରୀଶ୍ରୀ ଗୌରଚନ୍ଦ୍ର ଦେବ । ସଭ୍ୟମାନଙ୍କ ମଧ୍ୟରୁ ଅର୍ଥ ସଂଗ୍ରହ-ଦିଗରେ ଶ୍ରୀ ଶିବରାମ ସିଂହ ସାମନ୍ତ ଓ ଜଗନ୍ନାଥ ଚୌଧୁରୀ, ଆଗନ୍ତୁକମାନଙ୍କର ଭୋଜନାଦିର ବ୍ୟବସ୍ଥା କରିବାରେ ଶ୍ରୀ ବି. ନାଗେଶ୍ୱର ରାଓ ଓ ଆଦିକନ୍ଦ ସାହୁ ବିଶେଷ ଶ୍ରମ ସ୍ୱୀକାର କରିଅଛନ୍ତି । ସମ୍ମିଳନୀ ମଣ୍ଡପ ନିର୍ମାଣରେ ସାଜସଜ୍ଜାରେ ଓ ଅନ୍ୟାନ୍ୟ କାର୍ଯ୍ୟରେ ସୁରଙ୍ଗୀ ହାଇସ୍କୁଲର ଓଡ଼ିଆ ଓ ତେଲୁଗୁ ଛାତ୍ରସେବକଗଣ, ସୁରଙ୍ଗୀ କୁମାର ସାହେବ ଶ୍ରୀ ବ୍ରଜଚନ୍ଦ୍ର ଦେବଙ୍କ ତତ୍ତ୍ୱାବଧାନରେ ଆମ୍ଭମାନଙ୍କୁ ବିଶେଷ ସାହାଯ୍ୟ କରିଅଛନ୍ତି । ସେମାନେ ଆମ୍ଭମାନଙ୍କର ଧନ୍ୟବାଦାର୍ହ । ସମ୍ମିଳନୀରେ ପାରଳାଖେମୁଣ୍ଡିରୁ ୪୦, ମଞ୍ଜୁଷାରୁ ୪୦, ଗୁରଣ୍ଡିରୁ ୧୮, ଚେଲ୍ଲକୋଣ୍ଡାରୁ ୧୦, ସୋରଡ଼ାରୁ ୫, ବ୍ରହ୍ମପୁରରୁ ୨୦, ଖୋର୍ଦ୍ଧାରୁ ୧୫, କଟକରୁ ୧୦ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ଏହାଛଡ଼ା ପୃଷ୍ଠପୋଷକ, ଦର୍ଶକ ଓ ପ୍ରେସ୍ ପ୍ରତିନିଧି ରୂପେ ଅନେକ ଭଦ୍ରବ୍ୟକ୍ତି ଯୋଗ ଦେଇଥିଲେ ।

ଆମ୍ଭେମାନେ ନାନା ଦିଗରୁ ନାନା ଲେଖା ପାଇଥିଲୁ । ଉତ୍କଳଭାରତୀ ଶ୍ରୀମତୀ କୁନ୍ତଳା କୁମାରୀ ଦେବୀ ପ୍ରାରମ୍ଭିକ ଭାଷଣ, ରାୟସାହେବ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି ଏମ.ଏ. ପ୍ରାଚୀନ ସାହିତ୍ୟ ସମ୍ବନ୍ଧରେ, ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର,ବି.ଏ. ଏବଂ ଶ୍ରୀ ଚନ୍ଦ୍ରମଣି ଦାସ, ଏମ୍.ଏ. ପ୍ରାଚୀନ ଆଧୁନିକ ସାହିତ୍ୟ ସମ୍ବନ୍ଧରେ ଲେଖା ପଠାଇଥିଲେ । ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ, ବି. ଏ. ଆଧୁନିକ ସାହିତ୍ୟ ସମ୍ବନ୍ଧରେ ଭାଷଣ ନିଜେ ପାଠ କରିଥିଲେ । ଏହାଛଡ଼ା ଅନେକ ଉଦ୍‌ବୋଧନ, ଅଭିବାଦନ, ପ୍ରବନ୍ଧ, କ୍ଷୁଦ୍ରଗଳ୍ପ, କବିତା ଆମ୍ଭେମାନେ ପାଇଥିଲୁ । ସ୍ଥାନାଭାବରୁ ସେଥିରେ କେତେଗୁଡ଼ିଏ ବଛାଯାଇ ପ୍ରକାଶିତ ହେଲା । ବକ୍ତା ଓ ଲେଖକମାନଙ୍କୁ ଏଥିପାଇଁ ଧନ୍ୟବାଦ ଦେଉଅଛୁଁ ।

ସମ୍ମିଳନୀରେ କବିତା, ଯନ୍ତ୍ରସଙ୍ଗୀତ, ସ୍ୱରସଙ୍ଗୀତ ଓ ଚିତ୍ରକଳା ପ୍ରତିଯୋଗିତା ରଖାଯାଇଥିଲା । 'ପ୍ରଦୋଷ ପଦ୍ମିନୀ' ବିଷୟକ ୩୩ ଖଣ୍ଡ କବିତା ଆମ୍ଭମାନଙ୍କର ହସ୍ତଗତ ହୋଇଥିଲା । କବିତା ପ୍ରତିଯୋଗିତାର ପରୀକ୍ଷକରୂପେ ନିଯୁକ୍ତ ହୋଇଥିଲେ ପଣ୍ଡିତ ଶ୍ରୀଯୁକ୍ତ ମଧୁସୂଦନ ମହାପାତ୍ର, ଶ୍ରୀ ବାଳକୃଷ୍ଣ କର, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଶାସ୍ତ୍ରୀ, ପଣ୍ଡିତ ଶ୍ରୀ ଅନନ୍ତ ଶିରୋମଣି, ଶ୍ରୀ ମଦନ ମୋହନ ରଥ ଏବଂ ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ । ପଣ୍ଡିତ ଶ୍ରୀ ମଧୁସୂଦନ ମହାପାତ୍ରଙ୍କ ଅନୁପସ୍ଥିତିରେ ଅନ୍ୟ ଛଅଜଣ କବିତା ପରୀକ୍ଷା କରିଥିଲେ । ଯଥାକ୍ରମେ ସମ୍ବଲପୁରର ପରୀକ୍ଷିତ ଖଣ୍ଡୁଆଳ ଓ ପାରଳାର ଶ୍ରୀମାନ୍

ବିନାୟକ ଦାସ ୧ମ ଓ ୨ୟ ପୁରସ୍କାର ପାଇଥିଲେ । ଅନ୍ୟତ୍ର ଏହି ପୁରସ୍କାର ପ୍ରାପ୍ତ ଦୁଇଟି କବିତା ପ୍ରକାଶିତ ହୋଇଅଛି—୧ମଟି ସମ୍ପୂର୍ଣ୍ଣ ରୂପେ, ଦ୍ୱିତୀୟଟିର କେତେକ ଅଂଶ । ସମ୍ମିଳନୀର ୨ୟ ଦିନ ପୂର୍ବାହ୍ଣ ଘ ୯ ଣ୍ଟା ଠାରୁ ୨ ଘଣ୍ଟା ପର୍ଯ୍ୟନ୍ତ ସଙ୍ଗୀତ ପ୍ରତିଯୋଗିତା ଚାଲିଥିଲା । ବଂଶୀ, ଡ଼ୁବିତବଲ, ବୀଣା, ସୀତାର, ମୃଦଙ୍ଗ ଇତ୍ୟାଦି ଯନ୍ତ୍ର ସଙ୍ଗୀତ ସଙ୍ଗେ ସଙ୍ଗେ ସ୍ୱରସଙ୍ଗୀତ ହୋଇଥିଲା । ସଙ୍ଗୀତ ପ୍ରତି-ଯୋଗିତାର ପରୀକ୍ଷକ ରୂପେ ନିଯୁକ୍ତ ହୋଇଥିଲେ ପାରଳାର ଶ୍ରୀ ମାଗତା ପାତ୍ରି, ବିଜୟନଗର ସଙ୍ଗୀତ କଲେଜ ପ୍ରିନସ୍‌ପାଲ ମିଃ ଏ. ନାରାୟଣ, କଟକର ମିଃ ଜ୍ୟୋତିଷଚନ୍ଦ୍ର ସେନ୍. ଏବଂ ମଧୁପୁରର ପଟାଏତ । ପାରଳାଖେମୁଣ୍ଡିର ଅଧିକାଂଶ ପ୍ରତିଯୋଗୀ ଯୋଗ ଦେଇଥିଲେ । ପାରଳାଖେମୁଣ୍ଡିର ପାରମ୍ପରିକ ସଙ୍ଗୀତ କଳାନୁରାଗ ଏଠାରେ ଉଲ୍ଲେଖଯୋଗ୍ୟ । ସ୍ୱର ସଙ୍ଗୀତରେ ପାରଳାର ଶ୍ରୀମାନ୍ ନାରାୟଣ ସଦେଇ, ଏବଂ ସୁମାଣ୍ଡିର ଶ୍ରୀମାନ୍ ସୀତାରାମ ସାହୁ, ଯନ୍ତ୍ର ସଙ୍ଗୀତରେ, ଗୁରଣ୍ଡି ଓ ଟେକିଲିର ଦୁଇଜଣ ଯୁବକ ଯଥାକ୍ରମେ ୧ମ ଓ ୨ୟ ପୁରସ୍କାର ପାଇଥିଲେ । ୨ୟ ଦିନର କାର୍ଯ୍ୟାରମ୍ଭ ସମୟରେ ସଭାପତି ମହୋଦୟ ଚିତ୍ର ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ । ପ୍ରାୟ ୫୦ ଖଣ୍ଡ ଚିତ୍ର ଓ ଅନ୍ୟାନ୍ୟ ଶିଳ୍ପକାମ ପ୍ରଦର୍ଶିତ ହୋଇଥିଲା । ସେଥିମଧ୍ୟରେ ବର୍ତ୍ତମାନ ବିଲାତ ଆର୍ଟସ୍କୁଲରେ ପଢ଼ୁଥିବା ଶ୍ରୀମାନ୍ ବିପିନ ବିହାରୀ ଚୌଧୁରୀଙ୍କ ହସ୍ତାଙ୍କିତ ଚିତ୍ର ଓ ସୁରଙ୍ଗୀ ରାଜା ସାହେବଙ୍କ କଳାକୌଶଳ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ରାଧାଙ୍କ କଳଙ୍କ ଭଞ୍ଜନ ବିଷୟକ ଚିତ୍ରକଳା ପ୍ରତିଯୋଗିତାର ପରୀକ୍ଷକ ନିଯୁକ୍ତ ହୋଇଥିଲେ ଚିକାକୋଲ ଗୁରୁଟ୍ରେନିଂ ସ୍କୁଲର ଚିତ୍ର ଅଧ୍ୟାପକ ମିଃ ଭେଙ୍କେଟ ରାଓ, ମଞ୍ଜୁଷାର ଶ୍ରୀ ଦାଶରଥି ମହାରଣା, ଏବଂ କଟକର ଶ୍ରୀମାନ୍ ଲକ୍ଷ୍ମୀନାରାୟଣ ସାହୁ । ଯଥା କ୍ରମେ ମଞ୍ଜୁଷାର ଶ୍ରୀମାନ୍ ମଧୁସୂଦନ ମହାପାତ୍ର ଓ ରସଲକୋଣ୍ଡାର ପଦ୍ମଚରଣ ତିଆଡ଼ି ୧ମ ୨ୟ ପୁରସ୍କାର ଲାଭ କରିଥିଲେ । ଆମ୍ଭେମାନେ ବିଭିନ୍ନ ପ୍ରତିଯୋଗିତାରେ ପରୀକ୍ଷକମାନଙ୍କର ଶ୍ରମସ୍ୱୀକାର ସକାଶେ ସେମାନଙ୍କୁ ଧନ୍ୟବାଦ ଦେଉଅଛୁ ଏବଂ ପୁରସ୍କୃତ ବ୍ୟକ୍ତିମାନଙ୍କୁ ଅଭିବାଦନ ଜଣାଉଅଛୁଁ । ସମ୍ମିଳନୀରେ ଗୁରଣ୍ଡିର ଶ୍ରୀମାନ୍ ସାଧୁଚରଣ ଜେନା ବହୁବିଧ କସରତ ଦେଖାଇ ଦର୍ଶକମାନଙ୍କୁ ଅତୀବ ମୁଗ୍ଧ କରିଥିଲେ ।

ଚିକିଟିର ରାଜାସାହେବ କବିତାର ୧ମ ପୁରସ୍କାର ରୂପେ, ଚିକିଟିର ନବୀନ ରାଜାସାହେବ ସ୍ୱର ସଙ୍ଗୀତରେ ୧ମ ପୁରସ୍କାର ରୂପେ ଓ ସୁରଙ୍ଗୀର ରାଜାସାହେବ ଚିତ୍ରକଳାର ୧ମ ପୁରସ୍କାର ସ୍ୱରୂପେ ଯଥାକ୍ରମେ ତିନୋଟି ସ୍ୱର୍ଣ୍ଣପଦକ ଦାନ କରିଥିଲେ । ଏହି ବଦାନ୍ୟତା ସକାଶେ ଆମ୍ଭେମାନେ ସେମାନଙ୍କଠାରେ କୃତଜ୍ଞ । ଅନ୍ୟାନ୍ୟ ପଦକଗୁଡ଼ିକ ସମ୍ମିଳନୀ ପକ୍ଷରୁ ଦିଆଯାଇଥିଲା ।

ଏହି ସମ୍ମିଳନୀ ମୁଖ୍ୟତଃ ସୁରଙ୍ଗୀ ରଜାସାହେବଙ୍କ ସାହାଯ୍ୟ, ସହାନୁଭୂତି, ଉତ୍ସାହ, ଉଦ୍ଦୀପନାର ଯଶସ୍ୱୀତା ସହକାରେ ଅନୁଷ୍ଠିତ ହୋଇଥିଲ । ସାମାନ୍ୟ ସାଜସଜ୍ଜାଠାରୁ ଆରମ୍ଭ କରି ଅତିଥିସତ୍କାର, କାର୍ଯ୍ୟକ୍ରମ ପୂରଣ, ନାଟକ ଅଭିନୟ ଇତ୍ୟାଦି ସମସ୍ତ କାର୍ଯ୍ୟରେ ତାହାଙ୍କର ହାତଥିଲ । କବିସମ୍ମିଳନୀ ତାହାଙ୍କର ସୁପ୍ରତିଷ୍ଠିତ କୀର୍ତ୍ତିସ୍ତମ୍ଭ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ରଜକବି ସ୍ୱର୍ଗୀୟ ଚନ୍ଦ୍ରଚୂଡ଼ାମଣିଙ୍କର ଯୋଗ୍ୟପୁତ୍ର ଯେ ଉତ୍କଳରେ କଳା ଓ ସାହିତ୍ୟର ବୈଭବ ଅକ୍ଷୁଣ୍ଣ ରଖିବେ ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ ।

ସମ୍ମିଳନୀରେ ନିମ୍ନଲିଖିତ ଏକମାତ୍ର ପ୍ରସ୍ତାବ ଗୃହୀତ ହୋଇଅଛି ।

''ଏହି ସମ୍ମିଳନୀର ପ୍ରତିନିଧି, ଅଭ୍ୟର୍ଥନା ସମିତିର ସଭ୍ୟ, ପୃଷ୍ଠପୋଷକ ଦର୍ଶକମାନଙ୍କୁ ନେଇ ଗୋଟିଏ ସାହିତ୍ୟ ପରିଷଦ ଗଠିତ ହେଉ । ଏହି ପରିଷଦର ଆକାର, ଉଦ୍ଦେଶ୍ୟ ସ୍ଥିର କରିବା ପାଇଁ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଗୋଟିଏ କମିଟି ଗଡ଼ାଯାଉ । ଆବଶ୍ୟକତା ଅନୁଯାୟୀ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କୁ ଅତିରିକ୍ତ ସଭ୍ୟ ରୂପେ ଗ୍ରହଣ କରିବା ଅଧିକାର ସେହି କମିଟିକୁ ଦିଆଯାଉ । ଉତ୍କଳ ସାହିତ୍ୟ ସମାଜ ଦ୍ୱାର ଯଦି ଏହି ପରିଷଦର ଉଦ୍ଦେଶ୍ୟ ଗୃହୀତ ଓ କାର୍ଯ୍ୟକାରୀ ହୁଏ, ତାହେଲେ ଉଭୟ ଅନୁଷ୍ଠାନ ଏକତ୍ର ହେବେ ।

(୧) ସୁରଙ୍ଗୀ ରଜାସାହେବ, (୨) ଚିକିଟି ଯୁବରଜ ସାହେବ, (୩) ଶ୍ରୀ ବାଳକୃଷ୍ଣ କର, (୪) ଶ୍ରୀ ନରସିଂହ ପାଣିଗ୍ରାହୀ, (୫) ଶ୍ରୀ ଜଗବନ୍ଧୁ ସିଂହ, (୬) ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, (୭) ଶ୍ରୀ ଲକ୍ଷ୍ମୀନାରୟଣ ସାହୁ, (୮) ଶ୍ରୀ ସତ୍ୟନାରୟଣ ରଜଗୁରୁ, (୯) ମଦନ ମୋହନ ରଥ, (୧୦) ଅନନ୍ତ ଶିରେମଣି, (୧୧) ସ୍ୱପ୍ନେଶ୍ୱର ଦ୍ୱିବେଦୀ, (୧୨) ଦାମୋଦର କବିରତ୍ନ,(୧୩) ନାରୟଣ ଶିରେମଣି, (୧୪) ଗଦାଧର ବିଦ୍ୟାଭୂଷଣ, (୧୫) ଲିଙ୍ଗରଜ ମିଶ୍ର, (୧୬ ଶ୍ରୀ କାଳନ୍ଦୀ ଚରଣ ପାଣିଗ୍ରାହୀ (୧୭) ଶ୍ରୀମତୀ ସରେଜିନୀ ଚୌଧୁରୀ, (୧୮) ହରିହର ମହାପାତ୍ର, (୧୯) ହରିଶ୍ଚନ୍ଦ୍ର ବଡ଼ାଲ୍, (୨୦) ଶ୍ରୀମତୀ କୁନ୍ତଳା କୁମାରୀ ଦେବୀ, (୨୧) ସରଳା ଦେବୀ, (୨୨) ଜୟପୁର ରଜାସାହେବ, (୨୩) ସୀମାଦ୍ରି ପଟ୍ଟନାୟକ, (୨୪) ଧରକୋଟ ଯୁବରଜ, (୨୫) କନିକାର ଟିକାୟତ ସାହେବ, (୨୬) ଟେକେଲି ରଜା, (୨୭) ଦଣ୍ଡପାଣି ପାଢ଼, (୨୮) ହାଜୀ ଅସରଫ ଅଲ୍ଲି, (୨୯) ଚିକିଟି ରଜାସାହେବ, (୩୦) ଦେବାନ ସାହେବ, ମଞ୍ଜୁଷା, (୩୧) ସୁଦର୍ଶନ ପୁରେହିତ, (୩୨) ଗୋଦାବରୀଶ ମିଶ୍ର, (୩୩) ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି, (୩୪) ବାଙ୍କନିଧି ପଟ୍ଟନାୟକ, (୩୫) ବିରୂପାକ୍ଷ କର, (୩୬) ପରମାନନ୍ଦ ଆଚାର୍ଯ୍ୟ, (୩୭) କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, (୩୮) ରଧାନାଥ ପତି,

(୩୯) ମାୟାଧର ମାନସିଂହ, (୪୦) ଲକ୍ଷ୍ମୀକାନ୍ତ ଚୌଧୁରୀ, (୪୧) ଶଶିଭୂଷଣ ରାୟ, (୪୨) ଶ୍ରୀ ନିରଞ୍ଜନ ପଟ୍ଟନାୟକ, (୪୩) ଶଶିଭୂଷଣ ରଥ, (୪୪) ମହୁରୀ ଯୁବରାଜ, (୪୫) ନାରାୟଣ ବହିଦାର, (୪୬) ସଚ୍ଚିଦାନନ୍ଦ ରାଉତରାୟ, (୪୭) ଗୋପାଳଚନ୍ଦ୍ର ପ୍ରହରାଜ, (୪୮) କପିଳେଶ୍ୱର ଦାସ ।

ଆସନ୍ତା ମାସ ମଇ ପ୍ରଥମ ସପ୍ତାହରେ ଏହି କମିଟି ବସିବାର ଆୟୋଜନ କରାଯାଉଅଛି ଓ ସେଥିସଙ୍ଗେ କବି ସମ୍ମିଳନୀର ଅଙ୍ଗୀଭୂତ ନାରୀ ସମିତିର ପ୍ରାଥମିକ ଅଧିବେଶନ ଅନୁଷ୍ଠିତ ହେବ । ଆମ୍ଭେମାନେ ଏହି ସମ୍ବନ୍ଧରେ ଶ୍ରୀମତୀ ସରୋଜିନୀ ଚୌଧୁରୀ, ଶ୍ରୀମତୀ ସରଳା ଦେବୀ ଏବଂ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀଙ୍କଠାରୁ ସହଯୋଗର ପ୍ରତିଶ୍ରୁତି ପାଇଅଛୁଁ । ଏଥିସମ୍ବନ୍ଧେ ସମସ୍ତ କାର୍ଯ୍ୟକ୍ରମ ଓ ପ୍ରଣାଳୀ ନିକଟରେ ପ୍ରକାଶ ପାଇବ । ନୋବେଲ ପ୍ରାଇଜକୁ ଅନୁସରଣ କରି ଉତ୍କଳର ସାହିତ୍ୟ, କଳା, ଦର୍ଶନ, ବିଜ୍ଞାନ ଓ ସମାଜସେବା ଇତ୍ୟାଦିକୁ ବିଭିନ୍ନ ବିଭାଗରେ ପୁରସ୍କାର ରଖିବା ଉତ୍କଳୀୟ ବୈଶିଷ୍ଟ୍ୟ ଓ ପ୍ରତିଭାର ସମ୍ୟକ୍ ଅଭ୍ୟୁନ୍ନତି ସମ୍ପାଦିତ କରିବା ନିମନ୍ତେ ଗୋଟିଏ ଆର୍ଟସ୍କୁଲ ସ୍ଥାପିତ କରିବା, ଉଚ୍ଚଧରଣର ମୌଳିକ ଚିନ୍ତା ନିର୍ଭର ଗୋଟିଏ ମାସିକ ପତ୍ର ପ୍ରଚଳନ କରିବା ଇତ୍ୟାଦି ବିଷୟଗୁଡ଼ିକ ସମ୍ମିଳନୀର ବିଚାର୍ଯ୍ୟ ନ ହୋଇଥିଲେ ସୁଦ୍ଧା କ୍ରମଶଃ ଏହି ସବୁ କାର୍ଯ୍ୟକାରୀ ହେବ ବୋଲି ଉଦ୍ୟୋକ୍ତାମାନଙ୍କର ଅଟଳ ବିଶ୍ୱାସ ଏବଂ ଆସ୍ଥା ଅଛି । ଆସନ୍ତା ବର୍ଷ କଟକରେ କବି ସମ୍ମିଳନୀର ୨ୟ ଅଧିବେଶନ ହେବାର ଯେ ସୂଚନା ମିଳିଅଛି । ତା ଉପରେ ଉଦ୍ୟୋକ୍ତାଗଣ ଭରସାରଖି ଉତ୍କଳ ସାହିତ୍ୟାକାଶରେ, ନୀରନ୍ଧ୍ର-ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟର ଛବି ଅଙ୍କିତ କରୁଅଛନ୍ତି । ଦୟାମୟଙ୍କ ଅପାର କରୁଣାରେ ସେମାନଙ୍କ କଳ୍ପନା କାର୍ଯ୍ୟକାରୀ ହେଉ, ଏହା ଆମ୍ଭମାନଙ୍କ ଐକାନ୍ତିକ କାମନା । ଉପସଂହାରରେ ଆମ୍ଭେମାନେ ଏହି କବି ସମ୍ମିଳନୀକୁ ଚିରସ୍ଥାୟୀ, ଜୀବନ୍ତ, କଲ୍ୟାଣମୟ ଏବଂ ମଙ୍ଗଳମୟ କରିବା ପାଇଁ ସମସ୍ତଙ୍କର ପ୍ରୀତିପୂର୍ଣ୍ଣ ସାହଚର୍ଯ୍ୟ ଭିକ୍ଷା କରୁଅଛୁଁ ।



# ଭାରତୀୟ କଳା ଓ ସାହିତ୍ୟ ପରିଷଦ୍

ଗତ କେତେ ବର୍ଷ ହେଲା କଳା ଓ ସାହିତ୍ୟର ପ୍ରକାଶ ଓ ଅଭିବୃଦ୍ଧି ନିମନ୍ତେ ଗୋଟିଏ ନିଖିଳ ଭାରତ ଅନୁଷ୍ଠାନର କଳ୍ପନା ଓ ଆନ୍ଦୋଳନ ଚାଲିଛି । କହିବା ଅନାବଶ୍ୟକ, ସବୁ ସଭ୍ୟ ଦେଶର, ସବୁ ସଭ୍ୟ ଜାତିର ଏପରି ଗୋଟାଏ ଅନୁଷ୍ଠାନ ଅପରିହାର୍ଯ୍ୟ । ବିଶେଷରେ ଏଭଳି ଅନୁଷ୍ଠାନର ଆବଶ୍ୟକତା ସମ୍ବନ୍ଧେ ବର୍ତ୍ତମାନ ପରିସ୍ଥିତିରେ ଆମ ଦେଶରେ ଦ୍ୱିରୁକ୍ତି ରହି ନ ପାରେ । ପ୍ରାଚୀନ ସାହିତ୍ୟ କଥା ଛାଡ଼, ଭାରତର ଆଧୁନିକ ସାହିତ୍ୟିକ ଉଦ୍ୟମ ମଧ୍ୟ ପ୍ରଶଂସନୀୟ, ମହତ୍, ବିଭବଶାଳୀ, ବିଭିନ୍ନ ପଥଗାମୀ । ତଥାପି ଉପଯୁକ୍ତ ଆର୍ଥିକ-ନୈତିକ ସାହାଯ୍ୟ-ସହାନୁଭୂତି ବିନା ଆମର ସହସ୍ର ସହସ୍ର ସାହିତ୍ୟିକ-କଳାବିତ୍ କବିଙ୍କ ଭାଷାରେ ବନର ମାଳତୀ ପରି ବନରେ ଫୁଟି ଝଡ଼ିଯାଉଛନ୍ତି; ତାଙ୍କର ପ୍ରତିଭା ବିକୀର୍ଣ୍ଣ ସୌରଭ ମରୁଭୂମିର ତପ୍ତ ସମୀର ପ୍ରବାହରେ ଉଡିଯାଉଛି । ପୁଣି ଭାରତ ପରି ନାନା ପ୍ରଦେଶ-ସଂଲଗ୍ନ ବିଶାଳ ଭୂଖଣ୍ଡରେ ଗୋଟିଏ ପ୍ରଦେଶର ସାହିତ୍ୟ-କଳାର ମହତ୍ତ୍ୱ-ସମୃଦ୍ଧି ଅନ୍ୟ ପ୍ରଦେଶ ଚିହ୍ନି ପାରୁ ନାହିଁ । ଆମର ରାଜନୀତିକ ବାୟୁମଣ୍ଡଳ ମଧ୍ୟ ଆଜି ପ୍ରାଦେଶିକ ସଙ୍କୀର୍ଣ୍ଣତା-ହିଂସାରେ ଦୂଷିତ ହେବାକୁ ଯାଉଛି । ଏ ସବୁର ପ୍ରତିକାର ସଙ୍ଘର୍ଷମୂଳକ ରାଜନୀତି କରିପାରିବ ନାହିଁ, କଳା-ସାହିତ୍ୟର ସାର୍ବଜନୀନ ରାଜ୍ୟରେ ତାହା ବା ହୋଇପାରେ । ଆହୁରି ମଧ୍ୟ ଆମର ଶିକ୍ଷା, ଗବେଷଣା, ଆଲୋଚନା, ଗଠନମୂଳକ କର୍ମଧାରାର ବିଭିନ୍ନ ବିଭାଗ ମଧ୍ୟରେ ସାମଞ୍ଜସ୍ୟ ଏଭଳି ଗୋଟିଏ ଅନୁଷ୍ଠାନହିଁ ଆଣିପାରେ; ବୁଦ୍ଧିବୃତ୍ତି ସ୍ଫୁରଣରେ ବୈଶିଷ୍ଟ୍ୟ ଉପଲବ୍ଧି ପାଇଁ ଉତ୍ସାହ-ଉଦ୍ଦୀପନ ଦେଇପାରେ । ଜଗତ୍-ଜାତିସଙ୍ଘ (Common Wealth of Nations)ରେ ନ୍ୟାଯ୍ୟ ସ୍ଥାନ ପାଇଁ ଭାରତର ଦାବୀ ଆଜି ଉପସ୍ଥାପିତ ହେଉଛି । ସେ ଦାବୀର ସମର୍ଥନ ଲାଗି ଏ ଦେଶର କଳା-ଆତ୍ମାର ଅନିନ୍ଦ୍ୟ ସୌନ୍ଦର୍ଯ୍ୟ ସଂସାର-ଲୋକ-ଚକ୍ଷୁରେ ଭାସ୍ୱର ହୋଇଉଠିବା ଉଚିତ । ଏ ଦିଗରେ ମଧ୍ୟ ଗୋଟିଏ ଶୃଙ୍ଖଳିତ ଅନୁଷ୍ଠାନ କାର୍ଯ୍ୟକାରୀ ହେବ ।

ଏ ଆନ୍ଦୋଳନର ଗୋଟିଏ ସଂକ୍ଷିପ୍ତ ଇତିହାସ ଅଛି । ପ୍ରଥମେ କଜିନସ୍ (Dr. J. H. Cousins) ଏହାର ଗୋଟାଏ କଳ୍ପନାର ବିଜ୍ଞାପନ ଦେଇଥିଲେ । ପରେ ପରେ ଚାପମନ୍ (I. A. Chapman) ଓ ଥାମ୍‌ସନ୍ (Dr. Edward

Thumpson) ତାର ସମର୍ଥନ କରିଥିଲେ । ଏପରି ଭାବରେ କୌଣସି ଶିକ୍ଷିତ ଭାରତୀୟ ନୁହେଁ, ତିନି ଜଣ ବୈଦେଶିକଙ୍କ ମନକୁହିଁ ତାହା ଆଗ ସ୍ପର୍ଶ କରିଥିଲା । ଏହାହିଁ ଆଧୁନିକ ଭାରତର ସାଂସ୍କୃତିକ ଭାଗ୍ୟ-ବିପର୍ଯ୍ୟୟର ଗୋଟିଏ ନିଦର୍ଶନ । ସେ ଯାହାହେଉ, ପ୍ରଥମେ ଆଶାନୁରୂପ ଶ୍ରଦ୍ଧା ନ ଦେଖିବାରୁ କଜିନ୍ସ ଚହିଁରୁ ବିରତ ହେଲେ । କିନ୍ତୁ ପରେ ପରେ ଭାରତୀୟ ପି. ଇ. ଏନ୍., ନିଖିଳ ଭାରତୀୟ ଦର୍ଶନ କଂଗ୍ରେସ, ନିଖିଳ ଭାରତ ପ୍ରାଚ୍ୟସମ୍ମେଳନ, ଆସାମ ସାହିତ୍ୟ ସଭା, ଆନ୍ଧ୍ରପ୍ରଦେଶ ନବ୍ୟ ସାହିତ୍ୟ ପରିଷଦ, ଉତ୍କଳ ସାହିତ୍ୟ ସମାଜ ଏ ସମ୍ବନ୍ଧରେ ଅନୁକୂଳ ମତ ଦେଇଥିବା ପ୍ରକାଶ ।

ଏ ପର୍ଯ୍ୟନ୍ତ କେବଳ ପତ୍ର-ପତ୍ରିକାରେ ସାମୟିକ ଲେଖାଲେଖିରେ ଏ ଆନ୍ଦୋଳନ ନିବଦ୍ଧ ଥିଲା । ଏବେ କିନ୍ତୁ ତାକୁ ବାସ୍ତବ କ୍ଷେତ୍ରରେ ଫଳାଇବାର ଉଦ୍ୟମ କରାଯାଉଅଛି । ପରିଷଦ ଗଠନ ନିମନ୍ତେ ଆବଶ୍ୟକ ପ୍ରାରମ୍ଭିକ କାର୍ଯ୍ୟ, ପ୍ରଚାର ଇତ୍ୟାଦି ଚଳାଇବା ପାଇଁ ଗୋଟିଏ ଅସ୍ଥାୟୀ କମିଟି ଗଢ଼ାହୋଇଛି ।

● କମିଟିର ସମ୍ପାଦକ ପରିଷଦର ଉଦ୍ଦେଶ୍ୟ, ଗଠନ, କାର୍ଯ୍ୟକ୍ରମ ସମ୍ବନ୍ଧରେ ମୋଟାମୋଟି ଯୋଜନା କରିଛନ୍ତି ।

ଉଦ୍ଦେଶ୍ୟ ଭିତରୁ କୋଡ଼ୋଟିତ ଉପରେ କୁହାହୋଇଛି, ବାକିଗୁଡିକ ମଧ୍ୟରେ ଉତ୍କୃଷ୍ଟ ଲେଖକ, କଳାବିତ୍‌ଙ୍କୁ ବାର୍ଷିକ ପୁରସ୍କାର ଦେଇ ଉତ୍ସାହିତ କରିବା, ଭାରତର ସାଂସ୍କୃତିକ ଏକତା ଆଣିବା, ସାହିତ୍ୟ କଳା-ବିଜ୍ଞାନର ଯଥାସମ୍ଭବ ଉତ୍କର୍ଷ ଦକ୍ଷତା ସମ୍ପାଦନ କରିବା, ଭାବର ଆଦାନ ପ୍ରଦାନ, ମିଳାମିଶା ନିମନ୍ତେ ଦେଶର

---

● ଏହି କମିଟିରେ କେ· ଏନ୍. ମିଶ୍ର (ହିନ୍ଦୀ), କେ· ପି· ପଦ୍ମନାଭନ୍ ଥାମ୍ପି, ବି· ଏ. (କେରଳ), କପିଳେଶ୍ୱର ଦାଶ, ଏମ୍. ଏ. (ଓଡ଼ିଶା), ଅଧ୍ୟାପକ ଭି· କେ. ଗୋଲକ (କର୍ଣ୍ଣାଟକ), ଏମ୍. ଏଚ· ଚଲମଆୟାର (ତାମିଲନାଡ଼ୁ), ପୂର୍ଣ୍ଣାନନ୍ଦ ଶର୍ମା ପାଠକ (ଆସାମ), ଅଧ୍ୟାପକ ଭି· ଏମ୍. ଭୂଷଣ ଏମ୍. ଏ· (ମହାରାଷ୍ଟ୍ର), ଆର. ଆପ୍ପାରାଓ ବାହାଦୁର, ଏ. ସୂର୍ଯ୍ୟନାରାୟଣ ମୂର୍ତ୍ତି, ଟି· ଶିବଶଙ୍କର ଶାସ୍ତ୍ରୀ, ଡି· ବିଶ୍ୱେଶ୍ୱର ରାଓ (ଆନ୍ଧ୍ର) ଅଛନ୍ତି । ମି· ବିଶ୍ୱେଶ୍ୱର ରାଓ କମିଟିର ଅର୍ଗାନାଇଜିଂ ସମ୍ପାଦକ । କମିଟି ଅପୂର୍ଣ୍ଣ । କାର୍ଯ୍ୟର ପ୍ରସାର ଦୃଷ୍ଟିରେ ଅଧିକ ସଭ୍ୟ ନେବା ପାଇଁ ବ୍ୟବସ୍ଥା ଅଛି । ଓଡିଶା ପକ୍ଷରୁ ଶ୍ରୀ ଶଶିଭୂଷଣ ରାୟ, ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ଶ୍ରୀ ନବକିଶୋର ଦାସ, ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା ଇତ୍ୟାଦି ସାହିତ୍ୟରଥୀ ଏ କାର୍ଯ୍ୟରେ ଶ୍ରଦ୍ଧା ଜଣାଇଛନ୍ତି ।

ସବୁ କବି, ଲେଖକ, ଶିଳ୍ପୀ କଳାବିତ୍‌ଙ୍କ ସାମୟିକ ମିଳନର ବ୍ୟବସ୍ଥା କରିବା ଇତ୍ୟାଦି ପ୍ରଧାନ । ପରିଷଦ୍ ଗଠନ ସମ୍ପର୍କରେ ବିଗ୍ରର ହୋଇଛି, ତହିଁରେ ପ୍ରାଦେଶିକ, ସାମ୍ପ୍ରଦାୟିକ ଭେଦ ରହିବ ନାହିଁ । ତହିଁର ସଭ୍ୟ ହେବା ନିମନ୍ତେ ବ୍ୟକ୍ତିଗତ ଘିଚି ନୁହେ, କେବଳ ଯୋଗ୍ୟତା ବିଗ୍ରର କରଯିବ । ପାଶ୍ଚାତ୍ୟ ପରିଷଦ୍-ମାନଙ୍କର ସଭ୍ୟପଦ ଯେପରି ଗୌରବାବହ, ଏହା ସେପରି ହେବ । ସବୁ ଭଷା-ମୂଳକ ପ୍ରଦେଶରେ ଗୋଟିଏ ଗୋଟିଏ ଶାଖା ରହିବ । ସେସବୁ ଗୋଟିଏ କେନ୍ଦ୍ର-ଦ୍ୱାର ନିୟନ୍ତ୍ରିତ ହେବ । ପ୍ରତ୍ୟେକ ଶାଖା ଅନୁଷ୍ଠାନ ସେହି ସେହି ପ୍ରଦେଶର ବର୍ଷ ବର୍ଷକର ଉତ୍କୃଷ୍ଟ ସାହିତ୍ୟ ଓ କଳାର ସାମଗ୍ରୀ ପୁସ୍ତକ, ଚିତ୍ର, ସଙ୍ଗୀତ ଇତ୍ୟାଦିର ନମୁନା କେନ୍ଦ୍ରକୁ ପଠାଉଥିବେ । ତାକୁ ତନ୍ନ ତନ୍ନ ପରୀକ୍ଷା କରି ପ୍ରକୃତ ଉତ୍କୃଷ୍ଟ କେତୋଟିକୁ ପରିଷଦ୍ ଗ୍ରହଣ କରିବେ; ତାର ସ୍ରଷ୍ଟାଙ୍କୁ ବହୁମତି ଦେବେ । ପୁସ୍ତକ ହୋଇଥିଲେ, ତାକୁ ରଷ୍ଟ୍ର ଓ ପ୍ରାଦେଶିକ ଭଷାମାନଙ୍କରେ ଅନୁବାଦ କରି ପ୍ରକାଶ କରିବେ । ସଂସ୍କୃତିର ସମସ୍ତ ଶାଖା ପରିଷଦ୍‌ର ପ୍ରଣିଧାନର ବିଷୟ ହେବ । କେନ୍ଦ୍ରପକ୍ଷରୁ ଇଂରେଜିରେ ବା ହିନ୍ଦୀରେ ଗୋଟିଏ ମାସିକ ପତ୍ରିକା ବାହାରିବ । ତହିଁରେ କେନ୍ଦ୍ର ଓ ଶାଖାମାନଙ୍କର କାର୍ଯ୍ୟ-ବିବରଣୀ ସଙ୍ଗେ ମୌଳିକ ଚିନ୍ତାପୂର୍ଣ୍ଣ ଲେଖା ପ୍ରକାଶ ପାଇବ । ତହିଁର ସମ୍ପାଦକୀୟ ସଙ୍ଘରେ ସବୁ ପ୍ରଦେଶ ଓ ବିଭଗର ବଳିଷ୍ଠ ପ୍ରତିନିଧି ରହିବେ । ଦେଶରେ ପ୍ରତିଷ୍ଠିତ ସବୁ ସାହିତ୍ୟ-କଳା-ଗବେଷଣା ଅନୁଷ୍ଠାନର ସହଯୋଗରେ ପରିଷଦ୍ ଚଳିବ । ପୁରସ୍କାର ଦେବା ପାଇଁ ମଧ ଗୋଟିଏ ସ୍ୱତନ୍ତ୍ର ସଙ୍ଘ (Board of Award) ରହିବ । ଏ ଉଭୟର ସଂଲଗ୍ନରେ ଗୋଟିଏ ପ୍ରତିନିଧିମୂଳକ କାର୍ଯ୍ୟକାରିକା ସମିତି ପରିଷଦ୍‌ର କାର୍ଯ୍ୟ ଚଳାଇବେ । ପରିଷଦ୍‌ର ନୀତିନିୟମର ବିସ୍ତୃତ ସୂଚନା ବର୍ଷକୁ ବର୍ଷ ଗୋଟିଏ ନିଖିଳ ଭରତ ସମ୍ମେଳନ ଠିକ କରୁଥିବେ । ସବୁ ଆନ୍ତର୍ଜାତିକ ସଙ୍ଘରେ ପରିଷଦ୍‌ର ପ୍ରତିନିଧି ରହିବେ । ପ୍ରାରମ୍ଭିକ ଅବସ୍ଥାରେ ସରକାର, ସବୁ ସାଧାରଣ ଅନୁଷ୍ଠାନ, ବଦାନ୍ୟ ଦେଶପ୍ରେମୀଙ୍କ-ଠାରୁ ଆର୍ଥିକ ସାହାଯ୍ୟ ଯାଚଞ୍ଚା କରଯାଇପାରେ । ଏସବୁ କେବଳ କେତୋଟି ବିଚ୍ଛିନ୍ନ ସଙ୍କେତ । ଅନୁଭୂତିର ଆଲୋକରେ ତହିଁରେ ପରିବର୍ଦ୍ଧନ, ପରିବର୍ତ୍ତନ ନିଶ୍ଚୟ ହେବ ।

ଏ କାର୍ଯ୍ୟ ମହତ୍; ଆମର ଉପାଦାନ ଉପରେ ଜାତୀୟ ପ୍ରଗତି ଗଢ଼ିବା ସଦୁଦ୍ୟମ; ସମସ୍ତଙ୍କର ଆୟାସଲବ୍ଧ ଯୋଗ୍ୟ । କିନ୍ତୁ ଭରତୀୟ ସଂସ୍କୃତିର ପୁରୋଧା-ପ୍ରେମୀ-ଅନୁସରକଙ୍କ ସ୍ୱଷ୍ଟ ସମ୍ମେଳିତ ଆନ୍ତରିକ ଦାବୀ ନ ରହିଲେ ଏପରି ଅନୁଷ୍ଠାନ ବଞ୍ଚିପାରିବ ନାହିଁ । କୃତ୍ରିମ ଉପାୟରେ ଗଢ଼ି ବସିଲେ ମୁମୂର୍ଷୁ ହେବ । ଆମର ଲବ୍ଧପ୍ରତିଷ୍ଠ ସାହିତ୍ୟିକ, ମନୀଷୀ, ପଣ୍ଡିତ, କଳାବିତ୍, ଶିଳ୍ପୀ, ଦେଶପ୍ରାଣ, ଧନିମାନଙ୍କ ଶୁଭଦୃଷ୍ଟିଏ ଆଡେ ପଡ଼ୁ ।

ବର୍ତ୍ତମାନ ସମୟ ଅବଶ୍ୟ ପ୍ରତିକୂଳ । ଜଗତ୍ ଭୀଷଣ ଘଡ଼ିସନ୍ଧି ମଧ୍ୟରେ ପଡ଼ିଛି । ବିପଦର ଢ଼େଉ ଭରତର ତଟ ଆଡକୁ ମାଡ଼ିଆସୁଛି । ମନୁଷ୍ୟ-ପ୍ରତିଭା ଧ୍ୱଂସାଭିମୁଖୀ ହୋଇଛି । ମାନବୀୟ ସଂସ୍କୃତିର ଦର ନିମ୍ନରୁ ନିମ୍ନକୁ ଖସି ଆସିଛି— ଏସବୁ ସତ୍ୟ । କିନ୍ତୁ ଏ ଅନିଷ୍ଟ-ଚକ୍ର (vicious circle) ତ ଭାଙ୍ଗିବାକୁ ପଡ଼ିବ ! ମାନବୀୟ ଆଦର୍ଶ ଆଜି ପଶୁତ୍ୱରେ ପର୍ଯ୍ୟବସିତ ହୋଇଛି ବୋଲି ଏ ଭୟଙ୍କର ଉପଦ୍ରବ । ତାକୁ ରକ୍ଷା ଓ ପୁଷ୍ଟ କରିବାର ପ୍ରକାଣ୍ଡ ଦାୟିତ୍ୱ ଆମ ଉପରେ । ଘଡ଼ିସନ୍ଧି ବେଳେହିଁ ନୂତନ ଚିନ୍ତା, ସମନ୍ୱୟ ପନ୍ଥା ଫିଟେ । ପୁରାଣ-ପବିତ୍ର, ଆଧ୍ୟାତ୍ମିକପ୍ରାଣ ସଂସ୍କୃତିମନ୍ତ ଭରତ-ଇତିହାସରେ ସେପରି ଏକ ନୂତନ ଅଧ୍ୟାୟ ଫିଟୁ ।

—୨—

ବର୍ତ୍ତମାନ ସମୟ ଆସିଛି । ଭରତର ପ୍ରାଦେଶିକ ସାହିତ୍ୟଗୁଡ଼ିକର ଅଭିବୃଦ୍ଧି ନିମନ୍ତେ ନୋବଲ୍ ପୁରସ୍କାର ଭଳି ଗୋଟିଏ ପୁରସ୍କାରର ବନ୍ଦୋବସ୍ତ ଶୀଘ୍ର ହେବା ଉଚିତ । ଏ ପୁରସ୍କାର ବର୍ଷକୁ ବର୍ଷ ସେହି ସେହି ସାହିତ୍ୟର ପ୍ରଧାନ ଲେଖକଙ୍କୁ ଦିଆଯିବା କଥା । ପୁଣି ସେଥିସଙ୍ଗେ ସାଧାରଣ କଳ୍ପନା-ସ୍ରଷ୍ଟାଙ୍କୁ ଉତ୍ସାହ ଦେବା ପାଇଁ ହାଥର୍ଣ୍ଣଡ଼େନ୍ (Howthornden) ପୁରସ୍କାର ଭଳି ଗୋଟିଏ ପୁରସ୍କାରର ମଧ୍ୟ ବନ୍ଦୋବସ୍ତ ହେବା ଉଚିତ । ପୁଣି କେବଳ ପଣ୍ଡିତବର୍ଗ ନୁହନ୍ତି, ସାହିତ୍ୟିକ ସ୍ରଷ୍ଟାଙ୍କୁ ଘେନି ଗୋଟିଏ ନିଖିଳ ଭରତ ଅନୁଷ୍ଠାନ ପ୍ରତିଷ୍ଠା କରିବାର ସମୟ ଆସି ନାହିଁକି ? *

ଏ ସୂଚନାରେ ଦୁଇଟି ବିଚାର କରିବାର କଥା ଅଛି । ଗୋଟାଏ ଜଗତ୍ ସମକ୍ଷରେ ଭରତୀୟ ସାହିତ୍ୟର ସ୍ଥାନ; ଅନ୍ୟଟି ବ୍ୟକ୍ତିଗତ ପ୍ରତିଭାର ସମ୍ୟକ୍ ପରିପୁଷ୍ଟି । ଅବଶ୍ୟ ଜାଣିବାର କଥା, ଏଭଳି ପୁରସ୍କାର ପ୍ରକୃତ ପ୍ରତିଭାବାନ୍ ଲେଖକ ପକ୍ଷରେ ଆଉ ଅଧିକ କିଛି କରିପାରିବ ନାହିଁ । କୌଣସି ସେକ୍ସପିଅର ବା କାଳିଦାସ ସାହିତ୍ୟ ସୃଷ୍ଟି କରନ୍ତି, ପୁରସ୍କାର ପାଇବା ପାଇଁ ନୁହେ; ସେପରି ସୃଷ୍ଟି ତାଙ୍କର ସହଜ ପ୍ରବୃତ୍ତିଜାତ ନିସର୍ଗସୁନ୍ଦର ପଦାର୍ଥ । ଏଭଳି ସାହିତ୍ୟ-ନାୟକଙ୍କ କଥା ଅଲଗା । କିନ୍ତୁ ସାହିତ୍ୟ କ୍ଷେତ୍ରରେ ଆଉ ଅନେକେ ଅଛନ୍ତି, ଯେଉଁମାନଙ୍କର ହୃଦୟରେ ସାହିତ୍ୟ-ତେଜର କଣା ଅଛି । ସାମୟିକ ଉତ୍ସାହ, ଯୋଗ୍ୟତାର ଗ୍ରାହକତା ସେମାନଙ୍କୁ ଦ୍ୱିଗୁଣ ଉତ୍ସାହରେ ଲାଗି ପଡିବା ପାଇଁ ପ୍ରବର୍ତ୍ତାଇବ; ସେହି

* The times—Literary Supplement (Leading Editorial), Ist February, 1936

ତେଜ-କଣାକୁ ଦୀପ୍ତ କରିବା ଏ ଦୃଷ୍ଟିରେ ଉପରିଉକ୍ତ ସୂଚନା ଖୁବ୍ ସାମୟିକ । ପ୍ରଥମେ ପ୍ରଥମେ ସଂସ୍କୃତ ଛନ୍ଦରେ ବାନ୍ଧିହୋଇ, ପରେ ପରେ ଇଂରେଜି ସାହିତ୍ୟର ଅନୁକରଣରେ ଶିଶୁ ଅବସ୍ଥାରେ ରହି ରହି ବହୁକାଳ ପରେ ଏ ଦେଶର ପ୍ରାଦେଶିକ ସାହିତ୍ୟ ଏବେ ବାଟକୁ ଆସିଛି; ଲୋକପ୍ରିୟ, ଦେଶପ୍ରିୟ, ଅପେକ୍ଷାକୃତ ବଳିଷ୍ଠ ହୋଇଆସୁଛି । କୌଣସି ପ୍ରଦେଶର ସୀମାରେ ଆବଦ୍ଧ ରହୁଥିବା ସାହିତ୍ୟିକ ଉଦ୍ୟମ ପ୍ରସ୍ତାବିତ ପୁରସ୍କାର ଫଳରେ ସମଗ୍ର ଭାରତରେ ଚିହ୍ନିତ ହେବ । ପରିଚୟର ଏ ବିସ୍ତୃତି ସେହି ସେହି ଲେଖକଙ୍କ ଆତ୍ମପ୍ରତ୍ୟୟ, କର୍ମକୁଶଳତାରେ ନିଶ୍ଚୟ କ୍ଷିପ୍ରତା ଆଣିବ । ପୁଣି ଜଗତ୍ ଦୃଷ୍ଟିରେ ଭାରତ-ସାହିତ୍ୟର ମୂଲ୍ୟ ନିର୍ଦ୍ଧାରଣ ଦିଗରେ ପ୍ରସ୍ତାବିତ ସୂଚନା କାର୍ଯ୍ୟକାରୀ ହେଲେ ଯେ କେତେ ଉପକାର ହେବ, ତା ବୁଝାଇ କହିବା ନିଷ୍ପ୍ରୟୋଜନ । ଯେତେବେଳେ ରବୀନ୍ଦ୍ରନାଥ ନୋବଲ୍ ପୁରସ୍କାର ପାଇଲେ, ସେତେବେଳେ ସେ ନିଜେ ତ ବିଶ୍ୱକବି ହେଲେ । ସଙ୍ଗେ ସଙ୍ଗେ ଜନ୍ମଭୂମିକୁ ମଧ୍ୟ ଅକ୍ଷୟ ଗୌରବରେ ଭାସ୍ୱର କଲେ । ଏପରିକି ସାହିତ୍ୟକ-ଜାତିସଙ୍ଘ (Literary Family of Nations)ରେ ତାର ଆସନ ସଜାଡ଼ିରଖିଲେ, ଭାରତକୁ ସ୍ୱତନ୍ତ୍ର ସାହିତ୍ୟିକ ରାଜ୍ୟରୂପେ ଗଢ଼ିଲେ । ଜାତୀୟ ପୁରସ୍କାର ଅବଶ୍ୟ ଏଭଳି ଜଗଦ୍‌ବ୍ୟାପୀ ଖ୍ୟାତି ଆଣିପାରିବ ନାହିଁ, ତଥାପି ତଦ୍ଦ୍ୱାରା ପୁରସ୍କୃତ ଲୋକର ଖ୍ୟାତି ଏ ଦେଶ ସୀମା ଡେଇଁ ବିଦେଶରେ ବ୍ୟାପିବାର ସମ୍ଭାବନା କମ୍ ନୁହେ । ପୁଣି ଏ ଦିଗରେ ଗୋଟିଏ ନିଖିଳ ଭାରତର ଅନୁଷ୍ଠାନ ଭାରତୀୟ ସଂସ୍କୃତିର ଏକତା ଆଣିବାରେ ନିଶ୍ଚୟ ଅସୀମ ପ୍ରଭାବ ବିସ୍ତାର କରିବ । ପୁରସ୍କାର ଦେବା ପାଇଁ ପାଣ୍ଠି ଆବଶ୍ୟକ । ତାହା କିନ୍ତୁ କୌଣସି ବିଭବଶାଳୀଙ୍କ ଦାନସାପେକ୍ଷ । ପରିଷଦ୍ ଗଢ଼ିବାକୁ ହେଲେ ପ୍ରଥମେ ଜନମତ ଜାଗରଣ, କେତେଜଣ ନେତୃବୃନ୍ଦଙ୍କର କର୍ମ ଆରମ୍ଭ ଆବଶ୍ୟକ । ପ୍ରସ୍ତାବିତ ସୂଚନାରେ ଆଧୁନିକଭାରତର ଗୌରବ ରକ୍ଷା କରିବାର ଅଦମ୍ୟ ଶକ୍ତି ଅଛି । *

କିନ୍ତୁ ସର୍ବପ୍ରଥମେ ଏଭଳି ଗୋଟିଏ ଅନୁଷ୍ଠାନର ଉଦ୍ଦେଶ୍ୟ ନିର୍ମଳ ପ୍ରାଞ୍ଜଳ ଭାବରେ ଏଦେଶର ସୁଧୀବର୍ଗଙ୍କ ଦ୍ୱାରା ଅବଧାରିତ ହେବା ଆବଶ୍ୟକ । ସଂକ୍ଷେପରେ କହିଲେ ସେ ଉଦ୍ଦେଶ୍ୟ ଦେଶର ଆଧୁନିକ କଳାସାହିତ୍ୟର ଚର୍ଚ୍ଚା ସଙ୍ଗେ ଇତିହାସ, ଦର୍ଶନ, ଧର୍ମନୀତି, ରାଜନୀତି, ସମାଜ-ନୀତି, ଅର୍ଥନୀତି, ପ୍ରାଣିବିଜ୍ଞାନ, ଭାଷାବିଜ୍ଞାନ ଇତ୍ୟାଦି ବିଭିନ୍ନ ସାମାଜିକ, ନୈତିକ ଶିକ୍ଷାର ପ୍ରସାର । ଏ ବିଭିନ୍ନ ବିଷୟରୁ ଗୋଟିଏ ଗୋଟିଏ ଚର୍ଚ୍ଚା କରିବା ପାଇଁ ଏ ଦେଶରେ ଏପରିକି ଭିନ୍ନ ଭିନ୍ନ ଅନୁଷ୍ଠାନ ଅଛି । ତାହା ବୋଲି ସବୁଗୁଡିକର ସମନ୍ୱୟ ଆଣି ସାଧାରଣ ବୁଦ୍ଧିବୃତ୍ତିର ସ୍ଫୁରଣ ପାଇଁ

* The Indian P.E.N. (Leading Editorial), Ist March, 1936

ଗୋଟିଏ ସର୍ବସାଧାରଣ ଅନୁଷ୍ଠାନ ଆବଶ୍ୟକତା ିନ ଥାଇ ନାହିଁ । ଶିକ୍ଷାର ବିଭିନ୍ନ ବିଭଗରେ ସହଯୋଗ ସ୍ଥାପନ କରି ସମୂହ ଦୃଷ୍ଟି ସଙ୍ଗଠନ କରିବା ପାଇଁ ପରିଷଦ୍ ଉତ୍ସାହ ଦେବ ପୁଣି ସେପରି ପରିଷଦ୍‌ର କେତେକ ସୁବିଧା ରହେ । ପୁଣି ବିଭିନ୍ନ ଦେଶର ବିଭିନ୍ନ ପରିଷଦ୍‌ର ସମ୍ମେଳନରେ ସଭ୍ୟ ଜଗତ୍‌ର କେତେକ ମୌଳିକ ସମସ୍ୟାର ଆଲୋଚନା ପାଇଁ ଗୋଟିଏ ଆନ୍ତର୍ଜାତିକ ପରିଷଦ୍‌ର ସାମୟିକ ବୈଠକ ଅନୁଷ୍ଠିତ କରଯାଇପାରେ । ଏଭଳି ପରିଷଦ୍ ଲୋକ-ଶାସକଙ୍କୁ ଅନେକ ସମୟରେ ନିରପେକ୍ଷପାତ ଉପଦେଶ ଦେବାପାଇଁ ସମର୍ଥ ହୁଏ ; ଭରତରେ ଏବେ ସେପରି ଅନୁଷ୍ଠାନର ଅଭବରୁ ଅନ୍ୟାନ୍ୟ ଦେଶ ସଙ୍ଗେ ସେ କାନ୍ଧରେ କାନ୍ଧ ପକାଇପାରୁ ନାହିଁ; ଭରତୀୟ ଚିନ୍ତା କ୍ଷୁଣ୍ଣ ହେଉଛି । ସେଥିପାଇଁ ଦେଶବ୍ୟାପୀ ସର୍ବସ୍ପୃଷ୍ଟ ଏଭଳି ଅନୁଷ୍ଠାନର ସ୍ଥାପନ କେତେକ କର୍ମୀଙ୍କ ସାଦର ସାଧନା ହେବା ବାଞ୍ଛନୀୟ । ତହିଁରେ ବ୍ରିଟିଶ ଭରତ ଓ ଦେଶୀୟ ଭରତ (Indian India) ଏକାପରି ଯୋଗ ଦେଇ-ପାରିବେ । ଅନ୍ୟାନ୍ୟ ଦେଶରେ ଏପ୍ରକାର ଅନୁଷ୍ଠାନର ମୁଖ୍ୟ କାର୍ଯ୍ୟ ମଧ୍ୟରେ ବିଭିନ୍ନ ବିଭଗର ସାଧାରଣ ମୂଲ୍ୟବାନ୍ ସାରସଂଗ୍ରହ ବିବରଣୀ ପ୍ରକାଶ, ପୁସ୍ତକ-ପ୍ରକାଶ, ଉଚ୍ଚଦରର ସାହିତ୍ୟିକ ଉଦ୍ୟମର ପୃଷ୍ଠପୋଷକତା, ଗବେଷଣାର ଉତ୍ସାହ ପାଇଁ ପାଣ୍ଡିସଂଗ୍ରହ ଓ ପରିଗ୍ରହଜନ, ବିଖ୍ୟାତ ପଣ୍ଡିତଙ୍କ ଦ୍ୱାର ବକ୍ତୃତା ଓ ସଭ-ସମିତିର ଆୟୋଜନ, ଜାତୀୟ ଉତ୍ସବ ପାଳନ, ବୈଜ୍ଞାନିକ ଆନ୍ଦୋଳନର ସ୍ଥାୟିତ୍ୱ ଓ ପ୍ରସିଦ୍ଧି ଆନୟନ, ଇତ୍ୟାଦି ଗଣିତ ହୋଇପାରେ । ବର୍ତ୍ତମାନ ଆମ ଦେଶରେ ବିଭିନ୍ନ ବିଷୟରେ ଅନେକ ପୁସ୍ତକ ବ୍ୟକ୍ତିଗତ ଭବରେ ଇତସ୍ତତଃ ପ୍ରକାଶ ପାଉଛି । କିନ୍ତୁ ଧାରବାହିକ, ଶୃଙ୍ଖଳିତ ନ ହେବାରୁ ଦେଶ-ବିଦେଶରେ ତହିଁର ପରିଚୟ ମିଳୁ ନାହିଁ । ସେଗୁଡ଼ିକ ବିକ୍ରି ହୋଇପାରୁ ନାହିଁ । ପରିଷଦ୍ ନିର୍ଦ୍ଦିଷ୍ଟ ସମୟରେ ତହିଁର ଗୋଟିଏ ଗୋଟିଏ ସାମୁଦାୟିକ ତାଲିକା (Bibliography) ପ୍ରକାଶ ଓ ପ୍ରଚ୍ରର କରି ଏ ଦିଗରେ ବହୁତ କାର୍ଯ୍ୟ କରିପାରେ । ପରିଷଦ୍‌କୁ ଏ କାର୍ଯ୍ୟ ପାଇଁ ସରକାରଙ୍କଠାରୁ ନିର୍ଦ୍ଦିଷ୍ଟ ଅର୍ଥସାହାଯ୍ୟ (Subvention) ମିଳିବା ବାଞ୍ଛନୀୟ । ପରିଷଦ୍‌ର ଗଠନ ପ୍ରକାର ଉପରେ ବିଶଦ ଆଲୋଚନା କରିବାକୁ ହେବ । ସାଧାରଣ ନିୟମ, ଏହି ପରିଷଦ୍‌ରେ କେବଳ ଅଳ୍ପ ନିର୍ଦ୍ଦିଷ୍ଟ ସଂଖ୍ୟକ ସଭ୍ୟ ରହିବେ । ପୁଣି ସେମାନେ କୌଣସି ଜାତି, ଧର୍ମ, କୁଳ, ସମ୍ପ୍ରଦାୟ ଇତ୍ୟାଦିର ପ୍ରତିନିଧି ଭବରେ ନୁହେଁ, ପାଣ୍ଡିତ୍ୟ-ଉତ୍କର୍ଷ ଭିତ୍ତି ଉପରେ ରହିବେ । ଅଳ୍ପ ସମୟ ପୂର୍ବେ ପ୍ରତିଷ୍ଠିତ ଭରତୀୟ ବିଜ୍ଞାନ ଅନୁଷ୍ଠାନ (Indian Institute of Science) ରେ ମଧ୍ୟ ଏହି ନିୟମ ରକ୍ଷା କରଯାଇଛି । ●

---

● The New Indian Antiquary, Jan. 1939

ପରିଷଦର ଆବଶ୍ୟକତା ଆଉ ଗୋଟିଏ ଦିଗରୁ କ୍ଳେଶଜନକ ଭାବରେ ଆମର ଉପଲବ୍ଧ ହୁଏ । ରାଜନୀତିକ ସ୍ୱାଧୀନତା ପାଇଁ କେତେବର୍ଷ ହେଲା ଏ ଦେଶରେ ତୁମୁଳ ଆନ୍ଦୋଳନ ଚାଲିଛି । ତହିଁ ସଙ୍ଗେ ପୁଣି ଆମ ଭିତରେ ଭେଦ, ହିଂସା, ସନ୍ଦେହର ମାରତ୍ମକ ଦୃଶ୍ୟ ଦେଖାଯାଉଛି, ପାକିସ୍ଥାନ, ଦ୍ରାବିଡସ୍ଥାନ, ହିନ୍ଦୁସ୍ଥାନ ଇତ୍ୟାଦି ବିଭିନ୍ନ ସ୍ଥାନର କଳ୍ପନା କରାଯାଉଛି । ଅଧିକ କ୍ଷୋଭର ବିଷୟ, ଏ ଅନ୍ତର୍ଘାତୀ ଭାବ କେବଳ ରାଜନୀତି-ତରୁମୂଳକୁ କର୍ତ୍ତନ କରୁନାହିଁ, ଲୋକପ୍ରାଣର ମୈତ୍ରୀ ସଦିଚ୍ଛା ପ୍ରବୃତ୍ତିକୁ ବିଷମୂର୍ଚ୍ଛିତ କରୁଛି, ଐଶ୍ୱର୍ଯ୍ୟଶାଳୀ ଭାରତୀୟ ସଂସ୍କୃତିର ଭିତ୍ତି ସୌନ୍ଦର୍ଯ୍ୟବୋଧକୁ ଉତ୍ପାଟନ କରୁଛି, ସମ୍ପ୍ରଦାୟବାଦ, ପ୍ରଦେଶବାଦ, ପୁଞ୍ଜିବାଦ ଇତ୍ୟାଦି ସହସ୍ରବାଦ (isms) ନଗ୍ନ ତାଣ୍ଡବ ଚିତ୍ର ଆଜି ଆମ ଆଖି ଆଗରେ ଫିଟା-ଯାଉଛି । ଏସବୁରୁ ତ୍ରାହି ପାଇବା ପାଇଁ ଜ୍ଞାନ କଥା ଦୂରେ ଥାଉ, ଅନ୍ତତଃ ଆମର କଳାଭାବ (Artistic sense) ଜାଗ୍ରତ ନହେଲେ ଆଉ ରକ୍ଷା ନାହିଁ । ଜୀବନର ରସମୟ ଦୃଷ୍ଟିରୁ ବଞ୍ଚିତ ହେଲେ ଜାତିର ଆଉ ସତ୍ତା ରହିବ ନାହିଁ । ମହତ୍ ଆକାଂକ୍ଷାକୁ ଏପରି ଦୁର୍ବୃତ୍ତର କଶାଘାତରୁ ଉଦ୍ଧାର ନ କଲେ ଆମକୁ ଲୋକହସା, ଭଗାରିହସା ହେବାକୁ ପଡ଼ିବ । ଏସବୁ ଦୃଷ୍ଟିରେ ସାହିତ୍ୟର ବିଭବନରୁ ପରିଷଦ ଗଠନର କଳ୍ପନା ଅତି ଅହିତକର । ତହିଁର ଗଠନ ଫଳରେ ଆମ ଦେଶର ସବୁ ସୃଷ୍ଟିକାଳେ ମେଧାବୀ ପରସ୍ପର ସୌହାର୍ଦ୍ଦ୍ୟର ଅନୁକୂଳ ବାତାବରଣ ଭିତରେ ମିଳନର ସୁଯୋଗ ତ ପାଇବେ, ସାହିତ୍ୟ ସ୍ରୋତ ଏକ ଦିଗରେ ବୁହାହୋଇ ଜାତୀୟ ସଂଘବଦ୍ଧତା ସ୍ଥାପନ କରିବ । ସ୍ଥାନୀୟ ଭେଦ ନିର୍ବିଶେଷରେ ସାହିତ୍ୟ ଜାତିର ଅମୂଲ୍ୟ ସମ୍ପଦ ହେବ । କହିବା ଅନାବଶ୍ୟକ, ପରିଷଦ ଥାଉ ବା ନ ଥାଉ, ପ୍ରତିଭାବାନ୍ କଳାବିତ୍ ପରମ ଚେତନା ଘେନି ସବୁ କାଳ, ସବୁ ଦେଶ ପାଇଁ ଅମର ପଦାର୍ଥ ସୃଷ୍ଟି କରିଯିବ । ସ୍ୱର୍ଗୀୟ ଆଲୋକରେ ତାର ହୃଦୟ କନ୍ଦର ଚିର ଉଦ୍ଭାସିତ ରହିବ; କିନ୍ତୁ ବାକୀ ସଂଖ୍ୟାଗରିଷ୍ଠ ସାଧାରଣ ସାହିତ୍ୟିକ କର୍ମୀ, ଯେଉଁମାନେ ସତ୍ୟ ଜାଣିବାର ପୁଣି ତାର ରୁଚିକର ପ୍ରକାଶ କରିବାରେ ଅନବରତ ଅଧ୍ୟବସାୟ କରନ୍ତି, ଯେଉଁମାନଙ୍କୁ ଆଦର୍ଶ ଅନୁପାତରେ ସମୁଚିତ ମୂଲ୍ୟ ଦେବାକୁ ପଡେ, ଯେଉଁମାନେ ଦୁର୍ଯୋଗବଶରୁ ମ୍ରିୟମାଣ ହୁଅନ୍ତି, ସେମାନଙ୍କ ପକ୍ଷରେ ମିଳିମିଶି ବଢ଼ିବାପାଇଁ, ପରସ୍ପର ସାହାଯ୍ୟ ସହଯୋଗ ପାଇଁ, ଶ୍ରମକାତର ମାନବିକତାକୁ ଉଦ୍ଦୀପନାର ସନ୍ଦେଶ ଦେବା ପାଇଁ ଏପରି ଗୋଟିଏ ଅନୁଷ୍ଠାନ ନିତାନ୍ତ ଆବଶ୍ୟକ । ଗତ ଶହେବର୍ଷ ହେଲା ଭାରତର ସବୁ ଭାଷାରେ ସ୍ୱତଃସୂଚିତ ସାଂସ୍କୃତିକ ସଂଯୋଗର ପର୍ଯ୍ୟବେକ୍ଷଣ ସଂଗ୍ରହ ପାଇଁ ଏପରି ଅନୁଷ୍ଠାନ କାର୍ଯ୍ୟକାରୀ । ପୁଣି ଏବେ ସାହିତ୍ୟ କ୍ଷେତ୍ରରେ ଅନାହୂତ ଭାବରେ ଆଉ ଗୋଟିଏ ବିପଦ ପହଞ୍ଚିଛି । ରାଜନୀତି ସାହିତ୍ୟ ଉପରେ ଜବରଦସ୍ତ କରିବାକୁ ଆରମ୍ଭ କରିଛି ।

ରାଜନୀତିକଙ୍କ ଆଦେଶ ଅନୁଯାୟୀ ସାହିତ୍ୟ ଲେଖାଯିବାର ଉଦାହରଣ ଦେଖାଯାଉଛି । ଲାଭ ନଷ୍ଟି ବିଚାର ·(Utillitarian considerations)ର କଠିନ ପୀଡିତ କରସ୍ପର୍ଶରେ ସାହିତ୍ୟର ମୃଦୁ ମଞ୍ଜୁଳ ଅଙ୍ଗଲତା ଝାଉଁଳିଯାଉଛି । ସୋଭିଏଟ୍ ରୁଷିଆରେ ନିର୍ଦ୍ଦିଷ୍ଟ ଲେଖକଙ୍କୁ ନିର୍ଦ୍ଦିଷ୍ଟ ବିଷୟ ଦିଆଯିବାର ମଧ୍ୟ ଶୁଣାଯାଉଛି । ସେ ଯାହାହେଉ, ଆମ ଦେଶରେ ସାହିତ୍ୟର ଲୋକ-ମଙ୍ଗଳକାରକ ପରମ୍ପରା ଅନ୍ତର୍ନିହିତ । ସେ ପରମ୍ପରାକୁ ଛିନ୍ନ କରି ଆମ ଭିତରେ ନବପ୍ରଚାରିତ ସମାଜବାଦ ଯଦି କୌଣସି ପୂର୍ବପୋଷିତ ମତର ଦୃଢ଼ତା ପାଇଁ ସାହିତ୍ୟକୁ କୌଣସି ସଙ୍କୀର୍ଣ୍ଣ ଉଦ୍ଦେଶ୍ୟ ଆଡକୁ ପରିଚାଳନ କରେ, ତେବେ ଅନିଷ୍ଟ ହେବ । ତଥାକଥିତ ବସ୍ତୁତନ୍ତ୍ର ରାଜନୀତି ମଧ୍ୟ କେବଳ ଯାନ୍ତ୍ରିକ ଉପାୟଦ୍ୱାରା ସଫଳତା ଲାଭ କରିବ ନାହିଁ । ଅନ୍ୟ ପକ୍ଷରେ ସାହିତ୍ୟ ମଧ୍ୟ ଏଠାରେ ସାବଧାନ ହେବାର କଥା । ସାହିତ୍ୟ ନିଜର ସ୍ୱାତନ୍ତ୍ର୍ୟ ରଖୁ, ତଥାପି ଯୁଗୋପଯୋଗୀ ହେଉ, ଦୈନନ୍ଦିନ ଜୀବନର ଗୁରୁତର ସମସ୍ୟାଗୁଡ଼ିକର ସମାଧାନରେ ଦୃଷ୍ଟି ଦେଉ । ସମ୍ପ୍ରଦାୟ-ଗୋଷ୍ଠୀଭେଦ-ବ୍ୟାଧିର ଏକମାତ୍ର ସ୍ଥାୟୀ ପ୍ରତିକାର ବିଭିନ୍ନ ଦଳର ସାଂସ୍କୃତିକ ପରମ୍ପରାର ଯୋଗସୂତ୍ରଗୁଡ଼ିକୁ ମିଳାଇ, ପରସ୍ପର ବିଶ୍ୱାସର ଭିତ୍ତି ଉପରେ ବିଶ୍ୱମନୋରମ ହର୍ମ୍ୟ ତୋଳିବାରେ ଏ ପରିଷଦ୍ ସେହି ସ୍ଥାନ ପୂରଣ କରିବ । *

ଭାରତର ଜାତୀୟ ଜାଗରଣର ପ୍ରତୀକ, ଦେଶବ୍ୟାପୀ ବିଭିନ୍ନ ସାଂସ୍କୃତିକ ଆନ୍ଦୋଳନର ଶୃଙ୍ଖଳାବଦ୍ଧ କେନ୍ଦ୍ର ଏହି ପରିଷଦ୍ ହେବ । ଭାରତୀୟ କଳା-ସାହିତ୍ୟ ଏବେ ପରିବର୍ତ୍ତନର ସ୍ତୁଅ (State of transition ରେ ରହୁଛି, ପୁରାତନର ନିଗଡ଼ ବନ୍ଧନରୁ ମୁକ୍ତ ହେବାକୁ ଚେଷ୍ଟା କରୁଛି; ଅଥଚ ନବୀନର ମାଦକତାରେ ବେଳେବେଳେ ଟଳମଳ ହୋଇଯାଉଛି । ତାକୁ ସୁପଥଗ୍ରସ୍ତ, ସଙ୍ଘାବଦ୍ଧ ଏ ପରିଷଦ କରିବ । ପୁଣି ପରିଷଦର କେନ୍ଦ୍ର ସହିତ ଶାଖାଗୁଡ଼ିକର ସହଯୋଗ ପ୍ରଥମେ ଆବଶ୍ୟକ । ବର୍ତ୍ତମାନର ଭାରତୀୟ ପି. ଇ. ଏନ୍. କେନ୍ଦ୍ର ଏଭଳି ଗୋଟିଏ ଅନୁଷ୍ଠାନର ଉପକ୍ରମ । ତହିଁରେ କଳା-ସାହିତ୍ୟରେ ଖ୍ୟାତନାମା ପୁରୁଷ ଓ ସ୍ତ୍ରୀ ଅଛନ୍ତି । ଉପଯୁକ୍ତ ଉତ୍ସାହ ଓ ପୃଷ୍ଠପୋଷକତା ପାଇଲେ ଏହାକୁ ପ୍ରସ୍ତାବିତ ପରିଷଦରେ ପରିଣତ କରିବାରେ ଅସୁବିଧା ରହିବ ନାହିଁ । ଆବଶ୍ୟକ ଧନବଳ, ଜନବଳ ନ ଥାଇ ନୂଆ ନୂଆ ଅନୁଷ୍ଠାନ ନାମକୁ ଗଢ଼ିବା ଅପେକ୍ଷା ଅବସ୍ଥିତ ଅନୁଷ୍ଠାନଦ୍ୱାରା କାର୍ଯ୍ୟସାଧନ କରାଇନେବା ବିବେକର ପରିଚୟ । ●

---

* The Modern Review, July, 1936

● The Triveni, July-Aug. 1933, Jan—Feb 1940

ରାଜନୀତି ଭାଗ ବାଣ୍ଟେ; ସଂସ୍କୃତି ଏକତା ଆଣେ । ଭାରତରେ ଗୋଟାଏ ସର୍ବସାଧାରଣ ଧର୍ମ ପ୍ରତିଷ୍ଠିତ କରାଯାଇ ନ ପାରେ; କିନ୍ତୁ ଗୋଟାଏ ସର୍ବସାଧାରଣ ସଂସ୍କୃତି ପ୍ରତିଷ୍ଠିତ କରାଯାଇପାରେ । ସେହି ଭିତ୍ତିରେ ପ୍ରତିଷ୍ଠିତ ଏକତାର ମୂଲ୍ୟ ଅଛି, ବହୁତ ପ୍ରୟୋଜନ ଅଛି । ସେ ଏକତା ଆଣିବାରେ ପରିଷଦ୍ ସହାୟକ ହେବ । ●

ଏଥିପାଇଁ କିନ୍ତୁ ଗୋଟିଏ ସର୍ବସାଧାରଣ ମଞ୍ଚ (Common platform) ତୋଳିବା ପାଇଁ, ସୁଚିନ୍ତିତ ମାର୍ଗ ଫିଟାଇବା ପାଇଁ କୌଣସି ଗୁରୁତର ଉଦ୍ୟମ ଏପର୍ଯ୍ୟନ୍ତ ହୋଇ ନାହିଁ । ସେପରି ନ କରିବାର କାରଣ କିଛି ନାହିଁ । ଆମ ଦେଶର ଐତିହାସିକ କ୍ରମବିକାଶ ଦୃଷ୍ଟିରେ କହିହେବ ନାହିଁ । ଭାରତୀୟ ସଂସ୍କୃତି କେବଳ ବ୍ରାହ୍ମଣ ବା ବୌଦ୍ଧ ବା ହିନ୍ଦୁ ବା ଇସ୍‌ଲାମିକ୍ ବା ୟୁରୋପିଅନ୍ ସଂସ୍କୃତି । ତାହା ଏସବୁ ବିଭିନ୍ନ ସଂସ୍କୃତିର ସମ୍ମିଶ୍ରଣ । ଏବେ ଆମ ଭିତରେ ରାଜନୈତିକ, ସାମାଜିକ, ଜାତୀୟ ଏକତା ପାଇଁ ବିପୁଳ ପ୍ରୟାସ କରାହେଉଛି । ଠିକ୍ ସେହି ଆବଶ୍ୟକତା ଦୃଷ୍ଟିରେ ତାହାର ଅଗ୍ରଦୂତ ଏ ଦେଶର ବିଭିନ୍ନ ଭାବ-ଚିନ୍ତାଧାରାର ସାଂସ୍କୃତିକ ଏକତା ଆଣିବା ପାଇଁ ମଧ୍ୟ ପ୍ରୟାସ ଲୋଡ଼ା । ଏ ପ୍ରୟାସ ପୁଣି କ୍ଷଣିକ ଉତ୍ତେଜନା-ପ୍ରସୂତ ନୁହେ , ଅଖଣ୍ଡ ହେବାର ହେବ । ଆକବରଙ୍କ ଶାସନରେ ଏପରି ଏକତା ଆଣିବା ପାଇଁ କିପରି କେତେ ଜଣ ପ୍ରବୀଣ ହିନ୍ଦୁ ଓ ମୁସଲିମ୍ ପଣ୍ଡିତ ପ୍ରାଣପଣେ ଚେଷ୍ଟା କରିଥିଲେ, ଇତିହାସ ତାହାର ଜ୍ୱଳନ୍ତ ନିଦର୍ଶନ । ଫଇଜି, ଅବୁଲ୍‌ଫଜଲ୍, ନବରନ୍ଦୁ ସଂସ୍କୃତ ସାହିତ୍ୟର ଅନେକ ଅଂଶ ପାରସ୍ୟ ଭାଷାରେ ଅନୁବାଦ କରିଥିଲେ; ରାୟ ବିହାରୀମଲ୍ଲ ଆରବ୍ୟ-ପାରସ୍ୟ ସାହିତ୍ୟରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରି ଇତିହାସ କବିତାର କଳେବରକୁ ପୁଷ୍ଟ କରିଥିଲେ । ଏସବୁ ସ୍ମରଣୀୟ । ଫଳରେ ସଂସ୍କୃତିର ଆଲୋକବର୍ତ୍ତିକା ଜଳିଉଠିଲା ସତ୍ୟ; କିନ୍ତୁ ପରେ ପରେ ନାନା କାରଣରୁ ତାହା ଲିଭିଗଲା । ଅଷ୍ଟାଦଶ ଶତାବ୍ଦୀର ପ୍ରଥମଭାଗ ପର୍ଯ୍ୟନ୍ତ ଏ ଦେଶକୁ ଅନ୍ଧକାର ଆଚ୍ଛାଦନ କରି ରଖିଲା । ତହୁଁ ପୁଣି ନବଯୁଗର ଜାଗରଣ ଆରମ୍ଭ; ନବଚେତନାରେ ଆଜି ଏ ଦେଶ ଆନ୍ଦୋଳିତ । (୧)

---

● Sir Tej Bahadur Sapru.

(୧) Sir Wahad Hossain.

ଭାରତ ଗୋଟିଏ ବିଶାଳ ଭୂଖଣ୍ଡ । ଲଳିତ କଳା ସୃଷ୍ଟିକାରକ ସାହିତ୍ୟର ସମୃଦ୍ଧି ପାଇଁ ଏ ଦେଶରେ ଏବେ କେତୋଟି ସୁସ୍ଥ ଉଦ୍ୟମ ଦେଖାଯାଉଛି । କିନ୍ତୁ ଭୌଗୋଳିକ ଦୂରତା, ପ୍ରାଦେଶିକ ଭାଷାରେ ଅନଭିଜ୍ଞତା ଯୋଗୁଁ ଏ ଉଦ୍ୟମ-ଗୁଡିକ ସ୍ୱତନ୍ତ୍ର ଭାବରେ ପରସ୍ପର ଅଜଣାରେ କରାଯାଉଛି । ଏଥିଦ୍ୱାରା ସ୍ଥାନୀୟ ପରମ୍ପରା ରକ୍ଷା କରାଯାଉଛି ସତ୍ୟ; କିନ୍ତୁ ସବୁ ଗୋଟିଏ ସର୍ବସାଧାରଣ ଭାରତୀୟ ସଂସ୍କୃତିର ବିଭିନ୍ନ ସମସାମୟିକ ପ୍ରକାଶ, ଏ କଥା ଉପଲବ୍‌ଧ କରାଯାଉ ନାହିଁ । ଏଣୁ ସେଗୁଡ଼ିକ ମଧ୍ୟରେ ପରସ୍ପର ସହାନୁଭୂତିମୂଳକ ସମ୍ବନ୍ଧ ରଖା ନ ଗଲେ କୃତିତ୍ୱର ଚୂଡାନ୍ତ ଲବ୍‌ଧ ହୋଇପାରିବ ନାହିଁ । ଭାରତୀୟମାନଙ୍କେ ଅସଭ୍ୟ ବର୍ବର, ଏ କଥା ଏବେ ମଧ୍ୟ କହିବାକୁ ସ୍ୱାର୍ଥାନ୍ଧ କୁଚକ୍ରୀ ଅଛନ୍ତି । ଏଣୁ ଠିକ୍ ଏତିକିବେଳେ ଜାତି ହିସାବରେ ତାର ସମଗ୍ର ସାଂସ୍କୃତିକ ଜୀବନର ବଳ ଓ ଗୁଣ ପ୍ରତ୍ୟକ୍ଷ ଓ ଉପସ୍ଥାପନ କରିବା ତାହା ପକ୍ଷରେ ଜୀବନ-ମରଣ ସମସ୍ୟା । ଏସିୟାମାଇନଠାରୁ ଜାପାନ, କେନ୍ଦ୍ର ଏସିୟାଠାରୁ ଜାଭା ପର୍ଯ୍ୟନ୍ତ ବହୁ ଶତାବ୍ଦୀବ୍ୟାପୀ ତାହାର ଯେଉଁ ସାଂସ୍କୃତିକ ସାମ୍ରାଜ୍ୟ ବିସ୍ତାର ଲାଭ କରିଥିଲା, ତାର ଗୌରବ, ପ୍ରତିପତ୍ତି ଓ ଶକ୍ତି ତାକୁ ସଞ୍ଚୟ କରିବାକୁ ହେବ । ପୁଣି ମହେଞ୍ଜୋଦାର, ହରପ୍‌ପା ଇତ୍ୟାଦି ପ୍ରତ୍ନତତ୍ତ୍ୱର ଗବେଷଣା ଫଳରେ ସେହି ସାମ୍ରାଜ୍ୟର ଦେଶକାଳର ସୀମାରେଖା ବହୁତ ପରିମାଣରେ ବିସ୍ତୃତ ହୋଇଛି । ଅବଶ୍ୟ ଭାରତ ଏ ଦିଗରେ କେତେ ଦିନ ହେଲା ଗତି କରୁଛି; କିନ୍ତୁ ଏ ଗତି ଆହୁରି ସ୍ଫୂର୍ତ୍ତି, ଚଞ୍ଚଳ ହେବା ଆବଶ୍ୟକ । ପାଶ୍ଚାତ୍ୟ ସାହିତ୍ୟ କଳାର ଅନ୍ଧ ଅନୁକରଣରେ ଭାରତୀୟ ଶିକ୍ଷିତଙ୍କ ରୁଚିବିକୃତି ଶୀଘ୍ର ଘୁଞ୍ଚାଇବାକୁ ହେବ (୨) ।

ଏ ପରିଷଦ୍ ବୁଦ୍ଧିବିଗ୍ରହର ଶ୍ରେଷ୍ଠ ସଙ୍ଘ ହେବା ଉଚିତ । ଅନ୍ୟାନ୍ୟ ଦେଶରେ ସେପରି ହୋଇଛି, ହେବାର କଥା । କିନ୍ତୁ ଏ ଦେଶରେ ବୋଧହୁଏ ସେ ଦାୟିତ୍ୱବୋଧ ହୋଇ ନାହିଁ । ଭାରତରେ କେତୋଟି ପ୍ରାଦେଶିକ ସାହିତ୍ୟଚର୍ଚ୍ଚାର କେନ୍ଦ୍ର ଦେଖାଯାଉଛି । କିନ୍ତୁ ଉନ୍ନତ ହେବାର ପ୍ରକୃତି ସେମାନଙ୍କଠାରେ ବିରଳ ।

— ୨ —

ଭାରତର ପ୍ରାଦେଶିକ ସାହିତ୍ୟମାନଙ୍କରେ ଏବେ ଚଞ୍ଚଳତା ଦେଖାଯାଉ-ଥିଲେ ମଧ୍ୟ ବ୍ୟଷ୍ଟି ସମଷ୍ଟି ଭାବରେ ଜଗତ ସମଷ୍ଟିରେ ପରିଚୟ ଦେବାପାଇଁ ସେମାନଙ୍କ ମଧ୍ୟରେ ଆନ୍ତରିକ ସହଯୋଗ ଦେଖାଯାଉନାହିଁ । ଆଜିକାଲି

(୨) Dr. I. H. Cousins.

"ଆନ୍ତର୍ଜାତିକ ସହଯୋଗ" କଥାଟା ବଡ ସହଜରେ ଆମ ତୁଣ୍ଡରୁ ବାହାରୁଛି । କିନ୍ତୁ ତାକୁ କାର୍ଯ୍ୟରେ ଫୁଟାଇବା ପାଇଁ ଜାତୀୟ ଉପକରଣର ଯେଉଁ ଯୋଗାଡ଼ ଲୋଡା ତହିଁରେ ଆମେ ଅବହେଳା ଦେଖାଉଛୁଁ । ଆମର ବିଭିନ୍ନ ପ୍ରାଦେଶିକ ସାହିତ୍ୟ ବିଭିନ୍ନ ଛନ୍ଦ, ପ୍ରକରଣ, ପରିପାର୍ଶ୍ୱ ମଧ୍ୟରେ ଗତି କରୁଅଛି । ପ୍ରତ୍ୟେକର ସେସବୁ ବୈଶିଷ୍ଟ୍ୟ ରହୁ । ମାତ୍ର ଜାତୀୟ ସଂସ୍କୃତି ଏତିକିରେ ଗଢ଼ାହୋଇପାରିବ ନାହିଁ । ତାହା ପ୍ରାଦେଶିକ ସଂସ୍କୃତିରୁ ଭିନ୍ନ । ତାକୁ ଗଢ଼ିବାକୁ ଗଲେ କେତେଜଣ ଅନୁଭବୀ ଦକ୍ଷ-ସାହିତ୍ୟ ନାୟକଙ୍କ ସାହାଯ୍ୟ, ପରାମର୍ଶ ନିତାନ୍ତ ଆବଶ୍ୟକ । ଗୋଟିଏ ପରିଷଦ ବିନା ଅନ୍ୟାନ୍ୟ ସଭ୍ୟମାନଙ୍କ ସଂସ୍କୃତି ସଙ୍ଗେ ସଂସ୍ରବ ରଖିବା ପାଇଁ ଭାରତ ପକ୍ଷରେ କେବେ ସମ୍ଭବ ହୋଇ ନପାରେ । ଆମ ତରୁଣ ଲେଖକଙ୍କ ଉପଯୁକ୍ତ ଲେଖାପ୍ରତି ଜଗତର ଦୃଷ୍ଟି ଆକର୍ଷଣ କରିବାକୁ ହେଲେ ପ୍ରଥମେ ସେଗୁଡ଼ିକ ଏହିଭଳି ଗୋଟିଏ ପରିଷଦର ଗ୍ରାହ୍ୟ, ଆଦରଣୀୟ ହେବା ଉଚିତ ।

ଯେକୌଣସି ଲେଖକ, ଯେକୌଣସି ଭାଷାରେ ଲେଖନ୍ତୁ, ତାହା ସାରା ଜଗତର ଭାଷା ହୋଇପାରିବ ନାହିଁ, ଏହା ସ୍ୱାଭାବିକ । କିନ୍ତୁ ଏହା ବୋଲି ତାଙ୍କର ଭାବ କେବଳ ସେହି ଭାଷାଭାଷୀଙ୍କ ମଧ୍ୟରେ ସୀମାବଦ୍ଧ ହୋଇ ରହିବ ଏହା ଅନୁଚିତ । (୧) ବର୍ତ୍ତମାନ ଏହାହିଁ ହେଉଛି । ଭୌଗୋଳିକ, ଭାଷାଗତ, ପ୍ରାଦେଶିକ, ପାରିପାର୍ଶ୍ୱିକ ଅବରୁଦ୍ଧି ଆଜି ଆମ ତରୁଣ ଲେଖକଙ୍କ ମନରେ ବେଶି କଷ୍ଟ ଦେଉ ଅଛି; ସେମାନଙ୍କ ଆଶା ଭରସାର କେନ୍ଦ୍ର ରୂପେ, ନିର୍ମଳ ସାହିତ୍ୟ ରୁଚି ସଂସ୍ଥାପରେ ଅଗ୍ରଦୂତ ରୂପେ ଏସବୁ ଅବରୁଦ୍ଧ ପରିଷଦ କେବଳ ଘୁଞ୍ଚାଇ ପାରିବ । ଭାରତରେ ସ୍ଫୁଟୋନୋନ୍ମୁଖ ସାହିତ୍ୟ-କଳିକାର ବିକଚ ସୌରଭ ପ୍ରସାରଇବା ପାଇଁ ପରିଷଦହିଁ ପ୍ରେରଣା ଦେଇପାରେ । କୁହାହେଉଛି, ଭାରତ ବର୍ତ୍ତମାନ ଗୋଟିଏ ଜାଗୃତି (Renaissance) ମଧ୍ୟରେ ଗ୍ରୁଲିଛି । କିନ୍ତୁ ଏ ଜାଗୃତି ଅଦ୍ୟାପି ତରଳ ଭାବରେ ଦେଖାଯାଇଛି । ତା'ର ରୂପ, ରେଖ, ଆକୃତି, ଅଭିପ୍ରାୟ ପୂର୍ଣ୍ଣ ପ୍ରକଟିତ ହୋଇ ପାରିବ ନାହିଁ । ଏ ସବୁ ତାକୁ ପରିଷଦ ଅନେକ ଦୂର କରିଦେଇପାରେ । (୨)

ବିଭିନ୍ନ ବିଷୟ ପାଇଁ ବିଭିନ୍ନ ଧରଣର ପରିଷଦ ରହିପାରେ । କୌଣସି ଦେଶରେ ପରିଷଦ ନ ଥାଇପାରେ; କିନ୍ତୁ ତାହା ବୋଲି ସେ ଦେଶର ଉତ୍କୃଷ୍ଟ

---

(୧) Prof. Edward Thompsan—"A letter to India."

(୨) Dr. P. Guha—"Thakurta Triveni."

ସାହିତ୍ୟ-ସଂସଦ ନାହିଁ । ଏପରି ଭାବନା ସମୀଚୀନ ନୁହେ । ବିଲାତରେ ସାହିତ୍ୟ ପରିଷଦ ଗଢ଼ାହେବା ଅଳ୍ପଦିନ କଥା ତଥାପି ସେକସ୍‌ପିୟର, ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଓ କଲ୍‌ରିଜ୍, ବେରେ ଓ ବର୍କ, ସେଲି ଓ କିଟସ, ଡ଼ିକନସ୍ ଓ ଥେକେରଙ୍କ ଭଳି କବି, ନାଟ୍ୟକାର, ସମାଲୋଚକ, ପ୍ରାବନ୍ଧିକ ଓ ଔପନ୍ୟାସିକ ସେ ଦେଶରେ ଜନ୍ମ ଗ୍ରହଣ କରି ଇଂରେଜୀ ସାହିତ୍ୟର ମୁଖ ଉଜ୍ଜ୍ୱଳ କରି ଯାଇଛନ୍ତି ।

ଯୋଗ୍ୟତା ଚିହ୍ନିବା ଆଜିକାଲିର ବହୁଳ ସାହିତ୍ୟିକ ଉପାଦାନ ଯଥୋଚିତ ମୂଲ୍ୟ ନିର୍ଦ୍ଦେଶ କରିବା ପରିଷଦର ପ୍ରଧାନ କାର୍ଯ୍ୟ । ଆଜିକାଲି ଶିକ୍ଷାର ପ୍ରସାର ଆଶାତୀତ । ପୁସ୍ତକ-ପ୍ରକାଶର ସୁବିଧା ବଢ଼ିଛି । ଏଣୁ ସହସ୍ର ସହସ୍ର ପୁସ୍ତକ ପ୍ରକାଶିତ ହେଉଛି । ସେ ସବୁକୁ ବିଶ୍ଳେଷଣ କରି ସାର ସଂଗ୍ରହ କରିବା ସାଧାରଣ ପାଠକଙ୍କ ପକ୍ଷେ ଦୁରୂହ ବ୍ୟାପାର । ତହିଁ ସଙ୍ଗେ ପୁଣି ଭାଷା, ସାହିତ୍ୟ ଭଙ୍ଗୀରେ ବିଭ୍ରାଟ, ଅଶୁଦ୍ଧିର ଆଶଙ୍କା ରହିଛି । ଏହି ବିଭ୍ରାଟ ଅଶୁଦ୍ଧି ଦୂରକରି, ଅଧ୍ୟବସାୟ ସହକାରେ ଭାଷା-ସାହିତ୍ୟକୁ ନିର୍ମଳ, ପ୍ରାଣବନ୍ତ, ବିଭିନ୍ନ କଳା ବିଜ୍ଞାନର ଆଧାର କରିବାରେ ସଂକ୍ଷେପରେ କହିଲେ ସାହିତ୍ୟର ଦୋଷଗୁଣ ବାଛି କ୍ଷୀର ନୀର ଭେଦ କରିବାରେ ପରିଷଦ ହଂସପରି ହେବ । ଏଠାରେ ପ୍ରଶ୍ନ ଉଠିପାରେ, ଏହା କରିବା ଲାଗି ଗୋଟିଏ ପରିଷଦର ପ୍ରୟୋଜନ କ'ଣ ? କାଳ ସ୍ରୋତରେ ପ୍ରକୃତ ମୂଲ୍ୟବାନ ଗ୍ରନ୍ଥ ଆପେ ଆପେ ସ୍ଥାୟୀ ହୋଇପାରିବ ନାହିଁକି ? ଲୋକ ସାଧାରଣଙ୍କ ଅନ୍ତର୍ନିହିତ ବିବେଚନା ଏତକ କରିଦେବ ନାହିଁକି ? ଏହା କିନ୍ତୁ ଠିକ୍ ନୁହେଁ । ସବୁ ଯୁଗରେ ଅପକୃଷ୍ଟ ସାହିତ୍ୟ ଏ ଯୁଗରେ ମଧ୍ୟ ଲେଖାଯାଉଛି । କିନ୍ତୁ ଏ ଯୁଗରେ ଅପକୃଷ୍ଟ ସାହିତ୍ୟ ଯେପରି ଉତ୍କୃଷ୍ଟ ସାହିତ୍ୟକୁ ଘୋଡାଇ ପକାଇବାର ବିପଦ ଦେଖାଯାଉଛି । ଏଥି-ପୂର୍ବରୁ ତାହା ଦେଖାଯାଉଥିଲା କି ନାହିଁ ସନ୍ଦେହ । (୩) ଏ ବିପଦ ପରିଷଦ ଘୁଞ୍ଚାଇବାର ସମ୍ଭାବନା ଅଛି । ଜନମତର ମୁଖ୍ୟ ପ୍ରକାଶକ ଭାବରେ ଗୋଟିଏ ପ୍ରତିଭାନ୍ୱିତ ବୁଦ୍ଧିମୂଳକ ସଂସ୍କୃତି ଗଢ଼ିବାରେ ଯେପରି ସୁବିଧା ରହିବ; ଅନ୍ୟ କାହାରି ସେପରି ରହିପାରିବ ନାହିଁ ।

ବର୍ତ୍ତମାନ ଭାରତରେ ବିଭିନ୍ନ ଭାଷା ସାହିତ୍ୟରେ ନାନାଗତ-ସଂଘର୍ଷ ଦେଖାଯାଉଅଛି । ଯଦି ଦଳେ ନରମପନ୍ଥୀ ସାହିତ୍ୟକୁ କେବଳ ନୀତିମୂଳକ କରିବାକୁ ଇଚ୍ଛା କରନ୍ତି, ଆଉଦଳେ ଚରମପନ୍ଥୀ ଅଛନ୍ତି, ଯେଉଁମାନେ ବିଦ୍ରୋହ କଣ୍ଠରେ କହିବାକୁ କୁଣ୍ଠିତ ନୁହନ୍ତି ସାହିତ୍ୟ ଲକ୍ଷ୍ୟ ଆନନ୍ଦ ସୌନ୍ଦର୍ଯ୍ୟ ସୃଷ୍ଟି । (୪) × ×

(୩) Renan.

(୪) G. S. Mahajari—Radio talk.

["ସହକାର" ପତ୍ରିକାର କିୟଦଂଶ ନଷ୍ଟ ହୋଇଯାଇଥିବା ହେତୁ ଏଠାରେ ସେସବୁ ସଂପୂର୍ଣ୍ଣରୂପେ ପ୍ରଦାନ କରାଯାଇପାରି ନାହିଁ ।]

ସେଥିପାଇଁ ସାହିତ୍ୟକୁ ଯଦି ନୀତି ଗ୍ରୁଡିବାକୁ ହୁଏ କ୍ଷତି ନାହିଁ । ସଦ୍‌ଗୁଣ ନ ଆହ୍ଲାଦଗୁଣ—ସାହିତ୍ୟ କ୍ଷେତ୍ରରେ ଏହି ସଂଘର୍ଷର ସନ୍ତୋଷଜନକ ସମାଧାନ ପରିଷଦ କରିବାରେ ଏ ପକ୍ଷକୁ ବା ସେ ପକ୍ଷକୁ ଡ଼କିବାରେ ନାହିଁ; କିନ୍ତୁ ସୁସ୍ଥ ଜନମତ ଗଠନ କରିବାର, ଜାତିର ବୁଦ୍ଧିକ୍ରିୟାକୁ ସଜାଗ କରିବାରେ ଲୋକଙ୍କୁ ଅବିଦିତ ଅନବଦ୍ୟ ସୌନ୍ଦର୍ଯ୍ୟ ଦେଖାଇବାରେ । ସତ୍ୟ ଓ ସୌନ୍ଦର୍ଯ୍ୟ ମଧୁର ସମାବେଶ କରାଇବା ଏପରି ଏକ ପରିଷଦର ମୁଖ୍ୟ କର୍ତ୍ତବ୍ୟ ।

କିନ୍ତୁ ପରିଷଦ ଗଠନ କରିବାରେ ଅସୁବିଧା ନଥାଇ ନାହିଁ । କୌଣସି ଲୌକିକ କ୍ରିୟା ଏକାବେଳକେ ସହଜ ସରଳ ନୁହେଁ । ଏହା ନିୟତିର ଅଲଂଘ୍ୟ ନିୟମ । ଏ ଦୃଷ୍ଟିରେ ଏଠାରେ କେତୋଟି ବିଷୟ ଆଲୋଚ୍ୟ । ପାଣ୍ଠି ନଥାଇ କୌଣସି ଅନୁଷ୍ଠାନର ସ୍ଥିତି ରହେ ନାହିଁ । ପରିଷଦ ପାଇଁ ପାଣ୍ଠି କିପରି ସଂଗ୍ରହ କରାଯିବ । କିପରି ସେ ପାଣ୍ଠିର ସଦ୍-ବିନିଯୋଗ ହେବ । ପୁଣି ରାଜ୍ୟ (State) ସହିତ ପରିଷଦର କି ସମ୍ବନ୍ଧ ରହିବ । ରାଜ୍ୟର ପରିଷଦ ଉପରେ କେତେଦୂର ଅଧିକାର ଓ କର୍ତ୍ତୃତ୍ୱ ରହିବ, କେଉଁ କେଉଁ ନିୟମ ଭଙ୍ଗହେଲେ ତହିଁର ପରିଗ୍ରଳନାରେ ରାଜ୍ୟ ହସ୍ତକ୍ଷେପ କରିପାରିବ ପୁଣି ପରିଷଦର ସଭ୍ୟମାନେ ତାଙ୍କର ପବିତ୍ର କାର୍ଯ୍ୟ ନିଷ୍ପକ୍ଷପାତ ଭବରେ କେତେଦୂର କରିପାରିବେ, ପରିଷଦର ନ୍ୟାୟାଦେଶ (Verdicts) ଜନସାଧାରଣ ମୁକ୍ତକଣ୍ଠରେ ସ୍ୱୀକାର କରିନେବେକି ପରିଷଦର ପ୍ରତିଯୋଗୀ ଅନୁଷ୍ଠାନ (Rival institutions) ବାହାରିବ ନାହିଁକି । ଏ ସବୁ ପ୍ରଶ୍ନ ଉତ୍‌ଥିତ ହେବା ସ୍ୱାଭବିକ । ଫ୍ରାନ୍‌ସରେ ସାହିତ୍ୟ ପରିଷଦ୍ ଗଢ଼ାହେବା ସଙ୍ଗେ ସଙ୍ଗେ ତା'ର ପ୍ରତିଯୋଗୀ ଅନୁଷ୍ଠାନ 'ଗନ କୋର୍ଟ' (Gon court) ଆରମ୍ଭ ହୋଇଥିଲ । ମତଭେଦ ବହୁଳ ଆଧୁନିକ ଭରତରେ ଏ ବିପଦର ଆଶଙ୍କା ବେଶୀ । ପୁଣି ପରିଷଦରେ ପ୍ରକୃତ ଯୋଗ୍ୟ ଲୋକ ସ୍ଥାନ ପାଇବେ ବୋଲି ନିଶ୍ଚୟ କ'ଣ ? ଫରାସୀ ପରିଷଦରେ ରୋମାରୋଲାଁ (Romain Roland)ଙ୍କ ପରି ମନୀଷୀ ସ୍ଥାନ ପାଇନଥିଲେ । ପରିଷଦର ସଭ୍ୟପଦ କେବଳ ମୌଳିକ ଯୋଗ୍ୟତା ଉପରେ ନିର୍ଭର ନକଲେ ଅବିଳମ୍ବେ ତହିଁରେ ରାଜନୀତିକ ଖେଳୁଆଡ଼, ସାଂପ୍ରଦାୟିକ ବିଦ୍ୱେଷୀ, ଅହଂକାରୀ ସାହିତ୍ୟଧ୍ୱଜାଧାରୀ ସ୍ୱଳ୍ପବୁଦ୍ଧି ଲୋକେ ତହିଁରେ ଭର୍ତ୍ତି ହୋଇଯିବେ । ତେବେ ପରିଷଦର ମହୋଚ୍ଚ ସମ୍ମାନ ରହିବ କିପରି ? ପରିଷଦ କର୍ଦ୍ଦମାକ୍ତ, କଳଙ୍କ କାଳିମାଲିପ୍ତ ହେବ ନାହିଁକି ? ନିଷ୍ଠାପର ସାହିତ୍ୟିକ କେବେ ଆଗଭର ହୁଅନ୍ତି ନାହିଁ । ଜନତାର କୋଳାହଳରୁ ଦୂରରେ ରହି ନିଭୃତ ଶାନ୍ତ କୁଞ୍ଜରେ ସରସ୍ୱତୀ ଆରାଧନାରେ ମନକୁ ବିନିଯୁକ୍ତ କରିଥାନ୍ତି । ସେମାନଙ୍କୁ କିପରି ଏ ସ୍ୱେଚ୍ଛାପ୍ରଣୋଦିତ ବିବକ୍ତତାରୁ ପରିଷଦ ଭିତରକୁ ଟାଣି ଅଣାଯାଇପାରେ ଅନ୍ୟ ଦିଗରେ । ସେମାନଙ୍କୁ ନ ଆଣିଲେ

ପରିଷଦର ସାର୍ଥକତା କଅଣ ? ଏସବୁ ସନ୍ଦେହ ପ୍ରସଙ୍ଗରେ ଉଦିତ ହୁଏ । ସ୍ୱଭବଶଂକୀ ହେବା ସ୍ୱାଭାବିକ । ଅଭବରେ ଶଙ୍କା ଉପୁଜିବା ସ୍ୱାଭାବିକ । ତଥାପି ଅଭାବ ଦୂରକରି ଉଦ୍ଦେଶ୍ୟ ସଫଳ କରିବା ମନୁଷ୍ୟତା । ପରିଷଦ ଗଢ଼ିବାକୁ ହେବ । ଗୋଟିଏ ବିରାଟ ଦେଶ ପକ୍ଷରେ ସବୁ ବିଷୟରେ ସର୍ବସମ୍ମତି ଆଶା କରିବା ବିଡମ୍ବନା । ଅନେକଙ୍କ ମତ ସହିତ ସହଯୋଗ କରି କାର୍ଯ୍ୟ ନ କଲେ ଲୋକଶାସନ ଅସମ୍ଭବ । ପରିଷଦ-ଗଠନ ଜାତିର ସବୁ ଅନୁଷ୍ଠାନ ପରି ଏହି ଲୋକ-ପ୍ରାଣତା ସାପେକ୍ଷ । ନ ଶିଖିବି ବୋଇଲେ ଶିଖାଇବାରେ ବାଟ ନାହିଁ । ଶିକ୍ଷାର ପ୍ରବଳ ଅନୁସନ୍ଧିତ୍ସା । ଲୋକହିତକର ଗମ୍ଭୀର·········ଆଶା ଆଦର୍ଶ ଅନୁସରଣରେ ନିଷ୍ଠାପର କର୍ମଧାରା ସବୁଠାରେ ଲୋଡ଼ା; ଏ କାର୍ଯ୍ୟରେ ମଧ୍ୟ ଲୋଡା । ବିଧାତାଙ୍କ ବିଧାନରେ ଏ କାର୍ଯ୍ୟ ସମ୍ପାଦିତ ହେଉ ।



# ଇତିହାସର ଶିକ୍ଷଣୀୟତା

ଅନେକ କାଳ ହେଲା ଇତିହାସ, ଶିକ୍ଷାର ଗୋଟିଏ ଉପଯୋଗୀ ଓ ପ୍ରଧାନ ବିଷୟ, ଏକଥା ଗୃହୀତ ହେଉନଥିଲା । କିନ୍ତୁ ଐତିହାସିକ ମୂଲ୍ୟ ନିର୍ଦ୍ଦେଶର ଅବ୍ୟବହିତ ପରେ ଇତିହାସ ଶିକ୍ଷା ଏବେ ଜନପ୍ରିୟ ହୋଇ ଉଠିଛି, ଏଥିରେ ସନ୍ଦେହ ନାହିଁ । ଇତିହାସ ଆମକୁ କେବଳ ଘଟଣା-ପରିଚୟ ଦିଏ । ଏପରି ନୁହେଁ—ସେଥିସଙ୍ଗେ ଆମକୁ ସେନା-ନାୟକ, ଶାସକ, ବ୍ୟବସାୟୀ, ଦେଶବତ୍ସଳ, କଳାବିତ୍, ଦାର୍ଶନିକ, ସାହିତ୍ୟିକ, ସମାଜସେବୀ ଇତ୍ୟାଦି ଉପରେ କାର୍ଯ୍ୟକାରୀ ପନ୍ଥା ସୂଚାଏ, ଆଦର୍ଶ ପରିସ୍ଫୁଟ କରେ । ସେ ଆଦର୍ଶ ବାସ୍ତବ ଜୀବନ ଚଳାଇବାରେ ଅଦମ୍ୟ ଉତ୍ସାହ, ନିଷ୍ଠା, ଉନ୍ମାଦନା ଓ ପ୍ରବର୍ତ୍ତନା ଯୋଗାଏ । ଏହିଠାରେ ହିଁ ଇତିହାସର ଜୀବନ୍ତ ଓ କ୍ରିୟାମୂଳକ ମୂଲ୍ୟ । ସଂସ୍କୃତି ଦୃଷ୍ଟିରୁ ଦେଖିଲେ ଇତିହାସ ଆମ ମାନସ-ଦିଗ୍‌ବଳୟ-ରେଖା କ୍ରମେ ବିସ୍ତାର କରେ; ବିଭିନ୍ନ ସଂକୀର୍ଣ୍ଣ ଦଳଗୋଷ୍ଠୀ, ସମ୍ପ୍ରଦାୟଗତ ସୀମା ଚୂର୍ଣ୍ଣକରି ମନୁଷ୍ୟକୁ ବାସ୍ତବିକ ଏକ ବିଶ୍ୱକୁଟୁମ୍ବର ଜଣେ କରେ; ଆନ୍ତର୍ଜାତିକତା କାହିଁକି, ସମଗ୍ର ମାନବିକ ଆତ୍ମିକତାର ଉପରେ ତାକୁ ଉଚ୍ଛ୍ୱସିତ, ଉଦ୍‌ବୁଦ୍ଧ କରେ, ଦୂରଦୃଷ୍ଟିସମ୍ପନ୍ନ କରେ । ପୁଣି ମନ, ମେଧା, କଳ୍ପନା ଓ ବିଚାର-ଶକ୍ତିର ସୁନିୟନ୍ତ୍ରତା ଓ ଶୃଙ୍ଖଳା ପ୍ରକାଶ ଭଙ୍ଗୀରେ ଇତିହାସର ଯେଉଁ ଅମୂଲ୍ୟ ସଂଯମ ସତ୍ତା ରହିଛି, ତାହା କିଏ ଅସ୍ୱୀକାର କରିବ ? ସଂକ୍ଷେପରେ ଇତିହାସର ସମ୍ପଦ ଦୁଇଟି ଦିଗରୁ ଆଲୋଚିତ ହୋଇପାରେ,—ଗୋଟିଏ ତା'ର ପରମ୍ପରାଗତ ସମ୍ପୃକ୍ତ ପଥଦର୍ଶନ-ଶକ୍ତି, ଅନ୍ୟଟି ତାର ବୁଦ୍ଧି ବିକାଶ-ସମ୍ଭବ ଦୀପ୍ତି ।

ଆଦର୍ଶ ନଥାଇ ଜୀବନ ଯାପନ କରିହୁଏ ନାହିଁ । ଦୂରବାହୀପଥର ଉପନୀତ ସ୍ଥଳ ଅଛି; କ୍ରିୟା ପ୍ରବାହର ଲକ୍ଷ୍ୟ ଅପରିହାର୍ଯ୍ୟ । କିନ୍ତୁ ଆଦର୍ଶ ଅନୁକୂଳ ଓ ସ୍ଫୂର୍ତ୍ତି

ହେବାକୁ ଗଲେ, ତାହା କେବଳ ଅଲୌକିକ ଶୂନ୍ୟ କଳ୍ପନା ହେଲେ, ତାର ଅସ୍ତିତ୍ୱ ରହେ ନାହିଁ । ତହିଁରେ ଐହିକ ସାଧନାସିଦ୍ଧି ସମ୍ଭାବନା, ନିଶ୍ଚିତ କଠୋର ଜ୍ଞାପ୍ତି ଓ କର୍ତ୍ତବ୍ୟର ଆଧାର ହେବାକୁ ହେବ । ଏଭଳି ଆଦର୍ଶର ଅମରପୃଷ୍ଠା ଇତିହାସ ଯୋଗାଇବାକୁ ସମର୍ଥ ହୁଏ । ବାସ୍ତବ ଘଟଣା-ସୂତ୍ରରେ ଇତିହାସ ପରିଧାନ ଗ୍ରଥିତ । ମାନବୀୟ ଭବରାଜି ଓ ଇଚ୍ଛାଶକ୍ତିକୁ ଗତିଶୀଳ ଆଦର୍ଶ ହିଁ ଆକର୍ଷଣ କରେ । ଏହି ଆକର୍ଷଣର ଅଭିମୁଖୀ ହୋଇ ଜୀବନ ସକ୍ରିୟ ହୁଏ । ଏପରି କ୍ରିୟାବାନ ମନୁଷ୍ୟ ଜ୍ଞାନଶକ୍ତ ଦ୍ୱାର ଅନୁଭୂତି ଭଷାକୁ ସଙ୍ଗଠନ, ଅର୍ଥଯୋଗ ଆଲୋଡ଼ନ କରି ସକ୍ଷ୍ମ ଚିନ୍ତା ଓ ଦର୍ଶନ ସାହାଯ୍ୟରେ ଆଦର୍ଶର ଜୟ ଓ ପରାଜୟ ପରୀକ୍ଷା କରେ । ଇତିହାସ ଏ ପରୀକ୍ଷାର ପରିସର । ଏହିପରି ଜଣାଯାଏ ଇତିହାସର ପଥଦର୍ଶନ ମୂଲ୍ୟର ତିନୋଟି ବିଶିଷ୍ଟ ଉପାଦାନ ଓ ଅବଲମ୍ବନ-ଅନୁଭୂତି, କ୍ରମବିକାଶ, ଦୃଷ୍ଟାନ୍ତ ମାନବୀୟ ଅନୁଭୂତି ଇତିହାସର ପ୍ରାଣପୂର୍ଣ୍ଣ ସ୍ପନ୍ଦନ । ତାହାବଳରେ ବର୍ତ୍ତମାନ ଅତୀତର ଫଳ ଓ ଫଳ-ପୁଷ୍ପଭରା ରସବନ୍ତ ବିଶାଳ ବୃକ୍ଷର ବୀଜ । ଏକଥା ଆମେ ସ୍ପଷ୍ଟ ରୂପେ ସ୍ୱୀକାର କରିପାରୁ । ପୁଣି ଇତିହାସ ଦୃଷ୍ଟାନ୍ତ ସମ୍ବଳିତ ଦର୍ଶନ ଶିକ୍ଷା ବୋଲି ପୂର୍ବରୁ ଆଖ୍ୟାତ ହୋଇଅଛି ।

ଇତିହାସର ସଂଯମ ମୂଲ୍ୟ 'ଆହୁରି ଅର୍ଥପୂର୍ଣ୍ଣ ବିସ୍ତୃତ ଭବୋଦ୍ଦୀପକ । ସାମାନ୍ୟ ଚିନ୍ତା ଏ ମୂଲ୍ୟକୁ ଅବଧାରଣ କରିବାକୁ କ୍ଷମ ହେଲେ ସୁଦ୍ଧା ତହିଁର ଋଦ୍ଧିମନ୍ତ ଅନ୍ତର୍ଦେଶସ୍ଥିତ ସାର ସମିଷ୍ଟିର ମହତ୍ତ୍ୱ ଓ ବୈଚିତ୍ର୍ୟ ଅବଗତି ଗଭୀର ମନୋନିବେଶ-ସାପେକ୍ଷ । ଇତିହାସର ଅତି ସାଧାରଣ କାର୍ଯ୍ୟ ଘଟଣା ପରମ୍ପରା ସ୍ମରଣ । ଏପରି ଭବରେ ଇତିହାସ ସ୍ମୃତିଶକ୍ତି ରକ୍ଷକ ଓ ପୁଷ୍ଟିକାରକ, ଏହା ସହଜରେ ବୁଝାଯାଏ । ଏହି ଘଟଣା ପରମ୍ପରା ଦର୍ଶନ ଦିଗରୁ ଯଥାର୍ଥ ଶୃଙ୍ଖଳା ଓ ସାମଞ୍ଜସ୍ୟ ବିରଚିତ ହେଲେ, ଏହି ଶକ୍ତି ଖୁବ୍ ବଢ଼ିଥାଏ । ଦେଶ, କାଳ, କାର୍ଯ୍ୟ-କାରଣ ସମ୍ବନ୍ଧ ଐତିହାସିକ ବିବୃତିର ଏଭିଭଳି ଏକୀକରଣର ପ୍ରଧାନ ମାର୍ଗ; କିନ୍ତୁ ଇତିହାସ ଶିକ୍ଷା ଯେ କଳ୍ପନା ଶକ୍ତିକୁ ମଧ୍ୟ ସମୁଚିତ ସଂଯମ ସୁଦୃଢ଼ କରେ, ଏକଥା ମନେରଖିବାକୁ ହେବ । ଭୁଗୋଳ ଯେପରି ପୃଥିବୀ-ଚିତ୍ର ବର୍ଣ୍ଣନଶୀଳ, ଇତିହାସ ସେପରି ମାନବ-ଚରିତ୍ର-ଚିତ୍ର ଅଭିବ୍ୟଞ୍ଜକ । କୌଣସି ବିଶିଷ୍ଟ ମନୁଷ୍ୟ ସମାଜ ବା ଜାତିର ଅବସ୍ଥିତି ଓ କ୍ରମବର୍ଦ୍ଧନ ସଞ୍ଜାତ ପୂର୍ଣ୍ଣ ଆନ୍ଦୋଳନ ବା ସେହି ଆନ୍ଦୋଳନର କେତେକାଂଶ ଇତିହାସ ପ୍ରତିଭ-ଚକ୍ଷୁ ଆଗରେ ଉଦ୍‌ଘାଟନ କରେ । ଜଟିଳ, ଘନୀଭୂତ, ପରସ୍ପର ସମ୍ବନ୍ଧ ଐତିହାସିକ ଦୃଶ୍ୟର ଚମତ୍କାରିତା ଓ ମନୋହାରିତା କଳ୍ପନା-ଶକ୍ତିର ଉପଯୁକ୍ତ ପ୍ରୟୋଗ ଅଭବରେ ଅବବୋଧ ହୁଏ ନାହିଁ । ଗୋଟିଏ ରଣକ୍ଷେତ୍ରର ଭୀମକାନ୍ତ ଛବି ଚିତ୍ରକରର ତୂଳୀ ଓ ରଙ୍ଗରେ ଫୁଟାଇବାକୁ ଯେତିକି

କର୍ମଠ କଳ୍ପନାବିଳାସ ଆବଶ୍ୟକ, ଇତିହାସ ପୃଷ୍ଠାରେ ସାହିତ୍ୟ-କଳା ଦ୍ୱାରା ତାକୁ ଫୁଟାଇବାକୁ ତାଠାରୁ ଊଣା ଆବଶ୍ୟକ ହୁଏ ନାହିଁ । ଦିଗନ୍ତ ଦେଶ ଓ ଅସୀମ-କାଳ ପ୍ରସାରି ବିଭିନ୍ନ ଯୁଗର ପ୍ରତିଛବି ଯେପରି ବିଖ୍ୟାତ ଐତିହାସିକମାନେ ଲିପିବଦ୍ଧ କରି-ଅଛନ୍ତି, ତହିଁର କେବଳ ଗୋଟାଏ ଚଞ୍ଚଳଦୃଷ୍ଟି, ଗୋଟାଏ ମୋଟାମୋଟି ସୂଚନା ପାଇବାପାଇଁ କି ମହୀୟସୀ କଳ୍ପନା ଲୋଡା ! ବାସ୍ତବିକ ଅନାଦି ଅନନ୍ତ କାଳସ୍ରୋତ କଳ୍ପନା-ବିଚ୍ୟୁତ ମନ ପକ୍ଷରେ କେବଳ ଗୋଟାଏ 'ନାମ', ଯେପରି 'ବ୍ରହ୍ମପୁତ୍ର' ଏହି କାଗଜ ଉପରେ କାଳିକଲମରେ ଲେଖା ଗୋଟିଏ ନାମମାତ୍ର ।

କିନ୍ତୁ ଇତିହାସର କାର୍ଯ୍ୟ ଏତିକିରେ ଶେଷ ହୁଏ ନାହିଁ । କଳ୍ପନା ଦୃଷ୍ଟି ଛଡ଼ା ମନକୁ ସବଳ, ସରଳ, ଉପଯୋଗୀ କରିବା ନିମନ୍ତେ ଇତିହାସର ଆହୁରି ଅନେକ କାର୍ଯ୍ୟ ଅଛି । ଇତିହାସରେ ତାତ୍ତ୍ୱିକଶିକ୍ଷା ନିର୍ମଳ ନିରପେକ୍ଷ ବିଚାରଶକ୍ତି ବର୍ଦ୍ଧକ । ଘଟଣାବୋଧ ନିମନ୍ତେ ବିଶ୍ଳେଷଣର ପ୍ରୟୋଜନ ହୁଏ । ବାସ୍ତବ ଜଗତରେ ନିରଟ ନିରଡମ୍ବର ସରଳ କଥା କିଛି ନାହିଁ । ଯାହା ଆପାତତଃ ସରଳ, ତାହା ଜଟିଳତାର ନିଗଡ଼ ବନ୍ଧନ । ତହିଁର ବୁଝାମଣା ସେହି ବନ୍ଧନର ଉନ୍ମୁକ୍ତି ଓ ସରଳତାର ବ୍ୟାଖ୍ୟାନକୁ ଅପେକ୍ଷା କରେ । ଏପରି କରିବାରେ ବୁଦ୍ଧିବୃତ୍ତି ଓ ତୁଳନାଶକ୍ତି ମାର୍ଜିତ ଓ ସମ୍ପ୍ରସାରିତ ହୁଏ । ଚିତ୍ତ ଅସ୍ଥିରତା, ମାନସିକ ବିକ୍ଷେପ, ଅବ୍ୟବସ୍ଥା ଦୂରହୁଏ; ଠିକ୍ ଅନୁପାତର ଦୃଷ୍ଟି ରହେ । ସେଥିପାଇଁ ଭାବ ଓ କଳ୍ପନା ଆହୁରି ଗମ୍ଭୀରକୁ ଯାଇ ପ୍ରଦତ୍ତ ବିଷୟରୁ ତାତ୍ପର୍ଯ୍ୟ ଉଦ୍ଧାର କରିବାର ଉଚ୍ଚ ମାନସିକ କ୍ରିୟାକୁ ଜାଗରୂକ ରଖେ । ଐତିହାସିକ ଶିକ୍ଷା ପ୍ରକାଶର ସୂକ୍ଷ୍ମ ସମ୍ବନ୍ଧ ଓ ଆଲୋଚନା-ମୂଳକ ତଥ୍ୟ ନିର୍ଣ୍ଣୟ ଦ୍ୱାରା ମେଧା ମହତ୍ ଆଡ଼କୁ ପରିଚାଳିତ ହୁଏ । ଭୌଗୋଳିକ ପରିସ୍ଥିତି-ବୋଧ, କ୍ରମରକ୍ଷା, କାରଣ ନିର୍ଦ୍ଦେଶ ଦ୍ୱାରା ଧୀଶକ୍ତି ଉଜ୍ଜ୍ୱଳ, ଉନ୍ମୁକ୍ତ ହୁଏ । ସେଥିପାଇଁ କହନ୍ତି ଇତିହାସ ସତ୍ୟାସତ୍ୟ ପରୀକ୍ଷାର ଉତ୍ତମ ପାଠଶାଳା । ମୂଲ୍ୟବାନ୍ ତାର୍କିକ, ମନସ୍ତାତ୍ତ୍ୱିକ, ନୈତିକ ଉପାଦାନରେ ଇତିହାସ ଚିର ସଂଜୀବିତ, ସଂଶ୍ଳିଷ୍ଟ ।

ଇତିହାସର ସର୍ବସାଧାରଣ ଅଭିମୁଖ୍ୟ ଚିନ୍ତାଶକ୍ତିକୁ ଜାଗ୍ରତ କରିବା, ଆମଦେଶ ସଙ୍ଗେ ଅନ୍ୟଦେଶ, ଆମ ସମୟ ସଙ୍ଗେ ଅନ୍ୟ ସମୟ ମୁଖ୍ୟତଃ ରାଜନୀତିକ ଘଟଣା ସମ୍ପର୍କରେ ବୁଦ୍ଧିମାନ ଆଲୋଚନା କରିବା, ମାନନୀୟ ଚରିତ୍ରରେ ଅନ୍ତର୍ଦୃଷ୍ଟି, ବିଚାରଶକ୍ତି ଉତ୍କର୍ଷ ଓ ସମଦର୍ଶୀ ସହାନୁଭୂତି ସ୍ଥାପନରେ ଐତିହାସିକ ପ୍ରସଙ୍ଗର ପ୍ରଣୋଦିତ ବ୍ୟୁତ୍ପତ୍ତିପୂର୍ଣ୍ଣ ଅବକାଶ ଦିଏ । ପ୍ରତ୍ୟକ୍ଷ ପ୍ରପଞ୍ଚର ଦୈନନ୍ଦିନ ଜୀବନ ନିର୍ବାହ ଆବଶ୍ୟକ ନୀତିଜ୍ଞାନ ଇତିହାସରେ ଅନେକ ପରିମାଣରେ ସଞ୍ଚିତ ଥାଏ । ନୂତନ

ଘଟଣା ଗ୍ରାହକ ମନ ଆଗରେ କେବଳ ତାର ନୂତନତା ପ୍ରକଟ କରେ ନାହିଁ; ଗ୍ରାହକମନ ତାକୁ ପୂର୍ବସଂସ୍କାର ଉପରେ ଅଙ୍କିତ କରି ଗ୍ରହଣଯୋଗ୍ୟ କରେ । ଆମେ କୌଣସି ସଦ୍ୟଦୃଷ୍ଟ ପଦାର୍ଥ ପୂର୍ବବର୍ତ୍ତୀ ଜ୍ଞାନ କଷଟିରେ ଚିହ୍ନି ପରଖି, ସଜାଡ଼ି ରଖୁ । ଏହିପରି ମନୁଷ୍ୟ ଜ୍ଞାତରୁ ଅଜ୍ଞାତକୁ ଅଗ୍ରସର ହୁଏ; ଜ୍ଞାନଭଣ୍ଡାର କ୍ରମେ ଅସଂଖ୍ୟ ମଣିମାଣିକ୍ୟରେ ପରିପୂର୍ଣ୍ଣ ହୁଏ । ଅନ୍ୟ ଦୃଷ୍ଟିରେ ଏହି ଜ୍ଞାନଭଣ୍ଡାର ନୈତିକ ଜୀବନରେ ସ୍ପୃହା ବଢ଼ାଏ । ଐତିହାସିକ ଜ୍ଞାନ ଏକ ପ୍ରକାର ନୈତିକ ଜ୍ଞାନ । ଉଭୟ ପକ୍ଷର ବିଚାର ହୋଇ ସ୍ଥିର ମୀମାଂସା ସେଥିରେ ପ୍ରକାଶପାଏ । ଅବିଚାର, ଦୁର୍ବିଚାରର ବିଷମୟ ଫଳ ଇତିହାସ ଦର୍ଶାଏ । ତଦ୍ଦ୍ୱାରା ଉଦାରତା ଓ ସହନଶୀଳତା କ୍ରମବର୍ଦ୍ଧିତ ହୁଏ । ପ୍ରବଳ ପ୍ରତିଯୋଗିତା, ବିଭିନ୍ନ ଆକାଂକ୍ଷା • ରୁଚି-ସଂଘର୍ଷ, ବିପରୀତ-ସମ୍ବନ୍ଧ ସଂସ୍ପର୍ଶର ଲୀଳାସ୍ଥଳୀ ଏହି ବିଚିତ୍ର ସଂସାର-ସାଗର ଉପରେ ଜୀବନ-ତରୀ ଯଥାସମ୍ଭବ ନିରାପଦରେ ବାହିନେବାପାଇଁ ଆମେ କେତୋଟି ଆଶୁ-ନୀତି ଗଢ଼ୁ । ସେଗୁଡ଼ିକ ଅବଲମ୍ବନ କରି ଚାଲୁ ଚାଲୁ ନୂତନ ଅନୁଭୂତି ପାଉଁ । ପୁଣି ସେହି ଅନୁଭୂତି ଫଳରେ ସେ ନୀତିଗୁଡିକ ସଂଶୋଧନ କରୁଁ । ଏହି ସମାନ୍ତ ସଂଶୋଧନ କ୍ରିୟା ଅଖଣ୍ଡ ପରମ ସତ୍ୟ ଉପଲବ୍ଧ ହେବା ପର୍ଯ୍ୟନ୍ତ ଲଗିରହେ । ଅଧ୍ୟାପକ, ଧର୍ମଯାଜକ, ନୀତିପ୍ରଚାରକ ବା ଯେ କେହି ହେଉ, ସମସ୍ତଙ୍କ ପକ୍ଷରେ ଏହି ସଂସାର-ମାର୍ଗ । ଏ ଦୃଷ୍ଟିରେ ଐତିହାସିକ ଶିକ୍ଷା ଏକପ୍ରକାର ନୈତିକ ଆୟବ୍ୟୟ ହିସାବଭଳି, ଜମାଖର୍ଚ୍ଚ ଲେଖି ଅବଶିଷ୍ଟ ସ୍ଥିର କରିବା ତାର କାର୍ଯ୍ୟ । ହିତ-ବିଚାର, ନିର୍ମଳ ଦୃଷ୍ଟି, ଜୀବନ ସମସ୍ୟାର ସନ୍ତୋଷଜନକ ସମାଧାନ ପ୍ରତ୍ୟେକଙ୍କର କର୍ତ୍ତବ୍ୟ । ଐତିହାସିକ ଜ୍ଞାନ ଆମର ନୈତିକ ସୌଧ ନିର୍ମାଣର ଦୃଢ଼ଭିତ୍ତି । ବସ୍ତୁ ବିଜ୍ଞାନର ସସୀମ ମୃତ-କଳ୍ପ ନିବନ୍ଧନ ତହିଁରେ ରହେ ନାହିଁ, ମାନବୀୟ ଆତ୍ମାର ମୁକ୍ତି-ପ୍ରୀତି ରାଜ୍ୟରେ ତାର ଅବାଧ ବିଚରଣ ।

ଇତିହାସପରି ଶାସନ ପଦ୍ଧତିର ଗବେଷଣା ମଧ୍ୟ ଶିକ୍ଷଣୀୟ; କିନ୍ତୁ ଶାସନ-ଯନ୍ତ୍ର-ଚାଳନ କୌଶଳ ସଂପାଦନ, ସାଧାରଣରେ ଦଳଗତ ବିରୋଧ, ବିବାଦ, ବିସମ୍ବାଦ, କୋଳାହଳମୟ ହୋଇଥାଏ । ମନୋମାଳିନ୍ୟରେ ବିଷାକ୍ତ ହୋଇ, ଇତିହାସପରି ତାହା ତ୍ୟାଗପୂତ ନିଷ୍ପାପର ହୃଦୟପୂର୍ଣ୍ଣ ବିକାଶୋନ୍ମୁଖୀ ଜାତୀୟ ସେବାର ଉର୍ବର ସାଧନାପୀଠ ହୋଇନପାରେ । ଏ ଦୃଷ୍ଟିରେ ବିଜ୍ଞମାନେ ଆଧୁନିକ ଇତିହାସ ଅପେକ୍ଷା ପ୍ରାଚୀନ ଓ ମଧ୍ୟଯୁଗ ଇତିହାସ ଉପରେ ଅଧିକ ଦୃଷ୍ଟି ଦିଅନ୍ତି । କାଳଗର୍ଭରେ ସହଜରେ କ୍ଷଣିକ ରାଜନୀତିକ ଦଳାଦଳିଜନିତ ଅହମିକା, ପ୍ରଭୁତା-ଲୋଭ, ଲୋକ-ପ୍ରବଞ୍ଚନା, ଆଂଶିକ ସ୍ୱାର୍ଥରକ୍ଷାର ପ୍ରବଳ ପ୍ରଚେଷ୍ଟାଦ୍ୱନ୍ଦ୍ୱ ଲୁଚିଯାଏ । ସତ୍ୟ ଅପେକ୍ଷାକୃତ ନିର୍ମଳ ଭାବରେ ପ୍ରକାଶ ପାଏ ।

ଜୀବନ ସହିତ ଯୋଡ଼ ଦେବାକୁ କେବଳ କେତେକ ପ୍ରକାରର ରୁଚିକର ସାହିତ୍ୟକ ଗୁଡ଼ିଦେଲେ ଇତିହାସପରି ଶିକ୍ଷଣୀୟ ବିଷୟ ଅନ୍ୟ କିଛି ନାହିଁ । ଅନ୍ୟ ପକ୍ଷରେ ଶିକ୍ଷାର ପ୍ରକାର ଭେଦରେ ଇତିହାସ ସବୁଠାରୁ ଅଧିକ ନୀରସ, ନିର୍ବୋଧ, ନିରାନନ୍ଦ, ଶୁଷ୍କ ବିଷୟରେ ପରିଣତ ହୋଇପାରେ ମଧ୍ୟ । ଶିକ୍ଷକ, ଶିକ୍ଷାର୍ଥୀଙ୍କ ମନୋବୃତ୍ତି ଓ ଶିକ୍ଷାପ୍ରଣାଳୀ ଅନୁସାରେ ଏପରି ପରସ୍ପର-ବିରୁଦ୍ଧ ରୂପ ଧରିପାରେ । ସଂକ୍ଷେପରେ କେବଳ କେତୋଟି ନାମ, ତାରିଖ ଓ ଅନ୍ୟ ଅସଂଲଗ୍ନ ଘଟଣାର ସମଷ୍ଟି ନୁହେ । ପ୍ରକୃତ ମନୁଷ୍ୟତାର ପ୍ରକୃଷ୍ଟ ପରିଚୟ ଇତିହାସ, ଏକଥା ବୁଝିଲେ ଇତିହାସ ପ୍ରତି ସବୁ ଭ୍ରମାତ୍ମକ ଧାରଣା ଘୁଞ୍ଚିଯାଏ, ତାର ସ୍ୱଭାବ ଓ ସ୍ୱରୂପ ଧରାପଡେ ।



# ସାମାଜିକ ଇତିହାସ

ସାମାଜିକ ଇତିହାସ-ଶିକ୍ଷାରେ ଜୀବନୀ ଏକମାତ୍ର ଅବଲମ୍ବନ ନୁହେଁ— ବୁଦ୍ଧି, ନୀତି, ବଳ, ପୌରୁଷ ଇତ୍ୟାଦିର ଶୀର୍ଷସ୍ଥାନ ଅଧିକାର କରିଥିଲେ ମଧ୍ୟ କେତେକ ନିର୍ଦ୍ଦିଷ୍ଟ ମହାପୁରୁଷ କୌଣସି ଲୋକ ସମଷ୍ଟିର ପ୍ରତିନିଧି ବୋଲି ସୂକ୍ଷ୍ମ ଭାବରେ ବିବେଚିତ ହୋଇପାରିବେ ନାହିଁ । ଯୁଗୋପଯୋଗୀ ଇତିହାସ ପୃଷ୍ଠାରେ ଏଭଳି ମହାପୁରୁଷ ଜୀବନୀ ଆଲୋଚନାର ପନ୍ଥା । ବୀର-ପୂଜାର ବାର୍ତ୍ତା ଦେଇଥିଲେ କାର୍‌ଲାଇଲ । ବୀର-ପୂଜା ବାସ୍ତବିକ ଚମତ୍କାର ଗୁଣପ୍ରଦ, ଧୈର୍ଯ୍ୟଉତ୍ସାହ ପୁଷ୍ଟିର ଉନ୍ମୁକ୍ତ ସାଧନ କ୍ଷେତ୍ର; ତହିଁରେ କେବଳ ବହୁମୁଖୀ ଜୀବନର ବୈଚିତ୍ର୍ୟ ସମ୍ପୂର୍ଣ୍ଣ-ରୂପେ ପ୍ରକଟିତ ହୁଏ ନାହିଁ, ବୀର-ପୂଜା ଜୀବନର କେତୋଟି ବଛାବଛା ଚିତ୍ରକୁ ବିଦ୍ୟୁତ୍ ଝଲକ ଭଳି ପୂଜକ ଆଗରେ ଦେଖାଇ ଚକ୍ଷୁ ଝଲସାଇ ଦିଏ । ମନକୁ ଉତ୍ତେଜନା ଦିଏ । ଉଦ୍‌ବୁଦ୍ଧ କରେ; କିନ୍ତୁ ଚିତ୍ର ଚିତ୍ର ମଧ୍ୟରେ, ଘଟଣା ଘଟଣା ମଧ୍ୟରେ ଯେ ବ୍ୟବଧାନ ରହେ ତାର ତାମସ ଗର୍ଭକୁ ଆଲୋକିତ କରିପାରେ ନାହିଁ । ସେଥିପାଇଁ ଏକାନ୍ତ ଆବଶ୍ୟକ ହୁଏ ଇତିହାସର ସାମାଜିକ ଅନୁଶୀଳନୀ । ଏପରି ଭାବରେ ଜୀବନ ସାମାଜିକ ଇତିହାସର କାର୍ଯ୍ୟ କରିବାକୁ କେବେ କ୍ଷମ ନୁହେ— ଯଦିବା ସେ କାର୍ଯ୍ୟକୁ ସେ ଟିକିଏ ନିପୁଣ, ସକ୍ରିୟ କରିପାରେ । ଏଠାରେ ହିଁ ସାମାଜିକ ଇତିହାସ ବିଶ୍ଳେଷକଙ୍କ ମଧ୍ୟରୁ ଅନ୍ୟତମ ପ୍ରସିଦ୍ଧ ଗ୍ରନ୍ଥାକାର ଗ୍ରୀନଙ୍କ ପ୍ରତିଭାର ବୈଶିଷ୍ଟ୍ୟ । ସାମାଜିକ ଇତିହାସ ସାଧାରଣ ଜୀବନର ସାଧାରଣ ଘଟଣା । ଦୈନନ୍ଦିନ କାରବାରର ସମୁଦାୟ ଯଥାଯଥ ଚିତ୍ର; ଏଣୁ ତହିଁର ଶିକ୍ଷା ଶିକ୍ଷାର୍ଥୀ ପକ୍ଷରେ ଅପରିହାର୍ଯ୍ୟ ।

ନାଗରିକ (Citizen)ର କର୍ତ୍ତବ୍ୟ-ଦାୟିତ୍ୱ କ୍ଷମତା ସମ୍ବନ୍ଧରେ ଅଭିଜ୍ଞତା ଲାଭ କରିବା ପାଇଁ ସାମାଜିକ ଇତିହାସ ସର୍ବୋତ୍କୃଷ୍ଟ ପାଠାଗାର । ଗୋଷ୍ଠୀକ୍ରୋଡ଼ରେ ବ୍ୟକ୍ତିର ଲାଳନର ଉପକାରିତା ବୁଝାଇବା ସଙ୍ଗେ, ସେହି ଉପକାର ସୁଝାଇବାର ବାଟ ଦେଖାଇ ସଂଘବଦ୍ଧ ଜୀବନକୁ ସଚଳ କରେ ସାମାଜିକ ଇତିହାସ । ଏପରି ଭାବରେ ପରସ୍ପର ବିନିମୟରେ ମନୁଷ୍ୟଜୀବନ କିପରି ମାର୍ଜିତ, ପରିପୁଷ୍ଟ, ସମୃଦ୍ଧ ହୁଏ ତହିଁର ଧାରଣା ଦିଏ ସାମାଜିକ ଇତିହାସ । ଏହାଠାରୁ ବଳି ନୈତିକ ଶିକ୍ଷା କିଛି ନାହିଁ । ପ୍ରତ୍ୟେକ ବ୍ୟକ୍ତି କୌଣସି ନିର୍ଦ୍ଦିଷ୍ଟ କାଳ-ସ୍ଥାନ ପାରିପାର୍ଶ୍ୱ ପରିବାରରେ ଜନ୍ମଗ୍ରହଣ କରି କିପରି କେତେକ ପାରମ୍ପରିକ ସ୍ମୃତି ଓ ଚିନ୍ତାଧାରର ଅଧିକାରୀ

ହୁଏ, ସେ ଅଧିକାର ଅନୁଭୋଗ ମୂଲ୍ୟ ସ୍ୱରୂପ କିପରି କେତେକ ଗୁରୁତର ଦାୟିତ୍ୱ ତାହାକୁ ପୂର୍ଣ୍ଣ କରିବାକୁ ପଡ଼େ, ତହିଁର ବିଶଦ ବିବରଣୀ ମିଳେ ସାମାଜିକ ଇତିହାସର ରସନିର୍ଭର ମନୋରଞ୍ଜନ ଆଲେଖ୍ୟରେ । ସଂକ୍ଷେପରେ ଅନ୍ତର-ଚେତନା ଉପରେ ବାହ୍ୟ ପ୍ରକୃତିର ପ୍ରଭବାନ୍ୱିତ ଛାୟାରେ ସାମାଜିକ ଇତିହାସ ଶାଦ୍ୱଳ ।

ଏ ବିଷୟରେ ଆଉ ଗୋଟିଏ ବୈଶିଷ୍ଟ୍ୟ ନାରୀ ଚରିତ୍ର ଚିତ୍ରଣରେ ଆଉ କୌଣସି ବିଷୟରେ ସ୍ତ୍ରୀର ସମାଜ ଉପରେ ଦୃଷ୍ଟ-ଅଦୃଷ୍ଟ ଗଭୀର ପ୍ରଭାବ, ତାହାଦ୍ୱାରା ରାଜନୀତିକ, ଅର୍ଥନୀତିକ, ସାମାଜିକ ଇତିହାସ ସୂକ୍ଷ୍ମ ନିୟନ୍ତ୍ରଣ ଏତେ ବିସ୍ତୃତଭାବରେ ବର୍ଣ୍ଣିତ ହୁଏ ନାହିଁ । ନାରୀ ମାତୃଶକ୍ତିସମ୍ପନ୍ନା; ଶିକ୍ଷୟିତ୍ରୀ, ଧାତ୍ରୀ, କଲ୍ୟାଣୀ, ଜନନୀ ଭାବରେ ସାମାଜିକ ଜୀବନର ମୂଳ ପୀଠ । ପରିବାରର ଅର୍ଦ୍ଧାଙ୍ଗିନୀ ଭାବରେ, ସକଳ ସୃଷ୍ଟିମୂଳକ କ୍ରିୟାର ଧାରିଣୀ-ପାଳିନୀ ରୂପରେ, ଧର୍ମର ଅଧିଷ୍ଠାତ୍ରୀ-ରକ୍ଷୟିତ୍ରୀରୂପରେ କି ମହନୀୟା ସେ, ତାର ସୂଚନା ପାଇଁ ଏ ବିଷୟର ଅବତାରଣା ।

ସାମାଜିକ ଇତିହାସ ବିଭାବନାରେ ସ୍ୱତଃ ଗୋଟାଏ ଆଶା ଭରସାର ଆବେଗ ଆମ ପ୍ରାଣକୁ ସ୍ପର୍ଶ କରେ । ମୁକ୍ତିର ଗୋଟାଏ ଅପୂର୍ବ ଉଚ୍ଛ୍ୱାସ ଚିତ୍ତ ବେଳାକୁ ପ୍ଲାବନ କରେ । ସମାଜରେ ବିଷାଦବାଦ (Pessimism) ଠାରୁ ହର୍ଷବାଦ (optimism)ର ସ୍ଥାନ ସ୍ୱତନ୍ତ୍ର, ବ୍ୟାପ୍ତ । ବିଷାଦବାଦ ମନୁଷ୍ୟଜୀବନର କେବଳ ଗୋଟାଏ ବାହ୍ୟ-ଆଭରଣ, ଗୌଣ ଆବର୍ତ୍ତନ ଆପାତ ଦୃଶ୍ୟ । ସ୍ଥୂଳଦୃଷ୍ଟିରେ ଦୁଃଖ, କ୍ଲେଶ, ଯାତନା, ଅସ୍ୱସ୍ତି ଜୀବନ ତରୁକୁ ଚିନ୍ନମୂଳ କରି ମୃତ୍ୟୁ ଦେବତାର ହୋମ-ଇନ୍ଧନ ଯୋଗାଇଲା ପରି ବୋଧହୁଏ ସତ୍ୟ, କିନ୍ତୁ ଏ ଅବବୋଧ ଜ୍ଞାନର ପରିଚୟ ନୁହେଁ; ତାହା କ୍ଷଣସ୍ଥାୟୀ ସାରହୀନ । ଏହି ଆଦ୍ୟାମାୟା, ଅଜ୍ଞାନ, ଅବିଦ୍ୟାର ନିବିଡ଼ ଅନ୍ଧକାର । କିନ୍ତୁ ଜୀବନର ଅତଳ ଅନ୍ତଃସ୍ଥଳରେ ଆନନ୍ଦ ନିର୍ଝର ଝରଝର ଚିର ପ୍ରବାହିତ । ଜୀବନର ସବୁ ସୁଖ, ଆଶା-ନିରାଶା, ଭୟ-ଭ୍ରୂକୁଟି, ଜୟ-ପରାଜୟ ସେହି ନିର୍ଝରର ବୁଦ୍‌ବୁଦ । ବିଖ୍ୟାତ କଳାକବି ଟେନିସନଙ୍କ ଭାଷାରେ ମନୁଷ୍ୟ ଆସେ, ମନୁଷ୍ୟ ଯାଏ; କିନ୍ତୁ ମାନବ ତାର ସ୍ରୋତସ୍ୱିନୀ ଅନନ୍ତ ସୁଖ ସିନ୍ଧୁଆଡ଼କୁ ବହି ଯିବାକୁ ଚେଷ୍ଟାକରେ । ସେ ସିନ୍ଧୁରେ ନିଜର କାୟା ହଜାଇ ଦେବାକୁ ନିୟତ ଚଞ୍ଚଳ । ଏହା ହିଁ ଜ୍ଞାନ, ସତ୍ୟ, ବିଦ୍ୟାର ନିର୍ମଳ ଆଲୋକ । ଏ ଆଲୋକ ପ୍ରକାଶରେ ପୂର୍ଣ୍ଣତାରେ ମାନବତାର ଚରମ ପରିଣତିର ବିଶ୍ୱାସ ସଂସ୍ଥାପନରେ ସାଧାରଣ ଇତିହାସ ସବୁବେଳେ ସ୍ପନ୍ଦମାନ, ଉଚ୍ଛ୍ୱସିତ, କ୍ରିୟାଶୀଳ ।

ସାମାଜିକ ଇତିହାସ ତୁଳନାତ୍ମକ ବିଚାର । ତହିଁରେ ଆମେ କ୍ରମବିକାଶର ବିଭିନ୍ନ ସ୍ତରରେ ଅବସ୍ଥିତ ବିଭିନ୍ନ ଜାତି, ଶ୍ରେଣୀ, ସଂଘର ଅବସ୍ଥା ତୁଳନା କରୁ । ଏହି

ତୁଳନା ପୁଣି ଆଧୁନିକ ସମସ୍ୟା ସମାଧାନରେ ଶିକ୍ଷଣୀୟ ହୁଏ । ଏପରି ଭବରେ ଚିନ୍ତା, ଶକ୍ତି, ହିତାହିତ ବିବେଚନା-ବୃତ୍ତି ପରିଶୁଦ୍ଧ ହୁଏ ।

ଐତିହାସିକ ଆଲୋଚନାର ସକଳ ଅନ୍ତରଙ୍ଗ ଓ ବହିରଙ୍ଗ ବିଭଗ —ସମର, ଶାସନ, ନିୟମ, ସ୍ଥାପତ୍ୟ, କଳା, ସାହିତ୍ୟ, ଧର୍ମ, ଦର୍ଶନ—ସାମାଜିକ ଇତିହାସରେ ଆଲୋଚ୍ୟ । ସମର ଓ ଶାନ୍ତି ସମାଜକୁ ବିଶେଷ ପ୍ରଭବାନ୍ୱିତ କରେ । ସମର ସମାଜକୁ କେନ୍ଦ୍ରୀକରଣର ନିଗଡ ବ୍ୟବସ୍ଥା ରଜ୍ଜୁରେ ବାନ୍ଧିବାକୁ ଚେଷ୍ଟା କରେ । ତଥାପି ତାହା ବନ୍ଧନ; ସଙ୍କଟ ସଂଶୟରେ ତାହା ଭୟାବହ । ଶାନ୍ତିରେ ହିଁ ଲୋକ-ସମାଜ ସଂସ୍କୃତିର ଉଚ୍ଚତମ ସୋପାନକୁ ଉଠିବାକୁ ସମର୍ଥ ହୁଏ । ପୁଣି ବିଭିନ୍ନ ଅନୁଷ୍ଠାନର ସମାଜର କୃତୀ । ଆର୍ଥିକ ଅଭ୍ୟୁଦୟ ସମାଜର ଅପରିହାର୍ଯ୍ୟ ଅଙ୍ଗ । ନୀତି-ନିୟମ ସମାଜକୁ ଅନେକ ଦୂର ବ୍ୟବସ୍ଥିତ କରେ । ସାମାଜିକ ଆଚାର, ବ୍ୟବହାର, ରୁଚି, ଅଭ୍ୟାସ, ପ୍ରାକୃତିକ ଭୌଗୋଳିକ ପରିସ୍ଥିତି ଦ୍ୱାରା ଅନେକ ପରିମାଣରେ ଗଠିତ ହୁଏ । ବାସ୍ତବିକ ସାଧାରଣ ଜୀବନରେ ସୁନ୍ଦର ଚିକ୍କଣ ବସ୍ତ୍ର ବୁଣିବାରେ ଜୀବନର କୌଣସି ସୂତ୍ର ବାଦ୍ ଦିଆଯାଇପାରେ ନାହିଁ । ସାମାଜିକ ଜୀବନ ସଙ୍ଗୀତର ମଧୁର ମୂର୍ଚ୍ଛନାରେ କୌଣସି ସ୍ୱର, ତାଳ, ଲୟ ଅବହେଳିତ ହୋଇପାରେ ନାହିଁ ।

ଆମ ପୂର୍ବପୁରୁଷଗଣ ଦିନେ ଆମ ପରି ନିଗଟ ବାସ୍ତବ ଜୀବନ ଯାପନ କରୁଥିଲେ । ସାଧାରଣ ଇତିହାସ ସେମାନଙ୍କର ଅନୁଭୂତି ଦର୍ଶାଇ ମନୁଷ୍ୟର ସାମାଜିକ ପାରିପାର୍ଶ୍ୱିକ ଗଠନର କ୍ରମଗତି ନିର୍ଦ୍ଦେଶ କରେ । ପର ପର ଯୁଗମାନଙ୍କର ଚିର ଅପରିବର୍ତ୍ତନୀୟ ସମସ୍ୟାଗୁଡିକର ସମାଧାନ ନିମନ୍ତେ ତହିଁର ବିଷୟବସ୍ତୁ ବଦଳୁଥାଏ । ସାମାଜିକତା ଦୃଷ୍ଟିରେ ଯୁଗଯୁଗ ବ୍ୟାପୀ ବିଶାଳ ସୃଷ୍ଟିଚିତ୍ରକୁ ମାନବୀୟ ରଙ୍ଗରେ ରଞ୍ଜିତକରେ ସାମାଜିକ ଇତିହାସ । ପୂର୍ବଜୀବନ ଓ ବର୍ତ୍ତମାନ ଜୀବନ ପୃଥକ୍ ନୁହେ—ଉଭୟ ଏକ କ୍ରମାନ୍ୱୟ । ଏହି କଥା ବୁଝାଇ ଜୀବନର ବିଶଦ୍ ବିବରଣୀ ଶିକ୍ଷା ଓ ଉପସ୍ଥାପନ କରିବାରେ ଏହି ବିଷୟ ସୁଧୀବର୍ଗଙ୍କୁ ଯଥେଷ୍ଟ ସୁବିଧା ଓ ସୁଯୋଗ ଦିଏ । ସମନ୍ୱୟ ଜାତୀୟତା, ଲୋକପ୍ରିୟତା ସାଧାରଣ ଇତିହାସର ପ୍ରାଣ ତହିଁର ପୃଷ୍ଠାରେ ଆମେ ଖୁବ୍ ଅଳ୍ପ ବିବଦମାନ ଘଟଣା ଆକସ୍ମିକ ବିପ୍ଳବର ପ୍ରରୋଚନା ଦେଖୁଁ । ଚିନ୍ତା-କ୍ରିୟାର ଅହେତୁକ ଅସାମଞ୍ଜସ୍ୟ ବ୍ୟକ୍ତି ବିଷୟରେ ଜୀବନରେ ଯେପରି ଦେଖାଯାଏ, ସାମାଜିକ ବେଷ୍ଟନୀରେ ସେପରି ଦେଖାଯାଏ ନାହିଁ । ସରଳ ସାଧାରଣ ଜୀବନର ଅପ୍ରତିହତ ଅକୁଟିଳ ଗତି ସ୍ପଷ୍ଟ । ସଂକ୍ଷେପରେ ସାମାଜିକ ଇତିହାସ ଶିକ୍ଷା ଜ୍ଞାନପ୍ରଦ, ଶ୍ରଦ୍ଧାଯୁକ୍ତ ।

ଏ ଜ୍ଞାନ ଓ ଶ୍ରଦ୍ଧାର ସମ୍ୟକ୍ ଅଭିବୃଦ୍ଧି ନିମନ୍ତେ ଏ ବିଷୟ ଶିକ୍ଷା କରିବାପାଇଁ ଉପଯୁକ୍ତ ମାର୍ଗ ଅବଲମ୍ବନ କରିବାକୁ ହୋଇଥାଏ । ବାଳକ ବାଳିକା ସମାଜର ଅଙ୍ଗ

ବିଶେଷ । ଏଣୁ ଏ ବିଷୟ ପ୍ରାଥମିକ ବିଦ୍ୟାଳୟରେ ମଧ୍ୟ ଶିକ୍ଷଣୀୟ । ଠିକ୍ ଭବରେ ଶିଶୁର ସାମାଜିକ ବୃତ୍ତିଗୁଡ଼ିକର ଅଙ୍କୁରୋଦ୍‌ଗମ ନ ହେଲେ ଭବିଷ୍ୟତରେ ସେ ସମାଜ ଶ୍ରୀବୃଦ୍ଧିରେ ନିଜକୁ ନିୟୋଜିତ କରିନପାରି ଅଭିଶପ୍ତ ହୁଏ । ଆଜିର ଶିଶୁ କାଲିର ନାଗରିକ, ସମାଜ ପୋତଚାଳନାରେ କର୍ଣ୍ଣଧାର । ଏପରି ଭବରେ କିଶୋରାବସ୍ଥାରୁ ସ୍ନେହ, ମୈତ୍ରୀ, କରୁଣା, ତ୍ୟାଗ, କୃତଜ୍ଞତା ଇତ୍ୟାଦି ସଦ୍‌ଗୁଣଗୁଡ଼ିକର ସ୍ୱଚ୍ଛ ଧାରଣା ନବୀନ ଶିକ୍ଷାର୍ଥୀର ହୃଦୟରେ ଉଦ୍ରେକ ଓ ପୁଷ୍ଟ ହେବା ନିତାନ୍ତ ବାଞ୍ଛନୀୟ । ଏହି-ଠାରେ ହିଁ ଶିକ୍ଷାପଥରେ ଜୀବନୀ-ଆଲୋଚନା (Biographical Method) ର ଆବଶ୍ୟକତା ଉପଲବ୍‌ଧ ହୁଏ । କିନ୍ତୁ ଅନେକ ମହାପୁରୁଷଙ୍କ ଜୀବନୀ ମଧ୍ୟରେ ବାଳଶିକ୍ଷାର୍ଥୀଙ୍କ ମନକୁ ଆକର୍ଷଣ କଲଭଳି ଜୀବନୀ ବାଛିବାରେ ଦୂରଦୃଷ୍ଟି ରହିବା ସାହଚର୍ଯ୍ୟ, ସମପ୍ରାଣତା ସହାନୁଭୂତି ଶିକ୍ଷାର ମନ୍ତ୍ର; ଏଣୁ ସେମାନଙ୍କ ସମବୟସ୍କ ବା କିଞ୍ଚିତ ଉର୍ଦ୍ଧ୍ୱବୟସ୍କ ବୀରଙ୍କ ଜୀବନୀ ଶିଖାଇବାକୁ ହେବ । ପୁଣି ନିର୍ବାଚିତ ବୀର ସମସାମୟିକ, ଅନ୍ତତଃ ସେହି ଯୁଗର ହୋଇଥିଲେ ଶିକ୍ଷା କାର୍ଯ୍ୟକାରୀ ହୁଏ । ଅନ୍ୟ ଦିଗରେ ସଦ୍‌ଗୁଣଗୁଡ଼ିକର କେବଳ ଅନୁଶୀଳନ, ନିର୍ଦ୍ଦେଶ ପ୍ରକାର ବର୍ଣ୍ଣନରେ ପ୍ରୟୋଜନ ନାହିଁ । ଅତୀନ୍ଦ୍ରିୟ ଧାରଣା ଶିଶୁ ପକ୍ଷରେ ଏକ ପ୍ରକାର ଅସମ୍ଭବ । ଦେଶପ୍ରେମ, ସତ୍ୟଭଷଣ, ସୌହାର୍ଦ୍ଦ୍ୟ—ଏପରି ଗୁଡ଼ାଏ ଗୁଣ ଧରି ଘଣ୍ଟା ଘଣ୍ଟା ନୀରସ ବ୍ୟାଖ୍ୟା—ବକ୍ତୃତା କରି ବସିଲେ କିଛି ଫଳ ନାହିଁ । କିନ୍ତୁ ଜଣେ ଉଚ୍ଚ ମନୋବୃତ୍ତି ବାଳକ ବା ବାଳିକା କିପରି କଠୋର କର୍ତ୍ତବ୍ୟ କ୍ଷେତ୍ରରେ ପ୍ରତିକୂଳ ଅବସ୍ଥାରେ ମଧ୍ୟ ନିଜର ଛୋଟ ପାରିବାରିକ, ସାମାଜିକ ପରିସରରେ କୌଣସି ବିଶିଷ୍ଟ ଘଟଣାସ୍ଥଳରେ ସେହି ସେହି ଗୁଣଗୁଡିକର ଉତ୍କୃଷ୍ଟ ପରିଚୟ ଦେଇଥିଲେ, ସେପରି କେତୋଟି ଘଟଣାର ପ୍ରାଞ୍ଜଳ, ମୁଗ୍‌ଧକର, ଚତୁର ବର୍ଣ୍ଣନାର ତାହାଠାରୁ ଶତଗୁଣ ଫଳ ଫଳିବ । ପ୍ରଥମ ସୋପାନରେ ଜ୍ଞାନ ବିଷୟମୂଳକ, ଇନ୍ଦ୍ରିୟଗ୍ରାହ୍ୟ ହେବା ନିତାନ୍ତ ଆବଶ୍ୟକ । ଏହିଠାରେ ହି ଶିକ୍ଷାର ସ୍ଥଳ ଉଦାହରଣମୂଳକ ଆଖ୍ୟାୟିକା ସମ୍ବଳିତ ରୀତି (Concrete story telling method) ର ଉପକାର ଜଣାଯାଏ । ଆଖ୍ୟାୟିକା ପ୍ରଥମେ ବ୍ୟକ୍ତି ବିଶେଷର ଜୀବନରୁ ଗୃହୀତ ହେଲେ ମଧ୍ୟ କ୍ରମେ ବିଭିନ୍ନ ଶ୍ରେଣୀ ବା ଜାତିର ଜୀବନରୁ ନିଆଯାଇପାରେ । ପୁଣି କ୍ରମେ ଶିକ୍ଷକ ଶିକ୍ଷାର୍ଥୀକୁ କାହାଣୀଟି ଆମୂଳଚୂଳ ନ କହି ତହିଁର ମୁଖ୍ୟ ଘଟଣାଟି ଜଣାଇ ସେହି ଅବଲମ୍ବନରେ ପ୍ରଶ୍ନୋତ୍ତର ଛଳ (Dialogue method) ରେ ତାକୁ ତାହା ପୂର୍ଣ୍ଣ କରିବାର ସୂଚନା ଦେଇପାରନ୍ତି । କିନ୍ତୁ ଏ ସବୁଥିରେ ବାସ୍ତବ ଘଟଣା ପ୍ରତି ତୀକ୍ଷ୍ଣ ଦୃଷ୍ଟି ଥିବା ଉଚିତ । ଯେପରି ଅତିରଞ୍ଜିତ କଳ୍ପନାର ଅବାଧଗତି ତହିଁରେ ନ ସଞ୍ଚରେ, ପୁଣି ଏ ଘଟଣା ଉପସ୍ଥାପନ ମଧ୍ୟ ଯେ କୌଣସି ପ୍ରକାରେ କରଯାଇ ନପାରେ । ଠିକ୍ ଅନୁପାତ, ଶୃଙ୍ଖଳା, ନ୍ୟାୟ, ଭଙ୍ଗୀ ଦୃଷ୍ଟିରେ ତହିଁର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ଭୌଗୋଳିକ ପରିସ୍ଥିତି, ଖାଦ୍ୟ, ପୋଷାକ, ଆଚାର ବ୍ୟବହାର,

କ୍ରୀଡ଼ା ବ୍ୟାୟାମ ଇତ୍ୟାଦି ଭିନ୍ନଭିନ୍ନ ବିଭଗ ଅନୁଯାୟୀ ଦିଆଯାଇ ସମୁଦାୟର ସହିତ ଚିତ୍ର ପ୍ରତି ଦୃଷ୍ଟି ଦେବା ଉଚିତ । ଶିକ୍ଷିତ ବିଷୟରେ ପରିପୂର୍ଣ୍ଣ ବିକାଶର ଯଥାସମ୍ଭବ ଧାରଣା ଲକ୍ଷ୍ୟ କରିବା ଉଚିତ । ସାମାଜିକ ଜୀବନର ବିଭିନ୍ନ ଅନୁଭୂତିର ଅନୁପାତ ବିଗ୍ରହ ରହିବା ଆବଶ୍ୟକ । ଏହି ଅନୁଭୂତିର ଯଥାଯଥ ପ୍ରକାଶ ଉପଯୁକ୍ତ ବର୍ଣ୍ଣନ-ପ୍ରଣାଳୀ (Narrative method) ସାପେକ୍ଷ । ରାଜନୀତିକ ବା ସାମରିକ ଇତିହାସର କୌଣସି ନୀତିମୂଳକ ଘଟଣା ବା ଯୁଦ୍ଧ-ବର୍ଣ୍ଣନା କଲାବେଳେ ବାଧ୍ୟ ହୋଇ ଅନେକ ବୈଜ୍ଞାନିକ ପଦ ପ୍ରୟୋଗ କରାଯାଏ । ନୂତନ ଶିକ୍ଷାର୍ଥୀ ପକ୍ଷରେ ଏଗୁଡ଼ିକ ବୁଝାଇବା ପାଇଁ ପ୍ରଥମେ ବହୁତ ଅଧ୍ୟବସାୟ କରିବାକୁ ପଡେ । କିନ୍ତୁ ସାମାଜିକ ଇତିହାସରେ ଏ ପ୍ରତିବନ୍ଧକ ନାହିଁ । ସରଳ ସୁନ୍ଦର ଭଷାର ବ୍ୟବହାରରେ ଏ ବିଷୟ ଉତ୍କୃଷ୍ଟ ପଥ ଦେଖାଏ । କୁହାଯାଇଛି, ଏ ବିଷୟରେ ଶିକ୍ଷା ପ୍ରଥମେ ବାସ୍ତବ ଭିତ୍ତି ଉପରେ ଦୃଢ଼ୀଭୂତ ହେବା ଆବଶ୍ୟକ କିନ୍ତୁ କ୍ରମେକ୍ରମେ ଶିକ୍ଷାର୍ଥୀର ଜ୍ଞାନ-ରାଜ୍ୟର ସୀମା ଯେତିକି ବଢ଼ୁଥାଏ, ସେତିକି ବାହ୍ୟଜଗତରୁ ଦୃଷ୍ଟି ଫେରାଇ ତାକୁ ମନୋରାଜ୍ୟରେ ବିଚରଣ କରିବାକୁ ହୁଏ । ଯେ କୌଣସି ଜ୍ଞାନାର୍ଜନର ପନ୍ଥା ସୂକ୍ଷ୍ମ ଦର୍ଶନ-ସାପେକ୍ଷ । ଏ ସୂକ୍ଷ୍ମ ଦର୍ଶନକୁ ସ୍ଥୁଳାବସ୍ଥାରେ ଅଭିବ୍ୟକ୍ତ କରିବାରେ ଚିତ୍ର ସମନ୍ୱିତ ପ୍ରଣାଳୀ (Pictorial method) ଖୁବ୍ ଉପକାରୀ ବ୍ୟକ୍ତିଗତ ବା ଶ୍ରେଣୀବଦ୍ଧ ଜୀବନର ଆଂଶିକ ବା ପୂର୍ଣ୍ଣ ରହସ୍ୟ ଚିତ୍ରଫଳକରେ ପ୍ରତିବିମ୍ବିତ କରାଯାଇପାରେ । କିଶୋରର କୋମଳ ମନ ଉପରେ ଚିତ୍ରଗୁଡ଼ିକ ନିଜର ରୂପ-ରେଖା, ଆଲୋକ ଛାୟା, ମନୋହର ରଙ୍ଗ ଘେନି ଚମତ୍କାର ପ୍ରଭବ ଖେଳାଇ ଦିଅନ୍ତି । ସାଧାରଣରେ ପ୍ରାଚୀନ ଅର୍ବାଚୀନ ପ୍ରଭେଦର ଗୋଟିଏ ଚିହ୍ନ ରୂପେ କୁହାଯାଏ । ପ୍ରାଚୀନମାନେ ସବୁ ବିଷୟରେ "କଣ" "କେବେ" ଏ ଦୁଇଟି ପ୍ରଶ୍ନରେ ବ୍ୟସ୍ତ ଥିଲେ; କିନ୍ତୁ ଆମେ "କାହିଁକି" "କିପରି" ଏ ସମ୍ବନ୍ଧରେ ଉଦ୍‌ବେଗ ଦେଖାଉଁ । ଏ କଥା ପୂର୍ଣ୍ଣ ସତ୍ୟ ନୁହେ, ତଥାପି ସତ୍ୟର ମାତ୍ରା ସେଥିରେ ଅଛି । ସାମାଜିକ ଇତିହାସ କ୍ରମବିକାଶତତ୍ତ୍ୱର ଉନ୍ନତି ନିପୁଣ ପ୍ରଦର୍ଶକ । ଏଣୁ ଇତିହାସରେ ବିଶେଷତଃ ସାମାଜିକ ଇତିହାସ ଶିକ୍ଷାର ବର୍ତ୍ତମାନରୁ ଆରମ୍ଭ କରି ଅତୀତକୁ ପୁରେବର୍ତ୍ତନ କରିବା ଅସମ୍ଭବ । ଏକ କେନ୍ଦ୍ର ବିଶିଷ୍ଟ ପୂର୍ବ-ପରକ୍ରମ ପ୍ରକାର (Concentric & chronological method) ରେ ଶିକ୍ଷା ଏ ଦିଗରେ ଅପରିହାର୍ଯ୍ୟ । ସନ୍ଦର୍ଭମୂଳକ ଇତିହାସ ଯାତ୍ରାରେ ଘଟଣାଗୁଡ଼ିକ ଇତସ୍ତତଃ ଅସଲଗ୍ନ ଅବସ୍ଥାରେ ରହି ନ ପାରନ୍ତି । ସେ ଗୁଡ଼ିକୁ ଯଥା ସ୍ଥାନାବସ୍ଥିତ ଗୋଟିଏ ଗଠନ ପ୍ରକାର (Frame work) ଲୋଡ଼ା । ପୂର୍ବ ପରକ୍ରମ ଏହି ଗଠନ-ପଦ୍ଧତି ଯୋଗାଏ । ଏପରି ଭବରେ ସାମାଜିକ ଇତିହାସର ମେରୁଦଣ୍ଡ । ସେଥି ସଙ୍ଗେ ସାମାଜିକ ଇତିହାସକୁ ଘଟଣାବହୁଳ କଲେ ସେଥିପ୍ରତି ଶ୍ରଦ୍ଧା କମିଯାଏ; ଘଟଣା-ବାହୁଲ୍ୟ ସମସ୍ୟା ସମାଧାନ ଅଭିଜ୍ଞତା-ଅର୍ଜନ ମାର୍ଗରେ ବାଧାଦିଏ । ଏଠାରେ ହିଁ

ମୀମାଂସାର୍ଥ ପ୍ରଣାଳୀ (Problem method) କିପରି ଭାବରେ ଶିକ୍ଷା ସଙ୍ଗେ ଘନିଷ୍ଠ ଭାବରେ ସଂଯୁକ୍ତ, ତାହା ଧରାଯାଏ । ଏଣେ ପୁଣି ପ୍ରତ୍ୟେକ ସମସ୍ୟାକୁ ଚିନ୍ତାପୂର୍ଣ୍ଣ ସମାଧାନ ଦ୍ୱାରା ଜୀବନପୋଯୋଗୀ କରିବାକୁ ହେଲେ ଆଧୁନିକ ପରିସ୍ଥିତି-କୋଣରୁ ତାକୁ ଦେଖିବାକୁ ହୁଏ । ଏଠାରେ ବିଭିନ୍ନ ଯୁଗରେ ଆଲୋଚିତ ବିଭିନ୍ନ ଜ୍ଞାତବ୍ୟ ବିଷୟରେ ପରସ୍ପର ସମ୍ବନ୍ଧ,ବିଶିଷ୍ଟ ଧାରା (Correlative method)ର ଉପକାରିତା ଉପଲବ୍ଧ ହୁଏ । ନାନା ପଠିତ ବିଷୟ ମଧ୍ୟରୁ ସମାଜ ବିଜ୍ଞାନ (civics)ର ସାମାଜିକ ଇତିହାସ ସଙ୍ଗେ ଫଳପ୍ରଦ ସଂଯୋଜନା ହୋଇପାରେ । ଉଭୟର ଆଲୋଚ୍ୟ ବିଷୟ ଏକ ସମାଜ । କିନ୍ତୁ ସମାଜ-ବିଜ୍ଞାନ କାହିଁକି ମନୁଷ୍ୟର ଜ୍ଞାନାନୁସନ୍ଧାନୀୟ ଏପରି କୌଣସି ଶାଖା ନାହିଁ । ସାମାଜିକ ଇତିହାସର ବ୍ୟାପକ ବିସ୍ତୀର୍ଣ୍ଣ ପ୍ରକରଣରେ ଯୋଗପାଇ ନ ପାରେ ।

ମନେ ରଖିବାକୁ ହେବ, ସାମାଜିକ ଇତିହାସ ଚର୍ଚ୍ଚାରେ କୌଣସି ପୂର୍ବ ପୋଷିତ ମତବାଦ, ଆସକ୍ତି ବା ଘୃଣା, ଶ୍ରେଣୀ, ଜାତିମୂଳକ ଉଚ୍ଚ-ନୀଚ ଭେଦଭାବ ରଖିଲେ ଫଳ ବିଷମୟ ହୁଏ । ପ୍ରିୟ ମାତୃଭୂମି, ପୁଣ୍ୟଭୂମି ଭାରତର ବାୟୁମଣ୍ଡଳ ଆଦି ବିଭିନ୍ନ ତଥାକଥିତ ଧର୍ମାବଲମ୍ବୀଙ୍କ ସଂଘର୍ଷ, ପ୍ରାଦେଶିକ ହିଂସା ଶ୍ରେଣୀ-ଉତ୍କର୍ଷ-ଅପକର୍ଷ ଭେଦାଭେଦ ଦମ୍ଭ ଅଭିମାନରେ ବ୍ୟତିବ୍ୟସ୍ତ, ଅବରୁଦ୍ଧ, ବିଷାକ୍ତ । ସମୂହ କଲ୍ୟାଣ, ଲୋକହିତକର ଅନୁଷ୍ଠାନ, ସ୍ୱାୟତ୍ତ ଶାସନ ଆଦି ଯେପରି ତା ପକ୍ଷରେ ସ୍ୱପ୍ନ ହୋଇଛି । ପୂର୍ଣ୍ଣତମ, ଉଚ୍ଚତମ, ଶ୍ରେଷ୍ଠତମ ବିକାଶର ପୂତ ମହତ୍ ଆକାଂକ୍ଷା ଆଜି ତାର ପ୍ରତିହତ, ବିପଦ୍‌ଗ୍ରସ୍ତ, ବିପର୍ଯ୍ୟସ୍ତ । ପଦେ ପଦେ ଭାରତୀୟର ଆଜି ଦୁର୍ଦ୍ଦଶା, ଲୋକହସା, ବିଡମ୍ବନା ବ୍ୟସନ । ଭାରତ-ଗୌରବ ରବି ଆଜି ମ୍ଳାନ ଧୂସର, ଅସ୍ତୋନ୍ମୁଖ, ଭାରତ ଭାଗ୍ୟ-ବିଧାତା ପ୍ରତିକୂଳ, ପରାଙ୍ମୁଖ, ବିଷଣ୍ଣ । ଏ ପରିସ୍ଥିତିରେ ଆମପକ୍ଷରେ ସାମାଜିକ ଇତିହାସର ତାତ୍ତ୍ୱିକ ତାତ୍ପର୍ଯ୍ୟମୂଳକ ଶିକ୍ଷା କେତେ ମୂଲ୍ୟବାନ ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ ।

●

# ଆଧୁନିକ ଉତ୍କଳ ସାହିତ୍ୟର କେତୋଟି ଅଭାବ

ସାହିତ୍ୟ ଭାବ ଓ ଆଦର୍ଶ, ସୁଖ ଓ ଦୁଃଖ, ଆକାଙ୍କ୍ଷା ଓ ଅଭାବ ପ୍ରତିବିମ୍ବିତ କରି ଯେ କୌଣସି ଦେଶ, ଜାତି ବା ଲୋକ ସମଷ୍ଟିର ସଭ୍ୟତାର ପ୍ରକାଶମାନ ସୂକ୍ଷ୍ମ ମାଧ୍ୟମର କାର୍ଯ୍ୟକରେ । ଏହା କହିବା ମାମୁଲି କଥା । ତଥାପି ଚର୍ବିତଚର୍ବଣ ହେଲେ ସୁଦ୍ଧା ଏହା ଚିରନ୍ତନ ସତ୍ୟ । ପ୍ରାଚ୍ୟ ଓ ପାଶ୍ଚାତ୍ୟ, ପ୍ରାଚୀନ ଓ ଅର୍ବାଚୀନ ବିଭିନ୍ନ ଜାତି, ଧର୍ମ ଓ ସମ୍ପ୍ରଦାୟର ସଂସ୍କାର ପ୍ରଗତିର ସମ୍ମିଶ୍ରଣ ଏବଂ ସଂସ୍କୃତି ସଂଘର୍ଷ ବର୍ତ୍ତମାନ ଭାରତବର୍ଷରେ ଦେଖା ଯାଉଅଛି । ସେଥିଭିତରେ ଯେ କୌଣସି ଗୋଟିଏ ଲୋକ-ସମୂହକୁ ତାହାର ସ୍ଥିତି ଅକ୍ଷୁଣ୍ଣ ଓ ଆତ୍ମରକ୍ଷା ହେଲେ ତାହାକୁ କୌଣସି ରାଜନୀତିକ କୌଶଳ କିମ୍ବା ଆର୍ଥିକ ସ୍ୱାବଲମ୍ବନ ଅପେକ୍ଷା ନିଜ ସଂସ୍କୃତିର ଅନ୍ତର୍ନିହିତ ବଳିଷ୍ଠତା ଉପରେ ଅଧିକା ନିର୍ଭର କରିବାକୁ ପଡିବ । ସଂସ୍କୃତିର ଏହି ଶକ୍ତି ସାହିତ୍ୟ ଘନିଷ୍ଠ ଭାବରେ ସଞ୍ଚୟ କରେ । ପରସ୍ପର ବିନିମୟ ଜୀବନର ମୂଳଭିତ୍ତି ଶିକ୍ଷା ଓ ଅନୁଶୀଳନ ମାର୍ଗରେ ଗୋଟିଏ ବିଶିଷ୍ଟ ସାହିତ୍ୟ ତହିଁରେ ଥିବା ସତ୍ୟ, ଶିବ ଓ ସୁନ୍ଦର ସମଗ୍ର ଜଗତ ସମ୍ମୁଖରେ ପ୍ରକାଶ କରି, ଅନ୍ୟ ସମସ୍ତ ସାହିତ୍ୟରୁ ଜୀବନ ମନୋହର ଓ ଦୀପ୍ତ ଉପାଦାନ ସଂଗ୍ରହ କରି ନିଜକୁ କାନ୍ତ ସଂଯମ ହୋଇ ଓ ଉଦ୍ଦୀପିତ କରିବା ବିଧେୟ । ଆଧୁନିକ ଉତ୍କଳ ସାହିତ୍ୟ କ୍ଷେତ୍ରରେ ଏହା ପ୍ରଥମ ଗୁରୁତର କର୍ତ୍ତବ୍ୟ । ବୋଧହୁଏ ପ୍ରାକୃତିକ ଓଡ଼ିଶାର ବର୍ତ୍ତମାନ ଦାରିଦ୍ର୍ୟ, ଆଧୁନିକ ଶିକ୍ଷାର ନ୍ୟୂନତା ଓ ସାମୟିକ ପରିସ୍ଥିତି ଦୃଷ୍ଟିରେ ଆଜି ସୁଦ୍ଧା ଏହି ବିଶାଳ ଭୂଖଣ୍ଡରେ ଅନେକ ଲୋକଙ୍କ ଅଭିମତ ଯେ, ଓଡ଼ିଆ ଜାତିର କୌଣସି ମୌଳିକ ସାହିତ୍ୟ କିମ୍ବା ସଂସ୍କୃତି ନାହିଁ । ଯାହା ଅଛି ତାହା ଅତି ଅନୁନ୍ନତ ଧରଣର । ଉନବିଂଶ ଶତାବ୍ଦୀର ଶେଷଭାଗରେ "ଓଡିଆ ଭାଷା ବୋଲି ଗୋଟିଏ ସ୍ୱତନ୍ତ୍ର ଭାଷା ନାହିଁ, ତାହା ଅନ୍ୟ କୌଣସି ଭାଷାର ରୂପାନ୍ତର" । ଓଡ଼ିଶାର ଅନୁପମ ସ୍ଥାପତ୍ୟ ଓ ଇତର କଳା-ସୌଷ୍ଠବ ଓଡ଼ିଆର କୃତିତ୍ୱ ନୁହେଁ—ଏକଥା କେତେକ ଓଡ଼ିଆ ବିରୋଧୀଙ୍କଦ୍ୱାରା ପ୍ରଚାରିତ ହୋଇଥିବା କଥା ସମସ୍ତଙ୍କୁ ଜଣା । ଏବେ ଜଣେ ଆନ୍ଧ୍ର

ପଣ୍ଡିତ ଗୋଟାଏ ପୁସ୍ତକରେ (ଯାହାକି ସରକାରଙ୍କ ଦ୍ୱାରା ପ୍ରକାଶିତ ହୋଇଅଛି) ଲେଖିଅଛନ୍ତି ଓଡ଼ିଆ ଭାଷା କନ୍ଧ ଶବର ଭାଷା । ଭାରତୀୟ ପାର୍ବତୀୟ ଭାଷା । ଏହାର ଗୋଟିଏ କିଛି ସାହିତ୍ୟ ନାହିଁ । ଏହି ଜାତୀୟ ଦୁର୍ବଳତାର ପରିଚୟ ନିମନ୍ତେ ଆମ୍ଭେମାନେ ଦାୟୀ । ପ୍ରକାଶ ଓ ପ୍ରଚାର ଅଭାବରେ ଏହାସବୁ ଘଟୁଅଛି । ଯଦି ଏହି ମତ ସବୁ ଅମୂଳକ ତେବେ ତାହା ସଂଶୋଧନ କରିବା ଉତ୍କଳୀୟ ସାହିତ୍ୟିକଙ୍କ ପକ୍ଷରେ ଗୌରବାବହ ଦାୟିତ୍ୱ ବୋଲି ଧରାଯିବା ଠିକ୍ । ସଂକୀର୍ଣ୍ଣ-ଯାଥେଷ୍ଟ୍ୟର ଯୁଗ ଚାଲିଯାଇଅଛି । ଆନ୍ତର୍ଜାତିକ ନିବନ୍ଧନ ପହଞ୍ଚିଛି । ଏହି ନୀତିରେ ଆମ୍ଭମାନଙ୍କୁ ଓଡ଼ିଆ ଭାଷାର ପ୍ରାଚୀନ ସୃଷ୍ଟି ଓ କ୍ରମବିକାଶ ଉତ୍କଳ ସାହିତ୍ୟ ଭଣ୍ଡାରର ଅମୂଲ୍ୟ ସଂପଦ ବାହ୍ୟ ଜଗତ ଆଗରେ ଦର୍ଶାଇବାକୁ ହେବ । ଉଦାହରଣ ସ୍ୱରୂପ ଦୀନ-କୃଷ୍ଣଙ୍କର ଭକ୍ତିରସ ଉଚ୍ଛ୍ୱସିତ ପ୍ରସାଦଗୁଣ, କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଅତୁଳନୀୟ ଅଳଙ୍କାରଛଟା, ଶବ୍ଦ ଯୋଜନା, ଆଦିରସ ବର୍ଣ୍ଣନା, ଅଭିମନ୍ୟୁଙ୍କ ପଦଲାଳିତ୍ୟ ଓ ଭାବମୂର୍ଚ୍ଛନା, କବିସୂର୍ଯ୍ୟଙ୍କ ମଧୁର ସଙ୍ଗୀତ ଓ ମନସ୍ତାତ୍ତ୍ୱିକ ପ୍ରକୃତି ବିଶ୍ଳେଷଣ, କୃଷ୍ଣସିଂହଙ୍କ ଔଦାର୍ଯ୍ୟ, ଗୋପାଳକୃଷ୍ଣଙ୍କ କାବ୍ୟ ଅନ୍ତର୍ଦୃଷ୍ଟି, ରାଧାନାଥଙ୍କ ପ୍ରାଚୀନ ଓ ଆଧୁନିକ ରୁଚି ସମନ୍ୱୟ, ତତ୍ପର ବିଭିନ୍ନ କବି, ଲେଖକ, ସମାଲୋଚକ ଓ କଳାବିତ୍‌ଙ୍କ ଜଟିଳ ଭାବ ସମୂହ ପ୍ରତି ଆମ୍ଭର ଲୋକ-ସାହିତ୍ୟ ପୌରାଣିକ ଉପାଖ୍ୟାନ, କଳା ଓ ବିଜ୍ଞାନର ଗାରିମା ପ୍ରତି ଜଗତର ସମସ୍ତ ସାହିତ୍ୟ-ରସିକ, ସୌନ୍ଦର୍ଯ୍ୟ-ପିପାସୁ, କଳା-ଗ୍ରାହକ ଓ ତାତ୍ତ୍ୱିକମାନଙ୍କ ଶୁଭଦୃଷ୍ଟି ଆହ୍ୱାନ କରିବାକୁ ହେବ । ଏଥିସଙ୍ଗେ ପାଶ୍ଚାତ୍ୟ ବୈଦେଶିକ ପୂର୍ବ ଓ ତା'ର ମନୀଷୀମାନଙ୍କୁ ଜ୍ଞାନ, ମହତ୍ତ୍ୱ ଓ ଭାବ ଗମ୍ଭୀରତା ଉପଲବ୍ଧି କରି ନିଜ ସାହିତ୍ୟକୁ ସମୃଦ୍ଧ କରିବା ଆବଶ୍ୟକ । ସେକ୍‌ସପିୟର କିମ୍ବା ଏମରସନ୍, ହ୍ୟୁଗୋ କିମ୍ବା ଗେଟେ, ପାସକାଲ କିମ୍ବା ବର୍ଣ୍ଣାଡ଼୍‌ଶା, ଜୀବନକୁ ରୁଚିକର, ସୁନ୍ଦର ଓ ମୂଲ୍ୟବାନକରି ଲୋକ ଶିକ୍ଷାପାଇଁ କି ଉପାଦାନ ରଖି ଯାଇନାହାନ୍ତି ।

ଏହି ସଂକ୍ରାନ୍ତରେ ପ୍ରଥମ ଆବଶ୍ୟକୀୟ ଗୋଟିଏ ସର୍ବତଥ୍ୟ ସନ୍ନିବେଶିତ ତୁଳନାତ୍ମକ ଆଧୁନିକ ଗବେଷଣା-ଭିତିମୂଳକ ଉତ୍କଳ ସାହିତ୍ୟର ଇତିହାସ ସଂକଳନ ଆବଶ୍ୟକ ବୋଲି ମନେହୁଏ । ଏହି ସଂକଳନରେ ଗଦ୍ୟ, ପଦ୍ୟ, ନାଟକ, ପୁରାଣ, ସଙ୍ଗୀତ ଇତ୍ୟାଦି ବିଷୟ କ୍ରମେ କିମ୍ବା ଓଡିଆ ଭାଷାର ପ୍ରଥମ ସୃଷ୍ଟିକାଳରୁ ଶତାବ୍ଦୀ ଅନୁକ୍ରମେ କିମ୍ବା ବିଶିଷ୍ଟ କବି ଓ ଲେଖକମାନଙ୍କ ଜୀବନ-ଅଧ୍ୟାୟ ବିଭାଗ କ୍ରମେ ପକାଯାଇପାରେ । ଅବଶ୍ୟ ଏହି ଗ୍ରନ୍ଥ ନିଃସନ୍ଦେହରେ ପ୍ରକାଶ ପାଇବ ? କିନ୍ତୁ ତହିଁ ସଙ୍ଗେ ସଙ୍ଗେ ତହିଁରେ ଗୋଟିଏ ଇଂରେଜୀ ସଂସ୍କରଣ ବାହାରିବା

ଉଚିତ । ରାଜନୀତିକ ସ୍ଫୂର୍ତ୍ତି ପରବଶତଃ ଇଂରେଜୀ ବୈଦେଶିକ ଭାଷାବୋଲି ଆମ୍ଭମାନଙ୍କର ପ୍ରୀତିକର ହୋଇନପାରେ । ପ୍ରାଦେଶିକ ଭାଷା ଓ ହିନ୍ଦୀ ରାଷ୍ଟ୍ରଭାଷାର ପୁଷ୍ଟି ଉପଲକ୍ଷେ ଏହାମଧ୍ୟ ଆବଶ୍ୟକବୋଧ ହୋଇନପାରେ । ତଥାପି ନିଷ୍ପକ୍ଷପାତ ବିଚାର ଓ ପ୍ରୟୋଜନ ଦୃଷ୍ଟିରେ ମଧ୍ୟ ଇଂରେଜି ଭାଷାର ଉପକାର ଆମ୍ଭେମାନେ ଏତେଶୀଘ୍ର ବିସ୍ମୃତ ହେବାର କୌଣସି କାରଣ ନାହିଁ । ଗତ ଦୁଇ ବା ତିନି ଶତ ବର୍ଷର ଘନ ଅନ୍ଧକାର ମଧ୍ୟରୁ ଭାରତକୁ ଆଲୋକକୁ ଆଣି, ଜଗତର ବୈଜ୍ଞାନିକ ଚିନ୍ତାଧାରା ସହିତ ସଂଶ୍ଳେଷଣ କରି, ପାଶ୍ଚାତ୍ୟ ସାହିତ୍ୟ, ଦର୍ଶନ ଓ ସଂସ୍କୃତର ମାଧୁରୀ ଏହି ପୁରାଣପ୍ରସିଦ୍ଧ ମହାଦେଶକୁ ଆସ୍ୱାଦନ କରାଇ, ଆର୍ଥିକ ଓ ରାଜନୀତିକ ଜାଗରଣ ତରଙ୍ଗ ଖେଳାଇ, ଆର୍ଯ୍ୟଋଷି ମୁନିକୃତ ପ୍ରାଚୀନ ମୌଳିକ ଶାସ୍ତ୍ରୋତ୍କର୍ଷ ପରି ଆମ୍ଭ ପରି ଅଯୋଗ୍ୟ ବଂଶଧରଙ୍କ ଦୃଷ୍ଟିଫେରାଇ, ପ୍ରାଦେଶିକ ପ୍ରତିବନ୍ଧକତା ଯଥାସମ୍ଭବ ଦୂରକରି, ଭାରତୀୟ ମହାଜାତୀୟ ଭାବର ସୂତ୍ରପାତକରି, ଇଂରେଜି ଆମର ଅନେକ ହିତସାଧନ କରିଅଛି । ଇଁରେଜି ଆମର ଅନେକ ନିଜର ହୋଇ ସାରିଲଣି । ଏ ଦେଶରେ ରହିବାକୁ ଆରମ୍ଭ କଲଣି । ବହିର୍ଜଗତ ସହିତ ସମ୍ବନ୍ଧ ସ୍ଥାପନ ଏହି ଭାଷାଦ୍ୱାରା ସ୍ୱଚ୍ଛରୂପେ ହୋଇପାରେ ।

ଏଣୁ ଉତ୍କଳ ସାହିତ୍ୟ ଇତିହାସ ସଂକଳନର ଅଂଶ ରୂପେ ଗୋଟିଏ ଉଚ୍ଚ ଦରର ସଚିତ୍ର ମାସିକ ଇଁରେଜି ପତ୍ରିକା ଓଡିଶାର କଳା, ବିଜ୍ଞାନ, ସାହିତ୍ୟ, ଦର୍ଶନ ଓ ଚିନ୍ତାର ବୈଶିଷ୍ଟ୍ୟକୁ ଫୁଟାଇ, ପୁଷ୍ଟ ଓ ଉତ୍ସାହିତ କରି, ଭାରତ ତଥା ଜଗତର ଚିନ୍ତାଧାରା ସହିତ ସେଗୁଡ଼ିକ ଏକତ୍ର ସମାବେଶ କରାଇ ବାହାରିବା ଆବଶ୍ୟକ । ଉଦାହରଣ ସ୍ୱରୂପ ମାନ୍ଦ୍ରାଜର ବିଖ୍ୟାତ 'ତ୍ରିବେଣୀ' ଦାକ୍ଷିଣାତ୍ୟର ଆନ୍ଧ୍ର, ତାମିଲ, କର୍ଣ୍ଣାଟ, ମାଳୟ, ମହାରାଷ୍ଟ୍ର ଇତ୍ୟାଦି ପ୍ରାଦେଶିକ ସାହିତ୍ୟର ଅନୁବାଦ, ସମାଲୋଚନା ଇତ୍ୟାଦି ଇଁରେଜିରେ ପାଠକମାନଙ୍କ ଆଗରେ ଉପସ୍ଥାପିତ କରୁଅଛି । ବର୍ତ୍ତମାନ ଓଡ଼ିଶାରେ ଦୁଇଟି ଇଁରେଜି ମାସିକ ଚଳୁଛି । 'ବୈତରଣୀ' ଓ ନବନୂତନ 'ଚଳନ୍ତି ସମାଚାର', ଏ ଦୁଇଟିର ଦୃଷ୍ଟି ଏ ଦିଗରେ ପଡ଼ିଲେ ଭଲ ହୁଅନ୍ତା ।

ପୁଣି ଏହି ବିଂଶ ଶତାବ୍ଦୀରେ ବିଜ୍ଞାନର ପ୍ରସାର ହେତୁ ଆମ୍ଭର ବୃଦ୍ଧିବୃତ୍ତି ବହୁଳ ଭାବରେ ବିଶେଷ ଜ୍ଞାନ (Technical) ଗ୍ରନ୍ଥରେ ଢ଼ଳା ହେଉଅଛି । ଏ ଦିଗରେ ଉତ୍କଳ ସାହିତ୍ୟ କ୍ଷେତ୍ରରେ ଅଭାବ ଦୃଷ୍ଟିଗୋଚର ହୁଏ । ସାହିତ୍ୟ-ଆଲୋଚନା, ବିଜ୍ଞାନ, ଆବିଷ୍କାର, ବିଦେଶ ଭ୍ରମଣ ବୃତ୍ତାନ୍ତ, ବାଣିଜ୍ୟ, ବ୍ୟବସାୟ ଓ କଳା-ଅନୁଶୀଳନ, ଜୀବନୀ ଇତ୍ୟାଦି ବିଷୟରେ ସରଳ, ପ୍ରାଞ୍ଜଳ, ଚିନ୍ତାଶୀଳ, ସ୍ୱରୁଚି-ସମ୍ପନ୍ନ ପାଠ୍ୟ ଓ ସାଧାରଣ ପୁସ୍ତକର ନିତାନ୍ତ ଅଭାବ ଦେଖାଯାଏ । ଏଥି ସମ୍ବନ୍ଧେ କଲିକତା ବିଶ୍ୱବିଦ୍ୟାଳୟର ଆଦର୍ଶରେ ଆମ୍ଭେମାନେ ଅନୁପ୍ରାଣିତ ହେବା ଉଚିତ ।

ନାନା ବୈଜ୍ଞାନିକ ବିଷୟମାନଙ୍କରେ ପ୍ରାୟ ଶହେ ପୃଷ୍ଠାର ପୁସ୍ତକଗୁଡ଼ିଏ ବଂଗ ଭାଷାରେ କ୍ରମ ସଂଖ୍ୟାରେ ପ୍ରକାଶ କରିବାକୁ ଉପରୋକ୍ତ ବିଶ୍ୱବିଦ୍ୟାଳୟ ଆରମ୍ଭ କରିଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ଏହି ସଂଖ୍ୟାର ପ୍ରଥମଖଣ୍ଡ ଲେଖିବାପାଇଁ ପ୍ରତିଶ୍ରୁତି ଦେଇ-ଅଛନ୍ତି । ଓଡ଼ିଶାର ଏହିଭଳି ଗୋଟିଏ ବ୍ୟବସ୍ଥାର ଆବଶ୍ୟକତା ନାହିଁକି ? ଏହି ପ୍ରସଙ୍ଗରେ ବୈଜ୍ଞାନିକ ପାରିଭାଷିକ ଶବ୍ଦାବଳୀ (Scientfic terminology) ଓ ତହିଁର ପ୍ରୟୋଗ-ରୀତି କଥା ମନରେ ଉଦିତ ହୁଏ । ଓଡ଼ିଆ ଭାଷାରେ ବା ତହିଁରୁ ଗୋଟିଏ ସାମୁଦାୟିକ ଅଭିଧାନ ମୂଳ ଭାଷା ସଂସ୍କୃତରୁ ମୁକ୍ତ ଭାବରେ ପଦ ଓ ବ୍ୟବହାର-ପରିପାଟୀ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଅଭାବ ପକ୍ଷେ ଧାରାବାହିକ ରୀତିରେ ଅନ୍ୟାନ୍ୟ ବୈଦେଶିକ ଓ ଭାରତୀୟ ଭାଷାମାନଙ୍କର ସାହାଯ୍ୟ ମଧ୍ୟ ଲୋଡ଼ିବା ଶ୍ରେୟସ୍କର । ଆହରଣ କରିବା ଜୀବନର ଧର୍ମ । ଗୋଟିଏ ଭାଷା ଅନ୍ୟ ଭାଷାମାନଙ୍କ ସଂଘର୍ଷରେ, ଆଦାନପ୍ରଦାନରେ ସୃଷ୍ଟି ହୁଏ । ନହେଲେ ତାର ପ୍ରବହମାନତା ବନ୍ଦ ହୁଏ ଓ ଭାଷା ମୃତ ହୁଏ । ଅବଶ୍ୟ ସବୁ ସ୍ଥଳରେ ଅନ୍ଧ ଅନୁକରଣ ହାନିକାରକ । ମୌଳିକତା ରକ୍ଷା କରି ବଳିଷ୍ଠ ବ୍ୟକ୍ତିତ୍ୱ ପ୍ରଭାବରେ ଇତର ସମ୍ପଦକୁ ଆର୍ଜିତ କରିବା ଅଭ୍ୟୁଦୟର ଲକ୍ଷଣ ।

ଏହି କ୍ଷୁଦ୍ର ଲେଖାରେ ଆଧୁନିକ ଉତ୍କଳ ସାହିତ୍ୟର କେବଳ ଦୁଇ ତିନୋଟି ଅଭାବ ସୂଚିତ ହୋଇଅଛି । ବିଚକ୍ଷଣ, ବିଜ୍ଞ; ହୃଦୟବାନ ପାଠକବର୍ଗଙ୍କୁ ଅନେକ ଦିଶିବ । ପୁଣି ଏଠାରେ ପ୍ରଶ୍ନ ଉଠିପାରେ, ସାହିତ୍ୟ ବିଜ୍ଞାନ ବା ପତ୍ରିକା ଇତ୍ୟାଦିର ସମ୍ବନ୍ଧ କଣ ? ସାହିତ୍ୟ ଏଠାରେ ରୁଚିକର ସାଧାରଣ ସାମାଜିକ ଜ୍ଞାନ ରୂପରେ ନିଆଯାଇଅଛି ଓ ବର୍ତ୍ତମାନ ଯୁଗ ସଂଗତି ଅନୁକୂଳରେ ବିଚାର କରାଯାଇଅଛି ।

ଏହି ସବୁ ଅଭାବ ଦୂର କରିବାକୁ ହେଲେ କଠୋର ସାଧନା, ସୂକ୍ଷ୍ମ ଚିନ୍ତା, ଗଭୀର ବିଚାର, ଜଗତର ବିବିଧ ପ୍ରାଚୀନ ଓ ଆଧୁନିକ ସାହିତ୍ୟରେ ପ୍ରବେଶ ଓ ପାଣ୍ଡିତ୍ୟ, ଆଲୋଚନାମୂଳକ ଦୀର୍ଘକାଳବ୍ୟାପୀ ନିବିଷ୍ଟ ଅଧ୍ୟୟନ ଓ ଶିକ୍ଷା, ସାରସାର ବିବେଚନା, ବାସ୍ତବ-କର୍ମକ୍ଷେତ୍ରରେ ଭାବରାଜ୍ୟ ପ୍ରକାଶର ଶକ୍ତି, ଏକନିଷ୍ଠ ସଂଯମ, କ୍ରିୟମାନ ପ୍ରଚେଷ୍ଟା ଓ ନୀରବ କର୍ମ ଆବଶ୍ୟକ । ଏହାବହୁ ଆୟାସ ସାପେକ୍ଷ । ଜଣେ ଦୁଇଜଣର କାମ ନୁହେ । ଅନେକ ଜାଣିବା ଲୋକ ଓ ସମାଜ, ପ୍ରତ୍ୟେକ ଗୋଟିଏ ଦିଗରେ ବିଶେଷଜ୍ଞତା ଲାଭକରି, ପରସ୍ପର ସାହଚର୍ଯ୍ୟ ଅବଲମ୍ବନ କଲେ ଆମ୍ଭେମାନେ ଲକ୍ଷ୍ୟସ୍ଥଳରେ ଉପନୀତ ହୋଇପାରୁ । ଓଡ଼ିଶାରେ ଯେ ଏପରି ଲୋକ ବ୍ୟଷ୍ଟି ବା ସମଷ୍ଟି ଭାବରେ ନାହାନ୍ତି, ତାହା ନୁହେ । କିନ୍ତୁ ସେ ସମସ୍ତଙ୍କୁ ମିଳାଇ ଗୋଟିଏ କର୍ମ-ଯୋଜନା ପ୍ରସ୍ତୁତ କରି ସଂହତ ଉଦ୍ୟମ ଆରମ୍ଭ କରୁଛି କିଏ ? ଆମ୍ଭର ସ୍ୱତନ୍ତ୍ର, ବିଶ୍ୱବିଦ୍ୟାଳୟ ନାହିଁ । ତଥାପି ମୁଖ୍ୟ ଅନୁଷ୍ଠାନ ସାହିତ୍ୟ ସମାଜ ସଙ୍ଗେ

ସମ୍ବଲପୁର ଗଙ୍ଗାଧର ସାହିତ୍ୟ ପରିଷଦ, ଗଞ୍ଜାମ ତରୁଣ ସାହିତ୍ୟ ସଙ୍ଘ, କଟକ ସବୁଜ ସାହିତ୍ୟ ସମିତି, ପ୍ରଗତି ସଙ୍ଘ ଇତ୍ୟାଦି ଅନେକ କ୍ଷୁଦ୍ର ବୃହତ୍ ଅନୁଷ୍ଠାନ ଅଛି । ଏମାନେ ମିଳିମିଶି କାର୍ଯ୍ୟ ଆରମ୍ଭ କଲେ ଉପକାର ମିଳନ୍ତା । ଆଉ ଗୋଟିଏ କଥା ଅର୍ଥ । ଆର୍ଥିକ ସ୍ୱଚ୍ଛଳତା ବ୍ୟତିରେକ ଆମ୍ଭର ଅନେକ ବିଘ୍ନର ବିଘ୍ନରରେ ହିଁ ପର୍ଯ୍ୟବସିତ ହେଉଅଛି । ଶୂନ୍ୟରେ ଉଠିଯାଉଅଛି । ଓଡିଶା ସରକାର ଚଳିତ ବର୍ଷ ଆୟ-ବ୍ୟୟ ହିସାବରେ ଦଶସହସ୍ର ଟଙ୍କା ଉତ୍କଳ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ମଞ୍ଜୁର କରିଥିବା ସମସ୍ତେ ଜାଣନ୍ତି । ସେଥିରୁ ସମୁଦାୟ ନହେଲେ ମଧ୍ୟ କେତେକାଂଶ ବ୍ୟକ୍ତିଗତ ମନମୁତାବକ ସାହାଯ୍ୟ ଅପେକ୍ଷା ଏପରି ଶୃଙ୍ଖଳିତ, ସ୍ୱୀକୃତିମତ ପନ୍ଥାରେ ବ୍ୟୟିତ ହେଲେ ସାର୍ଥକ ହୁଅନ୍ତା । ଆମ୍ଭ ଦେଶର ଅନୁଭବୀ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ଓ ନେତୃବୃନ୍ଦ ଏ ସମ୍ବନ୍ଧରେ ସରକାରଙ୍କ ଠାରେ ଆବେଦନ କରିବା ଉଚିତ ।



# ବସୁ ପ୍ରହରାଜ

ଅଷ୍ଟାଦଶ ଶତାବ୍ଦୀ । ଭାରତ ଇତିହାସର ଏକ ଭଙ୍ଗିଳ ଅବସ୍ଥା । ମୋଗଲ ସମ୍ରାଟ ଆଉରେଙ୍ଗଜେବଙ୍କ ହିନ୍ଦୁ ବିଦ୍ୱେଷ ନୀତି ସୃଷ୍ଟି କରୁଥିଲା ଏକ ପ୍ରବଳ ଆନ୍ଦୋଳନ । ପ୍ରବଳ ପରାକ୍ରାନ୍ତ ମୋଗଲ ସାମ୍ରାଜ୍ୟ ଭଙ୍ଗି ଭାଙ୍ଗି ପଡୁଥିଲା । ଶିଖ୍, ଶତନାମୀ, ଜାଠ ବିଦ୍ରୋହ, ବାହମନୀ ରାଜ୍ୟଗଠନ, ମହାରାଷ୍ଟ୍ର ଶକ୍ତି ଅଭ୍ୟୁଦୟ ଇତ୍ୟାଦି ଫଳରେ ଭାରତର ସଂହତି ବାଧାପ୍ରାପ୍ତ ହେଉଥିଲା । ଭାରତର ସଂସ୍କୃତି ଏକ ସଙ୍କଟ ଜନକ ପରିସ୍ଥିତି ଭିତରେ ଗତି କରୁଥିଲା । ଏହି ବିଭଙ୍ଗର ନିରାଶାବ୍ୟର୍ଥ ମନୋଭାବ, ଧର୍ମପ୍ରତି ବିସ୍ପୃହା, ସାମାଜିକ ବିଶୃଙ୍ଖଳା ଓ ଜାତୀୟ ଚେତନାର ଅଧୋଗତି ଭିତରେ ଦେଶର ବିଭିନ୍ନ ପ୍ରାନ୍ତରେ ଯେଉଁ ଜ୍ଞାନୀ, କର୍ମନିଷ୍ଠ କବି, ସାଧକ ଓ ପଣ୍ଡିତବର୍ଗ ଭାରତ ସଂସ୍କୃତିକୁ ପୋଟଳିଧରି, ପ୍ରବଳ ଝଞ୍ଜା ଭିତରେ ସେହି ଆଲୋକବର୍ତ୍ତିକାକୁ ଜଳାଇ ରଖିଥିଲେ—, ସେମାନଙ୍କ ମଧ୍ୟରେ ବସୁ ପ୍ରହରାଜ ଅନ୍ୟତମ । ଏକାଧାରରେ ସେ ଥିଲେ କବି, ଶ୍ରୋତ୍ରୀୟ, ଯାଜ୍ଞିକ, କୀର୍ତ୍ତି ସଂସ୍ଥାପକ, ଶାସକ ଓ ଲୋକ-ଉପକାରକ ।

ଉତ୍କଳର ଦକ୍ଷିଣଖଣ୍ଡ ଥିଲା ତାଙ୍କର ଜନ୍ମ ଓ କର୍ମଭୂମି । ତଥାପି ସମଗ୍ର ଦେଶରେ ସେ କର୍ମ କୁସୁମର ଅପୂର୍ବ ସୌରଭ ବିଚ୍ଛୁରିତ ହୋଇ ପଡିଥିଲା । ତାଙ୍କର ବାଲ୍ୟନାମ ଥିଲା ବାସୁଦେବ । ନିଜ କରଣୀରେ ଅମର ହୋଇ ପରବର୍ତ୍ତୀ କାଳରେ ସେ ଅଷ୍ଟବସୁ ସମ ଗଣିତ ହୋଇ ବସୁ ନାମ ଧାରଣ କରିଥିଲେ । ତାଙ୍କର ପ୍ରହରାଜ ସଂଜ୍ଞା ଅଷ୍ଟଦୁର୍ଗ ରାଜାଙ୍କ ପ୍ରଦତ୍ତ ପଦବୀ । ଯଥାର୍ଥରେ ସେ ପୁଣ୍ୟଶ୍ଲୋକ, ପ୍ରାତଃ ସ୍ମରଣୀୟ ।

ଯଜୁର୍ବେଦ, କାଣ୍ୱଶାଖା, ଭରଦ୍ୱାଜ ଗୋତ୍ର, ଭରଦ୍ୱାଜବୃତ୍ତ, ସତ୍ୟାଂଗୀର ପ୍ରବର, ଅଷ୍ଟଦୁର୍ଗ ଅନ୍ତର୍ଗତ ଖରିଡ଼ା ବୀରଜଗନ୍ନାଥପୁର ଶାସନ ପୁରୁଷୋତ୍ତମ ସଞ୍ଜକ ବ୍ରାହ୍ମଣ ସମ୍ପ୍ରଦାୟରେ ସର୍ଗତ କବି, ପଣ୍ଡିତ ରାଜପ୍ରତିଷ୍ଠିତ ପ୍ରଖ୍ୟାତ ରଘୁନାଥ ସାମନ୍ତରାୟଙ୍କ ଔରସରେ 'ବସୁ' ଜନ୍ମଗ୍ରହଣ କରିଥିଲେ । ରଘୁନାଥଙ୍କ ପିତାମହ ନାମ ଜଗଦାନନ୍ଦ, ଅଷ୍ଟଦୁର୍ଗ ରାଜଦରବାରରେ କବି, ପଣ୍ଡିତ ତଥା ଦେୱାନ ପଦବୀରେ

ଥିବାର ତାଙ୍କର ଦାନପତ୍ରଗୁଡିକରୁ ପ୍ରମାଣ ମିଳେ । ବସୁଙ୍କ ପିତା ରଘୁନାଥ ସାମନ୍ତରାୟ ମହାପାତ୍ର ପିତୃ ପୁରୁଷ-ପଥ ଅନୁସରଣ କରି ସେହି ରାଜଦରବାରରେ କବି, ପଣ୍ଡିତ ଓ ଦେଓ୍ୱାନ ଥିଲେ । ଅଷ୍ଟଦୁର୍ଗ ରାଜା ଋଷିକୁଲ୍ୟା ନଦୀ ତୀରସ୍ଥ କୁମାରୀ ଶାସନଠାରୁ ଖରିଦା ଶାସନକୁ ତାଙ୍କ ପିତୃ ପୁରୁଷଙ୍କୁ ଅଣାଇଥିଲେ । କୁମାରୀ ଶାସନ ଉତ୍କଳ ବର୍ଗେଶ୍ୱର କପିଳେନ୍ଦ୍ର ଦେବଙ୍କ କନ୍ୟା କୁମାରୀ ଦେବୀଙ୍କ ନାମାନୁଯାୟୀ ସ୍ଥାପିତ ହୋଇଥିଲା । କୁମାରେଶ୍ୱର ଶିବଲିଙ୍ଗ ଓ ପ୍ରାସାଦ ଅଦ୍ୟାପି ସେଠାରେ ଦେଖିବାକୁ ମିଳେ । ରଘୁନାଥଙ୍କର ସଦ୍‌ଗୁଣରେ ମୁଗ୍‌ଧ ହୋଇ ଅଷ୍ଟଦୁର୍ଗ ଅଧିପତି ଜଗନ୍ନାଥ ହରିଚନ୍ଦନ ଜଗଦେବ ତାଙ୍କୁ ତାଙ୍କ ନାମିତ ଫାସି ଗ୍ରାମ ସଲଗ୍ନ ସାମନ୍ତରାୟ-ପୁର ଶାସନ ପ୍ରଦାନ କରିଥିଲେ । ପୁଣି ନିଜ ନାମାନୁଯାୟୀ ଖରିଦା ତୀର ଜଗନ୍ନାଥପୁର ଶାସନ ସ୍ଥାପନ କରି ରଘୁନାଥଙ୍କୁ ଦାନ କରିଥିଲେ । ସେହି ସମ୍ପତ୍ତିକୁ ରଘୁନାଥ ୫୨ ଭାଗରେ ବ୍ରାହ୍ମଣମାନଙ୍କୁ ବାଣ୍ଟି କିୟଦଂଶ ଦେବଦେବୀମାନଙ୍କୁ ପ୍ରଦାନ କରିଥିଲେ । ପୁଣି ତତ୍‌କାଳୀନ ମୋଗଲ ସୁବାଦାର ନବାବ ବାପୁସ୍‌ ଖାଁ ତାହାଙ୍କ ପାଣ୍ଡିତ୍ୟ, ଅତିଥିସତ୍କାର ଇତ୍ୟାଦିରେ ମୁଗ୍‌ଧ ହୋଇ 'ଅଦ୍ୱୈଇବର' ନାମକ ଗ୍ରାମ ପ୍ରଦାନ କରିଥିଲେ । ଉକ୍ତ ଗ୍ରାମଟିକୁ ମଧ୍ୟ ୫୨ ଭାଗରେ ବଣ୍ଟା ଯାଇଥିଲା । ବ୍ରିଟିଶ ଗଜେଟ୍ରରେ ୧୮୫୪ର ରେକର୍ଡ୍‌ରୁ ଏହା ପ୍ରମାଣିତ । ରଘୁନାଥ ଖରିଦା କାଳେଶ୍ୱର ମନ୍ଦିର, ଫାସି ସଲଗ୍ନ ସାମନ୍ତରାପୁର ବିଷ୍ଣୁ ମନ୍ଦିର ପ୍ରତିଷ୍ଠା କରି ପ୍ରଚୁର ପରିମାଣରେ ଦେବ ନୀତି ଲାଗି ଜମି ପ୍ରଦାନ କରିଥିଲେ ।

ବସୁ ପ୍ରହରାଜ ୧୭୨୧ ସମ୍ବତ୍ସର ମାଘ ଶୁକ୍ଳ ନବମୀ ଦିନ ଭୂମିଷ୍ଠ ହୋଇ-ଥିଲେ । ୧୭୯୯ ସମ୍ବତ୍ସର ଚୈତ୍ର ଶୁକ୍ଳ ନବମୀ ଦିନ ମାନବ ଲୀଳା ସମ୍ବରଣ କରିଥିଲେ । ମୃତ୍ୟୁବେଳକୁ ତାହାଙ୍କ ବୟସ ୭୮ ବର୍ଷ । ବାଲ୍ୟାବସ୍ଥାରୁ ତତ୍‌କାଳୀନ ସଂସ୍କୃତ ଶିକ୍ଷାରେ ପାରଦର୍ଶିତା ଲାଭ କରିଥିଲେ । ତାଙ୍କର ସମସାମୟିକ ଅଷ୍ଟଦୁର୍ଗର ରାଜା ଥିଲେ ରଘୁନାଥ ହରିଚନ୍ଦନ ଜଗଦେବ ପ୍ରମୁଖ ।

ପିତା ଓ ପିତାମହଙ୍କୁ ବସୁ ବଳି ପଡ଼ିଥିଲେ । ତାଙ୍କର ପ୍ରଣୀତ 'ବସୁ-ପ୍ରକ୍ରିୟା' ବିଖ୍ୟାତ ସଂସ୍କୃତ ବ୍ୟାକରଣ ଗ୍ରନ୍ଥ, ଯାହା କେବଳ ଉତ୍କଳରେ ନୁହେ, ସମଗ୍ର ଭାରତରେ ସଂସ୍କୃତ ଶିକ୍ଷାର୍ଥୀଙ୍କ ପାଇଁ ଉପାଦେୟ ଓ ଆଦୃତ । ଏପରିକି କଲିକତା ବିଶ୍ୱବିଦ୍ୟାଳୟ ଭୂଷଣ ସାର୍‌ ଆଶୁତୋଷ ମୁଖାର୍ଜି, ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ ପ୍ରମୁଖ ତାହାର ଉତ୍କର୍ଷ ଉପଲବ୍‌ଧି କରି ବିଶ୍ୱବିଦ୍ୟାଳୟ ପକ୍ଷରୁ ତାହାର କିଞ୍ଚିତ୍ ଅଂଶ ପ୍ରକାଶ କରିଥିଲେ । କାବ୍ୟ ଛଟାରେ ଅନୁପମ, ସଂସ୍କୃତ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ "ରାଘବ ଯାଦବୀୟ" ଗ୍ରନ୍ଥ—ଏ ମହାତ୍ମାଙ୍କର ଏକ ଅନବଦ୍ୟ ସୃଷ୍ଟି । ଏଥିରେ ପ୍ରତ୍ୟେକଟି ଶ୍ଳୋକ ବିବିଧ ଅର୍ଥବୋଧକ—ଏକ ଦିଗରେ

ରାମଚନ୍ଦ୍ର ଅନ୍ୟ ଦିଗରେ କୃଷ୍ଣଚନ୍ଦ୍ର । ବସୁ ପ୍ରଣୀତ 'ମୁକ୍ତା ନାଟିକା', "ଫଣୀ-ଭାଷ୍ୟଟୀକା" ଇତ୍ୟାଦି ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କର ହସ୍ତଗତ ହୋଇ ନାହିଁ । ତାହାଙ୍କର ସାହିତ୍ୟିକ କୃତିରେ ମୁଗ୍ଧ ହୋଇ ବଙ୍ଗ ଦେଶ ତାଙ୍କୁ ବଙ୍ଗୀୟ ବୋଲି ଦାବୀ କରିଛି ।

ବସୁ ଜୀବନୀ ସମ୍ବନ୍ଧେ ଯଥେଷ୍ଟ ପରିମାଣରେ ନିର୍ଭରଯୋଗ୍ୟ ଉପାଦାନ ମିଳୁ ନାହିଁ ସତ— କିନ୍ତୁ ପ୍ରଚଳିତ କିମ୍ବଦନ୍ତୀଗୁଡ଼ିକୁ ଘେନି ବସୁ ଜୀବନୀର ଯେଉଁ ମୂର୍ତ୍ତି ଗଠନ କରାଯାଏ – ତାହା ଏପରି ରୋମାଞ୍ଚକର ଓ ବିଚିତ୍ର ଯେ ସେଥିରୁ ଆମେ ଏକ ଶକ୍ତିଶାଳୀ ବ୍ୟକ୍ତିତ୍ୱର ପରିଚୟ ପାଉ । କିମ୍ବଦନ୍ତୀ ବହୁଳତା ଯୋଗୁ କେତୋଟି କିମ୍ବଦନ୍ତୀ ନିମ୍ନରେ ଦିଆଗଲା ।

ଗଞ୍ଜାମର 'ତାରତାରିଣୀ' ପୀଠ—ଏବେ ମଧ୍ୟ ଏକ ପ୍ରତ୍ୟକ୍ଷ ଶକ୍ତି ଉପାସନା କେନ୍ଦ୍ର । ଓଡ଼ିଶାର ବିଭିନ୍ନ ସ୍ଥାନରେ ଲକ୍ଷଲକ୍ଷ ଯାତ୍ରୀଙ୍କ ସମାଗମ ଏହି ପୀଠର ମାହାତ୍ମ୍ୟର ନିଦର୍ଶନ । ବସୁ ଏହି ପୀଠର ସ୍ଥାପକ । କଥିତ ଅଛି—ବସୁ ତାଙ୍କର ଯାଗକୁ ତତ୍‌କାଳୀନ ଘୁମୁସରର ରାଜା ଶ୍ରୀକର ଭଞ୍ଜଙ୍କୁ ନିମନ୍ତ୍ରଣ କରି ବାହୁଡ଼ି ଆସୁଥିଲେ । ଘଞ୍ଚ ଅରଣ୍ୟ, ସୂର୍ଯ୍ୟରଶ୍ମି ପଲ୍ଲବ ଗହଳକୁ ଭେଦ କରିପାରୁ ନଥିଲା । ସଙ୍ଗରେ କାଳୁ ଭଣ୍ଡାରୀ—ଶ୍ରାନ୍ତ ହୋଇ ଗଛମୂଳରେ ବସି ପଡ଼ିଲେ । ଦେଖିଲେ ଗୋଟିଏ ଚଉଡ଼ା ପଥର ଉପରେ ଦୁଇ ଭଉଣୀ—ମୁକ୍ତକେଶା, ମୁହଁରେ ଅପୂର୍ବ ଦୀପ୍ତି—ପଚାରିଲେ 'ତୁମେ କିଏ ?' ଆମେ ଦୁଇ ଭଉଣୀ ତାର-ତାରିଣୀ' । "ବସୁଙ୍କ ଯାଗ ଦେଖିବାକୁ ଯାଉଛୁ ।" ପରମ ପ୍ରୀତ ହୋଇ ବସୁ ସେମାନଙ୍କୁ ଘରକୁ ନେଲେ । ସେଦିନୁ 'ତାର-ତାରିଣୀ' ଇଷ୍ଟଦେବୀରୂପେ ତାଙ୍କ ଘରେ ପୂଜିତା । କିନ୍ତୁ ବସୁଙ୍କୁ ପିତୃତୁଲ୍ୟ ମନେକରି; ଲୋକଲୋଚନ ଅଗୋଚରରେ ତାଙ୍କର କନ୍ୟା ଭଳି ଆତଯାତ ହେଉଥିଲେ । ଦିନେ କାଚରା ଆସି ତାଙ୍କ ଘରର ସବୁ ସ୍ତ୍ରୀମାନଙ୍କୁ କାଚ ପିନ୍ଧାଇଲା । ହିସାବ କଲାବେଳେ ଚାରିମୁଠା ଅଧିକା କାଚର ଦାମ ଦାବୀ କଲା । କାହାକୁ ପିନ୍ଧାଇଲା ବୋଲି ଖୋଜା ପଡ଼ିଲା । ବସୁ ଦିଅଁ ଘର କବାଟ ଫିଟାଇ ଦେଖିଲେ, ଦି' ଭଉଣୀ ସୁନ୍ଦର ପଞ୍ଚବର୍ଣ୍ଣୀ ଚାରିମୁଠା କାଚ ପିନ୍ଧି ଆନନ୍ଦରେ ବସିଛନ୍ତି । ସେଦିନୁ ଏ ପର୍ଯ୍ୟନ୍ତ ବସୁ ପ୍ରହରାଜ ଦାୟାଦ ସ୍ତ୍ରୀ କୁଟୁମ୍ବରେ କେହି ପଞ୍ଚବର୍ଣ୍ଣୀ କାଚ ପିନ୍ଧନ୍ତି ନାହିଁ । ଶୁକ୍ଳ ଟୋପା ଥିବା କଳା କାଚ ପିନ୍ଧନ୍ତି । ପ୍ରବାଦ ଅଛି ନାରାୟଣ ଯଜ୍ଞ ସମୟରେ ବ୍ରାହ୍ମଣ ବେଶରେ ବସୁଙ୍କ ଭିକ୍ଷାର୍ଥୀ ହେଲେ । କ୍ଷୁଧାର୍ତ୍ତ ହୋଇ ଆହାର ଯାଚଞ୍ଚା କଲେ । କହିଲେ, "ମୁଁ ଅନ୍ୟ କିଛି ଦ୍ରବ୍ୟ ଖାଏ ନାହିଁ, କେବଳ ଗୁଆରସ ଖାଏ ।" ପ୍ରହରାଜ ଚିନ୍ତିତ ହେଲେ—ଏତେ ଗୁଆ କାହୁଁ ମିଳିବ । ତାର-ତାରିଣୀଙ୍କୁ ଧ୍ୟାନ ପଡ଼ିଲେ, ସ୍ୱପ୍ନ ହେଲା ତଳର ଭଡି ହାଟୁଆରେ ଗୁଆରସ ଅଛି । ବ୍ରାହ୍ମଣ ଗୁଆ ରସ ପାଇ ସନ୍ତୁଷ୍ଟ ହେଲେ ।

ବସ୍ତୁ ଅଗ୍ନିଷ୍ଟୋମ ଓ ଶରତ୍ ବାଜପେୟ ଉଭୟ ଯାଗ ମହାସମାରୋହରେ କରିଥିଲେ । ରାଜପତି ରାଜା ପୁରୁଷୋତ୍ତମ ଦେବଙ୍କଠାରୁ ଆରମ୍ଭ କରି ଘୁମୁସର, ଆଠଗଡ଼, ଖଲିକୋଟ, ପାରଳା, ଧରାକୋଟ ଇତ୍ୟାଦି ସେତେବେଳର ଦକ୍ଷିଣ ଓଡ଼ିଶାର ଅଠର ଗଡ଼ର ରାଜାମାନେ ସେହି ଯାଗରେ ଉପସ୍ଥିତ ଥିଲେ । ଅତିଥି ସତ୍କାରରେ ସନ୍ତୁଷ୍ଟ ହୋଇ ବହୁଳ ଦାନ କରିଥିଲେ । ଶ୍ରୀକର ଭଞ୍ଜ ଶ୍ରୀ କୋଇ ଦାନ କରିଥିଲେ । ଗଜପତି ପୁରୁଷୋତ୍ତମ ମୁକ୍ତିମଣ୍ଡପର ଷଷ୍ଠଦଶ ସ୍ତମ୍ଭରୁ ଗୋଟିଏ ସ୍ତମ୍ଭ ଓ ପୁରୀ ଆଠଗଡ଼ିଆ ସାହିର ଡ଼ିହ ୨୧ ହାତ ଦାନ କରିଥିଲେ । ଶରତ୍ ବାଜପେୟ ଯଜ୍ଞପୀଠରେ ବର୍ତ୍ତମାନ ଜଗନ୍ନାଥ ମୂର୍ତ୍ତି ଯଜ୍ଞନାରାୟଣ ବିଜେ କରିଛନ୍ତି । ଅଗ୍ନିଷ୍ଟୋମ୍ ପୀଠରେ କୂପ ପ୍ରତିଷ୍ଠା ହୋଇଅଛି । ସେହି ପବିତ୍ର ପୀଠରେ ଆଜି ତାଙ୍କ ବଂଶଧରଗଣ ଅଧିବାସୀ ହୋଇ ନିବେଶନ ଗୃହ କରିଛନ୍ତି ।

ଥରେ ବସ୍ତୁ ପ୍ରହରାଜ ପୁରୀ ବଡ ଦାଣ୍ଡରେ ଜଗନ୍ନାଥ ଦର୍ଶନ ସାରି ଆସୁଥିବା ବେଳେ ବୀରହରେକୃଷ୍ଣପୁର ଶାସନ ମହାଜନମାନେ ରାଜସ୍ୱ ଟଙ୍କା ଦେଇ ନପାରି ଖରାରେ ଠିଆ ହେବା ଦଣ୍ଡ ଦେଖି କ୍ଷୁବ୍ଧ ହେଲେ । କାରଣ ବୁଝିପାରି, ରାଜାଙ୍କୁ କୁହାବୁଝା କରି, ସେ ଦଣ୍ଡରୁ ମୁକ୍ତ କରାଇଥିଲେ । ସେଥିରେ ଗଜପତି ଓ ମହାଜନେ ସନ୍ତୁଷ୍ଟ ହୋଇ ସେଇ ହରେକୃଷ୍ଣପୁର ଆଗ୍ରାହାରରୁ କିଛି ଅଂଶ ସଙ୍ଗେ ମହାଜନ ସମ୍ମାନ ପ୍ରଦାନ କରିଥିଲେ ।

ସେତେବେଳେ ଓଡ଼ିଶା ମରହଟ୍ଟା ବର୍ଗୀଙ୍କଦ୍ୱାରା ଆକ୍ରାନ୍ତ । ପେଶବା ବାଲାଜୀ ବିଶ୍ୱନାଥଙ୍କ ସେନାପତି ରଘୁଜୀ ଭୋନ୍‌ସଲେ ଏହି ଆକ୍ରମଣର ଅଧିନାୟକ । ତାଙ୍କଦ୍ୱାରା ପ୍ରେରିତ ରାଜାରାମ ପଣ୍ଡିତ ପୁରୀ ଗଜପତି ଦିବ୍ୟସିଂହ ଦେବଙ୍କୁ ପରାସ୍ତ କରିଥିଲେ । ଫଳରେ ରାଜା ଅଷ୍ଟଦୁର୍ଗ ରାଜାଙ୍କ ସାହାଯ୍ୟ ଯାଚଞ୍ଚା କରିଥିଲେ । ସେତେବେଳର ଦେବାନ୍, ବସ୍ତୁ ପ୍ରହରାଜ, ରାଜପରିବାରକୁ ନେଇ ଅଷ୍ଟଦୁର୍ଗ ପଣ୍ଡିଆମା ମାଳର ଏକ ନିଗୂଢ଼ ପର୍ବତ ଗହ୍ୱରରେ ଲୁଚାଇ ରଖି ଆଶ୍ରୟ ଦେଇଥିଲେ । ସେଠାରେ ରାଜପତିଙ୍କ ସନ୍ତାନ ମୁକୁନ୍ଦଦେବ ଜନ୍ମ ଗ୍ରହଣ କରିଥିଲେ । ସେହି ଉତ୍ସବରେ ଦଶ ସହସ୍ର ଟଙ୍କା ବ୍ୟୟ ହେଲା । ରାଜାରାମ ପଣ୍ଡିତ ଖୋଜି ଖୋଜି ଅଷ୍ଟଦୁର୍ଗକୁ ଆସିଲେ, କିନ୍ତୁ ଗଜପତିଙ୍କର ସନ୍ଧାନ ପାଇଲେ ନାହିଁ । ଦିବ୍ୟସିଂହ ଦେବ ଏହି ବିପତ୍ତିବେଳେ ସାହା ପ୍ରତି କୃତଜ୍ଞତା ସ୍ୱରୂପ ପୁରୀକୁ ବାହୁଡ଼ିଲା ବେଳେ ବସ୍ତୁ ପ୍ରହରାଜଙ୍କୁ ସଙ୍ଗରେ ନେଲେ ଓ ତାଙ୍କୁ 'ମାନ ଉଦ୍ଧାରଣ' ଉପାଧି ଦେଇ ଅଶେଷ ଗୌରବ ପ୍ରଦାନ କରିଥିଲେ ।

କେବଳ ବସ୍ତୁ ପ୍ରହରାଜଙ୍କ ବିଷୟ ନୁହେଁ, ତାଙ୍କ ପରିବାରର ଗୌରବ ସଙ୍କେତରୂପେ ଅନ୍ୟମାନଙ୍କଠାରେ ମଧ୍ୟ ଏହା ସୂଚିତ ହୁଏ । ବସ୍ତୁ ପ୍ରହରାଜଙ୍କ ଅଗ୍ରଜ

ପରମାନନ୍ଦ ପ୍ରହରାଜ ଅଷ୍ଟଦୁର୍ଗର ଦେବାନ୍ ଥିଲେ । ସେ ତନ୍ତ୍ର ସାଧନାରେ ନିପୁଣ ଥିଲେ । ପ୍ରତିଦିନ ଡ଼ାଳେ ଖୁର ଧରି ସେ ନିଶାର୍ଦ୍ଧରେ ଗଡ଼ କନକଦୁର୍ଗାଙ୍କୁ ଉପାସନା କରି ବସାକୁ ବାହୁଡ଼ିବାବେଳେ କନକଦୁର୍ଗା ତାଙ୍କ ସହିତ ବସାକୁ ଆସି ତାଙ୍କୁ ଛାଡ଼ୁଥିଲେ । ସେତେବେଳର ଦୁର୍ଗରକ୍ଷୀ ରହମନ ଖାଁ କ୍ରୂର, ମଦ୍ୟପ ମନ୍ଦ ପ୍ରକୃତିର ଲୋକ ଥିଲେ । ପ୍ରହରାଜଙ୍କ ମାହାତ୍ମ୍ୟରେ ଈର୍ଷାନ୍ୱିତ ହୋଇ ସେ ରାଜାଙ୍କୁ ପ୍ରବର୍ତ୍ତାଇଲେ ଯେ ରାଣୀ ପ୍ରହରାଜଙ୍କ ସଙ୍ଗେ ଅଧରାତିରେ ବସାକୁ ଯାଉଛନ୍ତି । ରାଜା ପ୍ରମାଣ ଲୋଡ଼ିଲେ । ସେଦିନ ନିଶାର୍ଦ୍ଧରେ ପ୍ରହରାଜଙ୍କ ପଛେ ପଛେ ଏକ ନାରୀ ମୂର୍ତ୍ତି ଯିବାର ଦେଖିଲେ । ଦିବ୍ୟ ତେଜ, ପଟ୍ଟବସ୍ତ୍ର ପରିହିତା, ଚରଣରେ ନୂପୁର ନିକ୍ୱଣ । ରାଜାଙ୍କ ମନରେ ସଂଶୟ ହେଲା 'ରାଣୀ ନା କୌଣସି ଦେବୀ ।' କିନ୍ତୁ ଆରଦିନ ରାତିରେ ସେବକମାନଙ୍କ ଦ୍ୱାରା ପ୍ରକୃତ ଘଟଣାଟି ସ୍ପଷ୍ଟ ଜଣାପଡ଼ିଲା । ମନ୍ତ୍ରଣାବ୍ୟର୍ଥ ହେବା ଦେଖି, ରହମନ ଖାଁ, ବିଭିନ୍ନ କୁମନ୍ତ୍ରଣାରେ ରାଜାଙ୍କ ମନକୁ ବିଷାକ୍ତ କରାଇଲା । ଫଳରେ ରାଜା ଅତି ଗୁପ୍ତରେ ରାତି ଅଧରେ ଲୁହା ଝଞ୍ଜିର ମଡ଼ାଇ, ପ୍ରହରାଜଙ୍କୁ ମାରି ପକାଇଲେ । ପ୍ରହରାଜଙ୍କ ସହଧର୍ମିଣୀ ଅପର୍ଣ୍ଣା ଦେବୀ ନିଜ ଗ୍ରାମ ଖରିଡ଼ାରେ ଥାଆନ୍ତି । ଏକ ଭୀଷଣ ଦୁଃସ୍ୱପ୍ନରେ ତାଙ୍କ ନିଦ ଭାଙ୍ଗିଗଲା । ମଳିନ ଚୂଡ଼ି ଦେଖି ସ୍ୱାମୀଙ୍କର ଅମଙ୍ଗଳ ଆଶଙ୍କାରେ ସ୍ଥିର ହୋଇ ରହିପାରିଲେ ନାହିଁ । ସେହି ଅର୍ଦ୍ଧରାତିରେ ପରିବାରର କେତେ ଜଣଙ୍କୁ ଧରି, ଦିହୁଡ଼ି ଜାଳି ଘଞ୍ଚ ଜଙ୍ଗଲ ଘାଟି ବାଟରେ ଗଡକୁ ଯାଇ ରାଜାଙ୍କୁ ସମ୍ବୋଧନ କଲେ 'କାହାନ୍ତି ମୋର ସ୍ୱାମୀ ? ଉତ୍ତର ମିଳିଲା 'ରାଜଦ୍ରୋହ ଅପରାଧରେ, ମୃତ୍ୟୁଦଣ୍ଡରେ ସେ ଦଣ୍ଡିତ ହୋଇଛନ୍ତି ।' 'ହେଉ ଯେବେ ସେ ରାଜଦ୍ରୋହ କରିଥାନ୍ତି ତେବେ ସେ ଭିନ୍ନ କଥା, ନାହିଁ ଯଦି ତାଙ୍କୁ ମିଥ୍ୟାରେ ଦଣ୍ଡ ଦିଆଯାଇଥାଏ ତେବେ ଅଭିଶାପ ଦେଉଛି—ଏ ରାଜବଂଶ ଅଚିରେ ଲୋପ ହେବ ।'' ବସ୍ତ୍ର ପ୍ରହରାଜ ଗଡ଼ ଶ୍ମଶାନ ପ୍ରାନ୍ତରରେ ଅଗ୍ରଜଙ୍କ ଶବ ସତ୍କାର କରାଇଲେ । ଚିତାନଳ ଜଳି ଉଠିଲା । ଅପର୍ଣ୍ଣା ଦେବୀ ବାଳ ମୁକୁଳା କରି ଏକ ବଉଳ ଫୁଲମାଳ ବେକରେ ଲମ୍ବାଇ ଏକ ମହାର୍ଘ ରଙ୍ଗପାଟ ପିନ୍ଧି, ସାତଥର ଅଗ୍ନି ପ୍ରଦକ୍ଷିଣ କରି, ଉଦୀୟମାନ ସୂର୍ଯ୍ୟଆଡେ ଦୃଷ୍ଟିପାତ କରି ଲମ୍ଫ ଦେଲେ ଜ୍ୱଳନ୍ତ ଅଗ୍ନିକୁ । ନିଶ୍ଚଳ ନିର୍ବେଦ ଅବସ୍ଥା । କେତୋଟି ମୁହୂର୍ତ୍ତରେ ଅଙ୍ଗପ୍ରତ୍ୟଙ୍ଗ ଲେଲିହାନ ଶିଖାରେ ପାଂଶୁଳ ହୋଇଗଲା ସତ; କିନ୍ତୁ ଏ କି ବିଚିତ୍ର ! ସେଇ ପିନ୍ଧିଲା ପାଟ ଓ ବଉଳ ଫୁଲମାଳ ସେହିପରି ଅମଳିନ ଅବସ୍ଥାରେ ରହିଗଲା । ସେହି ଶ୍ମଶାନ ଭୂମି, ବର୍ତ୍ତମାନ ସତୀ ପଡିଆ ନାମରେ ଖ୍ୟାତ । ସେହି ସତୀ ପାଟ ବହୁଦିନ ଯାଏ ବସ୍ତ୍ରଦାୟାଦମାନଙ୍କ ଘରେ ସାଇତା ହୋଇ ରହିଥିବା କଥା ଶୁଣିବାକୁ ମିଳେ । ସତୀ ହାତରେ ମୂଲ୍ୟବାନ୍ ଚୂଡ଼ି ପଟକରେ, ବୀର ଜଗନ୍ନାଥପୁର

ଗ୍ରାମରେ ଏକ ବିରାଟ ପୁଷ୍କରିଣୀ ଖୋଳାଯାଇଥିଲା ଯାହା ଅଦ୍ୟାପି କନ୍ୟାବନ୍ଧ ନାମରେ ବିଦ୍ୟମାନ । ସତୀ କୁଳ ମୁକୁଟମଣିଙ୍କର କଥା ମିଛ ହେବାର ନୁହେ— ୧୮୫୪ ରେ ଅଷ୍ଟଦୁର୍ଗ ରାଜ୍ୟ ନିଲମ ଇସ୍ତାହାର ବିକ୍ରୀ ହୋଇଗଲା ।

ରାଜା ପରଦିନ ପ୍ରଭାତରେ ଦର୍ପଣରେ ମୁଖ ଦେଖନ୍ତେ ଦୁଇଟି ବ୍ରହ୍ମରାକ୍ଷସ, ତାଙ୍କର ଦୁଇ କାନ୍ଧରେ ବସିଥିବା ଦେଖିପାରିଲେ । ରାଜାଙ୍କର ଶାନ୍ତି ରହିଲା ନାହିଁ । ପଣ୍ଡିତମାନଙ୍କର ପରାମର୍ଶ କ୍ରମେ ଏହି ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ପ୍ରହରାଜଙ୍କର ବଂଶ ବର୍ଗଙ୍କୁ ଡାକି, ବ୍ରହ୍ମହତ୍ୟା ଇନାମ ନାମରେ ୫୦୦ ଭରଣ ଭୂମି ସେମାନଙ୍କୁ ଦାନ ଦେଲେ ଓ ପରମାନନ୍ଦ ପ୍ରହରାଜଙ୍କ ପୁତ୍ର କୃଷ୍ଣ ପ୍ରହରାଜଙ୍କୁ ଦେବାନରୂପେ ନିଯୁକ୍ତି ଦେଲେ । ସେ ପିତୃ ନିଧନର ମୂଳ, ରହମନ ଖାଁଙ୍କୁ ଗଡ ନିକଟବର୍ତ୍ତୀ ଜଙ୍ଗଲ ମଧ୍ୟରେ, ଗୋଟିଏ ବୃକ୍ଷ କୋଟରରେ ଜୀବନ୍ତ ସମାଧି ଦେଇ ପିତୃହତ୍ୟାର ଉପଯୁକ୍ତ ପ୍ରତିଶୋଧ ନେଇପାରିଥିଲେ । ପ୍ରହରାଜଙ୍କ ବଂଶାଦିକ୍ରମେ ଆଠଗଡର ଦେବାନ ପଦରେ ନିଯୁକ୍ତ ହେଲେ । ତଦନୁଯାୟୀ କୃଷ୍ଣ ପ୍ରହରାଜଙ୍କ ପରେ ତାଙ୍କ ପୁତ୍ର ଗୋବିନ୍ଦ ବେବର୍ତ୍ତା ସ୍ୱଳ୍ପ ପାଠୀ ଥିବା ଯୋଗୁଁ ତାଙ୍କ ଭାଇ ଧନୁ ବେବର୍ତ୍ତା ଦେବାନ ହେଲେ । ଧନୁ ବେବର୍ତ୍ତାଙ୍କ ସମୟରେ ନିଲମ ଇସ୍ତାହାରରେ ଆଠଗଡ଼ ଜମିଦାରୀ, ଖଲ୍ଲିକୋଟ ରାଜା କିଣିଥିଲେ ।

ବସ୍ତ୍ର ପ୍ରହରାଜଙ୍କର ପୁତ୍ର ଦୟାନିଧି ତର୍କ ପଞ୍ଚାନନ ପାଣ୍ଡିତ୍ୟରେ ବସ୍ତ୍ରଙ୍କୁ ଟପି ଯାଇଥିବା ପ୍ରମାଣ ରହିଛି । ସେ ପୁରୀର ପ୍ରଖ୍ୟାତ ପଣ୍ଡିତ ବିଶି ପଟ୍ଟଯୋଷୀଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଗୃନ୍ଦି ରାୟଗୁରୁ ତାଙ୍କର କନିଷ୍ଠ ଶ୍ୱଶୁର ଥିଲେ । କଥା ଅଛି, ବସ୍ତ୍ର ପ୍ରହରାଜ ପ୍ରତିଦିନ ଅଷ୍ଟଦୁର୍ଗ ରାଜସଭାରେ, ସଂସ୍କୃତ ରାମାୟଣ ଚର୍ଚ୍ଚା କରି ସମସ୍ତଙ୍କୁ ଆପ୍ୟାୟିତ କରନ୍ତି । ଦିନେ ଅସୁସ୍ଥତାବଶତଃ ସେ ଯାଇ ନପାରି ପୁଅକୁ ଯିବାକୁ କହିଲେ ଓ ତାଳପତ୍ର ପୋଥିଟି ନେବାକୁ କହିଲେ । ପୋଥି ନେବାକୁ ଦୟାନିଧି ପାଶୋରିଗଲେ । ରାଜସଭାରେ ଅନ୍ୟ ଏକ ପୁସ୍ତକରୁ ମିଛେ ମିଛେ ଦେଖି ରାମାୟଣର ଉତ୍ତର ରାମଚରିତ ଆଶୁ ଶ୍ଳୋକ ରଚନାରେ ଏପରି ଚମତ୍କାର ଅନୁଶୀଳନ କଲେ ଯେ ରାଜା ଓ ସଭାସଦ୍‌ବର୍ଗ ଏ ରହସ୍ୟ କ୍ରମେ କ୍ରମେ ଜାଣିପାରି ବସ୍ତ୍ରଙ୍କ ଠାରୁ ତାଙ୍କୁ ଅଧିକ ସମ୍ମାନ ଦେଇ ଚାରିମାସ କାଳ ସେଇ ବ୍ୟାଖ୍ୟାନ ଶୁଣିଥିଲେ । ସେହି ଗ୍ରନ୍ଥ ଏବେ 'ଅଭିନୟ ରାମାୟଣ' ନାମରେ କଥିତ । ପୁରୀ ଗଜପତି ସଭାରେ ମଧ୍ୟ ସେ ନ୍ୟାୟ ଓ ତର୍କ ଆଲୋଚନାରେ ପଣ୍ଡିତବର୍ଗଙ୍କୁ ହଟାଇ ଦେଇ ପାରିଥିଲେ । ଏପରି ଯୌବନ କାଳରେ ଅପୂର୍ବ ସମ୍ମାନରେ ଭୂଷିତ ହୋଇ ଘରକୁ ବାହୁଡ଼ିଲେ । ବିଧି ବିଧାନ ବିଚିତ୍ର ! ସଙ୍ଗେ ସଙ୍ଗେ ଭୀଷଣ ଜ୍ୱରରେ ଆକ୍ରାନ୍ତ ହେଲେ ଓ କରାଳ ମୃତ୍ୟୁଆଡ଼କୁ ଅଗ୍ରସର ହେଲେ । ଶେଷ ସମୟ—ପିତା ସ୍ୱପ୍ରତିଷ୍ଠିତ କାଳେଶ୍ୱର ମନ୍ଦିରରେ ଅଭିଷେକ

ସାରି ଜଳ ଗଡ଼ୁଧରି ଆସି ଦେଖନ୍ତି, ପୁତ୍ରର ଅନ୍ତିମ ମୁହୂର୍ତ୍ତ, ପଚାରିଲେ କେମିତି ଲାଗୁଛି ? ଲୁହା ପଞ୍ଜୁରୀ ଭିତରେ ଭିତରେ ମତ୍ତ ହସ୍ତୀ ପରି ମୋତେ ଝିମ୍ ଝିମ୍ ଲାଗୁଛି । ମୋର କଣ୍ଠ ଶୁଖି ଯାଉଛି । ପିଇବାକୁ ପାଣି ଟିକେ...ବସୁ ଗଡ଼ୁରୁ ପାଣି ଅଜାଡ଼ିଲେ । ପାନ କରି କିଞ୍ଚିତ ଆଶ୍ୱସ୍ତ ହୋଇ ଦୟାନିଧି ଅନ୍ତିମ ଶ୍ଳୋକ ବୋଲିବାକୁ ଲାଗିଲେ—

"କୃଷ୍ଣତ୍ୱଦିୟ ପଦ ପଙ୍କଜ ପଞ୍ଜରନ୍ତେ ଅଦ୍ୟୈବମେବିଶତୁ,
ମାନସ ରାଜହଂସଃ ପ୍ରାଣ ପ୍ରୟାଣ ସମୟେ
କଫ ବାତ ପିତ୍ତୈଃ କଣ୍ଠାବରୋଧନ ବିଧୌ ସ୍ମରଣଂ କୁତସ୍ତେ ।"

ଗୃହୁଁ ଗୃହୁଁ ପ୍ରାଣବାୟୁ ଉଡିଗଲା । ଧର୍ମପତ୍ନୀ ରମାଦେବୀ ଚିତାନଳରେ ସ୍ୱାମୀଙ୍କର ସହ ଗମନ କଲେ ।

ପାରଳା ରାଜା ବସୁ ପ୍ରହରାଜଙ୍କର ଅନ୍ତରଙ୍ଗ ଓ ଅନୁରକ୍ତ ଥିଲେ । ସେ ପ୍ରହରାଜଙ୍କୁ ଗଡ଼କୁ ଡକାଇ ସମ୍ମାନ ଦେଲେ । ସମସ୍ତଙ୍କ ସହ ପାରଳା ଜଗନ୍ନାଥ ମନ୍ଦିରକୁ ଦର୍ଶନ ପାଇଁ ଗଲେ । ସମସ୍ତେ ଦିଅଁଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ, କିନ୍ତୁ ବସୁ ହାତ ଟେକିଲେ ନାହିଁ । ଏଥିରେ ସ୍ତବ୍ଧ ହୋଇ କାରଣ ପଚାରନ୍ତେ ବସୁ ଉତ୍ତର ଦେଲେ ଏ ମୂର୍ତ୍ତି ଅପ୍ରତିଷ୍ଠିତ, ମୁଁ ହାତ ଟେକିଲେ ମୂର୍ତ୍ତି ଦୁଇଫାଳ ହୋଇଯିବେ । ପରୀକ୍ଷା ହେଲା, ସତକୁ ସତ ମୂର୍ତ୍ତି ଦୁଇ ଫାଳ ହୋଇଗଲେ । ବସୁ ଅନ୍ୟ ମୂର୍ତ୍ତି ସ୍ଥାପନ ଓ ପ୍ରତିଷ୍ଠା କରିଥିଲେ ।

ବସୁ ପ୍ରହରାଜଙ୍କ ଯଜ୍ଞ ସମ୍ବନ୍ଧରେ ଆଉ ଏକ ବିଶିଷ୍ଟ ଘଟଣା ଶୁଣିବାକୁ ମିଳେ । ଯଜ୍ଞ ଆରମ୍ଭରେ ବସୁ ହାତରେ ଅରଣୀ କାଠଧରି ଯେତେ ଚେଷ୍ଟା କଲେ ମଧ୍ୟ ନିଆଁ ଲାଗିଲା ନାହିଁ । ସେ ମନେ ମନେ ପାଞ୍ଚିଲେ 'ଜାଣିବାରେତ ଅସଂଯତ କାର୍ଯ୍ୟ କରିନାହିଁ, ତେବେ ଏପରି କାହିଁକି ଘଟିଲା ?' ବୋଧହୁଏ ମୋର ପତ୍ନୀ କୌଣସି ଦୋଷାବହ କର୍ମ କରିଥିବ । ଏହି ମହା ଯଜ୍ଞରେ ମୋର ପତ୍ନୀ ଯଜମାନା ରୂପେ ଅଧିକାରିଣୀ—ଏଣୁ ଏପରି ଘଟିଛି ।' ସଙ୍ଗେ ସଙ୍ଗେ ତାଙ୍କୁ ଯଜ୍ଞ ମଣ୍ଡପକୁ ଆଣିବାକୁ ଆଦେଶ ଦେଲେ, ଏଥିରେ ସମସ୍ତେ ଅବାକ । ସେତେବେଳେ ନାରୀ ଅବରୋଧ ପ୍ରଥା ଅତି ତୀବ୍ର । ତଥାପି ସ୍ୱାମୀଙ୍କର ଆଦେଶ ପାଳନ କରି, ସେ ଯଜ୍ଞ ବେଦୀକୁ ଆସିଲେ । ପ୍ରହରାଜେ ସ୍ତ୍ରୀଙ୍କୁ ପଚାରିଲେ ତୁମେ କୌଣସି କାଳେ କିଛି, କାୟିକ, ବାଚିକ ବା ମାନସିକ ଅପକର୍ମ କରିଛକି ? ପତ୍ନୀ ଉତ୍ତର ଦେଲେ "ବାଲ୍ୟାବସ୍ଥାରେ ମୁଁ ମୋର ସାଙ୍ଗମାନଙ୍କ ସହ ଖେଳୁଥିଲି । ସେଇ ବାଟରେ ଗୋଟିଏ ଯୁବକ ଚାଲିଗଲା । ଭାବିଲି ମୋର ପତି ଏପରି ହୋଇଥିଲେ ଭଲ ହୋଇଥାନ୍ତା । ଏତିକି ମାତ୍ର ମୋର ଦୋଷ— ଆଉ କିଛି ନାହିଁ ।" ତହୁଁ ଅରଣୀ କାଠରୁ ନିଆଁ ବାହାରିଲା ।

ଯଜ୍ଞରେ ବସ୍ତ ବହୁ ଧନବ୍ୟୟ କଲେ । ସାହୁକାରମାନଙ୍କ ଠାରେ ବାକି ପଡ଼ିଲେ । ଯଜ୍ଞର ଶେଷ ଦିନ ପ୍ରହରାଜେ, ଯଜ୍ଞବେଦୀକୁ ଯିବାକୁ ବାହାରିଛନ୍ତି-ଏପରି ସମୟରେ ସାହୁକାରମାନେ ଟଙ୍କା ପରିଶୋଧ କରନ୍ତୁ ବୋଲି କହିଲେ ।" ସଙ୍ଗେ ସଙ୍ଗେ ବସ୍ତ ଅଷ୍ଟଦୁର୍ଗ ରାଜାଙ୍କଠାରେ ଉପସ୍ଥିତ ହେଲେ । ଆଗମନର କାରଣ ରାଜା ପଚାରନ୍ତେ—ବସ୍ତ ଶ୍ଳୋକରେ ଉତ୍ତର ଦେଲେ—

ଉତ୍ତମର୍ଣ୍ଣ ଧନଦାନ ଶଙ୍କୟା, ପାବକୋ ତ୍ରିଶିଧୟ ହୃଦିସ୍ଥୟା
ଦେବ ! ଦଗ୍ଧବସଦା ସରସ୍ୱତୀ, ନାସ୍ୟତୋ ବହି ରୁପୈତି ଲଜ୍ଜୟା ।

ହେ ରାଜା ! ମୁଁ ସାହୁକାରମାନଙ୍କୁ ଟଙ୍କା ଦେବାକୁ ପଡ଼ିବ । ଏଇ ଭୟରେ ହୃଦୟରେ ଥିବା ଶୋକାଗ୍ନି ଦ୍ୱାରା ବାକ୍ ସ୍ୱରୂପା ସରସ୍ୱତୀଙ୍କର ବସ୍ତ୍ରଟି ପୋଡ଼ିଗଲା । ଲଜ୍ଜାରେ ସେ ପଦାକୁ ଆସୁ ନାହାନ୍ତି । ପକ୍ଷାନ୍ତରେ ମୋର ମୁହଁରୁ କଥା ବାହାରୁ ନାହିଁ । ରାଜା ସବୁ ବୁଝିଲେ । ସାହୁକାରମାନଙ୍କ ବାକି ପରିଶୋଧ କଲେ । ନିର୍ବିଘ୍ନରେ ପୂର୍ଣ୍ଣାହୂତି ସମାପ୍ତ ହେଲା ।

ପୂର୍ଣ୍ଣାହୂତି ବେଳେ ପ୍ରହରାଜ ସର୍ବସ୍ୱ ଦାନ କଲେ । ଏତିକିବେଳେ ତାଙ୍କ ନାତି ଆସି ପରିହାସରେ କହିଲା "ଯଜ୍ଞରେ ସବୁ ସମ୍ପତ୍ତି ଦାନ କଲ, ଆଈକୁ ମଧ୍ୟ ଦାନ କଲନାହିଁ କାହିଁକି । ବସ୍ତ ଗମ୍ଭୀର ହୋଇ କହିଲେ "ଆଈକୁ ତୋତେ ଦାନ କରୁଛି ।" ଏହା କହି ନିଜ ପତ୍ନୀଙ୍କର ସୁବର୍ଣ୍ଣ ପ୍ରତିମା ତିଆରି କରି ଦାନ କରିବାକୁ ପ୍ରସ୍ତୁତ ହୁଅନ୍ତେ ତାଙ୍କ ଝିଅ କହିଲା, "ନନା ତୁମେ କଣ ପାଗଳ ହେଲକି ? ସୁନା ଗ୍ରହଣ କଲେ ମୋ ପିଲା ବଞ୍ଚିବଟି ।" "ମୁଁ ଯାହା ପ୍ରତିଜ୍ଞା କରିଛି ଅନ୍ୟଥା ହେବ ନାହିଁ । ତୋର ପୁତ୍ର ନିଶ୍ଚୟ ଦାନ ଗ୍ରହଣ କରିବ । ତଜ୍ଜନିତ ଦୋଷ ଶାନ୍ତି ନିମନ୍ତେ ହୋମ, ଯଜ୍ଞ ପ୍ରାୟଶ୍ଚିତ୍ତ କରାଇବି ।"......ମହାତ୍ମା ବସ୍ତଙ୍କର ଏଭଳି ବାକ୍ ସାର୍ଥକତା......

କିମ୍ବଦନ୍ତୀ ସାଙ୍କେତିକ ମାତ୍ର । ମୌଳିକ, ତଥ୍ୟ ନିର୍ଭର, ସତ୍ୟ ପ୍ରତିଷ୍ଠିତ । ଉପାଦାନ ସଂଗ୍ରହକ୍ରମେ ବସ୍ତ ଜୀବନୀ ତଥା ତାଙ୍କର ଗ୍ରନ୍ଥାବଳୀ ପ୍ରକାଶନ, ବର୍ତ୍ତମାନ ଆମର ଅତ୍ୟନ୍ତ ଲୋଡ଼ା । ସୁଧୀବର୍ଗ ଏଥିଲାଗି ଚେଷ୍ଟା କରନ୍ତୁ ।

* ପଣ୍ଡିତ ନରସିଂହ ଶତପଥୀ, ରାୟଗୁରୁ ଗ୍ରନ୍ଥାବଳୀ ପ୍ରକାଶକ, ସ୍ୱର୍ଗତ ସତ୍ୟନାରାୟଣ ଦାସ, ବସ୍ତଦାୟାଦ ଶ୍ରୀ ମଧୁସୂଦନ ମହାପାତ୍ର ପ୍ରମୁଖଙ୍କ ସଂଗୃହୀତ ବିଷୟବସ୍ତୁ ଏହି ଲେଖାର ଅବଲମ୍ବନ ।

# କବିବର ସ୍ମୃତି

ପ୍ରାୟ ଆଠ ଦଶବର୍ଷ ତଳର କଥା । ଇଚ୍ଛାପୁରରେ ଆଡ଼ମ୍ବର ସହକାରେ 'ନିଖିଳ ଉତ୍କଳ କବି ସମ୍ମିଳନୀ'ର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଉଥାଏ, କବିବର ଚିନ୍ତାମଣିଙ୍କ ନିକଟକୁ ସମ୍ମିଳନୀର ପ୍ରଚାର ପତ୍ର, ନିମନ୍ତ୍ରଣ ପତ୍ର ଇତ୍ୟାଦି ପଠାଇ ସମ୍ମିଳନୀର ସମ୍ପାଦକ ଭାବରେ ମୁଁ ପରାମର୍ଶ ଲୋଡ଼ିଥିଲି । କବିବର ତାହାଁର ଦୀର୍ଘ ଉତ୍ତର ଦେଇଥିଲେ । ତାହା ଆଜି ସୁଦ୍ଧା ମୁଁ ସ୍ମୃତିର ମଧୁମୟ ଚିହ୍ନ ସ୍ୱରୂପ ରଖିଛି ଓ ତାହାଁର କେତୋଟି ଆବଶ୍ୟକୀୟ ଧାଡ଼ି ଏଠାରେ ଦେଉଅଛି ।

"ଆପଣଙ୍କର ସାଧୁ ଅନୁଷ୍ଠାନ ପ୍ରତି ମୋର ସମ୍ପୂର୍ଣ୍ଣ ସହାନୁଭୂତି ଅଛି । ଧନ୍ୟବାଦ ଗ୍ରହଣ କରିବା ହେବେ । ମୁଁ ସମ୍ପ୍ରତି କାଶ ଏବଂ କଫ ରୋଗରେ ଶଯ୍ୟାଶ୍ରୟୀ । ସର୍ବଶୁଭରେ ସମ୍ମିଳନୀର କାର୍ଯ୍ୟ ସମାହିତ ହେଉ, ମୋର ଏହି କାମନା । ଆପଣ ମୋର ପରାମର୍ଶ ଲୋଡ଼ି ଅଛନ୍ତି । ଆପଣ ଜଣେ ଉଚ୍ଚ ଶିକ୍ଷିତ, ହୃଦୟୀ, କର୍ମପ୍ରାଣ ଯୁବକ । ଆପଣଙ୍କର ବହୁଦର୍ଶିତା ସୀମାବଦ୍ଧ ନୁହେଁ । ମୁଁ ଅଧିକ କି ପରାମର୍ଶ ଦେବି ? ସମ୍ମିଳନୀକୁ ସ୍ଥାୟୀ କରିବାର ଚେଷ୍ଟା ହେଉ । ପ୍ରାଚୀନ ସାହିତ୍ୟର ସର୍ବାଙ୍ଗ ସୁନ୍ଦର ବିଶୁଦ୍ଧ ସଂସ୍କରଣ ପ୍ରକାଶ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ହେଉ ! ସମ୍ମିଳନୀ ଯୋଗେ ମୌଳିକ ସାହିତ୍ୟ ପରିପୁଷ୍ଟ ହେଉ, ରୋଗ ଶଯ୍ୟାରେ ଏତିକିମାତ୍ର ଲେଖିଲି । ମୁଁ ବର୍ତ୍ତମାନ କ୍ରମେ ଅବସନ୍ନ ହୋଇ ପଡ଼ୁଅଛି । ବୟସ ବି ଅଧିକ ହୋଇଗଲାଣି । ବର୍ତ୍ତମାନ ପଞ୍ଚଷଠି ଚାଲିଅଛି । ଇଚ୍ଛାସତ୍ତ୍ୱେ ଅଧିକ କାର୍ଯ୍ୟ କରିବାକୁ ମୋର ଶକ୍ତି ନାହିଁ । କିନ୍ତୁ ଆପଣମାନଙ୍କ ଭଳି ଦେଶର ଉଜ୍ଜ୍ୱଳ ରତ୍ନ ଉଚ୍ଚଶିକ୍ଷିତ ଯୁବକମାନଙ୍କର ଉତ୍ସାହ, ଉତ୍ତେଜନା ଦେଖି ମୋର ବକ୍ଷ ସ୍ଫୀତ ହୋଇ ପଡୁଅଛି । ମୁଁ ଆନନ୍ଦ ଓ ଆଗ୍ରହାତିଶଯ୍ୟରେ ଯୁବକମାନଙ୍କୁ ମାତୃସାହିତ୍ୟର କର୍ମ-କ୍ଷେତ୍ରକୁ ସାଦର ନିମନ୍ତ୍ରଣ ପୂର୍ବକ ଆହ୍ୱାନ କରୁଅଛି । ଏ ବୃଦ୍ଧର ପ୍ରୀତିସମ୍ଭାଷଣ ଗ୍ରହଣ କରନ୍ତୁ ।"

ବୃଦ୍ଧ ଚାଲିଗଲେ; ଅମର-ପଥର ଯାତ୍ରୀ ହୋଇ ଚାଲିଗଲେ । ଆଶା ହେଉଛି, ତାଙ୍କର ସାଦର ନିମନ୍ତ୍ରଣ ଓଡ଼ିଶାର ତରୁଣ ପ୍ରାଣକୁ ଚିରଦିନ ତରଙ୍ଗି ଦୋଦୁଲ୍ୟମାନ,

ଆଶାନ୍ୱିତ କର୍ମମୟ କରିବ । ମାତୃସାହିତ୍ୟର କର୍ମକ୍ଷେତ୍ର ଆନନ୍ଦ ରୋଳରେ, କୃତିତ୍ୱ ସମ୍ପାଦନରେ ପ୍ରତିଧ୍ୱନିତ, ସ୍ପନ୍ଦିତ, ଜୀବନ୍ତ, ବର୍ଦ୍ଧିଷ୍ଣୁ ହେବ । କବି-ସମ୍ମିଳନୀ ସ୍ଥାୟୀ ହୋଇପାରିଲା ନାହିଁ । ଓଡ଼ିଶାର ପ୍ରାୟ ସବୁ ସାହିତ୍ୟିକ, ରାଜନୈତିକ, ସାମାଜିକ, ଆର୍ଥିକ, ସାଂସ୍କୃତିକ ଅନୁଷ୍ଠାନର ଏହି ଅବସ୍ଥା । କ୍ଷଣିକ ଉତ୍ତେଜନାରେ ମାତିଉଠି ଗୁଡ଼ାଏ ଅନୁଷ୍ଠାନ ଆମେ ଆରମ୍ଭ କରିଦେଉଁ, ପତ୍ରପତ୍ରିକାରେ ପ୍ରକାଶ କରିଦେଉଁ, କେତୋଟି ସଭାକରି ଘନ ଘନ କରତାଳି ଦେଇ କୃତକୃତ୍ୟ ହେଉଁ; କର୍ତ୍ତବ୍ୟ ଶେଷ କରିଥାଉଁ । କିନ୍ତୁ ବଳିଷ୍ଠ ସଂଯମ, ଆତ୍ମଚିନ୍ତା, ଦୂରଦୃଷ୍ଟି, ଅଧ୍ୟବସାୟ, ଲୋକହିତରେ ନିଜକୁ ବିନିଯୋଗ କରିବା, ଲୋକ-ଭାବ-ଅଭାବରେ ତନ୍ମୟ ରହିବା ଆମେ ଏପର୍ଯ୍ୟନ୍ତ ଶିଖିନାହୁଁ । ମଙ୍ଗଳମୟ କରନ୍ତୁ, ଚିନ୍ତାମଣିଙ୍କ ଆଶୀର୍ବାଦରେ ଓଡ଼ିଆ କର୍ମୀ, ଓଡ଼ିଆ ଦେଶସେବୀ ସ୍ଥାୟୀ ଅନୁଷ୍ଠାନମାନ ଗଢ଼ି ମାତୃ ସେବାରେ ମନପ୍ରାଣ ଢ଼ାଳି ଦିଅନ୍ତୁ ।

କବିବରଙ୍କ ମନୋରଥ ଅଦ୍ୟାପି ଅପୂର୍ଣ୍ଣ ରହିଛି । ପ୍ରାଚୀନ ସାହିତ୍ୟର ସର୍ବାଙ୍ଗସୁନ୍ଦର ବିଶୁଦ୍ଧ ସଂସ୍କରଣ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ । 'ପ୍ରାଚୀ ସମିତି' ଇତ୍ୟାଦି କେତୋଟି ଅନୁଷ୍ଠାନ ଯୋଗେ ଏ କାର୍ଯ୍ୟ କେତେଦୂର ଆଗେଇଛି । ତଥାପି ଆଶାଜନକ ନୁହେଁ । ନବୀନ ସାହିତ୍ୟର ସଂସ୍କରଣ ତ ଆହୁରି ପଛରେ । ନବୀନ ସାହିତ୍ୟର ଅନେକ ଉନ୍ନତି ହୋଇଛି । ଆନ୍ତର୍ଜାତିକ ଭାବଧାରାରେ, ବିଂଶ ଶତାବ୍ଦୀର ବୈଜ୍ଞାନିକ-ଦାର୍ଶନିକ ଚିନ୍ତା ସ୍ରୋତରେ, ସମାଲୋଚନାର କ୍ଷିପ୍ରଗତିରେ, ଜାତୀୟ ଭାବ-ତରଙ୍ଗରେ ଭାରତୀୟ ସଂସ୍କୃତିର ଉଜ୍ଜ୍ୱଳତାରେ, ଆମର ବର୍ତ୍ତମାନ ସାହିତ୍ୟ ଜାଗ୍ରତ, ଚଞ୍ଚଳ, ମୁଖର ହୋଇ ଉଠିଛି । କ୍ଷୁଦ୍ର କବିତା, କ୍ଷୁଦ୍ର ଗଳ୍ପ, ନାଟିକା, ପ୍ରବନ୍ଧ ଇତ୍ୟାଦି ବିଭିନ୍ନ ବିଭାଗରେ ତାହାର ପରିସର ଓ ପ୍ରଭାବ ବଢ଼ିଛି ସତ୍ୟ, ତଥାପି ତହିଁରେ ଉତ୍କଟ ବ୍ୟକ୍ତିତ୍ୱର ବିଶୃଙ୍ଖଳା, ସ୍ୱେଚ୍ଛାଚାରିତା, ଆଦର୍ଶର ଅଭାବ, ଅନାଚାର, ଅସଙ୍ଗତି ନ ଥାଇ ନାହିଁ । ପରଧର୍ମର ଛାୟା ଓ ଅନୁକରଣ ତହିଁରେ ନିବିଡ଼ । ଅନ୍ୟର ସମ୍ପଦକୁ ଆୟତ୍ତ କରି ନିଜସ୍ୱ କରିବାର କଠୋର ପରିଶ୍ରମ ଓ ଗମ୍ଭୀର ଚିନ୍ତା ତହିଁରେ ଆହୁରି ଫୁଟି ଉଠି ନାହିଁ । ତଥାପି କବିବରଙ୍କ ଆଶିଷରୁ ପରଲୋକଗତ ଓଡ଼ିଆ ସାହିତ୍ୟ-ରଥୀଙ୍କ ଶୁଭଦୃଷ୍ଟିରୁ, ପୂର୍ବପୁରୁଷଙ୍କ ସୁକୃତରୁ ଆମର ମୌଳିକ ସାହିତ୍ୟ ନିଶ୍ଚୟ ଦିନେ ପରିପୁଷ୍ଟ ହେବ । ଅନ୍ୟାନ୍ୟ ପ୍ରାଦେଶିକ ଓ ବୈଦେଶିକ ସାହିତ୍ୟ ସଙ୍ଗେ ସମସ୍ପନ୍ଦ ହୋଇ ଉତ୍କଳ ସାହିତ୍ୟ ମହନୀୟ ଆଦର୍ଶରେ ଅନୁପ୍ରାଣିତ ହେବ, ଗର୍ବ ଅନୁଭବ କରିବ, ଉତ୍‌ଫୁଲ୍ଲ ହେବ ।

ସେତେବେଳେ ଚିନ୍ତାମଣି ରୋଗ ଶଯ୍ୟାରେ ପଡ଼ି କ୍ରମେ ଅବସନ୍ନ ହେଉଥିଲେ । ବୟସ ଅଧିକ ହୋଇଯିବାର ଅନୁଭବ କରୁଥିଲେ, ଇଚ୍ଛାମତେ ଅଧିକ କାର୍ଯ୍ୟ କରିବାକୁ ଶକ୍ତିର ଅଭାବ ବୋଧ କରୁଥିଲେ । ସମସ୍ତେ ଜାଣନ୍ତି ତାଙ୍କର ରୋଗ କିପରି

ଦିନକୁଦିନ ବଢ଼ିଥିଲା; ଅବସନ୍ନତା ପ୍ରବଳରୁ ପ୍ରବଳତର ହୋଇଥିଲା; ଦୈହିକ ଯନ୍ତ୍ରଣା କ୍ରମେ ଅସହନୀୟ ହୋଇଥିଲା । ତଥାପି ଗିର ସାଧକ ସେ, ଶ୍ରାନ୍ତ ପଥିକ ସେ, ସରସ୍ୱତୀ-ଆରାଧନା-ପଥରୁ ଟିକିଏ ହେଲେ ବିଚଳିତ ହୋଇ ନ ଥିଲେ; ଉତ୍କଳ-ଭାରତୀ-ମନ୍ଦିରର ଘଣ୍ଟା ତାଙ୍କ କାନରେ ଅହରହ ବାଜି ଉଠିଥିଲା; ନିଭୃତ ବାଣୀ-କୁଞ୍ଜରେ ଦୋହଲି ଦୋହଲି କାବ୍ୟରସ ସେ ଦିନ ରାତି ପିଉଥିଲେ ଓ ସମସ୍ତଙ୍କୁ ପିଆଉଥିଲେ । ସମର କ୍ଷେତ୍ରରେ ସୈନିକର ସାହସ, ଉତ୍ସାହ, ଉଦ୍ଦୀପନାଠାରୁ ଶତଗୁଣ ବଳି କବିବରଙ୍କ ଏ ସାଧନାର ନିଷ୍ଠା, ଦୈନନ୍ଦିନ-ସାଂସାରିକ ଜୀବନର ସୁଖ-ଦୁଃଖ, ଭୟ-ଭ୍ରୂକୁଟି ପ୍ରତି ବିତୃଷ୍ଣା । ଏ ଗୋଟିଏ ଘଟଣାରୁ ଓଡ଼ିଆ ସାଧକର ବହୁତ ଶିଖିବାର ଅଛି । ସାଧାରଣରେ ଆମେ ଗୋଷ୍ପଦ-ଶଯ୍ୟା-ଶାୟୀ । ବଡ଼ ବଡ଼ କଥା କହୁଁ .ଚମତ୍କାର ବକ୍ତୃତା ଦେଉଁ, ବାକ୍ଜାଲରେ ସମସ୍ତଙ୍କୁ ଅବାକ୍ କରିଦେଉଁ । କିନ୍ତୁ ଗୋଟାଏ କଣ୍ଟା ବାଜିଲେ, ସଂସାରର ଝଞ୍ଜାଳ ଟିକିଏ ଛୁଇଁଲେ, ଆମର ଆଦର୍ଶବାଦ କୁଆଡ଼େ ଲୁଚିଯାଏ । ଆମେ ପ୍ରତ୍ୟେକେ ନିଜର କଲେଜ-ଜୀବନ ସଙ୍ଗେ ଏବର ଚାକିରି ବା ବୈଷୟିକ ଜୀବନ ତୁଳନା କଲେ, ଏ କଥା ସହଜରେ ବୁଝି-ପାରୁ । କିନ୍ତୁ ପ୍ରତିଭାବାନ୍ ଲୋକେ ଏଥିରୁ ଭିନ୍ନ । ସାଧାରଣରୁ ଉର୍ଦ୍ଧ୍ୱ ବୋଲିହିଁ ସେମାନେ ପ୍ରତିଭା ସମ୍ପନ୍ନ । ଘଟଣାକୁ ନିଜର ଅଧୀନ କରି, ତହିଁରେ ଭାସି ନ ଯାଇ, ଉଦ୍ଦେଶ୍ୟ ପୂରଣରେ ସମର୍ଥ ହୁଅନ୍ତି ବୋଲି ସେମାନେ ପୂଜ୍ୟ, ବରେଣ୍ୟ । କହିବା ଅନାବଶ୍ୟକ, ଚିନ୍ତାମଣି ସେହି କୋଟୀରୁ ଜଣେ ।

କବି ସମ୍ମିଳନୀ ପରେ ଅଳ୍ପଦିନର କଥା । ସୁରଙ୍ଗୀ ରାଜକୁମାରୀଙ୍କ ବିବାହ ଉତ୍ସବରେ ଯୋଗ ଦେବାପାଇଁ କବିବର ଇଚ୍ଛାପୁର ଆସିଥାନ୍ତି । ସଙ୍ଗରେ ସୋମନାଥ ବାବୁ ଓ ଉପେନ୍ଦ୍ର ପ୍ରସାଦ ବାବୁ । ଗୋଟିଏ ଦିନ ସକାଳ । ସୁରଙ୍ଗୀ ଉଚ୍ଚ ବିଦ୍ୟାଳୟର ଶ୍ୟାମଳ ଉଦ୍ୟାନରେ ବସିଥାଉଁ । ପ୍ରଭାତ ସୂର୍ଯ୍ୟର କନକ କିରଣ ଶ୍ୟାମଳ ତରୁଶାଖା ଭିତରୁ ନବଦୂର୍ବାଦଳଶୋଭୀ ଭୂମି ଉପରେ ବିଞ୍ଚି ହୋଇ ପଡୁଥାଏ । ବସନ୍ତ ସମୀର ନବବିକଶିତ ପୁଷ୍ପଚୟର ସୌରଭ ଘେନି ଧୀରେ ଧୀରେ ବହି ଯାଉଥାଏ । ମୋ ସଙ୍ଗରେ ମାନ୍ଦ୍ରାଜ ଓଡ଼ିଆ କର୍ମୀ ଓ ସାହିତ୍ୟିକ ବାଣୀକିଙ୍କର, ଶିବରାମ ଇତ୍ୟାଦି କେତେଜଣ । କବିବର ଗୋଟିଏ ତକିଆକୁ ଆଉଜି ବସିଥାନ୍ତି । ବସିବାରେ ମଧ କଷ୍ଟ । ଉଠିଲେ ଗୋଡ କମ୍ପୁଥାଏ । ତଥାପି କି ମିଷ୍ଟ ସମ୍ଭାଷଣ, କି ଉଦ୍‌ବୋଧନ ! ଓଡିଶାର ପ୍ରାଚୀନ ଇତିହାସ ଓ ପ୍ରତ୍ନତତ୍ତ୍ୱଠାରୁ ଆରମ୍ଭ କରି ସାହିତ୍ୟର ସବୁ ବିଭାଗ ଉପରେ ଆଲୋଚନା ହୋଇଥିଲା । କବିବରଙ୍କ ସଙ୍ଗେ ଲେଖକର ସେହି ପ୍ରଥମ ଓ ଶେଷ ସାକ୍ଷାତ—ଏକମାତ୍ର । ତଥାପି ଦୂର ପର୍ବତର ସୌମ୍ୟ ମୂର୍ତ୍ତି ପରି, ଦୂର ଆକାଶର ଗାଢ଼ନୀଳିମା ପରି, ଦୂର ଦିଗ୍‌ବଳୟର ଅପରୂପ ଛବି ପରି ସେହି ଏକମାତ୍ର ସାକ୍ଷାତର ସ୍ମୃତି ଲେଖକର ହୃଦୟ-ପଟରେ ଆଜୀବନ ଜାଗରୂକ ରହିବ ।

ଚିନ୍ତାମଣିଙ୍କ ଜୀବନରେ ଗୋଟିଏ ବିଭବ ଯୋଗ ଲେଖକ ନିଜକୁ ବିଶେଷ ଭାବରେ ଭାଗ୍ୟବାନ୍ ମନେକରେ । ସ୍ୱର୍ଗୀୟ ସୁରଙ୍ଗୀ ନରପତି ରାଜକବି ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବଙ୍କ ଆନୁକୂଲ୍ୟରେ କବିବର ଇଚ୍ଛାପୁରରେ ସପରିବାର ବହୁବାର କଟାଇଥିଲେ । ଏଠାରେ ହିଁ ତାଙ୍କର କବି-ପ୍ରତିଭା ଉନ୍ମୋଚିତ ହୋଇଥିଲା ଓ ତାଙ୍କର ପ୍ରଥମ କବିତା ସବୁ ପ୍ରକାଶିତ ହୋଇଥିଲା । ସଂକ୍ଷେପରେ ଇଚ୍ଛାପୁର ତାଙ୍କର ସାହିତ୍ୟ-ସେବାର ପ୍ରଧାନ କର୍ମକ୍ଷେତ୍ର ହୋଇଥିଲା ' ଘଟଣାକ୍ରମେ ଲେଖକଙ୍କୁ ସେ ଇଚ୍ଛାପୁରରେ ରହିବାକୁ ପଡ଼ିଛି ଓ ସେଠାରେହିଁ ସେ ତାହାର ସାହିତ୍ୟସେବା ଯତ୍କିଞ୍ଚିତ୍ କରୁଛି । ଏଣୁ ଏ ଦିଗରେ କବିବରଙ୍କ ସ୍ଥାନୀୟ ସାରସ୍ୱତ ପ୍ରତିନିଧି ବୋଲି ଗର୍ବ କରିବାରେ ଲେଖକ କୁଣ୍ଠିତ ହେଉନାହିଁ ।

ଓଡ଼ିଶା-ସାହିତ୍ୟ-ମଣ୍ଡଳରେ ବିଷାଦରେଖା ଅଙ୍କିତ କରି, ପ୍ରାକୃତିକ ଓଡ଼ିଶାର ସାଧାରଣ ଜୀବନରେ ଅଭାବ ଘଟାଇ, କବିବର ପରଲୋକକୁ ଯାଇଛନ୍ତି । ତାଙ୍କର ଶୁଭକାମନାରେ ଆମର, ଦେଶର-ଦଶର ସର୍ବବିଧ ମଙ୍ଗଳ ହେଉ । ତାଙ୍କର ସାହିତ୍ୟ ସେବାର ଯୋଗ୍ୟ ଦାୟାଦ ସବୁ ବାହାରନ୍ତୁ । ନିଜେ କବିବରଙ୍କ ଯୋଗ୍ୟ-ପୁତ୍ର ଉପେନ୍ଦ୍ରପ୍ରସାଦ ଜଣେ ସରସ ସାହିତ୍ୟିକ । ପୂଜ୍ୟପାଦ ପିତାଙ୍କ ସାହିତ୍ୟ-ସେବା-ତଟିନୀକୁ ସେ ସ୍ଫୀତବକ୍ଷା, କଲ୍ଲୋଳିତା କରନ୍ତୁ ।



# ପଦେ

'ସହକାର', 'ନବଭରତ', 'ଚତୁରଙ୍ଗ'. 'ବୀଣା', 'ନବୀନ' ଇତ୍ୟାଦି ସାହିତ୍ୟ ପତ୍ରମାନଙ୍କରେ କୋଡ଼ିଏ ପଚିଶି ବର୍ଷ ତଳୁ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇଥିବା ମୋର ଅନେକ ଲେଖାରୁ କେତୋଟି ମାତ୍ର ଏ ପୁସ୍ତକରେ ଦିଆଯାଇଛି । 'Prabudha Bharata', 'Modern Review', 'Vedanta Kesari', 'Dharma Rajya', 'Educational India', 'Educational Review' ଇତ୍ୟାଦି ବିଭିନ୍ନ ବିଖ୍ୟାତ ଇଂରେଜ ପତ୍ରମାନଙ୍କରେ ସେହି ଦିନରୁ ପ୍ରକାଶିତ ମୋର ଅନେକ ଇଂରେଜୀ ଲେଖାରୁ ଅଳ୍ପ କେତୋଟିର ଓଡିଆ ଅନୁସରଣ ମଧ୍ୟ ଏଥିରେ ଅଛି । ଏ ପର୍ଯ୍ୟନ୍ତ ଅନେକ ଅପ୍ରକାଶିତ ଲେଖା ମଧ୍ୟ ରହିଛି । ସେହି ସବୁ ଓଡ଼ିଆ ଓ ଇଂରେଜୀ ଲେଖା ପ୍ରକାଶ କଲେ, ଏପରି ଚାରି ପାଞ୍ଚ ଖଣ୍ଡ ପୁସ୍ତକ ହେବ । ଏ ପ୍ରକାଶ ବିଦ୍ୱଜ୍ଜନ ସହାନୁଭୂତି ସାପେକ୍ଷ ।

ଏଥି ଭିତରୁ ଦୁଇଟି ପ୍ରବନ୍ଧ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟ ଆଇ.ଏ. ଓ ବି.ଏ.ର ପାଠ୍ୟ ରୂପେ ଗୃହୀତ ହୋଇଛି । ଓଡ଼ିଆ ସାହିତ୍ୟରେ ଏବେ ଗଳ୍ପ, ଏକାଙ୍କିକା, କବିତା ବହୁତ ଦେଖାଯାଉଛି, କିନ୍ତୁ ସମାଲୋଚନା-ମୂଳକ ଚିନ୍ତାଶୀଳ ପ୍ରବନ୍ଧ ଅତି ଊଣା—ଏକଥା ଆମେ ଶୁଣୁଛୁ । ସେ ଅଭାବ ଏ ପୁସ୍ତକ ତଥା ସୂଚିତ ଗ୍ରନ୍ଥମାଳା ଯତ୍‌କିଞ୍ଚିତ୍ ପୂରଣ କରିପାରିବାର ଓଡ଼ିଆ ପାଠକ-ସାହିତ୍ୟିକ ବର୍ଗ ମଣିଲେ, ଶ୍ରମସାର୍ଥକ ମନେ କରିବି ।

ବହୁ ବର୍ଷ ତଳୁ ଲେଖାଯାଇଥିବାରୁ, କେତେକ ପ୍ରବନ୍ଧ ସେହି ସମୟକୁ ଦୃଷ୍ଟିରେ ରଖି ସହୃଦୟ ପାଠକ-ପାଠିକା ପଢ଼ିବା ପାଇଁ ଏକାନ୍ତ ଅନୁରୋଧ । ନ ହେଲେ ଠାଏଁ ଠାଏଁ କାଳ ନିରୂପଣ-ଭ୍ରମ (Anachronism) ଭଳି ବୋଧ ହୋଇପାରେ ।

ପୁସ୍ତକଟିରେ ବିଭିନ୍ନ ବିଭାଗର ସନ୍ନିବେଶ ଅଛି । କିନ୍ତୁ ସବୁଥିରେ ମୌଳିକ ସେହି ଏକ ବିଷୟ ରହିଛି—ଜୀବନ । ସେଥିପାଇଁ 'ଜୀବନ ଚିନ୍ତା' ଶିରୋନାମାଟି ଗ୍ରହଣୀୟ ତଥା ଆଦରଣୀୟ ହେବ ବୋଲି ଆଶା । ମୋର ପରମ ସ୍ନେହଶ୍ରଦ୍ଧା ଭାଜନ, ସାହିତ୍ୟ ତଥା ବିଚ୍ଛିନ୍ନାଞ୍ଚଳ-କ୍ଷେତ୍ରରେ ସହକର୍ମୀ ଚିକିଲି ଜୁନିଅର୍ ରାଜଜ୍ଞାତାଦ୍ୱୟ—'ବୀଣା'ର ସମ୍ପାଦକ ଶ୍ରୀ ମଧୁସୂଦନ ଦେବ ଓ ରାଜକବି

ଶ୍ରୀ ଜଗନ୍ନାଥ ଦେବ ବର୍ମାଙ୍କର ପୂର୍ଣ୍ଣ ସାହାଯ୍ୟ ଓ ଆନୁକୂଲ୍ୟରେ ଏ ପୁସ୍ତକ ମୁଦ୍ରିତ ଓ ପ୍ରକାଶିତ ହୋଇଥିବା ଯୋଗୁଁ ସେମାନଙ୍କଠାରେ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ମୋର ପଡ଼ାସାଙ୍ଗ ଖ୍ୟାତନାମା ଶିଳ୍ପୀ ଶ୍ରୀ ଗୋପାଳ କାନୁନ୍‌ଗୋ ପୁସ୍ତକଟିର ପ୍ରଚ୍ଛଦପଟ ଚିତ୍ରାଙ୍କନ କରିଥିବାରୁ ତାଙ୍କୁ ଧନ୍ୟବାଦ ଦେଉଛି । ଛବିଟିରେ ବିଖ୍ୟାତ ଫରାସୀ ଶିଳ୍ପୀ ରୋଦଁା (Rodin) କୃତ 'ଚିନ୍ତା' (Thought) ନାମକ ପ୍ରତିମୂର୍ତ୍ତି (Sculpture)ର କେତେକ ପରିବର୍ତ୍ତନ ସହ ଚିତ୍ରଣ । 'ଜୀବନ ଚିନ୍ତା'ର ତାହା ଅନୁକୂଳ ହେବା ସ୍ୱାଭାବିକ । ପୁଣି ତହିଁରେ ଦିଆଯିବା ଉଜ୍ଜ୍ୱଳ ଆଲୋକ, ପକ୍ଷୀରାଜ ଘୋଡା, ମସ୍‌ଜିଦ୍‌, ଉଡନ୍ତା ପକ୍ଷୀ, ଦିଗନ୍ତ ବ୍ୟାପ୍ତି ଇତ୍ୟାଦି ପୁସ୍ତକର ବିଭିନ୍ନ ବିଭାଗ—ସ୍ମୃତି, କବିତା, ସାହିତ୍ୟ, ଇତିହାସ ଆଦିର ପ୍ରତୀକ ।

ଗ୍ରନ୍ଥଟି ସବୁ ଉତ୍କଳୀୟ ସାହିତ୍ୟିକଙ୍କର କରକମଳରେ ସ୍ନେହ ଓ ସମ୍ମାନ ସହିତ ଅର୍ପଣ କରୁଛି । —ଇତି—

ବିନୀତ

**—ଲେଖକ**

# ଅସୀମର ଆହ୍ୱାନ

ମୁକ୍ତିପାଇଁ ପ୍ରେରଣା ମନୁଷ୍ୟର ଅନ୍ତର୍ନିହିତ । ସସୀମର ଅସୀମରେ ପହଞ୍ଚିବା ହିଁ ମୁକ୍ତି । ଅସୀମ ଆମର ଅତି ପରିଚିତ, ଅତି ନିକଟ, ଅତି ଘନିଷ୍ଠ; ତଥାପି ଅତି ଦୂର, ଅତି ଅପରିଚିତ । ଅସୀମରେ ଆମର ଜନ୍ମ, ବର୍ଦ୍ଧନ, ଅବସାନ; ଅସୀମକୁ ଆମେ ପ୍ରତି ମୁହୂର୍ତ୍ତରେ ଦେଖୁଛୁ, ଅନୁଭବ କରୁଛୁ, ସ୍ପର୍ଶ କରୁଛୁ, ଅସୀମ ସହିତ ଖେଳୁଛୁ । ତଥାପି ମନେହୁଏ, ଅସୀମ ଯେପରି କୌଣସି ଦୂରଗତ ଅତିଥି, ସ୍ୱପ୍ନ-ପୁରର ମାୟା, ସ୍ୱର୍ଗ-ଲୋକର କଳ୍ପନା । ଏଠାରେ ହିଁ ସୃଷ୍ଟିର ବୈଚିତ୍ର୍ୟ, ଜୀବନର ରହସ୍ୟ ।

ଅସୀମ ପ୍ରତି ମନୁଷ୍ୟର ଆକାଂକ୍ଷା, ତୃଷ୍ଣା, ଶ୍ରଦ୍ଧା ପ୍ରବଳ । ଜାଣିଶୁଣି ବା ନଜାଣି ନଶୁଣି ମନୁଷ୍ୟ ଅସୀମ ଆଡ଼କୁ ଚିର ଆକୃଷ୍ଟ । ଏହି ଆକର୍ଷଣ ଇଚ୍ଛାହିଁ ମନୁଷ୍ୟର ବିଭିନ୍ନ କ୍ରିୟା କଳାପରେ, ବିଭିନ୍ନ ଉଦ୍ୟମର ମୂଳରେ ଥାଏ । ଧର୍ମ ସସୀମଠାରୁ ଅସୀମ ପର୍ଯ୍ୟନ୍ତ ମାର୍ଗକୁ ସୁଗମ, ସଂଯତ, ଶୃଙ୍ଖଳିତ କରେ; କଳା ତାହାକୁ ସୌନ୍ଦର୍ଯ୍ୟରେ ସମ୍ମୋହନ ରୂପ ଦିଏ; ବିଜ୍ଞାନ ତାହାର କେତୋଟି ଅଦୃଷ୍ଟ ସଙ୍କେତ ଦିଏ; ଜୀବନ ତାହାର ପ୍ରତିରୂପ ଚିତ୍ର ଅଙ୍କନ କରେ । ସବୁ ସେହି ଅସୀମର ଦ୍ୟୋତକ, ପ୍ରକାଶକ; ଅସୀମର ଆହ୍ୱାନରେ ସମସ୍ତେ ଚଞ୍ଚଳ, ଅଗ୍ରଗାମୀ ।

ବାସ୍ତବ ସାଂସାରିକ ଜୀବନରେ ମନୁଷ୍ୟର ତୃପ୍ତି ନାହିଁ । ସେ କୌଣସି ଗୋଟିଏ ପଦାର୍ଥ ପାଇବାକୁ ଇଚ୍ଛାକରେ, ତାହା ପାଏ; କିନ୍ତୁ ତହିଁରେ ସେ ସନ୍ତୁଷ୍ଟ ହୁଏନାହିଁ । ଆଉ କିଛି ପାଇବାକୁ ପୁଣି ବ୍ୟଗ୍ର, ଅଧୀର ହୋଇଉଠେ । ସେ ଭାବନା କରେ, ଗୋଟିଏ ଅବସ୍ଥାରେ ପହଞ୍ଚିଲେ ସେ ନିତ୍ୟ ସୁଖ ଲାଭ କରିବ, ସେ ଅବସ୍ଥାରେ ପହଞ୍ଚେ; କିନ୍ତୁ ଦେଖେ ତହିଁରେ ସୁଖର ସନ୍ଧାନ ନାହିଁ, ତାହା ଯେପରି ଗୋଟିଏ ତିକ୍ତ ଶୂନ୍ୟତା । ସେ ପୁଣି ଅନ୍ୟ ଅବସ୍ଥାରେ ଉପନୀତ ହେବାର ଉପକ୍ରମ କରେ । ଏହିପରି ତାହାର ଲାଗିଥାଏ ଚିର ଅସୁଖ-ଅଶାନ୍ତି ଜନିତ ନିରବଧି ସଂଘର୍ଷ । ଏ ସଂଘର୍ଷର ମୌଳିକ ତଥ୍ୟ ସେ ପ୍ରାୟ ବୁଝେ ନାହିଁ, ଏଣୁ ବିଶେଷ କ୍ଲେଶ ଅନୁଭବ କରେ । ଏହାହିଁ ସଂସାର ମାର୍ଗର ଅଭ୍ୟସ୍ତ ଲକ୍ଷଣ ।

ଏ ସଂଘର୍ଷ ହିଁ ସାକ୍ଷ ଦିଏ, ମନୁଷ୍ୟ ମୁକ୍ତି ଚାହେଁ । ସେ ଅଳ୍ପରେ ସନ୍ତୁଷ୍ଟ ନୁହେ, ଅଧିକ ଅଧିକ ଆଶାକରେ । ଯେଉଁ ଅବସ୍ଥାରେ ପହଞ୍ଚିଲେ ଆଉ ଆଶା କରିବାକୁ କିଛି ନଥିବ; ପୂର୍ଣ୍ଣକାମ ହେବ, ସେ ଅବସ୍ଥାରୁ ଊଣାରେ ମନୁଷ୍ୟ କେବେ ସନ୍ତୁଷ୍ଟ ନୋହିବ । ସେ ଅବସ୍ଥା ବା ଠିକ୍ କହିଲେ ଅବସ୍ଥାପିତ ଅବସ୍ଥା ହିଁ ଅସୀମ । କିନ୍ତୁ ମନୁଷ୍ୟ ସସୀମ ଜଗତକୁ ଭ୍ରମରେ ଅସୀମ ବୋଲି ଗ୍ରହଣ କରେ । ଏହା କିନ୍ତୁ ଅସମ୍ଭବ; ସେଥିପାଇଁ ତାହାର କଷ୍ଟ । ଜ୍ଞାନୀ ଲୋକେ ଏ ପରିସ୍ଥିତିର ଅସମ୍ଭାବନା ବ୍ୟର୍ଥତା ବୁଝନ୍ତି; ଏଣୁ ସାଧାରଣ ଲୋକଙ୍କଠାରୁ ଭିନ୍ନ ପନ୍ଥା ଅବଲମ୍ବନ କରନ୍ତି । କିନ୍ତୁ ଏହା ବୋଲି ସାଧାରଣ ଲୋକ ମଧ୍ୟ ଅସୀମ ଆଡ଼କୁ ଅଗ୍ରସର ନ ହୁଅନ୍ତି, ଏ କଥା କହି ହେବନାହିଁ । ତେବେ ପ୍ରଭେଦ ଏତିକି ହୋଇପାରେ, ଜ୍ଞାନୀ ଯେଉଁ ଲକ୍ଷ୍ୟ ପ୍ରତି ସଚେତ, ସାଧାରଣ ଅଚେତ; ଜ୍ଞାନୀର ପଥ ସରଳ, ସାଧାରଣର କୁଟିଳ; ଜ୍ଞାନୀ ଦ୍ରୁତଗାମୀ, ସାଧାରଣ ଆଳସ୍ୟ ପରାୟଣ; ଜ୍ଞାନୀ ଏବେ, ଏହିଠାରେ ଏହି ଜୀବନରେ ମୁକ୍ତ; ସାଧାରଣର ମୁକ୍ତି ବହୁଜୀବନ, ବହୁ ଆୟାସ ସାପେକ୍ଷ । ତଥାପି ସେହି ଅଖଣ୍ଡ ଆନନ୍ଦରେ ସମସ୍ତଙ୍କର ସଞ୍ଚାର, ଶେଷରେ ସେହି ଆନନ୍ଦରେ ସମସ୍ତଙ୍କର ପ୍ରବେଶ । ସେଥିପାଇଁ ପରା ଉପନିଷଦ ବଜ୍ରଗମ୍ଭୀର କଣ୍ଠରେ କହୁଛି, "ମହତ୍ ଆନନ୍ଦରୁ ଜଗତର ସୃଷ୍ଟି, ମହତ୍ ଆନନ୍ଦରେ ଜଗତର ସ୍ଥିତି, ସେହି ମହତ୍ ଆନନ୍ଦରେ ପୁଣି ତାହାର ଲୟ ।"

କିନ୍ତୁ ପ୍ରଶ୍ନ ଉଠିପାରେ, ମନୁଷ୍ୟ କାହିଁକି ଭୌତିକ ସଂସାରରେ ସୁଖୀ ନ ହେବ ? ଜଗତର ସୀମାକୁ ମନୁଷ୍ୟ କିପରି ଅତିକ୍ରମ କରିବ ? ଏ ଶିକ୍ଷା ବିଷାଦବାଦ (Pessimism) ନୁହେ ? କଠୋର ଅନୁଭୂତି ଉତ୍ତର ଦିଏ, ନା, ଏ ଶିକ୍ଷା ବିଷାଦ-ବାଦ ନୁହେ, ଏହା ନିପଟ ବାସ୍ତବ । ମନୁଷ୍ୟ ବାହାରେ ମନ ମତାଣିଆ ଭବରେ ଯାହା କହୁନା କାହିଁକି, ହୃଦୟର ଗଭୀର ଅନ୍ତରାଳରେ ଏ ସତ୍ୟ ଉପଲବ୍ଧ କରେ । ଜୀବନରେ ସୁଖ ଗୁଣେ ବଢ଼ିଲେ ଦୁଃଖ ଦଶଗୁଣ ବଢ଼େ । ଫୁଲରେ କୀଟ ଥାଏ, ଚନ୍ଦ୍ରରେ କଳଙ୍କ ଥାଏ । ଆମର ଶାନ୍ତି ସୁଖ ଭଙ୍ଗ କରିବା ପାଇଁ କୌଣସି ନା କୌଣସି କାରଣ ଅହେତୁକ ଭବରେ ଆମ ଆଗରେ ଠିଆହୁଏ । ମନୁଷ୍ୟ ସହସ୍ର ସହସ୍ର ବର୍ଷ ହେଲା ଏ ମର୍ତ୍ତ୍ୟଲୋକରେ ବଞ୍ଚି ଆସିଛି, ବିଗତ ସଭ୍ୟତାର ଦୁର୍ଗ ତୋଳିଛି ବୋଲି ଦମ୍ଭ ଧରୁଛି; ତଥାପି ଏ ବିଂଶ ଶତାବ୍ଦୀରେ ଦେଖୁଛି, ପ୍ରଥମ ଶତାବ୍ଦୀ ଅପେକ୍ଷା ତାହାର ଜୀବନ କୌଣସି ପ୍ରକାର ନିରାପଦ ନୁହେ । ଧନର ଅଭବ ନାହିଁ, ବିଳାସରେ ସେ ମାତିଛି । ତଥାପି ଅଭବ ଅପେକ୍ଷା ବିଳାସର ଆତିଶଯ୍ୟ ଅଧିକ ବାଧା ଦେଉଛି । ସମର ହୁଙ୍କାର ଶୁଭୁଛି । ସେତେବେଳେ ତାହାର ବିଳାସର, ସୁଖର ସ୍ୱପ୍ନ ଅଦୃଶ୍ୟ ହୋଇଯାଇଛି; ସେ ଦରିଦ୍ରରୁ ଦରିଦ୍ରତମ

ହେଉଛି । ଆଧୁନିକ ଜୀବନରେ ନାନା ସୁବିଧାର ସୃଷ୍ଟି ହେଉଛି; ଜୀବନକୁ ସୁଖମୟ କରିବା ପାଇଁ ବିଜ୍ଞାନ ଆଶ୍ଚର୍ଯ୍ୟଜନକ ଆବିଷ୍କାର କରୁଛି । ତଥାପି ବିଜ୍ଞାନର ପ୍ରତ୍ୟେକ ଆବିଷ୍କାର ଏପରି ଗୋଟିଏ ଗୋଟିଏ ସମସ୍ୟା ଆଣି ଥୋଉଛି, ଯାହାର ସମାଧାନରେ ଜଗତ ସ୍ତମ୍ଭୀତ ହେଉଛି । ପରମାଣୁ ବୋମା ଗୋଟିଏ ମାତ୍ର ଦୃଷ୍ଟାନ୍ତ । ଏ ସବୁ ସତ୍ତ୍ୱେ ଯଦି କିଏ କହେ, ଜଗତରେ ମନୁଷ୍ୟ ଅସୁଖୀ ନୁହେ, ତେବେ ବାସ୍ତବିକ୍ ସେ କି ମିଥ୍ୟାବାଦୀ ନୁହେ ?

ଶେଷ ବିଶ୍ଲେଷଣରେ ଏ ଅସୁଖର କାରଣ କଅଣ ? ପ୍ରାଚୀନମାନେ ବହୁ-ପୂର୍ବରୁ ଏହା କହିଛନ୍ତି । ସୁଖ ଓ ଦୁଃଖ ମନୁଷ୍ୟର ମନର ଅବସ୍ଥାନ୍ତର ମାତ୍ର । ବିଖ୍ୟାତ ଇଂରେଜ କବି ମିଲଟନ୍ ସେଥିପାଇଁ ପରା ଗାଇଛନ୍ତି, "ମନହିଁ ସ୍ୱର୍ଗକୁ ନରକରେ, ନରକକୁ ସ୍ୱର୍ଗରେ ପରିଣତ କରେ !" ମନୁଷ୍ୟ ଶରୀର ଓ ମନକୁ ସର୍ବସ୍ୱ ମନେକରେ । ଶରୀର ଓ ମନ ତ ସ୍ଥିର ବସ୍ତୁ ନୁହେ, ଏଣୁ ସେ କଷ୍ଟ ଭୋଗ-କରେ । ଆଜି ଆମ ଶରୀର ସୁସ୍ଥ, କାଲି କିନ୍ତୁ ଭୀଷଣ ରୋଗାକ୍ରାନ୍ତ । ଅଲଗାଣ ଘୋଡା ପରି ମନର ଦ୍ରୁତ ଅସ୍ଥିର ଅବସ୍ଥା କିଏ ପ୍ରତି ମୁହୂର୍ତ୍ତରେ ଅନୁଭବ ନକରୁଛି ? ସେଥିପାଇଁ ପରା କବି ତାହାକୁ ଲକ୍ଷ୍ୟ କରି ଯାଇଛନ୍ତି, 'ପ୍ରଭଞ୍ଜନର ବେଗ, ଆଲେକ ଗତି' । ଏପରି ପରିବର୍ତ୍ତନଶୀଳ, କ୍ଷୟଶୀଳ ପଦାର୍ଥ ଉପରେ ନିର୍ଭର କଲେ, ବାଧା ଛଡା ଆଉ କଅଣ ମିଳିପାରେ ? ସେଥିପାଇଁ ଅଖଣ୍ଡ ଶାନ୍ତି ଲଭିବାକୁ ହେଲେ, ମନାତୀତ ହେବାକୁ ହେବ ।

ଏଠାରେ ପୁଣି ପ୍ରଶ୍ନ ଉଠିପାରେ, ମନାତୀତ କିପରି ? ମନ ବାହାରେ ଆଉ କଅଣ ଥାଇପାରେ ? ତାହା କି କେବଳ ଶୂନ୍ୟ ନୁହେ, ଅପରିକଳ୍ପିତ ଧ୍ୱଂସାବଶେଷ ନୁହେ ? ତାହା କିପରି ଶ୍ରେୟ ? ଏଠାରେ ହିଁ ଆସ୍ତିକତା ନାସ୍ତିକତାର ମୌଳିକ ମତଭେଦ । ମନାତୀତ ରାଜ୍ୟ ଅଛି । ସୃଷ୍ଟିର ପ୍ରାକ୍‌କାଳରୁ ପ୍ରକୃତ ଯୋଗୀ, ଋଷି, ସିଦ୍ଧ ସାଧକ ସେହି ରାଜ୍ୟରେ ପହଞ୍ଚିଛନ୍ତି ଏବଂ ତଦ୍ୱାରା ସ୍ଥାୟୀ ନିତ୍ୟ ଶାନ୍ତିସୁଖ ଲାଭ କରିଛନ୍ତି । ପୁଣି ଲୌକିକ ଜୀବନ ଉପରେ ସେହିମାନେ ହିଁ ଅପରିମିତ ପ୍ରଭାବ ବିସ୍ତାର କରିଛନ୍ତି ଓ କରୁଛନ୍ତି । ପୁଣି ଅନେକେ—ଯେଉଁମାନେ ଶେଷ ଲକ୍ଷ୍ୟରେ ଉପନୀତ ହୋଇ ନାହାନ୍ତି ଅଥଚ ଅସୀମ ପଥରେ ପଥିକ ହୋଇଛନ୍ତି ସେମାନଙ୍କର ଜୀବନକୁସୁମ ଯେଉଁ ସୌରଭ ବିକୀରଣ କରୁଛି, ଅପରୋକ୍ଷ ପ୍ରମାଣ ଥାଉଁ ଥାଉଁ ତହିଁରେ କିଏ ସେ ସନ୍ଦେହ କରିବ ? ପରୋକ୍ଷ ଅନୁଭୂତିରେ, ଶ୍ରବଣରେ, ଦୂରଦର୍ଶନରେ ସଂଶୟ ଜନ୍ମିପାରେ । କିନ୍ତୁ ସମ୍ମୁଖରେ ନିର୍ମଳ ଭାବରେ ଅସନ୍ଦିଗ୍ଧ ଚିତ୍ତରେ ଅନୁଭବ କରୁଥିବା ବେଳେ ଅବିଶ୍ୱାସର ପ୍ରଶ୍ରୟ କାହିଁ ?

ସଂସାରବାଦୀ ଏଠାରେ ପୁଣି ପଚାରି ପାରେ, ଆଚ୍ଛା, ଏ ଅସାଂସାରିକ ଅପ୍ରାକୃତ ଉର୍ଦ୍ଧ୍ୱଚେତନ ବିଷୟ ଘେନି ଆମେ ଏତେ ବ୍ୟତିବ୍ୟସ୍ତ ହେବାର ପ୍ରୟୋଜନ କଅଣ ? ସଂସାର ଝଞ୍ଜାଳ ତ ଆମକୁ ବଳେଇ ପଡୁଛି, ଆଉ ଅଖଣ୍ଡ 'ଶାନ୍ତି' ଅନ୍ୱେଷଣ କାହିଁକି ? ବାସ୍ତବ ଜୀବନର ଦୁଃଖକଷ୍ଟ ଘୁଞ୍ଚାଇବା ପାଇଁ ଆମେ ଆଗେ ଲଢ଼େଇ କରିବା; ମର୍ତ୍ତ୍ୟରେ ସ୍ୱର୍ଗଲୋକର ଅବତରଣ ପାଇଁ ଅଣ୍ଟା ଭିଡିବା; ମର୍ତ୍ତ୍ୟରୁ ସ୍ୱର୍ଗକୁ ପଳାଇ ଯିବା ପାଇଁ ବ୍ୟାକୁଳ ହେବା କାହିଁକି ? କଥାଟା ଯୁକ୍ତିଯୁକ୍ତ, ବୀରତ୍ୱ ବ୍ୟଞ୍ଜକ ବୋଧ ହେଉଛି । କିନ୍ତୁ ଅସଲ କଥା, ଯୁଗଯୁଗ ଧରି ତାହା ପରୀକ୍ଷିତ ହୋଇଛି, ତହିଁରେ ଅଭବ ଦେଖାଯାଇଛି । ଜଗତ ସେ ପଥ ବହୁକାଳ ଅବଲମ୍ବନ କରିଛି, କିନ୍ତୁ ଏବେ ମଧ ଜଗତରେ ଯେଉଁ ଘୋର ବିଶୃଙ୍ଖଳା ଦେଖାଯାଉଛି, ତହିଁରୁ ତ୍ରାହି ପାଇବାର ବାଟ ଦିଶୁନାହିଁ । ଯେଉଁମାନେ ଅସୀମ ପଥରେ ଚାଲିଛନ୍ତି, ସେମାନେ 'ପଳାତକ-ବାଦୀ' ନୁହନ୍ତି । ଆନ୍ତରିକ ଆଦର୍ଶମୂଳକ ଆକାଂକ୍ଷା ସେମାନଙ୍କୁ ସେହି ପଥରେ ଚଳାଏ । ସେହି ଆଦର୍ଶ ଲାଗି ସେମାନେ ସର୍ବସ୍ୱ ତ୍ୟାଗ କରିବା ପାଇଁ ପ୍ରସ୍ତୁତ; ସାଂସାରିକ ଲାଭାଲାଭ ପ୍ରତି ସେମାନେ ସମ୍ପୂର୍ଣ୍ଣ ନିରୁଦ୍‌ବେଗ । ପ୍ରକୃତ କବି, ବୈଜ୍ଞାନିକ, ଆବିଷ୍କାରକ—ଯେଉଁମାନେ ମାନବିକ ଇତିହାସ-ପୃଷ୍ଠାରେ ସଙ୍କେତ ରଖି ଯାଇଛନ୍ତି, ନୂଆ ନୂଆ ମାର୍ଗରେ ମାନବକୁ ଚଳାଇବା ପାଇଁ ଆଲୋକ ସମ୍ପାତ କରିଛନ୍ତି - ସେମାନେ ଏହି କୋଟୀର ଲୋକ । କିନ୍ତୁ ସେମାନେ ମଧ ଅସୀମ ପଥର ପ୍ରାରମ୍ଭରେ । ଲକ୍ଷ୍ୟ ଆହୁରି ବହୁ ଦୂରରେ ।

ମୁକ୍ତି ତ ଲକ୍ଷ୍ୟ । ତଥାପି ମନୁଷ୍ୟର ସ୍ୱଭାବ ଓ ପ୍ରାକୃତିକ ପରିସ୍ଥିତି ଭେଦରେ ଏ ଲକ୍ଷ୍ୟ ସାଧନର ପ୍ରକାର ଓ ମାର୍ଗ ବିଭିନ୍ନ । 'ମୁଁ ଚଞ୍ଚଳ ପ୍ରକୃତିର ଲୋକ । ଚଞ୍ଚଳତାକୁ ମୁଁ ଭଲପାଏ, ଅନ୍ୟର ସେବାରେ ନିଜକୁ ନିୟୋଜିତ କରିବାପାଇଁ ଭଲପାଏ । ଅନ୍ୟକୁ ସାହାଯ୍ୟ କରିବାରେ ମୋର ଆନନ୍ଦ, ଅନ୍ୟର ସ୍ୱାର୍ଥସାଧନ ଲାଗି ମୋର ସ୍ୱାର୍ଥ ବଳିଦେବା ପାଇଁ ତତ୍ପର । ସକଳ ମାନବିକତା ମୋର ବନ୍ଧୁ । ମୋର ଦୃଷ୍ଟିରେ ବଡ଼ ସାନ କିଏ ନାହିଁ । ଏହି ପଥରେ ଅଧିକ ହୋଇ କ୍ରମେ ମୋର କ୍ଷୁଦ୍ର ଅହଙ୍କାର ସେବା-ଯଜ୍ଞର ପୂତ ଅଗ୍ନିରେ ଦଗ୍‌ଧୀଭୂତ ହୁଏ, ମୁଁ ଜଗତ୍-ବିଜୟୀ ହୁଏ । କ୍ଷୁଦ୍ର ସ୍ୱାର୍ଥହିଁ ମତେ ସଂସାର ରଜ୍ଜୁର ବାନ୍ଧି ରଖେ, ତାହା ନଥିଲେ ଆଉ ଭୟ କାହିଁ ? ଏପରି ଭାବରେ ମୁଁ ଜୀବନ୍ମୁକ୍ତ ହୁଏ ।" ଏହାହିଁ ଆମର ପ୍ରାଚୀନ ଶାସ୍ତ୍ର କଥିତ କର୍ମଯୋଗ । ଦୈନିକ ଜୀବନରେ ମଧ ଆମେ ଦେଖୁଁ—ଜଣେ ଜଣେ ଲୋକର ଅସାଧାରଣ ତ୍ୟାଗ ଆମର ଗୌରବାସ୍ପଦ ହୁଏ । ଏ ତ୍ୟାଗ କ୍ରମେ କ୍ରମେ ବଢ଼ି ଯେତେବେଳେ ଶେଷ ସୀମାରେ ପହଞ୍ଚେ, ସେତେବେଳେ ବ୍ୟକ୍ତିତ୍ୱ-ବୁଦ୍‌ବୁଦ୍‌ ଅସୀମ ସାଗରର ଅଗାଧ ଜଳରାଶିରେ ନିମଜ୍ଜିତ ହୁଏ । କର୍ମଯୋଗର ଏ ବୈଶିଷ୍ଟ୍ୟ ।

ଆଉ କେତେକ ଅଛନ୍ତି, ସେମାନଙ୍କର ସ୍ୱଭାବ ବିଚାରବନ୍ତ । ସେମାନଙ୍କର କର୍ମରେ ଯେତେ ପ୍ରବୃତ୍ତି ଜନ୍ମେ ନାହିଁ, ଗଭୀର ଚିନ୍ତାହିଁ ସେମାନଙ୍କର ଜୀବନର

ଲକ୍ଷଣ । ସେମାନେ ମର୍ମେ ମର୍ମେ ଅନୁଭବ କରନ୍ତି, ଜଗତ କ୍ଷଣିକ; କିଛି ଚିର ନୁହେ, ସବୁ ପରିବର୍ତ୍ତନଶୀଳ । ସବୁରି ଉପରେ ଗର୍ଜା—ମୃତ୍ୟୁ । ବନ୍ଧୁ ବାନ୍ଧବ, ମିତ କୁଟୁମ୍ବ ସମସ୍ତେ ଦିନେ ଦିନେ ଚାଲି ଯାଆନ୍ତି । ଯାହା ରହିବ ନାହିଁ ତାହା ଉପରେ ସୁଖ ପାଇଁ ନିର୍ଭର କରିବା କି ବାତୁଳତା । ସେଥିପାଇଁ ସେପରି ଲୋକ 'ନେତି 'ନେତି' ନ୍ୟାୟରେ ସବୁ ପରିହାର କରି ଶାଶ୍ୱତ, ଅକ୍ଷୟ, ଅମର ପ୍ରାପ୍ତ ହୁଅନ୍ତି— ଯାହାକୁ ଅଗ୍ନି ଦଗ୍ଧ କରିପାରେ ନାହିଁ, ସଲିଳ ଆର୍ଦ୍ର କରିପାରେ ନାହିଁ, କାଳ ଧ୍ୱଂସ କରିପାରେ ନାହିଁ ଏହାହିଁ ମୁକ୍ତି । ଏହାହିଁ ଜ୍ଞାନଯୋଗର ବୈଶିଷ୍ଟ୍ୟ ।

ପୁଣି କେତେକ ଅଛନ୍ତି, ଯେଉଁମାନଙ୍କର ସ୍ୱଭାବ ଅନ୍ତର୍ଦୃଷ୍ଟି, ଆତ୍ମ-ବିଶ୍ଳେଷଣ-ମୂଳକ । ସେମାନେ ଦେଖନ୍ତି, ମନୁଷ୍ୟ ସୁଖ ପଛରେ ଧାଏ, କିନ୍ତୁ ସୁଖ କେବେ ଧରା ଦିଏ ନାହିଁ । ଏହାର କାରଣ ତନ୍ନ ତନ୍ନ ଆଲୋଚନା କରି ସେମାନେ ବୁଝନ୍ତି, 'ମନର ମୂଳେ ଏ ଜଗତ,' ବାହ୍ୟ ଘଟଣାର ପ୍ରାୟ ତହିଁରେ କିଛି ସମ୍ପର୍କ ନାହିଁ । ବାହ୍ୟ ଘଟଣା ସହିତ ଆମେ ଯେଉଁ ଭାବରେ ପ୍ରତିକ୍ରିୟା କରୁ, ସେପରି ଭାବରେ ସୁଖୀ ବା ଅସୁଖୀ ହେଉ । ମନକୁ ଆୟତ୍ତ କଲେ ଜଗତ ଆୟତ୍ତ ହୁଏ, ଯେହେତୁ ଦୃଷ୍ଟ ଜଗତ ମନର ପ୍ରତିବିମ୍ବ ମାତ୍ର । ତେବେ ମନକୁ କିପରି ଆୟତ୍ତ କରାଯିବ ? ଧ୍ୟାନ ଧାରଣା ଦ୍ୱାରା ତାହା କରିହେବ । ମନ ଡିଆଁ ମାରୁଥିବା ମାଙ୍କଡ଼ ପରି; ସବୁବେଳେ ଏଣେତେଣେ ଧାଉଁଥାଏ । ତାକୁ ଧରିବାକୁ ଚେଷ୍ଟା କଲେ ପ୍ରଥମେ ସେ ଆହୁରି ଅମାନିଆଁ ହୋଇ ନାନା ଉପଦ୍ରବ ଜନ୍ମାଏ । ତଥାପି ଦୃଢ ଅଭ୍ୟାସ, କଠୋର ସଂଯମ, ଗଭୀର ଧାରଣା ବଳରେ ମନକୁ ଏକାଗ୍ର କରାଯାଇ ପାରେ । ମନ ଏକାଗ୍ର ହେଲେ ବିଶ୍ୱର ମୌଳିକ ସତ୍ତା ଉପଲବ୍ଧ ହୁଏ, ସର୍ବଲୋକର ରହସ୍ୟ ଗଣ୍ଠି ଫିଟିଯାଏ । ଯୋଗୀ ଏପରି ଭାବରେ ଜଗତକୁ ଜିଣେ, ନିଜର ଅଧିକାରୀ ହୁଏ, ମୁକ୍ତି ପାଏ । ଏହାହିଁ ରାଜଯୋଗର ବୈଶିଷ୍ଟ୍ୟ ।

ପୁଣି କେତେକ ଅଛନ୍ତି, ଯେଉଁମାନଙ୍କର ସ୍ୱଭାବ ଭାବ ପ୍ରବଣ । ସେମାନେ ଦେଖନ୍ତି ଜଗତର ଅନ୍ତରାଳରେ କୌଣସି ଅଦୃଷ୍ଟ ଇଙ୍ଗିତ ଅଛି । ଘଟଣାର ପ୍ରତି-ଘାତରେ ମନୁଷ୍ୟ ନିଜକୁ ନିଃସହାୟ ମନେକରେ । ସେ ଦେଖେ ପ୍ରତିକୂଳ ଅବସ୍ଥାରେ ତାହାର ସକଳ ଚାତୁର୍ଯ୍ୟ, ବୁଦ୍ଧି, କୌଶଳ, ବଳ କାହିଁ ଉଭେଇ ଯାଇଛି । ସେଥିପାଇଁ ସେ ବୋଧକରେ ବାସ୍ତବିକ୍ ଏପରି କୌଣସି ଅଦୃଷ୍ଟ ହସ୍ତ ଅଛି—ଯାହାକି ତାହାର ଭାଗ୍ୟ ନିୟନ୍ତ୍ରଣ କରୁଛି । ସେ ନିଜ ଇଚ୍ଛା ଅନୁସାରେ କୌଣସି କାର୍ଯ୍ୟ ସାଧନ କରିପାରେ ନାହିଁ । ଜଗତ-ଇତିହାସ ପୃଷ୍ଠାରେ ସେ ପଢ଼େ, କିପରି ଜଣେ ନେପୋଲିଅନ୍‌ର ଦୁର୍ଦ୍ଧର୍ଷ ସାମରିକତା ବ୍ୟର୍ଥ ହୋଇଥିଲା, ଜଣେ କାଇଜର୍‌ର ଗର୍ବ ଖର୍ବ ହୋଇଥିଲା, ଜଣେ ହିଟ୍‌ଲର ଧୂଳିରେ ମିଶିଯାଇଛି, ଉଦ୍ଧତ ସାମ୍ରାଜ୍ୟବାଦର

ହିଂସ୍ରକ ମୁକୁଟ ତଳକୁ ଖସି ପଡ଼ୁଛି । ବାସ୍ତବିକ୍ ଏପରି କୌଣସି ମହୀୟାନ୍ ଶକ୍ତି ଅଛି ଯାହାର ଆଜ୍ଞାରେହିଁ ଆମେ ବଞ୍ଚୁଛୁ, କାର୍ଯ୍ୟକ୍ଷମ ହେଉଛୁ । ସେ ଆଜ୍ଞାକୁ ଲଘିଁ ଆମେ ଏକପାଦ ମଧ୍ୟ ଅଗ୍ରସର ହୋଇ ପାରିବୁ ନାହିଁ । ଏଥିପାଇଁ ମନୁଷ୍ୟ ସ୍ୱତଃ-ପ୍ରବୃତ୍ତ ହୋଇ ବା ନ ହୋଇ ବଳ, ସାହାଯ୍ୟ, ରକ୍ଷା ପାଇଁ ସେହି ଶକ୍ତିକୁ ପ୍ରାର୍ଥନା କରେ । କ୍ରମେ କ୍ରମେ ଏ ପ୍ରାର୍ଥନା ଦ୍ୱାରା ଚିତ୍ତଶୁଦ୍ଧ ହୋଇ ସେ ଦେଖେ, ସେ ଯେତେଦୂର ନିଜର କ୍ଷୁଦ୍ର ବ୍ୟକ୍ତିତ୍ୱ ଭୁଲି ସେହି ଶକ୍ତି ସଙ୍ଗେ ନିଜକୁ ସଂଯୋଜିତ କରି ପାରିବ, ସେତେଦୂର ସେ ପରମ ସୁଖ ପାଇବ । ବିରାଟ କଳାକରର ସୃଜନମୂଳକ କାମନାରୁ ଜଗତର ସୃଷ୍ଟି । ସେ ସୃଜନର ଅଭିପ୍ରାୟ-ସୀମା ଭିତରେ ହିଁ ଆମର ବ୍ୟକ୍ତିତ୍ୱ ଗ୍ରଥିତ ହୋଇ ପାରେ । ତେବେ ମନୁଷ୍ୟ କି ଚିରଦାସ ? ତାହାର କି ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ନାହିଁ ? ନା, ଏପରି ବୁଝିବା ଭୁଲ । ସ୍ରଷ୍ଟାର ଏକୀକରଣରେ ହିଁ ତାହାର ପ୍ରକୃତ ବ୍ୟକ୍ତିତ୍ୱ ଫୁଟିଉଠେ । ସ୍ରଷ୍ଟାର ପଦପଙ୍କଜରେ ହିଁ ତାହାର ସକଳ ଆଶା-ଭରସା ପରିପୂର୍ଣ୍ଣ ହୁଏ । ସେ ପଦ-ପଙ୍କଜରୁ ବିଚ୍ଛିନ୍ନ ହେବାର ଔଦ୍ଧତ୍ୟହିଁ ମନୁଷ୍ୟକୁ କଷ୍ଟ ଦିଏ । ନିର୍ଝରିଣୀ ଝର ଝର ନାଦରେ ଅବିରାମ ଗତିରେ ସମୁଦ୍ରରେ ନିଜକୁ ମିଶାଇ ଦେବା ପାଇଁ ବହୁଥାଏ । ସେତେବେଳେ ତାହାର ଜଳ ସ୍ୱଚ୍ଛ, ଜୀବନ ସଚଳ । କିନ୍ତୁ ତହିଁରୁ ଅଲଗା ହୋଇ ଯେତେବେଳେ ଗୋଟିଏ ପଲ୍ୱଳ ନିଜକୁ ସର୍ବେସର୍ବା ମନେକରେ, ସେତେବେଳେ ସେ ହୁଏ ଅଚଳ, ମୃତ, ଦୁର୍ଗନ୍ଧ । ସେହିପରି ବିଚ୍ଛିନ୍ନ ବ୍ୟକ୍ତିତ୍ୱକୁ ବିରାଟ ଭୂମାର ଅପ୍ରତିହତ ବିଚିତ୍ର ଗତିରେ ମିଶାଇ ଦେଲେ ହିଁ ଆମେ ସେହି ଭୂମାର ଉତ୍ତରାଧିକାରୀ ହେଉ, ବଳବନ୍ତ ହେଉ, ମୁକ୍ତି-ସୁଧା ଆସ୍ୱାଦନ କରୁ । ପୁଣି ଉପାସନା ମାର୍ଗରେ ଦେଖୁ ସେହି ଶକ୍ତି, ସେହି ଭୂମା କେବଳ ବାହାରେ ନାହିଁ, ଆମର ଅନ୍ତରରେ ତାହା ସର୍ବଦା ବିରାଜିତ । ଏହା ହିଁ ଭକ୍ତିଯୋଗର ବୈଶିଷ୍ଟ୍ୟ ।

ଅସୀମର ପ୍ରରୋଚନାରେ ସବୁ ଧର୍ମର ସୃଷ୍ଟି । ଅସୀମର ଆହ୍ୱାନ ଚିରନ୍ତନ, ମଧୁର, ସାନ୍ତ୍ୱନାଦାୟକ, ଅଭୟକାରକ । ସେ ଆହ୍ୱାନ କି ଆମେ ଶୁଣିବା ନାହିଁ ?



# କଳାର ସ୍ୱରୂପ

କଳା ବିଗତ ଅସୀମକୁ ରୂପରେଖ ଦିଏ । ତଦ୍ୱାରା ଅସୀମକୁ ସସୀମ କରେ ସତ୍ୟ; ତଥାପି ତାହା ହିଁ ବିଶ୍ୱ-ଜୀବନ-କଳ୍ପନାର ଅତି ମଧୁର, ଅତି ରୁଚିକର ମାର୍ଗ । ଏହି ମାର୍ଗରେ ହିଁ ବିଶ୍ୱଜୀବନ ସଙ୍ଗେ କଳାକର ନିଜ ଜୀବନକୁ ଏକୀଭୂତ କରେ । ଏହି ମାର୍ଗ ଏପରି ଭବରେ ଗୋଟାଏ ସାଧନା, ଗୋଟାଏ ଯୌଗିକ କର୍ମ । ଏକଥା ଆଦିକାଳରୁ ଅକ୍ଳାନ୍ତ ଭବରେ ବୈଦିକ ମୁନି, ବ୍ଲେକ୍‌ଙ୍କ ପରି ଖ୍ରୀଷ୍ଟିଆନ୍ ରହସ୍ୟବାଦୀ, ପ୍ଲୋଟୋ-ଏରିଷ୍ଟଟଲଙ୍କ ପରି ଗ୍ରୀକ ଦାର୍ଶନିକ କହି ଆସିଅଛନ୍ତି । ଏହି ମାର୍ଗରେ କେବଳ କଳାକର ନୁହେ, କଳା ଉପଭୋଗ କରିବା ରସିକ, କଳାର ସଂରକ୍ଷକ-ପୋଷକ ସମସ୍ତେ ପରମର ଅନ୍ୱେଷଣରେ ବ୍ରତୀ ହୁଅନ୍ତି । ଉତ୍କୃଷ୍ଟ କଳାର ପ୍ରତ୍ୟେକ ପଂକ୍ତି, ପ୍ରତ୍ୟେକ ଶୈଳୀ, ପ୍ରତ୍ୟେକ ଅଭିବ୍ୟକ୍ତି ଆନନ୍ଦମୟ । କଳାର ଉତ୍ପତ୍ତି, ଅଭିବୃଦ୍ଧି ଚରମ ଲକ୍ଷ୍ୟ ଗୋଟାଏ । ଅଭଙ୍ଗ ଆନନ୍ଦ-ଚକ୍ର ସନ୍ନିବିଷ୍ଟ । କଳାର ଅଭିବ୍ୟକ୍ତିରେ ସ୍ରଷ୍ଟା ସୃଷ୍ଟର ପଶ୍ଚାଦ୍ଦେଶରେ ଧାବିତ ହୁଏ; ସୃଷ୍ଟ ସ୍ରଷ୍ଟା ପ୍ରତି ଗଭୀର ପ୍ରେମରେ ବିହ୍ୱଳିତ ହୋଇ ତାହାର ଚିରନ୍ତନ ସନ୍ଧାନରେ ପ୍ରବୃତ୍ତ ହୁଏ । ସ୍ରଷ୍ଟାର ଏ ପଶ୍ଚାଦ୍ଧାବନର ଇଙ୍ଗିତ ଇଂରେଜ କବି ଥାମ୍‌ସନ୍ ତାଙ୍କର କବିତା 'ସ୍ୱର୍ଗଶିକାରୀ'ରେ ଦେଇଅଛନ୍ତି; ସୃଷ୍ଟର ସନ୍ଧାନର ପବିତ୍ରତା ଓ ପ୍ରେରଣାର କିଞ୍ଚିତ ଆଭସ କବି ଟେନିସନ୍ ତାଙ୍କର କବିତା 'ସାରଗେଲହେଡ୍'ରେ ଦେଇ-ଅଛନ୍ତି । ସୃଷ୍ଟର ପ୍ରିୟତମର ଏ ସନ୍ଧାନ ବାସ୍ତବିକ ହୃଦୟସ୍ପର୍ଶୀ । ଜାଗ୍ରତରେ, ସ୍ୱପ୍ନରେ, ସୁଷୁପ୍ତିରେ-ପ୍ରତ୍ୟେକ ଅବସ୍ଥାରେ ସୃଷ୍ଟ ସ୍ରଷ୍ଟାକୁ ବିସ୍ମୃତ ହେବାର ନୁହେଁ । ବିସ୍ମୃତ ହେବାପରି ଦେଖାଯାଏ କିନ୍ତୁ ସେ ବିସ୍ମୃତି ଆପାତତଃ ସୃଷ୍ଟ ସ୍ରଷ୍ଟାର ଗୁଣ ବଡ଼-ସାନ, ପ୍ରୀତିକର-ଭୟଙ୍କର, ସରଳ-ଜଟିଳ, ମଧୁର-ନିଷ୍ଠୁର ସକଳ ପ୍ରକାର ଗୁଣ ପ୍ରତି ମୁହୂର୍ତ୍ତରେ ଝୁରୁଥାଏ; ସ୍ଥିର, ଏକାଗ୍ର, ସଂଯତ ଅନ୍ତର୍ଦୃଷ୍ଟିର ସଂଯୋଗରେ ସେ ଗୁଣ ସବୁର ମହତ୍ତ୍ୱ ଉପଲବ୍‌ଧି କରୁଥାଏ । ସେ ମହତ୍ତ୍ୱର ଗୁରୁଭରରେ, ଉର୍ଜ୍ଜସ୍ୱଳ ମହିମାରେ ସୃଷ୍ଟର ହୃଦୟ କୃତଜ୍ଞତାରେ ପୂରିଉଠେ; ଗର୍ବିତ ମସ୍ତକ ନମ୍ରତା, ଭକ୍ତି, ଉପପତ୍ତିର ଗରିମାରେ ଆନତ ହୋଇଯାଏ । କୃତଜ୍ଞତାର ଏ ପୂତ ବାରିରେ, ଗରିମାର ଏକ ନବ-ଆଲୋକରେ ମର୍ତ୍ତ୍ୟଜୀବନର ସବୁ କଳୁଷ,

ପାପତାପ, କ୍ଷୁଦ୍ରତା, ସଙ୍କୀର୍ଣ୍ଣତା, ନୀଚତା ଧୋଇ ହୋଇଯାଏ; ମନର ଅନ୍ତର୍ନିହିତ ଦେଶ ଆଲୋକିତ, ଉଦ୍ଭାସିତ ହୋଇ ଉଠେ । ମର୍ତ୍ତ୍ୟର ସୁଖ-ଦୁଃଖ, ଭବ-ଅଭବ, ଆଶା-ନିରାଶା, ଶଙ୍କା-ସାନ୍ତ୍ୱନା, ଜୟ-ପରାଜୟ, କୃତିତ୍ୱ-ବ୍ୟର୍ଥତା ଉତ୍ସାହ-ଅବସାଦ ସ୍ରଷ୍ଟାର ଜୀବନ ସଂଶ୍ଳିଷ୍ଟ । ସେଥିପାଇଁ କଳା ଏସବୁ ପ୍ରତି ବିମୁଖ, ବିମୁଖ ହୁଏ ନାହିଁ, ହୋଇ ପାରେ ନାହିଁ । କିନ୍ତୁ ଏ ସବୁକୁ ଉପାଦାନ କରି ତାହାକୁ ଜୀବନ୍ତ ଆକାର ଦେଲାବେଳେ, ଅରୂପକୁ ରୂପାୟିତ କଲାବେଳେ, ଅଚେତନକୁ ଚେତନ କଲାବେଳେ, ତାହାକୁ ବର୍ଣ୍ଣ ବା ଧ୍ୱନି ବା ଭଙ୍ଗୀଯୁକ୍ତ କଲାବେଳେ, ଯେଉଁ ଆଦର୍ଶରୁ ତାହା କରିବାରେ ସମର୍ଥ ହୁଏ, ସେ ଆଦର୍ଶ ବାହ୍ୟ-ଜଗତର, ବିଷୟ-ଜଞ୍ଜାଳ-ଉତ୍‌କ୍ଷିପ୍ତ ଦୈନିକ ସଂସାରର, ସମ୍ଭୋଗ ଉନ୍ମତ୍ତ ଉଚ୍ଛଟ ଇନ୍ଦ୍ରିୟ ଜୀବନର ବହୁ ଉର୍ଦ୍ଧ୍ୱରେ । ସେ ଆଦର୍ଶର ସ୍ପନ୍ଦନରେ କେଉଁ ମନୁଷ୍ୟର ମନୋରାଜ୍ୟ ସ୍ପନ୍ଦିତ ନ ହେବ ? ପୁଣି ଦର୍ଶନର ଦୃଷ୍ଟିରେ ସେ ଆଦର୍ଶ କି ପରମ ଠାରୁ ଅଭିନ୍ନ ? ପରମ ସତ୍ୟ ଶିବ ସୁନ୍ଦର । ଦର୍ଶନର ଦୃଷ୍ଟିରେ ଏ ତିନୋଟି ପୁଣି ଅଭିନ୍ନ । ଏପରି ଭାବରେ କଳାକାର ଜୀବନର ଉପାଦାନକୁ ନିଜ ଆଦର୍ଶରେ ରୂପମନ୍ତ କଲାବେଳେ, ନିଜ ସୃଷ୍ଟ କଳାର ବିସ୍ତାରିତ ପକ୍ଷରେ ବିହଙ୍ଗମ ଭଳି ବ୍ୟୋମ ମାର୍ଗରେ ସନ୍ତରଣ କରି ପରମ ସହିତ ନିଜର ଘନିଷ୍ଠ ସମ୍ପର୍କ ଅଭିବ୍ୟକ୍ତ କରୁଥାଏ ମାତ୍ର । ସ୍ରଷ୍ଟାର ଦିବ୍ୟ ସୃଷ୍ଟିରେ ଅଂଶୀ ହୋଇ, ସେ ସୃଷ୍ଟିକୁ ପୁଣି ରସାଣିତ, ଛନ୍ଦୋବଦ୍ଧ, ସଙ୍ଗୀତମୟ, ଚିତ୍ରିତ ବା ମୂର୍ତ୍ତି-ମନ୍ତ କରି କଳାକାର ବାସ୍ତବିକ୍ ପରମ ଉତ୍ସଙ୍ଗରେ ସ୍ଥାନ ପାଏ । ଏପରି ଭାବରେ କଳାକାର ସ୍ରଷ୍ଟାର ସୃଜନ ଓ ପ୍ରଳୟ ଶକ୍ତିରେ ଶକ୍ତିମନ୍ତ ହୁଏ । ଏଥିପାଇଁ ଦାର୍ଶନିକ ବା ବୈଜ୍ଞାନିକର ଆସନ ଠାରୁ କଳାକାରର ଆସନ ତଳରେ ନୁହେ, ବରଂ ଉପରେ । ଦାର୍ଶନିକ ତତ୍ତ୍ୱ—ଆଲୋଚନାର ଗହନ ମାର୍ଗରେ ଘୂରି ଘୂରି, ବୈଜ୍ଞାନିକ ବସ୍ତୁତତ୍ତ୍ୱର ଅନୁଶୀଳନ ଧନ୍ଦାରେ ଧନ୍ଦି ହୋଇ କ୍ଲେଶଦାୟକ ସୋପାନରେ ଯେଉଁ ସତ୍ୟରେ ଉପନୀତ ହୁଏ, କଳାକାର ସେହି ସତ୍ୟକୁ ରସ ପ୍ରବାହରେ, ସୌନ୍ଦର୍ଯ୍ୟର ଲୀଳାୟିତ ଭୂମିକାରେ ନିର୍ଦ୍ୱନ୍ଦରେ ମୁକ୍ତ ଭାବରେ ଗ୍ରହଣ କରେ; ଗ୍ରହଣ କରି ତୁଳିକାର ପ୍ରାଣମନ୍ତ ସଂସ୍ପର୍ଶରେ, ଲିଖନର ସଞ୍ଜୀବିତ ଖୋଦନରେ, ସଙ୍ଗୀତର ମଧୁମୟ ମୂର୍ଚ୍ଛନାରେ ପରଶେ । ଏଥିପାଇଁ ହିଁ କଳାକାର ବିରହିଣୀର ଏକ ବିନ୍ଦୁ ଲୋତକରେ, ବଣମଲ୍ଲୀକାର ଅନନୁଭବ ସୁବାସରେ, ନିମ୍ନତମ ଜୀବର ମନ୍ଥର ଗତି ଓ ମଗ୍ନ ଚେତନରେ ମଧ୍ୟ ଅସୀମର ବିକାଶ ଦେଖେ । ସେଥିପାଇଁ ହିଁ କଳାବସ୍ତୁ ଚିରନ୍ତନ ଆଲୋକର, ମାଧୁର୍ଯ୍ୟର ଅସରନ୍ତି ଭଣ୍ଡାର ହୋଇ ରହେ; ଚିରକାଳ ସଂସାର ସାଗରର ଉଦ୍‌ବେଳିତ ତରଙ୍ଗରେ ଇତସ୍ତତଃ ଭାସମାନ ଜୀବନ ତରୀ ଘୂର୍ଣ୍ଣିତ ଯାତ୍ରୀର ଦୀପସ୍ତମ୍ଭ, ଆଶ୍ରୟ ପୋତ ହୁଏ । ଦୁର୍ବୋଧତାକୁ ସୌନ୍ଦର୍ଯ୍ୟ ପାତ୍ରରେ ପରଶି ପାରେ କେବଳ ହିଁ କଳା । ସିଦ୍ଧିର ସୁଗମ ସୁଖକର ମାର୍ଗ ଉନ୍ମୋଚନ କରିପାରେ କେବଳ ହିଁ କଳା । ବିଶ୍ୱ-ଦେବତାର ପାଦ ତଳେ ମନୋରମ ପୂଜା ସମ୍ଭାର ବାଢ଼ିପାରେ କେବଳ ହିଁ କଳା ।

କୁହାଯାଇଛି କଳା ପରମର ସ୍ମାରକ, ପରମର ଉଦ୍ଯୋତକ । ପରମର ଦୃଷ୍ଟପୂର୍ବ ଅଭିବ୍ୟକ୍ତି ପ୍ରକୃତିରେ, ପ୍ରାଣୀର ସ୍ୱଭାବ ସଂସ୍କାରରେ, ବୃଦ୍ଧି ପ୍ରତିଭାରେ ଦେଖାଯାଏ । ତେଣୁ ଏସବୁ କଳାର ସାମଗ୍ରୀ । କିନ୍ତୁ କଳା ସେ ସାମଗ୍ରୀକୁ ବ୍ୟବହାର କରେ କେବଳ ଅନୁକରଣରେ ନୁହେ । ପରମର ଛାୟା ପ୍ରକୃତି । ପୁଣି ତାହାର ଛାୟା ଚିତ୍ରଣ—ଏ ନିକୃଷ୍ଟ ଛାୟାର ନୀରସ, ନିଷ୍ପ୍ରାଣ ପ୍ରତିକୃତି ଅନ୍ଧଭାବରେ ତୋଳିବା କଳାର କାର୍ଯ୍ୟ ନୁହେଁ । କୁହାଯାଇଅଛି, କଳାକର ଯୋଗମାର୍ଗରେ ପରମର ଅବରୁଦ୍ଧ ଅନ୍ତଃପୁରରେ ପ୍ରବେଶ କରେ । ପରମର ଯେଉଁ ବିଭାଗ ନିଜ ସୃଷ୍ଟିରେ ସେ ପ୍ରକାଶ କରିବାକୁ ଚାହେଁ, ସେ ବିଭାଗର ସ୍ୱଚ୍ଛ ପ୍ରତିବିମ୍ବ ପ୍ରଥମରେ ସେ ତାହାର ନିର୍ମଳ ହୃଦୟ-ମୁକୁରରେ ଧାରଣା କରେ । ପରେ ସେ ଧାରଣା ନିଜର ସୃଷ୍ଟବସ୍ତୁରେ ଫୁଟାଏ । କହିବା ଅନାବଶ୍ୟକ ଦର୍ପଣ ନିର୍ମଳ ନଥିଲେ ବିମ୍ବ ନିଷ୍ପ୍ରଭ ବା କଳଙ୍କିତ ହୁଏ । ସେହିପରି କଳାକରର ଅନ୍ତଃକରଣ ସକଳ ଅହମିକା, ଆବର୍ଜନା, ଦୁଷ୍ପ୍ରବୃତ୍ତି ପରିହାର ନ କଲେ, ତହିଁରେ ପରମର ସାଦୃଶ୍ୟ ମଳିନ ହୁଏ । ଫଳରେ ସେହି ମଳିନତା କଳାବସ୍ତୁକୁ ମଳିନ ମୂଲ୍ୟହୀନ, ନିରର୍ଥକ କରେ । ଏହି ଦୃଷ୍ଟିରେ ହିଁ ସୌନ୍ଦର୍ଯ୍ୟ ଓ ଶିବର ମିଳନ । ଏ ଦୃଷ୍ଟିରେହିଁ କଳା ଆତ୍ମ-ସମର୍ପଣ, ଚିତ୍ତଶୁଦ୍ଧି, ପବିତ୍ରତାର ତପସ୍ୟା ଭୂମି । ଏଠାରେ ହିଁ କଳା ଐଶ୍ୱର୍ଯ୍ୟ-ଚିନ୍ତାର ବୀଜାକ୍ଷର ମନ୍ତ୍ର ସାଧନା ସ୍ୱରୂପ । କଳା ସୃଷ୍ଟିରେ ଐଶ୍ୱର୍ଯ୍ୟ ଚିନ୍ତା ଛଡ଼ା ଅନ୍ୟ କିଛି ବିଚାର ବା କାମନା ରହି ନ ପାରେ; ପୁଣି ସେ ଐଶ୍ୱର୍ଯ୍ୟ-ଚିନ୍ତାରେ ପ୍ରାର୍ଥନାହିଁ ମୂଳଭିତ୍ତି । କଳାକର ସେହି ସାଧନା ଓ ପ୍ରାର୍ଥନା ଫଳରେ ମାନସ-ଚକ୍ଷୁରେ ଯେଉଁ ଅପୂର୍ବ ରୂପ ସନ୍ଦର୍ଶନ କରେ, ସେ ରୂପ ବସ୍ତୁରେ ପ୍ରତିଭାତ କରେ; ସେଥିରେ କଳାକରର ନିଜ ଇଚ୍ଛା ବା କାମନାର ଅବକାଶ ରହେନାହିଁ । ସେ ହୁଏ ଦିବ୍ୟ ପ୍ରକାଶର ନିମିତ୍ତ ମାତ୍ର । ଇଂରେଜ କବି ଓ୍ୱାର୍ଡ଼ସଓ୍ୱାର୍ଥ୍ ଏଥିପାଇଁ ଠାଏଁ କହିଅଛନ୍ତି, କଳାଭାବ ସ୍ମୃତି ଓ ସୌମ୍ୟତାର ବିଚିତ୍ର ସମ୍ମେଳନ । ଏପରି ଭାବରେ ସ୍ୱରୂପରେ କଳା-ସୃଷ୍ଟିର ଆଦ୍ୟ, ମଧ୍ୟ, ପ୍ରାନ୍ତ—ଯେ କୌଣସି ଅବସ୍ଥାରେ କଳାକରର ଆଦର୍ଶ ସେ ନିଜେ । ସେଥିପାଇଁ ଅଗ୍ନିପୁରାଣ କହିଛି, କଳାକର ବ୍ରହ୍ମା ପରି ସ୍ରଷ୍ଟା । ତାହାର ସୃଷ୍ଟ ବସ୍ତୁ ଐଶ୍ୱରିକ ମୁଦ୍ରାରେ ଅଙ୍କିତ ।

ଏ ପ୍ରକରଣରେ କଳା-ରାଜ୍ୟରେ ଅଳଙ୍କାରର ସ୍ଥାନ ଓ ପ୍ରୟୋଗ ବୁଝିବାକୁ ହେବ । ଏ ପ୍ରକରଣରେ ଅଳଙ୍କାର କଳାବସ୍ତୁ ମଣ୍ଡନ ନିମନ୍ତେ ପ୍ରଯୁଜ୍ୟ ଗୋଟାଏ ବାହ୍ୟ ଉପକରଣ, ଅପ୍ରାକୃତ ବସ୍ତୁ ନୁହେ । ହିନ୍ଦୁ କଳାର ଗଦା, ପରଶୁ, କୌସ୍ତୁଭ, ବୈଜୟନ୍ତୀ, କପାଳ-ମାଳା ଏଥିପାଇଁ ଦର୍ଶକର ମନକୁ ଆକର୍ଷଣ କରିବାପାଇଁ ବା ତାହାକୁ ସାମୟିକ ସନ୍ତୁଷ୍ଟି ଦେବାପାଇଁ ପସନ୍ଦକରଣ ନୁହେଁ । କଳା-ସୃଷ୍ଟି ସହିତ ସେଗୁଡ଼ିକ ଅବିଭାଜ୍ୟ ଭାବରେ ଜଡ଼ିତ, କଳା-ରଚନାର ସେଗୁଡ଼ିକ ଅତ୍ୟନ୍ତ

ଆବଶ୍ୟକୀୟ ରୂପକ । ପୁଣି ଏହି ଅନୁସାରେ ଆମର ପୁରାଣ ବର୍ଣ୍ଣିତ ଦେବ-ଚରିତ ବା ଲୌକିକ ପରମ୍ପରା ଅନର୍ଥକ ନୁହେ । ସେଗୁଡିକ ମଧ୍ୟ କଳାସୃଷ୍ଟିର ଅପରିହାର୍ଯ୍ୟ ବିଷୟବସ୍ତୁ ।

କାଳର ବିଶାଳ ସାମୂହିକ ଦୃଷ୍ଟିରେ ପୁଣି ତଥାକଥିତ 'ଆଦିମ ବର୍ବରତା' ବା 'ଆଧୁନିକ ସଭ୍ୟତା' ମଧ୍ୟରେ ସଂଘର୍ଷର ଅବକାଶ ନାହିଁ । କଳା ମାନବିକ ସଭ୍ୟତାର କ୍ରମ-ବିକାଶ ପଥ ମାନେ; ଆଦିମ ସ୍ୱାଭାବିକ ପ୍ରବୃତ୍ତି, ସହଜ ବୋଧ, ପ୍ରାକୃତିକ କଳ୍ପନା ଶକ୍ତିକୁ କ୍ରମେ ହରାଇ ବିଂଶ ଶତାବ୍ଦୀର ମନୁଷ୍ୟ କିପରି ସଭ୍ୟତା ଡିଣ୍ଡିମ ବଜାଉଛି, ଏକଥା ବୁଝିରଖେ । କିନ୍ତୁ ଏ ଦୁଇଟି ମଧ୍ୟରେ ବଡ଼-ସାନ, ଉଚ୍ଚ-ନୀଚ ଭେଦ ମାନେ ନାହିଁ । ବରଂ ଗୋଟାଏ ଦୃଷ୍ଟିରେ ବିଖ୍ୟାତ ଇଂରେଜ ଲେଖକ କାର୍‌ଲାଇଲ୍‌ଙ୍କ ଉକ୍ତି ଅନୁଯାୟୀ କଳା ଆଦିମରେହିଁ ଅଧିକ ଶ୍ରଦ୍ଧା, ବିଶ୍ୱାସ, କଳ୍ପନା, ବ୍ୟାପକତାର ନିଦର୍ଶନ ଦେଖେ । ସେଥିପାଇଁ ପରା ଆଦିମ ଯେଉଁ ଜଗତକୁ ଗୋଟାଏ ଦେବ-ମନ୍ଦିର ଦୃଷ୍ଟିରେ ଦେଖୁଥିଲା, ଯେଉଁ ଜୀବନକୁ ଉପାସନା-ନୀରାଜନା ବୋଲି ମଣୁଥିଲା, ଆଜି ତହିଁରେ ବିଂଶ ଶତାବ୍ଦୀର ସୁସଭ୍ୟ ଆମେ ଦେଖୁଛୁ—ସମରର ପୈଶାଚିକ ଲୀଳା, ଭୀଷଣ ଅଶାନ୍ତି, ପ୍ରେତପୁରୀର ବିଭୀଷିକା । କଳା ଦୃଷ୍ଟିରେ ଆଦିମ ବର୍ବର ନୁହେ; ଆମର ଦୁରହଙ୍କାର, ଦୁରଭିମାନ ତାହାକୁ ବର୍ବର ଆଖ୍ୟା ଦେଇଅଛି । ଆମେ ହିଁ ସେ ଆଖ୍ୟାରେ ଭୂଷିତ ହେବା ପାଇଁ ଉପଯୁକ୍ତ ।

କଳା ଓ ଜୀବନ ଅବିଭାଜ୍ୟ; ସେଥିପାଇଁ କଳାଜୀବନର ଚତୁର୍ବର୍ଗ ସାଧନର ସମର୍ଥ ହୁଏ । ଭାରତୀୟ କଳାଶାସ୍ତ୍ର ବହୁବାର ଏହା ଦୃଢ଼ ଭାବରେ ଘୋଷଣା କରିଛି । ଭରତ ନାଟ୍ୟଶାସ୍ତ୍ର, ସାହିତ୍ୟ ଦର୍ପଣ, ବାତ୍ସାୟନଙ୍କ କାମ-ସୂତ୍ର ଏହାର ଦୃଷ୍ଟାନ୍ତ । କଳା ଦୈବ ନିବନ୍ଧନର ସଙ୍କେତ । ଆଜିକାଲିର ସମାଲୋଚକମାନେ କଳାକରର କାମନା ଉପରେ ଜୋର ଦିଅନ୍ତି । କିନ୍ତୁ ମନେ ରଖିବାକୁ ହେବ ଭାରତୀୟ ଆଦର୍ଶ ପ୍ରକାରରେ କଳାକରର ନିଜସ୍ୱ କାମନା କିଛି ନାହିଁ, କିଛି ନ ରହିବା ଉଚିତ । ସେ ଯେତେଦୂର ତାହାର ସ୍ୱତନ୍ତ୍ରତାକୁ ସତ୍-ଚିତ୍-ଆନନ୍ଦରେ ଅତଳ ଗର୍ଭରେ ହଜାଇ ଦିଏ, ତହିଁର ରସ ପାନ କରେ, ସେତେଦୂର ହିଁ ତାହାର କଳା ମୂଲ୍ୟବାନ୍, ସାର୍ଥକ, ଉତ୍କୃଷ୍ଟ ହୁଏ । ମୁକ୍ତିର ଅନ୍ତିମ ଚେତନାହିଁ କଳାକୁ ଚିନ୍ମୟ କରେ । କୁହାଯାଇଛି କଳା ଓ ଜୀବନ ଏକାଙ୍ଗ । ସେଥିପାଇଁ କଳାର ଆଲୋଚନା ସବୁ ଯୁଗରେ, ସବୁ ଦେଶରେ ଦେଖାଯାଏ । ପ୍ଲେଟୋ, ଡାଇନୋସିଏସ୍, ସେଣ୍ଟଥୋମସ, ଏକ୍ୱିନାସ, ପ୍ଲୋଟିନାସ୍ ସୋପନ୍‌ହାଉର୍, ଇଗେଲ, ସେଲିଙ୍ଗ, କେଣ୍ଟ, ନିଜ-ବେଦ ଉପନିଷଦ, ଆରଣ୍ୟକ, ବ୍ରାହ୍ମଣ, ଗୀତା, ବାଇବଲ୍—ଏପରି ପାଶ୍ଚାତ୍ୟ ଓ ପ୍ରାଚ୍ୟ ଦର୍ଶନଠାରୁ ଧର୍ମଶାସ୍ତ୍ର ପର୍ଯ୍ୟନ୍ତ କଳା କେଉଁଠାରେ ଛାଡ଼ ଦିଆଯାଇ ନାହିଁ । ବାସ୍ତବିକ୍ କଳା

ସୃଷ୍ଟି ଆରମ୍ଭରୁ ମାନବିକ ସଂସ୍କୃତିର ଗୋଟିଏ ଅବିଚ୍ଛିନ୍ନ ପରଂପରା । ବିଭିନ୍ନ ଜାତି କଳାର ବିଭିନ୍ନ କୋଣ-ଇଙ୍ଗିତର ମନ ଦେଇପାରିଥାନ୍ତି । କିନ୍ତୁ କଳାରେ ଜାତୀୟତା ତଥା ଆନ୍ତର୍ଜାତୀୟତାର ମଧ୍ଯ ଅର୍ଥ କିଛି ନାହିଁ, ଯେହେତୁ କଳା ବିଶ୍ୱ ବ୍ୟାପକ । ଜୀବନ ପରି କଳାର ବିଭାଗ ଅଛି; ତଥାପି ଜୀବନ ପରି ସବୁ ବିଭାଗକୁ ମିଳାଇ ତାହା ଏକ । କଳାର କାମନା, ଅନୁକରଣ, ପ୍ରକାଶ କଳାକରର ଉଦ୍ୟମ, କାର୍ଯ୍ୟକାରିତା, କୃତିତ୍ୱଠାରୁ ଅଭିନ୍ନ । କଳାକରର ଅନ୍ୟ ଅପେକ୍ଷା କିଛି ନଥାଏ, ତାହାର ଏକମାତ୍ର ଆନନ୍ଦ ବା ଅପେକ୍ଷା •ବିଶ୍ୱ-ଆତ୍ମାର ସ୍ୱାନୁଶୋଭନ । କଳା ଚିନ୍ତା-ରାଜ୍ୟର, ତଥାପି କର୍ମର ବିରାଡ଼୍ୟ, ଆଦରଣୀୟ । କର୍ମ-କୁଶଳତାରେ ସୌନ୍ଦର୍ଯ୍ୟ ଆପେ ଆପେ ଶୋଭା ପାଏ; କର୍ମ-ତ୍ରୁଟି ଆପେ ଆପେ ଅସୁନ୍ଦର, କୁତ୍ସିତ ଦେଖାଯାଏ । କଳା ରାଜ୍ୟରେ ପାଣି-ବାକ୍ ଓ ମନୋବୃତ୍ତିର ବିରୋଧ ନାହିଁ । ସେ ଦୁଇଟି ପରସ୍ପର ସମ୍ବନ୍ଧ । ଗୋଟିକର ନିର୍ମଳତାରେ, ନିଖୁଣତାରେ, ନିତ୍ୟତାରେ ଅନ୍ୟଟି ନିର୍ମଳ, ନିଖୁଣ, ନିତ୍ୟ ହୁଏ ।



# ଜୀବନ ଉପାସନା

ଜୀବନ ମୂଲ୍ୟବାନ । ସବୁ ଶାସ୍ତ୍ରରେ କୁହାଯାଇଛି, ମନୁଷ୍ୟ ଜୀବନ ଦୁର୍ଲଭ, ବହୁ ତପସ୍ୟାର ଫଳ । ଇଂରେଜି କବି ହେର୍‌ବର୍ଟ୍ ଗାଇଛନ୍ତି, ବିଶ୍ୱନିୟନ୍ତା ମନୁଷ୍ୟଙ୍କୁ ଅଗଣିତ ଦାନ ଦେଇଛନ୍ତି – ବଳ, ସୌନ୍ଦର୍ଯ୍ୟ, ବୁଦ୍ଧି, ଗୌରବ, ସୁଖ । କିନ୍ତୁ ସନ୍ତୁଷ୍ଟି ଦେଇନାହାନ୍ତି । ମନୁଷ୍ୟ ଅନ୍ତରେ ସନ୍ତୁଷ୍ଟ ହୋଇଗଲେ, ପ୍ରକୃତି ଉପାସନାରେହିଁ ତାହାର ଜୀବନ କଟିଯିବ; ପ୍ରକୃତିନିୟନ୍ତାଙ୍କୁ ସେ ଆଉ ମନେ ପକାଇବ ନାହିଁ । ଏଣୁ ତାହାର ବହୁତ କ୍ଷତି ହେବ । ସଦ୍‌ଗୁଣ ନ ହେଲେ ମଧ ଅଖଣ୍ଡ ସନ୍ତୁଷ୍ଟିର ସନ୍ଧାନ ତାହାକୁ କେବେହେଲେ ମଙ୍ଗଳମୟଙ୍କ କ୍ରୋଡ଼ରେ ଆଶ୍ରିତ କରିବ, ପରମରେ ଯୋଗ କରିବ । ଏଥିପାଇଁ ବୋଧହୁଏ ମନୁଷ୍ୟ ସାଧାରଣରେ ଅସନ୍ତୁଷ୍ଟ, ଅପୂର୍ଣ୍ଣ ।

ଜୀବନର ଶେଷ ପରିଣତି ପୂର୍ଣ୍ଣାବସ୍ଥା । ତଥାପି ବାସ୍ତବ ଜୀବନର ଦୁଃଖ କ୍ଳେଶ ସ୍ପଷ୍ଟ । ଦୈନନ୍ଦିନ ଜୀବନର ଯାତନାକୁ ପ୍ରାଣସ୍ପର୍ଶୀ ଭାଷାରେ ବର୍ଣ୍ଣନା କରି ସରୋଜିନୀ ଦେବୀ ଗାଇଛନ୍ତି - ପରିବର୍ତ୍ତନ-ଝଡ଼ ଚିରକାଳ ଆମକୁ ବ୍ୟତିବ୍ୟସ୍ତ କରି ବହି ଯାଉଛ; ଅନାଗତର ଅମୂର୍ତ୍ତ ଦୁଃଖରାଜି ଅତୀତ ଦୁଃଖରାଜିର ସ୍ଥାନ ଅଧିକାର କରି ବସୁଛି; ସ୍ୱପ୍ନ ପରେ ସ୍ୱପ୍ନ, ସଂଘର୍ଷ ପରେ ସଂଘର୍ଷ ଚାଲିଛି । ଜୀବନ-ତନ୍ତୁର ସୂତ୍ରଗୁଡ଼ିକ କାଳ-ପୁରୁଷ ଅହରହ ଛିନ୍ନ ବିଛିନ୍ନ କରୁଛି । ହାହାକାରର କରୁଣ ଚିତ୍ର ପ୍ରତିଦିନ ଆମ ଆଖି ଆଗରେ ଫୁଟି ଯାଉଛି । ଉନ୍ନତ ମସ୍ତକ ଅବନତ ହେଉଛି; ଗର୍ବ ଖର୍ବ ହେଉଛି, ଆଶା-ଲତା ଫୁଲଫଳ ଧରୁନାହିଁ; ବିଶ୍ୱାସ ଭାଙ୍ଗି ଯାଉଛି, ଗୋଡ ଖସି-ଯାଉଛି, ମନୋରଥ ଲଭିବାକୁ ଶଙ୍କିତ ହସ୍ତରେ ଆମେ ଆୟୋଜନ କରୁଛୁ, କିନ୍ତୁ ପାରୁନାହୁଁ । ବର୍ତ୍ତମାନର ଅଭାବ ଦୁର୍ବିପାକର ଘନକୃଷ୍ଣ ଛବିରେ ବାସ୍ତବିକ ଏ କବି-ଅନୁଭୂତି କି କରୁଣ ଭାବରେ ପ୍ରତିଫଳିତ । ତଥାପି ଏହା ଜୀବନର ଶେଷ ସିଦ୍ଧାନ୍ତ ନୁହେ । ଯାହା ଆପାତ, ତାହା ସମ୍ପୂର୍ଣ୍ଣ ସତ୍ୟ ନୋହିପାରେ । ଜୀବନ କେବଳ ବିନାଶ ମୂଳକ ହୋଇ ନପାରେ । ଉଚ୍ଚରୁ ଉଚ୍ଚକୁ ଯିବାର ସ୍ପୃହା ମନୁଷ୍ୟର ନୈସର୍ଗିକ । ତାହାକୁ କେହି ବନ୍ଦ କରିପାରିବ ନାହିଁ । ଲକ୍ଷ୍ୟ ଦୂରରେ; ଅତି ଦୂରରେ ଥାଇପାରେ, ତାହାର ଆହ୍ୱାନ ଅନେକ ସମୟରେ ମରୀଚିକାପରି ଲାଗିପାରେ । ତଥାପି ତାହାର ସଙ୍କେତ ଭୁଲିବାର ନୁହେ ।

ଏହି ସଙ୍କେତର ତାତ୍ପର୍ଯ୍ୟ ବୁଝି ସେହି ଅନୁସାରେ କାର୍ଯ୍ୟ କରିବାରେହିଁ ଜୀବନର ମୂଲ୍ୟ ନିର୍ଦ୍ଦିଷ୍ଟ ହୁଏ । ସଙ୍କୀର୍ଣ୍ଣତା ଜୀବନର ଅଭିଶାପ । ସଙ୍କୋଚ ଅର୍ଥ ମରଣକୁ ବରଣ କରିବା । ମୁକ୍ତ ଆକାଶର ଅନୁକୂଳ ସମୀର ବହିବା ନିମନ୍ତେ ଆମର ଗବାକ୍ଷ ସଦା ଉନ୍ମୁକ୍ତ ରହିବା ଉଚିତ ।

ପ୍ରସାରରେହିଁ ଅଜ୍ଞାତର ପ୍ରୀତି, ନୂତନର ଆସ୍ୱାଦ ଅନୁଭୂତ ହୁଏ । ସେତେବେଳେ, ଟେନିସନ୍‌ଙ୍କ କଳାରଞ୍ଜକ ଭାଷାରେ କହିଲେ, ଆମେ ବୁଝୁ ପଡ଼ି ରହିବା ଅର୍ଥ କଳଙ୍କି ଯିବା, ଶୋଇ ରହିବା ଅର୍ଥ ସ୍ଥାଣୁ ହେବା । ରସାଣରେ ସ୍ୱର୍ଣ୍ଣ ଝଟକିଲା ପରି ଜୀବନ ବ୍ୟବହାରରେ ଝଟକେ । ସେଥିପାଇଁ ଚିନ୍ତା-ପରକାରରେ ଉଜ୍ଜ୍ୱଳ ତାରା ପରି ମନୁଷ୍ୟ ଜ୍ଞାନର ଅନୁସନ୍ଧାନ କରେ । ଜୀବନର ଟଣା ଓଟରରେ ଆମେ ଅନେକ କଥା ହଜାଉ । କିନ୍ତୁ କେତେକ ଜିନିଷ ଆଦୌ ହଜିବାର ନୁହେ । ମୃତ୍ୟୁ ସବୁଥିର ଶେଷ ପରି ଅବଶ୍ୟ ବୋଧ ହୁଏ । ତଥାପି ମହତ୍ ଚେଷ୍ଟା ମୃତ୍ୟୁକୁ ଅମୃତ-ସୋପାନ କରିପାରେ । ହଟିନଯାଇ ମୁହିଁବାର ଟାଣ ଥିଲେ ମୃତ୍ୟୁ-ବିଭୀଷିକା ଆମକୁ ଭ୍ରଷ୍ଟ କରିପାରେ ନାହିଁ । ସଂଘର୍ଷ, ଶ୍ରମ ଘାତ-ପ୍ରତିଘାତର ମୂଲ୍ୟ ନଥାଇ ଅଛି କି ? ନିରାଶାବାଦ ନିତାନ୍ତ ହାନିକର । ଏବର ଆନ୍ତର୍ଜାତିକ ଅବସାଦ-ଅଶାନ୍ତି-ବିଶୃଙ୍ଖଳାର ଅଗ୍ନି-ପରୀକ୍ଷା ମଧ୍ୟରେ ଶାନ୍ତି, ପୂର୍ଣ୍ଣତାର ବାଟ କାଟିବା ପାଇଁ, ଲିଭିଯାଉଥିବା ସଂସ୍କୃତି-ଦୀପର କ୍ଷୀଣଶିଖା ତେଜିବା ପାଇଁ ଅଣ୍ଟାଭିଡ଼ି ବାହାରିବାକୁ ହେବ ।

ଏଣୁ କର୍ମ ପରିହାର କରିବାର ନୁହେ । କିନ୍ତୁ ଜୀବନଝଞ୍ଜା ଭିତରେ ଚିରନ୍ତନର ଚେତନା ଆଣିବାକୁ ହେଲେ କର୍ମ ଜ୍ଞାନ ଦ୍ୱାରା ସଂଯତ, ନିୟନ୍ତ୍ରିତ, ପରିଷ୍କୃତ ହେବା ଦରକାର । ପ୍ରତୀଚ୍ୟ ଆଜି କର୍ମ-ମାର୍ଗରେ ଧାଇଁଛି । କିନ୍ତୁ ସେ କର୍ମ ସ୍ୱାର୍ଥପର, ଅସଂଯତ, ଅବିଶ୍ରାନ୍ତ, କୁଟିଳ, ଅଧିକାର-ମୋହଗ୍ରସ୍ତ । ସେଥିପାଇଁ ଥରକୁ ଥର ଧରାପୃଷ୍ଠରେ ପ୍ରଳୟର ଏ ଲୀଳା । ସେଥିପାଇଁ ପ୍ରତୀଚ୍ୟର ଚମତ୍କାର ବୈଜ୍ଞାନିକ ଉଦ୍‌ଭବନ, ସଂଗଠନର ଗର୍ବ, ଶାସନ ପ୍ରଶସ୍ତି ପଛେ ପଛେ ଏ ଧ୍ୱଂସ ତାଣ୍ଡବ ।

ଏହିଠାରେହିଁ ଜୀବନରେ ନୀତିର ସ୍ଥାନ ବୁଝି ହୁଏ । ଆମର ଆଧୁନିକ ଶିକ୍ଷିତ ତରୁଣ ନୀତି ବୋଇଲେ ଚମକନ୍ତି । ବିଜ୍ଞାନହିଁ ସେମାନଙ୍କର ଦେବତା । କିନ୍ତୁ ବିଜ୍ଞାନ ଜୀବନ-ରହସ୍ୟକୁ ସଫା ବୁଝାଇ ପାରିନାହିଁ । ଶୁଷ୍କ ବୈଜ୍ଞାନିକ ବିଶ୍ଳେଷଣ ଜ୍ଞାନର ଉତ୍ପତ୍ତି ସ୍ଥଳରେ ପହଞ୍ଚି ପାରେନାହିଁ । ତାହାର ଅନ୍ତର୍ଦୃଷ୍ଟିର ଅଭାବ । ଜୀବନର ଚରମ ଉଦ୍ଦେଶ୍ୟ କେବଳ ଅର୍ଥନୈତିକ ଯୋଜନା, ରାଜନୈତିକ କୌଶଳ ବା ସ୍ୱଚ୍ଛଳତା ଦ୍ୱାରା ପୂରଣ ହୁଏ ନାହିଁ । ସେଥିପାଇଁ ପର ମହାକବି ଗେଟେ କହିଛନ୍ତି, ବିଳାସ, ଶକ୍ତି ଭୌତିକ ବିଜୟ, ଏହିପରି ପରାବିଦ୍ୟା ବଳରେ ମଧ୍ୟ ଜୀବନର ସର୍ବୋଚ୍ଚ ଶିଖର ଆରୋହଣ କରି ହୁଏନାହିଁ ।

ଅଖଣ୍ଡ ସୁଖର ଆଉ ଗୋଟିଏ ଅପରିହାର୍ଯ୍ୟ ଆବଶ୍ୟକତା ଅନ୍ୟାନ୍ୟର ମଙ୍ଗଳ ସାଧନା । ଏ ପ୍ରକରଣରେ ସେଇଣ୍ଟ୍ ଜନ୍ ସୁନ୍ଦର କହିଛନ୍ତି, ପରକୁ ସ୍ନେହ କରିବା ଦ୍ୱାରା ଆମେ ମରଣଦ୍ୱାର ଡେଇଁ ଜୀବନ ପୁରରେ ପହଞ୍ଚୁ । ଦ୍ରବ୍ୟବନ୍ତ ଲୋକ ଅନ୍ୟର ଦାରିଦ୍ର୍ୟ ଦେଖି ଦେଖି ଯଦି ତାହାକୁ ଅନୁକମ୍ପା ଦେଖାଏ ନାହିଁ, ତେବେ ସେ ଜୀବନ-ଦେବତାର କିପରି ବା ଉପାସନା କରି ପାରିବ ? କେବଳ କଥାରେ ସ୍ନେହ ଦେଖାଇଲେ ପ୍ରୟୋଜନ ନାହିଁ; ଭାବରେ, କାର୍ଯ୍ୟରେ ତାହା ଦେଖାଇବା ଆବଶ୍ୟକ । ସ୍ନେହ ଦୈବୀସମ୍ପଦ୍, ତାହାକୁ ଯେ ଶିଖିଛି, ସେ ସକଳ ଐଶ୍ୱର୍ଯ୍ୟର ଅଧିକାରୀ । ଅନ୍ତର୍ଯ୍ୟାମୀଙ୍କୁ କିଏ କେବେ ସାକ୍ଷାତରେ ଦେଖିନାହିଁ । ଅନ୍ୟର ସେବାରେହିଁ ସେ ଅନ୍ତରରେ ବିରାଜନ୍ତି । ଯେ ଅନ୍ୟକୁ ଘୃଣାକରେ, ଅଥଚ କହେ ସେ ଭକ୍ତ, ତେବେ ସେ ମିଥ୍ୟାବାଦୀ । ପ୍ରତ୍ୟକ୍ଷରେ ଭାଇକୁ ଯଦି ସେ ଭଲ ପାଇ ପାରେ ନାହିଁ, ଅଦୃଷ୍ଟ-ଦେବତାଙ୍କୁ ବା ସେ ଅର୍ଘ୍ୟ ଦେବ କିପରି ?

କଲ୍ୟାଣ ସାଧନ ସଙ୍ଗେ ଯୁକ୍ତ ହୋଇଥାଏ ସୌନ୍ଦର୍ଯ୍ୟପୂଜା । ସେଥିପାଇଁପରା ସୌନ୍ଦର୍ଯ୍ୟ-ଗ୍ରାହକ-ଶେଖର କୀଟ୍ସ ମଧୁସ୍ରାବୀ ବଚନରେ କହିଛନ୍ତି, ସୁନ୍ଦର ପଦାର୍ଥ ସନ୍ତତ ଆନନ୍ଦଦାୟକ । ତାହାର ଆହ୍ଲାଦ-ଗୁଣ ବଢୁଥାଏ ତାହାର ବିନାଶ ନାହିଁ । ସଂସାର-ସିନ୍ଧୁ ଖେଦ-ତରଙ୍ଗରେ କ୍ଷୁବ୍ଧ ହୁଏ, ମନୁଷ୍ୟର ନୀଚତା ପଦେ ପଦେ ପ୍ରକଟିତ ହୁଏ, ଦୁଃଖୀର ଦିବସ ଅନ୍ଧାର ହୁଏ, ଆମେ ପ୍ରତି କ୍ଷଣରେ ବାଟବଣା ହେଉ, ତଥାପି ପ୍ରତିଦିନ ସକାଳେ ମାନସୀ ସଂସାର ସହିତ ଆମକୁ କଳ୍ପନା ମଣିମୟ-ହାରରେ ବାନ୍ଧି ରଖେ । ଭବନାର ଅସରନ୍ତି ଦୀପ୍ତି ଆମର ଶିଳା-ବନ୍ଧୁର ପଥକୁ ନବନୀତ-କୋମଳ କରେ । ତାହାରି ଉଦ୍ଦୀପନାରେହିଁ ଆମେ ବଞ୍ଚୁ ।

ଏପରି ସତ୍ୟ-ଶିବ-ସୁନ୍ଦରର ଅନୁପ୍ରାଣନରେ ସବୁ ବାଧା-ବନ୍ଧନ ଅତିକ୍ରମ କରି ଦେଶକାଳର ସ୍ତର-ସ୍ତର ଉପରକୁ ଉଠି ମହତ ଆଦର୍ଶ ପ୍ରେରଣାରେ ସ୍ୱାଧୀନ ଆତ୍ମବିକାଶ ମାର୍ଗରେ ଜୀବନ ଅଗ୍ରସର ହୁଏ ।



# ମିଳନ ମଣ୍ଡପ

ଘଟଣା-କ୍ରମ ଅନବରତ ବଦଳୁଛି । ପୁରୁଣା ସ୍ଥିତି ଯାଇ ନୂଆ ସ୍ଥିତି ଉପୁଜୁଛି । ନୂଆ ଭବ, ନୂଆ ଚିନ୍ତା, ନୂଆ ଶୈଳୀ, ନୂଆ ଧାରା ପୁରୁଣାର ସ୍ଥାନ ମାଡ଼ି ବସୁଛି । ପ୍ରାଚୀନ-ନବୀନର ଏ ସାମୟିକ ସଂଘର୍ଷ ଯୋଗେ ବ୍ୟାପକ ପରିବର୍ତ୍ତନର ବୀଜ ବୁଣି ହୋଇଯାଉଛି । ଏପରି ଗୋଟାଏ ଯୁଗାନ୍ତ-ଯୁଗାରମ୍ଭରେ ଆମେ ବର୍ତ୍ତମାନ ପହଞ୍ଚିଛୁ । ବୁଦ୍ଧିମୂଳକ ଗୋଟାଏ ଅଶାନ୍ତ ଜାଗୃତି, ପ୍ରଚଳିତ ବ୍ୟବହାର-ପରଂପରାର ତାତ୍ପର୍ଯ୍ୟ ନିର୍ଦ୍ଧାରଣ ପାଇଁ ଗୋଟିଏ ଜିଜ୍ଞାସା, ଆଲୋଚନାମୂଳକ ସନ୍ଧାନ ଏବେ ସବୁଠାରେ ଦେଖାଯାଉଛି । ନବୀନ ମାନବିକତାର ସୃଷ୍ଟି ପାଇଁ, ଜରାଜୀର୍ଣ୍ଣ ମାର୍ଗ ଛାଡ଼ି ମୁକ୍ତ ବିଶାଳ ଗଠନ ପାଇଁ, ସ୍ଥାଣୁକୁ ବିଚିତ୍ର ଚଞ୍ଚଳ କରିବା ପାଇଁ ସବୁଠାରେ ଚେଷ୍ଟା ଦେଖାଯାଉଛି । ତୁଣ୍ଡ କଥାରେ ଆଉ ବିଶ୍ୱାସ ନାହିଁ, ଆପ୍ତବଚନରେ ବିଶ୍ୱାସ ନାହିଁ । ନିଜେ ପରୀକ୍ଷା କରି ଯୁକ୍ତିଯୁକ୍ତ ବୋଲି ନ ଜାଣିଲେ, ପ୍ରଶ୍ନୋତ୍ତରମୂଳକ ଜିଜ୍ଞାସାରେ ସିଦ୍ଧ ନ ହେଲେ, କୌଣସି କଥା ଆଉ ଗ୍ରହଣୀୟ ହେଉନାହିଁ । ଭଲ କଥା । କିନ୍ତୁ ମନେ ରଖିବାକୁ ହେବ, ପ୍ରାଚୀନ-ବର୍ତ୍ତମାନର ଏ ସଂଘର୍ଷରେ ତିକ୍ତତା, ବିଶୃଙ୍ଖଳା, ଅଶାନ୍ତି ନ ଥାଇ ନାହିଁ । ନୀତିକାର କହିଛନ୍ତି, ଅତିଶୟ ସର୍ବତ୍ର ବାଧା ଦିଏ, ଗର୍ହିତ ହୁଏ । ବାଲିଶଯ୍ୟା ଉପରେ ନୁହେଁ, ଦୃଢ଼ ଭିତ୍ତି ଉପରେ ସୌଧ ତୋଳିବାକୁ ହେବ । ଅତୀତର ସଂସ୍ପର୍ଶରୁ ନିଜକୁ ସମ୍ପୂର୍ଣ୍ଣ ଅଲଗା ରହିବାର ଚେଷ୍ଟା କରିବା ଦ୍ୱାରା ଆଧୁନିକତା ଜୀବନଶକ୍ତି ହରାଇବାର, ଛିନ୍ନ-ମୂଳ ତରୁ ଭଳି ଢ଼ଳି ପଡ଼ିବାର ଆଶଙ୍କା ଅଛି । ବୈଚିତ୍ର୍ୟର କୁହୁକ ସ୍ପର୍ଶରେ ଆଧୁନିକତା ଅଳ୍ପକାଳ ପାଇଁ ଆଡ଼ମ୍ବରପୂର୍ଣ୍ଣ, ଚମତ୍କାର ଦେଖା ଯାଇପାରେ । କିନ୍ତୁ କାଳକ୍ରମେ ଏ ଆଡ଼ମ୍ବର ଉଭେଇ ଯାଏ; ସେତେବେଳେ ତାହାର ଉପାସକଙ୍କୁ ନିରାଶାର ଅନ୍ଧକାରରେ ପଡିବାକୁ ହୁଏ । ପୁରାଣର ଆସ୍ଥାନ ଉପରେ ଠିଆହୋଇ ହିଁ କ୍ଷଣିକ ବର୍ତ୍ତମାନର କ୍ଷୁଦ୍ର ବାତାୟନ ବାଟେ ଭବିଷ୍ୟତର ଅସୀମ ପରିଧି ଦେଖିବାକୁ ମିଳେ । ନ ଲୋଡ଼ିଲେ ମଧ୍ୟ ପୁରାଣ ଜଗତର ସତ୍ତା ଆପେ ଆପେ ଆମ ପଛେ ପଛେ ଲାଗି ରହେ । ଇଚ୍ଛାମତେ ଫିଙ୍ଗି ଦେବା ବୋଝ ଅତୀତ ନୁହେ । ଅତୀତର ପୁଷ୍ଟିକର ଖାଦ୍ୟ ବିନା ଉପବାସରେ ହିଁ ଆମେ ମରିବାକୁ ପଡ଼ିବ । ଉଗ୍ର ସଂସ୍କାରକ ଆମର ପୌରାଣିକ ସଂସ୍କୃତିର ମହନୀୟ ଏକତା

ତରତରରେ ବଳପୂର୍ବକ ଭର୍ଙ୍ଗିବା ପାଇଁ ବଦ୍ଧପରିକର ହେବା ଦ୍ୱାରା ଅସାର ସଙ୍ଗେ ସାର ଧ୍ୱଂସ ହେବାର ଭୟଙ୍କର କ୍ଷତିର ସମ୍ଭାବନା ଅଛି । ଏହି ସଂସ୍କୃତିକୁ ଜାଗ୍ରତ, ଜୀବନ୍ତ, ପରିପୁଷ୍ଟ କାଳୋପଯୋଗୀ କରିବା ଆମର ଧର୍ମ । ସେହି ସଂସ୍କୃତିର ପ୍ରେରଣାରେ ଉଦବୁଦ୍ଧ ହୋଇ ଆମକୁ ଧୀରେ ଧୀରେ ଶାନ୍ତ-ସଂଯତ ଭାବରେ ସୁନ୍ଦରତର ସଂସାର ଗଢ଼ିବାକୁ ହେବ । ଆମର ବର୍ତ୍ତମାନ ଆର୍ଥିକ ଉନ୍ନତି, ସମାଜସେବା, ବୁଦ୍ଧି-ବୃତ୍ତିର ବିକାଶ, ରାଜନୀତି ପ୍ରୟୋଗର ଧାରା ସତ୍ୟ-ଶିବ-ସୁନ୍ଦର ମୌଳିକ ଲକ୍ଷ୍ୟ ଦୃଷ୍ଟିରେ ସଂଶୋଧିତ ହେବା ଆବଶ୍ୟକ । ନିବିଡ ଭୌତିକବାଦ ବା ସଂଶୟବାଦର ତାମସରେ ସେ ମୌଳିକ ଲକ୍ଷ୍ୟ ଯେତେବେଳେ ଅଦୃଶ୍ୟ ପ୍ରାୟ ହୋଇଯାଇଛି, ସେତେବେଳେ ଯୁଗେ ଯୁଗେ ତାହାର ରୂପ-ରେଖ, ବିଷୟ-ବିଭବ ଆଧ୍ୟାତ୍ମିକ ଭାରତ ଲୋକ-ଚକ୍ଷୁ ଆଗରେ ଫିଟାଇଛି । ସାଧକ, ଯୋଗୀ, ବୈରାଗୀ, ଜୀବନ୍ମୁକ୍ତଙ୍କ ଦ୍ୱାରାହିଁ ଏହି ଦୀକ୍ଷା ଯୁଗେ ଯୁଗେ ପ୍ରଚାରିତ ହୋଇଛି । ସେମାନଙ୍କର ବ୍ୟକ୍ତିତ୍ୱ ଆମର ମାନବିକ ଦୃଷ୍ଟିକୁ ଚିରକାଳ ତେଜୋବନ୍ତ କରିଛି, ଜୀବନକୁ ଗମ୍ଭୀର ଭାବରେ ଅର୍ଥବନ୍ତ କରିଛି । ସେମାନଙ୍କର ସାଧନା ଆମକୁ ପବିତ୍ର, ସରଳ, ସ୍ୱାର୍ଥହୀନ ଜୀବନ ଯାପନ କରିବାକୁ ପ୍ରବର୍ତ୍ତାଇଛି । ମୁକ୍ତିପାଇଁ ବ୍ୟାକୁଳତା, ଉଦାରତା, ବିଶ୍ୱପ୍ରାଣତା, ପ୍ରତ୍ୟେକ ଧର୍ମର ଯଥାଯଥ ସତ୍ୟତା, ବିଭିନ୍ନ, ଗୋଷ୍ଠୀ-ଜାତି-ସମ୍ପ୍ରଦାୟର ଏକତା ସେମାନଙ୍କ ଶିକ୍ଷାର ପ୍ରଧାନ ବିଷୟ । ବାସ୍ତବିକ ସେମାନେହିଁ ମିଳନ ମଣ୍ଡପର ସ୍ରଷ୍ଟା । ଏ ଭଳି ପ୍ରତ୍ୟେକ ପଥ-ଦ୍ରଷ୍ଟାଙ୍କ ପଛେପଛେ ଲୋକହିତକର ଗୋଟିଏ ବିରାଟ କର୍ମଯୋଜନା ତିଆର ହୋଇଛି । ତାଙ୍କର ରକ୍ତଦାନରେ ଲୋକମଙ୍ଗଳର ମନ୍ଦାକିନୀ ସ୍ରୋତ-ରକ୍ଷା ହୋଇଛି ।

ଆଜିକାଲି ସେ ଶିକ୍ଷାରେ ଅଶ୍ରଦ୍ଧା ଯୋଗେ ଜୀବନ ଦୁର୍ବହ ବୋଧ ହେଉଛି; ଚିନ୍ତା-ରାଜ୍ୟରେ ସହସ୍ର ସହସ୍ର ଘାତ-ପ୍ରତିଘାତ ଦେଖାଯାଉଛି । ପ୍ରତ୍ୟେକେ ତାଙ୍କର ମତବାଦ ସବୁ ଅଭାବ ଦୂର କରିବାର ଏକମାତ୍ର ଅମୋଘ ଉପାୟ ବୋଲି ପ୍ରଚାର କରିବାରେ ବ୍ୟସ୍ତ । ଶୀତ-ସକାଳର ଶେଫାଳିକା ପରି ମତବାଦ ଆଜିକାଲି ପ୍ରଚୁର । କିନ୍ତୁ ବାଞ୍ଛିତ ସ୍ୱର୍ଗରାଜ୍ୟ ତ ସବୁଦିନପରି ଦୂରରେ, ବହୁଦୂରରେ ! ବୁଝିଲେ ଆଜିର ଏ ସଂସାର ତ ନରକ ଠାରୁ ଅଧିକ ଯନ୍ତ୍ରଣାଦାୟକ । ଆଜି କଥା କଥାକେ ଆନ୍ତର୍ଜାତିକ ସହଯୋଗର ଚିତ୍କାର, ଅଥଚ ବିଭିନ୍ନ ଜାତି-ଗୋଷ୍ଠୀ-ଦେଶ ମଧ୍ୟରେ ଏ ପ୍ରଳୟଙ୍କର ସମର; ଲୋଭ-ଦ୍ୱେଷର ମାରାତ୍ମକ ପଣ୍ଡୁତ୍ୱ; ଶ୍ୱେତ-ବର୍ଣ୍ଣିତ, ଧନୀ-ଦରିଦ୍ର, ସାହୁକାର-ଶ୍ରମଜୀବୀ, ରାଜା-ପ୍ରଜା ମଧ୍ୟରେ ଭୟାବହ ଗଣ୍ଡଗୋଳ, କୁଟିଳ ଆବିଳତା । ଏ ବିଷମ ରୋଗର ଔଷଧ କଅଣ ? ସବୁ ଯୁଗରେ ବୋଧହୁଏ ଊଣା ଅଧିକରେ ଏପରି ବୈଷମ୍ୟ ଥିଲା, ଥିବ । ସବୁ ଯୁଗରେ ଅଭାବଗ୍ରସ୍ତ ଲୋକେ ପ୍ରଭୁତା ସମ୍ପନ୍ନ ଲୋକଙ୍କ ଅଧିକାର, ଅହଂକାର, ସ୍ୱାର୍ଥ, ନିଷ୍ପେଷଣ, ଶୋଷଣନୀତି ବିରୁଦ୍ଧରେ ଏପରି ହୁରି ପକାଉଥିବେ ।

ତେଲିଆ ମୁଣ୍ଡରେ ତେଲ ପରି ଧନୀ ଅଧିକ ଧନବନ୍ତ, ଦରିଦ୍ର ଦରିଦ୍ରତର ହେଉଥିବେ, ବିଳାସୀ ଅଳସୁଆ ହେଉଥିବେ, ପରିଶ୍ରମୀ କାର୍ଯ୍ୟ ଖୋଜୁଥିବେ, କିନ୍ତୁ କାର୍ଯ୍ୟ ଅଭାବରେ ଅକର୍ମା କଟଣାତିର ଛକାପଞ୍ଝା ଖେଳୁଥିବେ । କିନ୍ତୁ ହୃଦୟର ଦୁର୍ବଳତା ଯୋଗୁଁ ଆମେ ଏ ନିଷ୍ଠୁର ସତ୍ୟ ମାନିବାକୁ ପରାଂମୁଖ । ସତ୍ୟ ତ ସାଧାରଣରେ ଅପ୍ରିୟ । ଆମର ସବୁ ସୁବିଧା ଲୋଡ଼ା, କଷ୍ଟ ନ ପଡ଼ି ସବୁ ଅଭାବ ଘୁଞ୍ଚିଯିବାର ଲୋଡ଼ା । ଆରାମ ଚଉକିରେ ବସି ସାମ୍ୟବାଦର ସ୍ୱପ୍ନ ଆମେ ଦେଖୁ—ଯେଉଁଠାରେ ସବୁ ଉତ୍ତମ, ସମସ୍ତଙ୍କର ଯଥେଷ୍ଟ ଅଛି, କାହାରି ଅଭାବ ନାହିଁ, ଚିନ୍ତା ସ୍ୱାଧୀନ, କଳହର ସ୍ଥାନ ନାହିଁ, ସମସ୍ତେ ଜ୍ଞାନ ଅର୍ଜନରେ ତତ୍ପର । କିନ୍ତୁ ପରକ୍ଷଣରେ କଠୋର ସତ୍ୟର ଧକ୍କାରେ ସ୍ୱପ୍ନ-ଦେଖା କାହିଁ ଲୁଚିଯାଏ । ଖାଲି କଥା, ତୁଚ୍ଛା କଥା ! ଲକ୍ଷ୍ୟ ସାଧନ ପାଇଁ ଅଧ୍ୟବସାୟ, ନିଷ୍କପଟ ଆଚରଣ, ଓଜ, ପରାକ୍ରମ, ବିଷୟଜ୍ଞାନ, ଅନ୍ତର୍ଦୃଷ୍ଟି, ସଦ୍‌ଭାବ, ବିଶ୍ୱାସ, ଆନ୍ତରିକତା କାହିଁ ? ଏ ସବୁ ଅଭାବରେ ସାମ୍ୟବାଦୀ ଆମେ ବିହ୍ୱଳ ଅଗତିକ ଭାବରେ ଚିତ୍କାର କରିଉଠୁ ସବୁ ଛିଣ୍ଡାଇଦିଅ; ଧର୍ମ ନାହିଁ, ନୀତି ନାହିଁ, ଶୃଙ୍ଖଳା ନାହିଁ, ଆସୁ ଧ୍ୱଂସ, ଜଳୁ ପ୍ରଳୟ-ଶିଖା, ବହୁ ବିପ୍ଳବ ଶିକାର ବାତ୍ୟା ! କିନ୍ତୁ ଏହା କି ସମ୍ଭବ ? ସ୍ୱପ୍ନ, ମାୟାପୁରୀ, କଥାର ଛଳନା ! ରୋଗର ନିଦାନ ନ କରି ଉତ୍କଟ ଚିକିତ୍ସା କରିବାର ପ୍ରୟୋଜନ କଅଣ ? ସମନ୍ୱୟମାର୍ଗରେ ବାହାର-ଭିତର, କଥା କାର୍ଯ୍ୟ ସଂଯୋଜିତ ହେଉ, ମିଳନ ମଣ୍ଡପରେ ସମସ୍ତଙ୍କର ଭେଟ ହେଉ ।

ଭାରତ-ଚିନ୍ତାର ଦୀର୍ଘ ଇତିହାସରେ ସମନ୍ୱୟର ବହୁତ ଦୃଷ୍ଟାନ୍ତ ଦେଖାଯାଏ । ଆଦିମ ମନୁଷ୍ୟ ଗଛ, ମାଟି, ପଥର ଆଦି ପ୍ରାକୃତିକ ବସ୍ତୁକୁ ଭୟ ଯୋଗେ ପୂଜା କରୁଥିଲା । ଏ ନିମ୍ନତମ ସ୍ତରରୁ ଅତୀନ୍ଦ୍ରିୟ ଜଗତକୁ ଉଠି ମନସ୍ତତ୍ତ୍ୱ ଦୃଷ୍ଟିରେ ଜ୍ଞାନ, ଶକ୍ତି, ଆନନ୍ଦ, ଜୀବନ, ଖ୍ୟାତି ରୂପକ, ବିଶ୍ୱ-ଦେବତାଙ୍କ ଉପାସନା ବୈଦିକ ସମନ୍ୱୟ ସ୍ଥାପନ କଲା । ବୈଦିକ ଋଷି ପ୍ରତିଷ୍ଠିତ ଏ ସମନ୍ୱୟକୁ ଆତ୍ମିକ ଦୃଷ୍ଟିରେ ଚିରନ୍ତନର ସନ୍ଧାନରେ ଶ୍ରବଣ ମନନ ନିଦିଧ୍ୟାସନ ମାର୍ଗରେ ଉପନିଷଦ ବ୍ରହ୍ମତତ୍ତ୍ୱ ଆକାରରେ ପରିଣତ କରିଥିଲା । ଗୀତାରେ ପୁଣି ଏ ସମନ୍ୱୟକୁ ରୂପାୟିତ କରି ଜ୍ଞାନ, କର୍ମ, ଭକ୍ତି, ଶକ୍ତି, ଯୋଗ ସବୁଥିର ଆନୁପାତିକ ସମ୍ମିଶ୍ରଣରେ ଜୀବର ଶିବପ୍ରାପ୍ତି ଦ୍ୱାର ଉନ୍ମୁକ୍ତ ରଖାଯାଇଛି । ତନ୍ତ୍ର ଆହୁରି ନିର୍ଭୀକ ଭାବରେ ସମନ୍ୱୟ-ଅଧ୍ୟାୟ ଫିଟାଇ ଆଧ୍ୟାତ୍ମିକ ଜୀବନର ପରିପନ୍ଥୀଗୁଡ଼ିକୁ ମଧ୍ୟ ହଟଯୋଗ ଯୋଗେ ଶରୀର-ମନର ଉପଯୁକ୍ତ ଚାଳନ ସମେତରେ ସେହି ଜୀବନର ଉତ୍କର୍ଷ ବଢ଼ାଇବା ପାଇଁ ଶିଖାଇଛି । ତନ୍ତ୍ରହିଁ ମନୁଷ୍ୟର ଅନ୍ତର୍ନିହିତ ପୂର୍ଣ୍ଣତାକୁ ଦୃଢ଼ ଭାବରେ ବ୍ୟକ୍ତ କରିଛି । ଏହି ଅଭିବ୍ୟକ୍ତି ବର୍ତ୍ତମାନ ଯୁଗରେ ଅତ୍ୟନ୍ତ କାର୍ଯ୍ୟକାରୀ । ମୋଟ ଉପରେ

ବେଦ କହିଛି, ସତ୍ୟ ଏକ; ବିପ୍ରମାନେ ତାହାକୁ ବହୁତ ପ୍ରକାରରେ ବଖାଣନ୍ତି । ପୁଷ୍ପଦନ୍ତ 'ମହିମ୍ନ'ରେ ସମନ୍ୱୟର ଚୂଡ଼ାନ୍ତ ସୁନ୍ଦର ବର୍ଣ୍ଣନା କରିଛନ୍ତି—ତ୍ରୟୀ, ସାଂଖ୍ୟ, ଯୋଗ, ପାଶୁପତ, ବୈଷ୍ଣବ ଏପରି ଭିନ୍ନ ଭିନ୍ନ ମତ ନିଜ ନିଜକୁ ପରମ, ପଥ୍ୟ ବୋଲି କହିଛନ୍ତି; ରୁଚିର ବୈଚିତ୍ର୍ୟରେ ମନୁଷ୍ୟ ସରଳ-ବକ୍ର ନାନା ପଥ ଅନୁସରଣ କରେ; କିନ୍ତୁ ସବୁ ନଦୀର ଅର୍ଣ୍ଣବ ଏକଗମ୍ୟ ପରି ଶିବ ସବୁ ପଥର ଏକଗମ୍ୟ । ଆଧୁନିକ ଯୁଗରେ ହିନ୍ଦୁ, ଇସଲାମ୍, ଖ୍ରୀଷ୍ଟିୟାନ୍, ବୌଦ୍ଧ, ଜୈନ ଇତ୍ୟାଦି ଧର୍ମପନ୍ଥାର ସମନ୍ୱୟ ପାଇଁ, ବିଭିନ୍ନ ମତ-ବାଦର ସମ୍ମିଳନ ପାଇଁ ଏହିଠାରୁ ବଳି କି ମହତ ଉପଦେଶ ଥାଇପାରେ ? ଶାସ୍ତ୍ର ଆଲୋଚନା ଯୋଗେ ଆମେ ସତ୍ୟାସତ୍ୟ ବୋଧ କରି ଅନେକରେ ଏକର ପ୍ରକାଶ ଯେପରି ଭୁଲି ନ ଯାଉଁ । ସ୍ତମ୍ଭ ଠାରୁ ବ୍ରହ୍ମ ପର୍ଯ୍ୟନ୍ତ ଅନନ୍ତ ସୃଷ୍ଟି ପର୍ଯ୍ୟାୟରେ ଗୁନ୍ଥା ସେହି ଏକ ଦିବ୍ୟ ମଣିମୟ ହାର ଆମକୁ ଖୋଜିବାକୁ ହେବ । ବିବେଚନା, ଆତ୍ମଚିନ୍ତା ବିକାଶରେ ବଳୀୟାନ, ଜ୍ଞାନବନ୍ତ ହେବା ମନୁଷ୍ୟର ଚରମସିଦ୍ଧି । ସତ୍ୟରେ ବଞ୍ଚି, ସତ୍ୟରେ ଚଳି, ଶାନ୍ତି-ସଦିଚ୍ଛା-ମୈତ୍ରୀ ସ୍ଥାପନ ଲାଗି ଆମେ ଯେପରି ସବୁ ବିନିଯୋଗ କରୁ । ଏ ବିନିଯୋଗ, ତ୍ୟାଗରେହିଁ ପ୍ରତିଷ୍ଠିତ ହେବ ପ୍ରକୃତ ମିଳନ ମଣ୍ଡପ; କିନ୍ତୁ ବିଂଶ ଶତାବ୍ଦୀ ଧରଣର ଆନ୍ତର୍ଜାତିକ ଲିଗ୍‌ରେ ନୁହେଁ ।



# ସଂସ୍କୃତି ଓ ସମର

ଆଲୋଚ୍ୟ ବିଷୟ 'ସମର ଓ ସଂସ୍କୃତି' ନୁହେଁ, 'ସଂସ୍କୃତି ଓ ସମର ।' ଏ ଭଳି ସ୍ଥାନ ପରିବର୍ତ୍ତନର ଅର୍ଥ ଅଛି । ପ୍ରଥମ ନାମଟି ବ୍ୟବହାର କଲେ, ସଂସ୍କୃତିକୁ ଯୁଦ୍ଧରୁ ଅଲଗା, ସମ୍ପର୍କହୀନ କରି ବୁଝାହୁଏ । ସମର ସଙ୍କଟ କାଳରେ ତାହାର ଦାୟିତ୍ୱ ଓ କର୍ତ୍ତବ୍ୟ ଧରି ହୁଏ ନାହିଁ; ଶେଷରେ ଅନ୍ୟାନ୍ୟ ଘଟଣା ପରି ସଂସ୍କୃତି ଉପରେ ସମର ପ୍ରତିକ୍ରିୟା ଆଲୋଚିତ ହୁଏ । ଏ ଭାବରେ ସଂସ୍କୃତିକୁ ଗୌଣ, ନିଷ୍କ୍ରିୟ ଦୃଷ୍ଟିରେ ଦେଖାହୁଏ । କିନ୍ତୁ ଦ୍ୱିତୀୟ ନାମଟି ବ୍ୟବହାର କଲେ, ଉଭୟର ସମ୍ପର୍କକୁ ମୁଖ୍ୟ, ସକ୍ରିୟ, ଗଠନମୂଳକ ଦୃଷ୍ଟିରେ ଦେଖାଯାଏ; ଘଡ଼ିସନ୍ଧିବେଳେ ସଂସ୍କୃତିର କାର୍ଯ୍ୟକାରିତା ପରଖ ହୁଏ; ଘଟଣା ସ୍ରୋତକୁ ଆୟତ୍ତ କରି ବଦଳାଇବାରେ ସଂସ୍କୃତିର କ୍ଷମତାର ପ୍ରକାର ଓ ପରିଣାମ ଚିନ୍ତା ହୁଏ ।

ଗୋଟାଏ ସର୍ବସାଧାରଣ ଧାରଣା ଏହି ଯେ ସଂସ୍କୃତି ଆରାମ, ବିଳାସ, ଭୋଗର ବସ୍ତୁ; ଶାନ୍ତିବେଳେ ଜୀବନର ତାହା ଗୋଟିଏ ମଣ୍ଡନ; ସାମାଜିକ ଆଦାନ-ପ୍ରଦାନକୁ ସୁନ୍ଦର, ଚିକ୍‌କଣ, ରୁଚିକର, ମଧୁର କରିବାର ଗୋଟାଏ ଯୋଜନା । କିନ୍ତୁ ସଂସାରର ଭୀଷଣ କୋଳାହଳ, ଲୋମହର୍ଷକାରୀ ବ୍ୟାପାରରେ ତାହାର ସ୍ଥାନ ନାହିଁ । ସମରର ପ୍ରଥମ ହୁଙ୍କାରରେ ସଂସ୍କୃତି ଭୀତତ୍ରସ୍ତ ହୋଇ ପଛଘୁଞ୍ଚା ଦିଏ । ହୁଏତ ସେତେବେଳେ ହଠାତ୍ ତାହାର ସମାଧି ହୁଏ; ନଚେତ୍ ଯୁଦ୍ଧ ଶେଷ ହୋଇ ପୁଣି ଶାନ୍ତି ପ୍ରତିଷ୍ଠା ହେବାପର୍ଯ୍ୟନ୍ତ ତାହାର ଦଶା ଜୀବନ୍ତ ମରଣ । ଏ ଧାରଣା କିନ୍ତୁ ଭ୍ରମାତ୍ମକ । ସଂସ୍କୃତିକୁ ଠିକ ଭାବରେ ବୁଝିଲେ ଜଣାଯାଏ, ତାହା କେବଳ ଶାନ୍ତିମୂଳକ ବା କେବଳ ଯୁଦ୍ଧମୂଳକ ଉପାଦାନ ନୁହେଁ; ଏକମାତ୍ର ଶାନ୍ତି ବା ଏକମାତ୍ର ଯୁଦ୍ଧର ଅବଲମ୍ବନ, ଆଶ୍ରୟ ବା ପ୍ରୟୋଜନ ନୁହେଁ । ଯୁଦ୍ଧ ଓ ଶାନ୍ତି ଉଭୟ ଜୀବନର ଅଙ୍ଗୀଭୂତ । ଉଭୟ ଅବସ୍ଥା ଜୀବନର ବିଶିଷ୍ଟ ପ୍ରକାଶ । ସଂସ୍କୃତି ଏ ଉଭୟର ଯୋଗସୂତ୍ରବାହୀ ସମଗ୍ର ଜୀବନର ଅନ୍ତର୍ଦୃଷ୍ଟି । ଘଟଣା ଅନବରତ ବଦଳୁଛି । ପୁରପଲ୍ଲୀର ନିଶ୍ଚଳ ଶାନ୍ତି ହଠାତ୍ ସମରର ତୂର୍ଯ୍ୟକ୍ ନାଦରେ ଭାଙ୍ଗିପଡ଼ୁଛି । ସମରକ୍ଷେତ୍ରରେ ଆର୍ତ୍ତନାଦ, ମଦୋନ୍ମତ୍ତ ଆସ୍ଫାଳନ ମଧ୍ୟରେ ପୁଣି

ଶାନ୍ତିର କମନୀୟ ରୂପ ବିରାଜୁଛି । ଏ ପରିବର୍ତ୍ତନରତ ଘଟଣାସ୍ତରର ବିଭିନ୍ନ କେନ୍ଦ୍ରକୁ ହୃଦୟଙ୍ଗମ କରି, ତଦନୁରୂପ କର୍ତ୍ତବ୍ୟ ପନ୍ଥା ସ୍ଥିର କରି, ସମୂହ ମଙ୍ଗଳ ସାଧନ କରିବାର ମାନସିକ ବୃତ୍ତି, ଦାର୍ଶନିକ ଭାବ ବିଶେଷର ଅନ୍ୟନାମ ସଂସ୍କୃତି । ତହିଁରେ କିନ୍ତୁ କୌଣସି ସ୍ୱାର୍ଥପର କୌଶଳ, କୂଟନୀତି, ସଂକୀର୍ଣ୍ଣତାର ସ୍ଥାନ ନାହିଁ । ସମୂହ ଜୀବନର ସର୍ବାଙ୍ଗୀନ ଉନ୍ନତି ବିଧାୟକ ତତ୍ପର ନିର୍ମଳ ଆନ୍ତରିକ ଶ୍ରଦ୍ଧାରେ, ଗଭୀର ଆକାଂକ୍ଷାର ମହନୀୟ ଆଦର୍ଶରେ ସଂସ୍କୃତି-ପଥ ରଶ୍ମିମନ୍ତ । ସଂସ୍କୃତି ରାଜ୍ୟରେ ପ୍ରେୟଠାରୁ ଶ୍ରେୟର ମୂଲ୍ୟ ଅଧିକ; ସୁବିଧାବାଦଠାରୁ ନ୍ୟାୟର କଟକଣା ବେଶୀ; ସାମୟିକ ଉତ୍ତେଜନା ବଶବର୍ତ୍ତୀ ଚିତ୍କାର (Slogans)ଠାରୁ ବିବେଚନାର ତାତ୍ପର୍ଯ୍ୟ ମହତ୍ତର । ଆଜି ଗୋଟାଏ ଜନପ୍ରିୟ ଧାରଣା ଏହି, ଆଚାର-ବ୍ୟବହାର, ଖାଦ୍ୟ-ପୋଷାକ, କଥାବାର୍ତ୍ତା, ଭାବଭଙ୍ଗୀ ଏ ସବୁ ବାହ୍ୟ ଉପକରଣରେ ଏକପ୍ରକାର ମାର୍ଜିତ ଠାଣି ଦେଖାଇବା ହିଁ ସଂସ୍କୃତି । କୌଣସି ଆବେଗ--ଉଚ୍ଛ୍ୱାସରେ ନ ପଡି ନିଜ ସୁଖ ଶାନ୍ତିରେ ଦିନ କାଟିବା, ଯଥାଶକ୍ତି ସମ୍ପଦ ଓ ବଳ ଅନୁଭୋଗ କରିବା, କୌଣସି ଅତିଶୟ କଥାକୁ ନ ଯାଇ ଜୀବନରେ ମଧ୍ୟମ-ପନ୍ଥା ଅବଲମ୍ବନ କରିବା— ଏ ସବୁ ମଧ୍ୟ ତହିଁରୁ ନ୍ୟୂନାଧିକ ବୁଝାଯାଏ । କୁହାଯାଇଛି, ସଂସ୍କୃତିର ଏ ଲକ୍ଷଣ-ନିର୍ଦ୍ଦେଶ ଜନପ୍ରିୟ ହୋଇପାରେ; କିନ୍ତୁ ତାତ୍ତ୍ୱିକ ନୁହେଁ । ସଂସ୍କୃତିର ଚରମ ସୀମାରେ ଉପନୀତ ସାଧକ, ଯୋଗୀ, ଜ୍ଞାନୀ, ପ୍ରେମିକ, କବି, ସ୍ରଷ୍ଟା, ଶିଳ୍ପୀ ବା ଚିନ୍ତାନାୟକ ଯୁଗେ ଯୁଗେ ନିଜର ଧନ, ଜନ, ମାନ ସବୁ ଜଳାଞ୍ଜଳି ଦେଇ ନିଜର ଅନ୍ତର ଆଲୋକକୁ ଅନୁସରଣ କରିବାରେ କି ତ୍ୟାଗର ପରାକାଷ୍ଠାରେ ସବୁ କଷ୍ଟ, ଅଭାବ, ତାଡନାକୁ ବରଣ କରିନିଏ, ତାହାକୁ ଏ ଲୋକପ୍ରିୟ ସଂସ୍କୃତି କେବେ ବୁଝିପାରେ ନାହିଁ, ଅନୁଭବ କରିବା ତ ଦୂରର କଥା ।

ରୁଚିର ବୈଚିତ୍ର୍ୟରେ, ସ୍ୱଭାବର ପ୍ରକାରରେ, ଧର୍ମ-ଜାତି ଦେଶ-ସମାଜ ପରିସ୍ଥିତିର କଳନାରେ ଭିନ୍ନ ଭିନ୍ନ ମନୁଷ୍ୟ ଭିନ୍ନ ଭିନ୍ନ ନୀତି-ମାର୍ଗକୁ ଧରି ବାଟ କାଟନ୍ତି । କେତେକଙ୍କ ମତରେ ଶାନ୍ତି ଯେ କୌଣସି ଅବସ୍ଥାରେ ଅନୁସରଣୀୟ । ତାହାଙ୍କ ପତାକାରେ ଅମର ଅକ୍ଷରରେ 'ଶାନ୍ତି' ଲିଖିତ, ହୃଦୟରେ ସର୍ବଦା ଶାନ୍ତି-ମନ୍ତ୍ର ଜପ । ସମ୍ମୁଖରେ ବିରାଟ ଧ୍ୱଂସତାଣ୍ଡବ ଲାଗିଥିଲେ ମଧ୍ୟ ସେମାନେ ତହିଁପ୍ରତି ଦୃଷ୍ଟି ନଦେଇ ଅବିଚଳିତ ଚିତ୍ତ, ନିଷ୍କମ୍ପ ହୃଦୟରେ ଜୀବନଯାପନ କରନ୍ତି । ସକଳ ବାଧାବିଘ୍ନ, ଅଭାବ-ଅନୁଭବ ମଧ୍ୟରେ ଶାନ୍ତିହିଁ ସେମାନଙ୍କର ଶିକ୍ଷା ଦୀକ୍ଷା କାମନା, ଧ୍ରୁବତାରା । ଶାନ୍ତି-ନୌକା ନିମଜ୍ଜନରେ ସେମାନେ ସଂସାର-ସାଗରର ଅବାଧ ଜଳରାଶିରେ ବୁଡ଼ିଯିବା ନିଶ୍ଚୟ ମନେ କରନ୍ତି । ଶାନ୍ତି ନାମରେ ଯେ କୌଣସି ରଫା, ରାଜିନାମା କରିବାକୁ ସେମାନେ ପ୍ରସ୍ତୁତ । ସେମାନଙ୍କ ଦୃଷ୍ଟିରେ ଯୁଦ୍ଧ ସର୍ବଦା

ପୈଶାଚିକ ଲୀଳା; ନରହତ୍ୟା, ରକ୍ତପାତ, ଲୁଣ୍ଠନ ସଙ୍ଗେ ଜଡ଼ିତ; ତାହା କଦାପି କ୍ଷମଣୀୟ ନୁହେଁ । ମନୁଷ୍ୟୋଚିତ ନ୍ୟାୟାନ୍ୟାୟ ବିଗ୍ଭର ଥାଇ କେଭେ ଯୁଦ୍ଧରେ ପ୍ରବୃତ୍ତ ହେବାର ନୁହେଁ । ନର ରକ୍ତରେ ଧରିତ୍ରୀ ରଞ୍ଜିତ ହେଉଥିବା ବେଳେ, ବସୁନ୍ଧର ନୃମୁଣ୍ଡମାଳିନୀ ହେଉଥିବାବେଳେ, ପୀଡ଼ା-ଅତ୍ୟାଗ୍ଭର-ଦୁର୍ଭିକ୍ଷ-ଆପଦ-ପାଶବିକତାର କରାଳ ଉଗ୍ରଜ୍ୱାଳା ଲୋକଙ୍କୁ ଅଥୟ କରୁଥିବାବେଳେ, ଜଳ-ସ୍ଥଳ-ଆକାଶରୁ ମରଣ ବର୍ଷା ହେଉଥିବାବେଳେ ଏମାନେ ନିଷ୍ପକ୍ଷପାତ, ଗମ୍ଭୀର, ନିର୍ଲିପ୍ତ ! ପରୀକ୍ଷା କଲେ ଏମାନଙ୍କର ଭବ କେତେଦୂର ସମାଜ ଧ୍ୱଂସ-କାରକ, ସ୍ୱାର୍ଥତାଜଡିତ, ତାହା ଜଣାଯାଏ ।

ଠିକ୍ ଏମାନଙ୍କର ବିପରୀତରେ ଆଉ ଦଳେ ଅଛନ୍ତି, ଯେଉଁମାନଙ୍କର ଜୀବନ ଯୁଦ୍ଧ ଧ୍ୱନିରେ ଚିର ପ୍ରତିଧ୍ୱନିତ । ଶାନ୍ତି ଔଷଧରେ ସେମାନଙ୍କର ଉତ୍କଟ ବିଜିଗୀଷା-ରୋଗର ଉପଶମ ହୁଏ ନାହିଁ । ଶାନ୍ତି ସେମାନଙ୍କର ଅସହ୍ୟ । ସଂଗ୍ରାମ-ସଙ୍ଗୀତର ମୂର୍ଚ୍ଛନାରେ ସେମାନଙ୍କର ହୃଦୟ ତନ୍ତ୍ରୀ ଝଙ୍କାରିତ । ଯୁଦ୍ଧର ଉଚିତ କାରଣ ସେମାନେ ଖୋଜି ବସନ୍ତି ନାହିଁ । ଯୁଦ୍ଧକ୍ଷେତ୍ରକୁ ଡେଇଁ ପଡ଼ିବାକୁ ଯେ କୌଣସି ସାମାନ୍ୟ କାରଣ ସେମାନଙ୍କ ପକ୍ଷରେ ଯଥେଷ୍ଟ ହୁଏ । ରଣସଞ୍ଚାର ଉନ୍ମାଦନା ଯୋଗାଇବା ପାଇଁ ନାନାବିଧ କାରଣ ଅଛି—ଆର୍ଥିକ, ବ୍ୟାବସାୟିକ, ରାଜନୀତିକ, ଧର୍ମୀୟ । ସେ ସବୁ ଏଠାରେ ଆଲୋଚ୍ୟ ନୁହେ । ଯାହାହେଉ, ବ୍ୟକ୍ତି ଗୋଷ୍ଠୀ-ଜାତିଗତ ଲୋଭ, କ୍ଷମତାର ମୋହହିଁ ଏ ଦିଗରେ ବହୁଳ ଭବରେ ପ୍ରକଟିତ ହୁଏ । ଅନେକେ କେବଳ ସ୍ୱଭବର ତୀବ୍ର ତାଡନାରେ ଯେ ରଣ-ମଦିରା ପାନ କରିବାକୁ ବିହ୍ୱଳ ହୁଅନ୍ତି, ତହିଁରେ ସନ୍ଦେହ ନାହିଁ । ରଣ-ଭେରୀର ନିସ୍ୱନ, ରଣ-ବାଦ୍ୟର ଭୈରବ ଶବ୍ଦ, ସମୀରପ୍ରବାହରେ ରଣ-ପତାକାର ଆନ୍ଦୋଳନ, ସାଙ୍ଗ ସୈନିକଙ୍କ ସହଯୋଗ ଜୀବନ, ଦେଶ ଦେଶ ଆକ୍ରମଣ, ବ୍ୟୋମ-ପଥରେ ପର୍ଯ୍ୟଟନ, ଏ ସବୁଥିରେ କି ମାଦକତା ଅଛି ତାହା ସେମାନେ ହିଁ ଜାଣନ୍ତି । ଜୀବନ ସେମାନଙ୍କ ପକ୍ଷରେ ଗୋଟିଏ ବିଶାଳ ରଣକ୍ଷେତ୍ର, ଜୀବୀ ଜଣେ ବୀର ସୈନିକ । ମରଣ ପର୍ଯ୍ୟନ୍ତ ଏ ସଂଗ୍ରାମର ବିରତି ନାହିଁ । ଜୀବନ ସଂଗ୍ରାମ-ବହ୍ନି ସର୍ବଦା ହୁ ହୁ ଜଳୁଥିବା ଉଚିତ । ଜୀବନର ଏପରି ଦୃଷ୍ଟି ଯେ କି ଭୟାବହ, ଅବୋଧ, ବର୍ବର, ପଶୁତ୍ୱସୂଚକ, ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ ।

କିନ୍ତୁ ବିପରୀତ ପଥରେ ଏପରି ଉତ୍କଟ ମତାନ୍ଧତା କେଭେ ସଂସ୍କୃତିର ଶୋଭନ ନୁହେ । ସହଜ ସରଳ ସଂସ୍କୃତି ଏପରି ଅହେତୁକ ମତାନ୍ଧତାର ପ୍ରଶ୍ରୟ ଦିଏ ନାହିଁ । ସଂସ୍କୃତି ଏପରି ଗୋଟାଏ ଧରାବନ୍ଧା, ନିଷ୍ପ୍ରାଣ, କଠିନ ବସ୍ତୁ ନୁହେଁ ।

ଗଣ୍ଡିର ଶିକ୍ଷା ଓ ଆଲୋଚନାରେ ସୁସ୍ଥ, ନିୟନ୍ତ୍ରିତ, ବଳୀୟାନ ହୋଇ, ନୀଚ ସୁବିଧା-ବାଦର ବହୁଦୂରରେ ରହି, ଜୀବନର ଅନୁଭୂତିକୁ ସରସ, ସୁନ୍ଦର, ଅର୍ଥବନ୍ତ କରିବା ସଂସ୍କୃତିର ଧର୍ମ । ମୌଳିକ ଅର୍ଥରେ (Lat-Colere to till and Worship) ସଂସ୍କୃତି କୃଷ୍ଟି । ଉପାସନା, ନୀରଜନା, କର୍ମ-ଭକ୍ତି-ଜ୍ଞାନର ସମନ୍ୱିତ ସାମର୍ଥ୍ୟ ସଂସ୍କୃତି । ପ୍ରକୃତ ସଂସ୍କୃତିବନ୍ତ ଲୋକର ଦୃଷ୍ଟି ବିଶାଳ, ଗମ୍ଭୀର; ତାହାର ସାଧାରଣ ନିର୍ଦ୍ଦୋଷ, ଅଭିଜ୍ଞତାର ପ୍ରତିବିମ୍ବ; ଘଟଣା ସଙ୍କୁଳ ଜଗତ ତାହା ପକ୍ଷରେ ବୁଦ୍ଧି-ବିକାଶର ଉପକରଣ । ଶାନ୍ତି ଯଦି ଗୌରବାନ୍ୱିତ, ତେବେ ସେ ଆନନ୍ଦରେ ତାହାକୁ ବରଣ କରିନିଏ; ଅନ୍ୟପକ୍ଷରେ ଯଦି କୌଣସି କାଳେ ଅତ୍ୟାଗ୍ରଣ୍ଡିର, ଦ୍ରୋହୀର ଦଣ୍ଡ ପାଇଁ, ପାପର ନିବାରଣ ପାଇଁ ଅନ୍ୟ କୌଣସି ଉପାୟ ନରହେ, ତେବେ ଯୁଦ୍ଧପାଇଁ ସେ ଅଣ୍ଟା ଭିଡ଼େ । ଏକପକ୍ଷରେ ଦୁର୍ବାର ଲଳସା ଯେପରି ତାହାକୁ ଶାନ୍ତିମାର୍ଗରୁ ସ୍ଖଳିତ କରେ ନାହିଁ, ଅନ୍ୟ ପକ୍ଷରେ ଶାନ୍ତି ଦ୍ୱାହିରେ ସେ ହୃଦୟରେ ଦୁର୍ବଳତା ଘୋଡ଼ାଇ ରହିବାକୁ ଘୃଣାକରେ; ଧର୍ମ ସାଧନାରେ ପୁରୁଷାର୍ଥ ପ୍ରୟୋଗ ପାଇଁ ଅଟଳ, ଅଚଳ ରହେ । ଏପରି ଭବରେ ଆଦର୍ଶ ବାସ୍ତବ ମିଳନର ସ୍ୱର୍ଣ୍ଣମୟ ସୂତ୍ର ସଂସ୍କୃତି ଯୋଗାଏ । ଆଦର୍ଶ ଓ ବାସ୍ତବ ଧରାଧରି ହୋଇ ବର୍ତ୍ତି ପାରନ୍ତି ନାହିଁ—ଏକଥା କେତେ ଦୂର ସତ୍ୟ । ତଥାପି ଉଭୟର ଯଥାଯଥ ମିଳନରେ ହିଁ ଜୀବନ ମୂଲ୍ୟବାନ୍ । ପ୍ରାଚ୍ୟ ପ୍ରାଚ୍ୟ, ପ୍ରତୀଚ୍ୟ ପ୍ରତୀଚ୍ୟ, ଏ ଦୁଇଟିର କେବେ ଯୋଗ ନାହିଁ—ଏ କଥା କବି କିପ୍‌ଲିଂ ଗାଇଥିଲେ । ତଥାପି ଭରତରେ ପ୍ରାଚୀନ-ଅର୍ବାଚୀନ-ସଂସ୍ପର୍ଶ ଜନିତ ଏ ବିଂଶ ଶତାବ୍ଦୀର ଭବଧାରରେ ଆମେ ତହିଁର ଯଥାସମ୍ଭବ ଦେଖୁଁ । ଏ ମିଳନରେ ସଂଘର୍ଷର ବିଡମ୍ବନା ନ ଥାଇ ନାହିଁ; ତଥାପି ତହିଁରେ ମିଳନରେ ମଧୁମୟ ସହଯୋଗ ସ୍ପଷ୍ଟ । ସଂସ୍କୃତିର କନକ ଅରୁଣିମାରେ ପୂର୍ବ-ଆଶା ଚିତ୍ରିତ ହେଲେ, ଆଦର୍ଶହୀନ ବାସ୍ତବତା ବା ବିଷୟଶୂନ୍ୟ ଆଦର୍ଶର ଅମାନିଶା ଉଭେଇଯାଏ । ସଂସ୍କୃତିକୁ ଏକ ଦିଗରେ କେବଳ ଚିନ୍ତାରାଜ୍ୟର ସୀମା ଭିତରେ ଭର୍ତ୍ତି କରି ରଖିଲେ ଯେପରି ତାହା ବିକଳାଙ୍ଗ ଓ ଅପୂର୍ଣ୍ଣ ହୁଏ, ଆଳସ୍ୟ ବିଳାସର ସାମଗ୍ରୀ ହୁଏ, ଛିନ୍ନମୂଳ ତରୁ ଭଳି ଢଳି ପଡେ, ସେହିପରି ଅନ୍ୟ ଦିଗରେ ତାହାକୁ କେବଳ କର୍ମର ବନ୍ଧନୀ ଭିତରେ ଚିହ୍ନିଲେ, କର୍ମ-ପ୍ରବୃତ୍ତି ଚରିତାର୍ଥ କରିବାର ଉପାୟ କଲେ, ତାହାକୁ କାଙ୍ଗାଳ କରି ଦିଆଯାଏ । କୁହାଯାଇଛି, ସଂସ୍କୃତି ଜୀବନ-ରହସ୍ୟ ଉଦ୍‌ଭେଦର ଉତ୍କୃଷ୍ଟ ଉଦ୍ଭାବନ, ଯୁଗ ଯୁଗ ସଞ୍ଚିତ ମାନବୀୟ ଜ୍ଞାନ-ଭଣ୍ଡାରର ଅମୂଲ୍ୟ ନିଧି । ତାହା କୌଣସି କଠୋର ନୀତି ନିୟମରେ ବନ୍ଧା ନୁହେଁ । ଜୀବନ-ତଟିନୀର କଲ୍ଲୋଳିତ ବକ୍ଷକୁ ଉଦ୍ଭାସିତ କରେ, ତାହାର ବିଦ୍ୟୁତ୍-ସ୍ଫୁରଣ ।

ମେଥ୍ୟୁ ଅର୍ଣ୍ଣଲ୍ଡ୍ ସଂସ୍କୃତିରେ ମାଧୁର୍ଯ୍ୟ ଓ ଆଲୋକ ଦେଖିଥିଲେ । ତାହାଙ୍କ ସମୟରେ ସଂସ୍କୃତି ନାମରେ କର୍ମ, ବ୍ୟବହାର, ଆଦେଶ-ପାଳନ ଉପରେ ପ୍ରାଧାନ୍ୟ ଦିଆଯାଉଥିଲା । ପୁଣି ସେତେବେଳେ ବିଖ୍ୟାତ ଲେଖକ କାର୍‌ଲାଇଲ୍ ବଳ, ବିକ୍ରମ, ତେଜ ଉପରେ ବେଶି ଜୋର ଦେଉଥିଲେ । କିନ୍ତୁ ବିବେଚନା ବିହୀନରେ ଏହି ଶିକ୍ଷା ଯେ ସହଜରେ 'ଜୋର୍ ଯାର ମୁଲକ ତାର' ନୀତିରେ ପରିଣତ ହୋଇପାରେ, ଏ କଥା ଅର୍ଣ୍ଣଲଡ୍ ଅନୁଭବ କରିଥିବେ । ଅବଶ୍ୟ ଜୀବନରେ ଏ ଆଶଙ୍କା ନଥାଇ ନାହିଁ । ତଥାପି କାର୍‌ଲାଇଲ୍ ସମର୍ଥିତ 'ବୀରପୂଜା' ମଧ୍ୟ ସଂସ୍କୃତିର ଅଧୀତବ୍ୟ ବିଷୟ । ବଳ କେବଳ ଶାରୀରିକ ନୁହେ; ମନ, ମେଧା, ଆତ୍ମାର ବଳାବଳ ଅଛି । ବାସ୍ତବିକ୍, ଦୁର୍ବଳର ସ୍ଥାନ କେଉଁଠାରେ ? ସେଇପାଇଁ ପରା ବେଦ ଗମ୍ଭୀର ସ୍ୱରରେ କହିଛି, ବଳହୀନ ଦ୍ୱାରା ଆତ୍ମା ଲଭ୍ୟ ହୁଏ ନାହିଁ; ସେଥିପାଇଁ ପରା ଶକ୍ତି-ଉପାସନା ଭାରତୀୟର ପରମ୍ପରାଗତ ହୋଇଛି । ସେ ଯାହାହେଉ, ମାଧୁର୍ଯ୍ୟ, ଆଲୋକ, ଶକ୍ତି ବା ଯେ କୌଣସି ଗୁଣ ବୋଲ, ଏକେ ଏକେ ସେମାନେ ସଂସ୍କୃତିର ଗଭୀର ବ୍ୟାପକ ଅର୍ଥକୁ ପ୍ରକାଶ କରି ପାରନ୍ତି ନାହିଁ । କୁହାଯାଇଛି, ସଂସ୍କୃତି ସୂକ୍ଷ୍ମ ଅନ୍ତର୍ଦୃଷ୍ଟି, ବ୍ୟକ୍ତିତ୍ୱର କେନ୍ଦ୍ର, ବଳିଷ୍ଠ ସଂଗଠନ । ଯୁଦ୍ଧର କର୍କଶ ବିପ୍ଳବାତ୍ମକ ଭାବ ଉପରେ ସଂସ୍କୃତିର ଯେତିକି ପରିଚର୍ଯ୍ୟା, ଶାନ୍ତିର ଲଳିତ କାନ୍ତ ମନୋରମ ଭାବ ଉପରେ ସଂସ୍କୃତିର ସେତିକି । ଅବଶ୍ୟ ଶାନ୍ତିର ପରିପୂରକ ମହୋନ ମନ୍ତ୍ରରେ ତାହାର ଅନ୍ତର୍ନିହିତ ଆକର୍ଷଣ, ପ୍ରେରଣା, ଆନନ୍ଦ ବିକଶିତ ହୁଏ । କାରଣ ଯୁଦ୍ଧ ଶାନ୍ତି ପାଇଁ । ଯୁଦ୍ଧ ସୃଷ୍ଟିର କେବେ ଲକ୍ଷ୍ୟ ହୋଇ ନପାରେ । କ୍ରମ-ବିକାଶ ମାର୍ଗରେ ଯୁଦ୍ଧ ଆବଶ୍ୟକ ହୁଏ, ହେଉଛି । କିନ୍ତୁ ସେ ଆବଶ୍ୟକତା ଯନ୍ତ୍ରଣା-ଦାୟକ କଷ୍ଟକର ନିମିତ୍ତ ମାତ୍ର । ଶାନ୍ତିର ଅର୍ଥ ଯୁଦ୍ଧ ପାଇଁ ତିଆରି ହେବା, ଏ ଅମାନୁଷିକ କଥା । ସେ ଯାହାହେଉ, ବାସ୍ତବ ଜୀବନରେ 'ଯୁଦ୍ଧ' ଶବ୍ଦ ଶୁଣିବା ମାତ୍ରେ ଯଦି ସଂସ୍କୃତି ଆମକୁ ଥରି ଥରି ପଳାୟନ-ବାଦ ଭଜିବାକୁ ଶିକ୍ଷାଦିଏ, ଆମର ଅକର୍ମଣ୍ୟତାକୁ ତଥାକଥିତ ଶାନ୍ତିବାଦ (Pacifism) ଓ ବାକ୍‌ଜାଲର ମୁଖାତଳେ ଲୁଗ୍ରାଇବାକୁ ପ୍ରବର୍ତ୍ତାଏ, ତେବେ ତାହା ମିଥ୍ୟା, ଭଙ୍ଗା, ଅବନତ ସଂସ୍କୃତି । ସେହିପରି ଅନ୍ୟ ପକ୍ଷରେ ଯଦି ସଂସ୍କୃତି ଆମକୁ ବିନା କାରଣରେ ରଣଚଣ୍ଡିର ଦୃପ୍ତ ଉପାସକ କରେ, ହଣାମାରରେ ଆହ୍ଲାଦ ଅନୁଭବ କରିବାର ଶିଖାଏ, ତେବେ ତାହା ମଧ୍ୟ ସେହି ଧରଣର ନିମ୍ନ ଶ୍ରେଣୀର ସଂସ୍କୃତି ।

ତେବେ ସଂସ୍କୃତିମନ୍ତ ଲୋକ ଯୁଦ୍ଧ-ପରିସ୍ଥିତିରେ କି ପ୍ରକାର ଆଚରଣ କରିବ ? କେଉଁ ନୀତିରେ ସେ ସେହି ଅବସ୍ଥାର ସମ୍ମୁଖୀନ ହେବ ? ସେ ଅବଶ୍ୟ ମନ-ବଚନ-କର୍ତ୍ତବ୍ୟରେ ଶାନ୍ତି ଗ୍ରହିବ । ତଥାପି ଯଦି ଅନାୟତ୍ତ ଘଟଣା ଯୁଦ୍ଧ ଆଣି ପହଞ୍ଚାଏ, ସେତେବେଳେ ଶାନ୍ତ ସହଜ ଗୃହସ୍ଥ ଜୀବନ ଆଉ ତାହାକୁ ବାନ୍ଧି ରଖିପାରେ ନାହିଁ ।

ଦୈବ ନିବନ୍ଧନରେ ଜଗତରେ ପ୍ରଳୟ ଉପୁଜାଇ ଯେତେବେଳେ ଯୁଦ୍ଧ ଆରମ୍ଭ ହୁଏ, ସେତେବେଳେ କ୍ଷୁଦ୍ର ପାରିବାରିକ ଜୀବନର ମାୟା କାଟି ଦେଇ ବୀରପଦ୍ଧ ବିକ୍ଷେପରେ, ରଣସଜ୍ଜାରେ, ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୁଏ । ଚିନ୍ତା, ଶୋକ, ଭୟ-ଭ୍ରୂକୁଟି ଇତ୍ୟାଦିରେ ବ୍ୟତିବ୍ୟସ୍ତ ନ ହୋଇ ଧୀର ମନରେ, ଧର୍ମ ମାର୍ଗରେ ନିଜର କର୍ତ୍ତବ୍ୟ କରେ । 'ଗୀତା'ର ନିଷ୍କାମ କର୍ମ, 'ସପ୍ତଶତୀ'ର 'ଚିତ୍ତେ କୃପା ସମର ନିଷ୍ଠୁରତା' ଅବଲମ୍ବନ କରେ । ତାହା ପକ୍ଷରେ ଆକ୍ରମଣ ମୂଳକ ଯୁଦ୍ଧ (War of aggression) କେବେ କ୍ଷମଣୀୟ ନୁହେ । ନିଜ ରଥଚକ ତଳେ ଦୀନଙ୍କୁ ଦଳନ କରି ବିଜୟ-ଟିକା ମୁଣ୍ଡରେ ମାରିବା ପାଇଁ ସେ କେବେ ଅଗ୍ରସର ହୋଇ ନ ପାରେ । ଯୁଦ୍ଧ ତାହା ପକ୍ଷରେ କେବଳ ଆତ୍ମରକ୍ଷାର ଅନନ୍ୟ ଉପାୟ । ସେପରି କରିବା ପୂର୍ବରୁ ଯୁଦ୍ଧର ଆଶୁ ଉଦ୍ଦେଶ୍ୟ ଓ ପରିଣତି ସେ ଭଲ ଭାବରେ ଉପଲବ୍ଧି କରେ । ଅନ୍ଧ ଭକ୍ତି ଆଦେଶ ମାନି 'ଯୁଦ୍ଧ ପାଇଁ ଯୁଦ୍ଧ' ଚିତ୍କାର କରି ଡେଇଁବା ତାହାର ସ୍ୱଭାବ ନୁହେ । କିନ୍ତୁ ସାଧାରଣରେ ଯୁଦ୍ଧରେ ଯୋଗ ଦେଉଥିବା କୋଟି କୋଟି ଲୋକ ଯୁଦ୍ଧର ଭିତିରି ଉଦ୍ଦେଶ୍ୟ ଜାଣନ୍ତି ନାହିଁ, ଜାଣିବାକୁ ଚାହାନ୍ତି ନାହିଁ । ସାଧାରଣ ସୈନିକ କଥା ଛାଡ଼, ସେନାଧ୍ୟକ୍ଷମାନେ ବା ଶାସକବର୍ଗଙ୍କ ଭିତରୁ ଅନେକେ ତାହା ଜାଣିବାକୁ ଆଗ୍ରହ ଦେଖାନ୍ତି ନାହିଁ । ପ୍ରାଣ ପଣେ ଲାଗିପଡ଼ି କେବଳ ଗୋଟାଏ ଉଦ୍ଦେଶ୍ୟରେ ବ୍ୟସ୍ତ ରହନ୍ତି—ଜୟଲାଭ । କିନ୍ତୁ ପରେ ଦେଖାଯାଏ ସେ ଜୟରେ ବାସ୍ତବିକ୍ କୌଣସି ଲାଭ ହୁଏ ନାହିଁ । ସେ ଯୁଦ୍ଧ ପୁଣି ପ୍ରଳୟଙ୍କର ଯୁଦ୍ଧର ମାର୍ଗ ଫିଟାଏ । ସଂସ୍କୃତିର ଅଭାବରେ କୂଟନୀତିର ଅସ୍ତ୍ର ଭାବରେ ବ୍ୟବହୃତ ହୋଇ ଯୁଦ୍ଧ ପରେ ଯୁଦ୍ଧ ଏହିପରି ବୃଥା ଲୋକକ୍ଷୟର ସୂତ୍ରପାତ କରେ । ସଂସ୍କୃତିମନ୍ତ ଲୋକ ଏ ମନୋବୃତ୍ତିର ପକ୍ଷପାତୀ ନୁହେଁ । ଶାନ୍ତି ପଥ ନିତାନ୍ତ ଅବରୁଦ୍ଧ ହେଲେ ଅଗତିକ ବାଧ୍ୟବାଧକ ଭାବରେ ଯୁଦ୍ଧ ଆହ୍ୱାନକୁ ସେ ପ୍ରବଳ ଅନିଚ୍ଛାସତ୍ତ୍ୱେ ରକ୍ଷାକରେ । ଯେତେ-ବେଳେ ଗୌରବରେ ହାନି ଘଟେ, ସମ୍ପଦ ଉପରେ ନିଶ୍ଚିତ ଆଶଙ୍କା ଉପୁଜେ, ମୁକ୍ତିରେ ବାଧାପଡ଼େ, ଜୀବନ ନିରର୍ଥକ ଓ ବିପଦଗ୍ରସ୍ତ ହୁଏ, ଆଦର୍ଶ କ୍ଷୁଣ୍ଣ ହୁଏ, ପୁଣି ଏ ସବୁ ଘୁଞ୍ଚାଇବାରେ ସକଳ ପ୍ରକାର ସନ୍ଧି ପ୍ରସ୍ତାବ କାର୍ଯ୍ୟକାରୀ ହୁଏ ନାହିଁ, ବରଂ ଶତ୍ରୁ ତହିଁରୁ ଅଧିକ ଉପଦ୍ରବ ଘଟାଇବାର ସୁଯୋଗ ପାଏ, ତେବେ ଯାଇ ସଂସ୍କୃତିମନ୍ତ ଲୋକ ଯୁଦ୍ଧର ଆଶ୍ରୟ ନିଏ । କିନ୍ତୁ ଥରେ ତହିଁରେ ଯୋଗଦେଲେ, ସବୁ ଶଙ୍କା ସନ୍ଦେହ ଛାଡ଼ି ଅମିତ ବିକ୍ରମରେ ସେ ଯୁଝେ । ବର୍ବର ଶକ୍ତି ଆଗରେ ଆଣ୍ଠୁ ମାଡ଼ି ନତ ହେବା ବୀରର ପ୍ରକୃତି ନୁହେ, କ୍ଲୀବର କାର୍ଯ୍ୟ ।

କିନ୍ତୁ ଯେଉଁ ଜଗତବ୍ୟାପୀ ଯୁଦ୍ଧ ଆଜି ଆମ ଆଖି ଆଗରେ ଲାଗିଛି, ତହିଁରେ ସଂସ୍କୃତିର ଏ ବିଶ୍ଳେଷଣ, ଦୂରଦୃଷ୍ଟି, ଲୋକସଂଗ୍ରହ ଅଛି ତ ? ନାଜି-ଫାସିଷ୍ଟ-ବାଦରେ

ଶାନ୍ତି ଯୁଦ୍ଧ ପାଇଁ ତିଆର ହେବାର ଅବକାଶ ମାତ୍ର, ଯୁଦ୍ଧରେ ଜୀବନ ସଫଳ । ଆଜିର ହିଟ୍‌ଲରୀୟ ନୀତିର ଗୋଟିଏ କ୍ରମବର୍ଦ୍ଧିଷ୍ଣୁ ଦାର୍ଶନିକ ଭାବ ବରାବର ରହିଛି । ବିଖ୍ୟାତ ଜର୍ମାନ୍ ଦାର୍ଶନିକ Schiller ଓ 'Fitche ଏ ଭାବ-ଯଜ୍ଞର ପୁରୋଧା । ତାହାପରେ Hegel, 'ରାଜ୍ୟସବୁ, ରାଜ୍ୟଠାରୁ ବଡ଼ ମାନନୀୟ ଅନୁଷ୍ଠାନ କିଛି ନାହିଁ, ଦେଶବାସୀ ରାଜ୍ୟ-ଦେବତା ଆଗରେ ସବୁ ବଳି ଦେବାକୁ ହେବ, ସେମାନଙ୍କର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଓ ଆକାଂକ୍ଷା ବୋଲି କିଛି ନାହିଁ, ରାଜ୍ୟର ସେମାନଙ୍କଠାରେ ବା ଅନ୍ୟ ରାଜ୍ୟ ପାଖରେ କିଛି କର୍ତ୍ତବ୍ୟ ନାହିଁ, ରାଜ୍ୟ ଗତି-ମୁକ୍ତି ଦାତା, ଏପରି ପ୍ରଚାର କରି ବସିଲେ । ଏ ଭାବଧାରାରେ Neitzsche ତାଙ୍କର ଶକ୍ତିବାଦ (Will to power) ଯୋଗକଲେ । ପରେ ପରେ Bismarkଙ୍କ ଦୁର୍ଦ୍ଧର୍ଷ ରାଜନୈତିକ ଯୋଜନା (Blood & Iron Policy) ଏହି ଶକ୍ତିବାଦକୁ ରୂପାୟିତ କରିବାର ପ୍ରୟାସ କଲା । ସେଥିସଙ୍ଗେ ପୁଣି Treitsche ଓ General von Bernhardi 'ଯୁଦ୍ଧହିଁ ଜାତୀୟ ଜାଗରଣର ଏକମାତ୍ର ପନ୍ଥା' ଏ କଥା ଗାଇ ବୁଲିଲେ । ନିଜ ଦେଶ ଓ ଜାତିର ଏ ବିଭିନ୍ନ ଚିନ୍ତାଧାରାରେ ବର୍ଦ୍ଧିତ ହିଟ୍‌ଲର୍ ଆଜି ସମଗ୍ର ଜଗତରେ ସମର-ବହ୍ନି ଜାଳି ଦେଇଛନ୍ତି । ଭର୍‌ସଲିସ୍ ସନ୍ଧିର ଅନ୍ୟାୟର ପ୍ରତିକାର ନିମିତ୍ତ ସେ ଏହା କରିଛନ୍ତି ବୋଲି ଯାହା କହୁଛନ୍ତି, ତାହା ବିଶେଷ ପକ୍ଷେ ଛଳନା ମାତ୍ର । ବାସ୍ତବିକ ଦେଖିଲେ ପ୍ରଜାତନ୍ତ୍ର ରାଜ୍ୟଗୁଡ଼ିକ ପ୍ରତି ତାଙ୍କ ହୃଦୟରେ ଅନେକ ଦିନରୁ ସଞ୍ଚିତ ଘୃଣା ଓ ପ୍ରତିହିଂସାର ନଗ୍ନରୂପ ପ୍ରକାଶରେ ହିଁ ଏ ଯୁଦ୍ଧ ସୃଷ୍ଟି । ସେ ଯାହାହେଉ, ସଂସ୍କୃତିମନ୍ତ ଲୋକର ଅନୁମୋଦିତ ଯୁଦ୍ଧ ଓ ଏପରି ଯୁଦ୍ଧର ମଧ୍ୟରେ କି ଆକାଶ-ପାତାଳ ପ୍ରଭେଦ ରହିଛି, ତାହା ସ୍ୱତଃ ବୋଧହୁଏ ।

ସଂସ୍କୃତିମନ୍ତ ଲୋକ ଯୁଦ୍ଧରେ ଶତ୍ରୁର ଆକସ୍ମିକ ଦୁର୍ବଳତାର ସୁବିଧା ନିଏ ନାହିଁ । ଧର୍ମଯୁଦ୍ଧ ବ୍ୟକ୍ତିବିଶେଷଙ୍କ ପ୍ରତି ଆକ୍ରୋଶ ରଖେ ନାହିଁ; ଯୁଦ୍ଧର ମୌଳିକ କାରଣ ପ୍ରତି ଜାଗରୂକ ରହେ । କିନ୍ତୁ ଏବର ଯୁଦ୍ଧରେ ଏ ସବୁ ସ୍ୱପ୍ନ । ମିଥ୍ୟା ପ୍ରଚାର ଆଜିପର ଯୁଦ୍ଧର ପଞ୍ଚମ ବାହିନୀ ! ଯେଉଁ ବୈଜ୍ଞାନିକ ଆବିଷ୍କାର ମନୁଷ୍ୟକୁ ଉଚ୍ଚତର ସ୍ତରକୁ ଘେନି ଯିବାର ଡ଼ିଣ୍ଡିମ ବଜାଉଅଛି, ଆଜି ଠିକ୍ ସେହି ଆବିଷ୍କାର ଯୋଗେ ସଭ୍ୟତାକୁ ମୂଳଚ୍ଛେଦ କରି ଧ୍ୱଂସ-ଲୀଳା ଅବିରାମ ଗତିରେ ଚାଲିଛି ।

ଯୁଦ୍ଧ ଚାଲନାରେ ସଂସ୍କୃତି ଗୋଟାଏ ଉଦାର ଚେତନା (High Chivalry) ରୂପରେ ଫୁଟେ । ଗୋଟିଏ ଦେଶ ବା ଜାତିର ଐତିହାସିକ ସଂସ୍କୃତିର ସୂଚନା ତାହାର ଯୁଦ୍ଧ ଆଚରଣରୁ ଧରାପଡେ । ରାମାୟଣ-ମହାଭାରତ

ବର୍ଣ୍ଣିତ ଧର୍ମଯୁଦ୍ଧ ନିୟମ; କଳିଙ୍ଗ ଯୁଦ୍ଧ ପରେ ଅଶୋକଙ୍କ ଅହିଂସା ଦୀକ୍ଷା; ରାଜପୁତ୍-ମାନଙ୍କ ଗୌରବଗାଥା; ସମ୍ରାଟ ଆକବରଙ୍କ ଶତ୍ରୁମାନଙ୍କ ପ୍ରତି କ୍ଷମା; ନାରୀଜାତି, ବନ୍ଦୀ ଓ କୋରନା ପ୍ରତି ଶିବାଜୀଙ୍କ ମାନ୍ୟ; ସମର କ୍ଷେତ୍ରରେ ଶିଖମାନଙ୍କ ଦେଶପ୍ରେମ ଓ ଗୁରୁଭକ୍ତିର ପରାକାଷ୍ଠା—ଏ ପ୍ରତ୍ୟେକ ଭାରତୀୟ ଚରିତ୍ରର କିପରି ଗୋଟିଏ ଗୋଟିଏ ଜ୍ୱଳନ୍ତ ନିଦର୍ଶନ, ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ । ପୁଣ୍ୟଭୂମି ପ୍ରାଚୀନ ଭାରତରେ ମନୁଷ୍ୟର ଧ୍ୱଂସ ପ୍ରବୃତ୍ତିକୁ ମଧ୍ୟ ଧର୍ମ-ଶୃଙ୍ଖଳାରେ ବିଧିବଦ୍ଧ କରିବାର ଉଦ୍ୟମରେ ତାତ୍ପର୍ଯ୍ୟ ଅଛି ।

ସଂସ୍କୃତିମନ୍ତ ଲୋକ ଅତ୍ୟାବଶ୍ୟକ ବେଳେ ଯୁଦ୍ଧ କରେ ସତ୍ୟ । ତଥାପି ଯୁଦ୍ଧର ପ୍ରବଳ ଧ୍ୱଂସ ଭିତରେ ମଧ୍ୟ ଶାନ୍ତି ପାଇଁ ସେ ବ୍ୟାକୁଳ ଥାଏ । ଯୁଦ୍ଧ ଶେଷରେ ଯଦି ସେ ଜୟଲାଭ କରେ, ତାହାଦ୍ୱାରା ସେ ଉଦ୍ଧତ, ଗର୍ବିତ ହୋଇ ବିଜିତ, ନିର୍ଯାତିତ, ଦଳିତର ସର୍ବନାଶ କରିବାକୁ ଉତ୍କଣ୍ଠିତ ହୁଏ ନାହିଁ । ଶତ୍ରୁ ଉପରେ ଅଜସ୍ର ବ୍ୟୟଭାର ଲଦିଦେଇ, ତାହାର ଆୟର ସମସ୍ତ ପନ୍ଥା ବନ୍ଦ କରି, ତାହାର ଶକ୍ତିକୁ ଛିନ୍ନଭିନ୍ନ ଓ ରସାତଳଗାମୀ କରିବାର ଉଦ୍ୟମ କରି ସେ ଯୁଦ୍ଧ-ବୀଜ ପୁଣି ବୁଣେ ନାହିଁ । ଆର୍ତ୍ତହର ଓ ନିଷ୍ପକ୍ଷପାତ ହୋଇ, ନ୍ୟାୟମାର୍ଗରେ ଶତ୍ରୁର ଶୋଧନ କରି, ଉଦାରତାରେ ଶତ୍ରୁକୁ ଲଜ୍ଜିତ ଅଥଚ ଆକୃଷ୍ଟ କରି, ପରିତ୍ରାଣପରାୟଣ ଭାବରେ ସମସ୍ତଙ୍କର ପ୍ରାପ୍ୟ ସମସ୍ତଙ୍କୁ ଦେଇ, ନୀଚ ସ୍ୱାର୍ଥକୁ ଏଡ଼ି, ତୁଷ୍ଟି-ପ୍ରୀତି-ମୈତ୍ରୀ ସହଯୋଗର ବୀଜ ବୁଣେ । ମହତ୍ତର, ସୁନ୍ଦରତର, ସତ୍ୟପ୍ରାଣ ସଂସାର ଗଢ଼ିବସେ । ଯୁଦ୍ଧ ଶେଷରେ ସଂଘଟିତ ସନ୍ଧି ସର୍ତ୍ତରେ ବାସ୍ତବିକ ବିଜିତ ପ୍ରତି ବିଜୟୀର ଉଦାରତା ବଡ଼ ଅସାଧାରଣ କଥା । ଅନେକ କହନ୍ତି, ଭର୍‌ସଲିସ୍ ସେପରି ହୋଇ ନଥିଲା ବୋଲି ଆଜି ଏ ଅବସ୍ଥା । ବାସ୍ତବିକ୍, ସନ୍ଧିରେ ଅନ୍ୟାୟ ଓ ଅତ୍ୟାଚାର କରାଗଲେ, ବିଜିତ ସେତେବେଳେ କିଛି କରିପାରେ ନାହିଁ ସତ; ସବୁ କଷ୍ଟ, ଅପମାନ ସହି ନିଏ ସତ; କିନ୍ତୁ ତାର ମାନସିକ ପରିବର୍ତ୍ତନ ଘଟେ ନାହିଁ; ପ୍ରତିହିଂସା-ବହ୍ନିକୁ ନିଭୃତ ଅନ୍ତରରେ ସେ ଜଳାଇ ରଖିଥାଏ । ପୁଣି ବେଳ ଉଣ୍ଡି ସେ ଅଗ୍ନି ଦପ୍‌କରି ଉଠି ଜନ ସମାଜକୁ ପୋଡ଼ି ପକାଏ ।

ସଂସ୍କୃତି ଦୃଷ୍ଟିରେ ଯୁଦ୍ଧ ଚଳାଇବା କେବଳ କୌଶଳର କାର୍ଯ୍ୟ ନୁହେଁ, ଭଲ-ମନ୍ଦ ବିଚାର ତହିଁରେ ପ୍ରବେଶ କରେ । କୌଣସି ଆକ୍ରମଣର ପ୍ରତିରୋଧ ପାଇଁ ଦୁଇଟି ମାର୍ଗ ଅଛି ଗୋଟାଏ ହିଂସା –ଯାହା କି ସଂସାରର ଲୋକ ସମଷ୍ଟିର ମାର୍ଗ । ଅନ୍ୟଟି ହିଂସା ପ୍ରତିପକ୍ଷରେ ପ୍ରେମ, କରୁଣା ସେବା ପ୍ରଦର୍ଶନ କରିବା—ଯାହାକି ସକ୍ରେଟିସ୍, ବୁଦ୍ଧ, ଯୀଶୁ, ଟଲ୍‌ଷ୍ଟୟ, ଗାନ୍ଧୀଙ୍କ ମାର୍ଗ । ବୁଝିବାକୁ ହେବ ନାହିଁ ଯେ ଦ୍ୱିତୀୟଟିରେ ଯୁଦ୍ଧ ପ୍ରବୃତ୍ତିର ସ୍ଥାନ ନାହିଁ । ଗୌଣ ପ୍ରତିରୋଧ (Passive

Resistance'ର ବାସ୍ତବିକ ଅର୍ଥ କିଛି ନାହିଁ । ତହିଁରେ ମଧ୍ୟ ପ୍ରତିରୋଧର ଦୃଢ଼ତା ଅଛି; କିନ୍ତୁ ଅସ୍ତ୍ର ଭିନ୍ନ । କମାଣ, ଗୁଳି, ବୋମାର ଏଠାର ସ୍ଥାନ ନାହିଁ; ନିର୍ମଳ ଆତ୍ମା ଓ ସଂଯତ କ୍ରିୟା ଏଠାରେ ଅସ୍ତ୍ର । ଏଠାରେ ମାନବିକ ଶକ୍ତିର କେବଳ କେତେକାଂଶ ବ୍ୟବହୃତ ହୁଏ ନାହିଁ, ସମଗ୍ର ବ୍ୟକ୍ତିତ୍ୱର ଅବାଧ ପ୍ରୟୋଗ ହୁଏ । ଲୋକ ଚକ୍ଷୁରେ କିନ୍ତୁ ଏ ଧରଣ ପ୍ରତିରୋଧର ସଦ୍ୟଫଳ ବ୍ୟାପକ ଭବରେ ହିଂସା ଯୁଦ୍ଧ ପରି ଦେଖା-ଯାଏ ନାହିଁ । ହିଂସା ମନୁଷ୍ୟର ପ୍ରକୃତି ଅନ୍ତର୍ଗତ । ନିପଟ ଆତ୍ମିକତା ସଂସ୍କୃତିର ଚୂଡ଼ାନ୍ତ ନିର୍ଯାସ । କିନ୍ତୁ ତାହା ବ୍ୟକ୍ତିବିଶେଷଙ୍କ ଜନ୍ମ-ଜନ୍ମ ବ୍ୟାପୀ ତପସ୍ୟାର ଫଳ । ଭାରତୀୟ ପ୍ରାଚୀନ ମୁନିଋଷି ତହିଁର ଉଦାହରଣ । ସେହିପରି ମହାପୁରୁଷ ଅନ୍ଧକାର-ଗ୍ରସ୍ତ ଜନତା ପକ୍ଷରେ କେତୋଟି ଦୀପସ୍ତମ୍ଭ । କିନ୍ତୁ ଆଦର୍ଶ-ବାସ୍ତବ ପ୍ରଭେଦ ସନାତନ । ଆଲୋକର ଅନ୍ୟପାଖ ତମ; ଜ୍ଞାନର ଅନ୍ୟପାଖ ଅବିଦ୍ୟା । ମୁନି-ଋଷି କେତେ ଜଣ; ମାନବ ସୃଷ୍ଟି ଅନନ୍ତ, ଅସୀମ । ଅହିଂସା ଆଦର୍ଶ । ଆଦର୍ଶ ସର୍ବଦା ଅନୁସରଣୀୟ । ତଥାପି ଭୁଲିବାର ନୁହେଁ, ବାସ୍ତବ ପ୍ରକୃତି ସାଧନାର ପୀଠ । ସେ ଯାହା ହେଉ, ଅହିଂସା-ମାର୍ଗ ବା ହିଂସା-ମାର୍ଗ ଉଭୟରେ ସଂସ୍କୃତିର ଆଲୋକ ପଡ଼ିବାର ଆବଶ୍ୟକତା ଅତ୍ୟନ୍ତ । ହିଂସାକୁ ଡେଇଁ ନ ପାରିଲେ ମଧ୍ୟ ଅନ୍ତତଃ ତାହାକୁ କେବଳ ପଶୁତ୍ୱରୁ ଯଥାସମ୍ଭବ ମୁକ୍ତ କରି ମାନବୀୟ ଆଶା ଓ ଆକାଙ୍‌କ୍ଷାରେ ଯଥାଶକ୍ତି ମହତ୍, ତ୍ୟାଗପୂତ, ସିଦ୍ଧମନୋରଥ କରିବା ସଂସ୍କୃତିର ଲକ୍ଷ୍ୟ । ଲକ୍ଷ୍ୟ ପୂରଣ ହୋଇ ନପାରେ; ତଥାପି ତାହାର ଅବବୋଧ ଓ ଅନୁଧାବନ ମାନବ-ସମାଜର ଶ୍ରେଷ୍ଠ ବିଭବ ଓ କଲ୍ୟାଣପ୍ରଦ ।



# ସାହିତ୍ୟ ଓ ଜୀବନ

( ୧ )

ଆନନ୍ଦ ଅନ୍ୱେଷଣ କରିବାହିଁ ଜୀବନର ପ୍ରକୃତି ସିଦ୍ଧ ସ୍ୱଭାବ । ଜୀବନ ସ୍ରୋତ ନିରବଚ୍ଛିନ୍ନ ଭାବରେ ସୁଖ-ସିନ୍ଧୁ ଆଡକୁ ପ୍ରବାହିତ । ସଂସାର-ମାର୍ଗରେ ଜ୍ଞାତ କିମ୍ବା ଅଜ୍ଞାତରେ ଦୁଃଖ ଓ ଅଶାନ୍ତି ପ୍ରତି ଗୋଟିଏ ଅସହ୍ୟ ପରାଂମୁଖତା ଦେଖାଯାଏ । କି ଉଦ୍‌ଭିଦ, କି ପଶୁ, କି ମନୁଷ୍ୟ ସମସ୍ତଙ୍କ ଜୀବନର ବିଭିନ୍ନ ସ୍ତରରେ ସୁଖାନୁଭୂତି ପ୍ରତି ଗୋଟିଏ ପ୍ରବଳ ଆକାଂକ୍ଷା ପ୍ରତ୍ୟକ୍ଷୀଭୂତ ହୁଏ । ଶିଶୁ କ୍ରୀଡନକର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ତାହା ପାଇବାକୁ ଦୌଡ଼ିଯାଏ; କିନ୍ତୁ ପଦସ୍ଖଳିତ ହୋଇ ପତିତ ହୁଏ, ଚିତ୍କାର କରିଉଠେ । ମାତୃଶକ୍ତିର ମହିମୋଜ୍ଜ୍ୱଳ ସୌନ୍ଦର୍ଯ୍ୟ ସମ୍ମୁଖରେ ଜ୍ଞାନୀ, ଦାର୍ଶନିକ, ଯୋଗୀ ବା ସାଧକ ମଧ୍ୟ ଶିଶୁ । ପ୍ରାଣୀମାନେ ଆପାତ ରମଣୀୟତାର ପ୍ରଲୋଭନରେ ମୁଗ୍ଧ ହୋଇ ଅନ୍ଧ ଭଳି ତାହା ପାଇବାକୁ ଖୋଜିବୁଲେ; କିନ୍ତୁ ପର ମୁହୂର୍ତ୍ତରେ ତହିଁରେ ପ୍ରକୃତ ସୁଖର କିଞ୍ଚିତ୍ ସନ୍ଧାନ ସୁଦ୍ଧା ନ ପାଇବାରୁ ଅବସାଦରେ ତାର ହୃଦୟ ପୂର୍ଣ୍ଣ ହୋଇଉଠେ । କିନ୍ତୁ ଏହା ବୋଲି ଯେ, ଏହି ଆଶା ଓ ଜିଜ୍ଞାସା ଏକାବେଳକେ ନିରର୍ଥକ ବା ମୂଲ୍ୟହୀନ, ଏ କଥା କୁହାଯାଇ ନ ପାରେ । ଶିଶୁ ଯେପରି ତାହାର ପଦସ୍ଖଳନ ଓ ପତନରୁ ଦୃଢ଼ଭାବରେ ଦଣ୍ଡାୟମାନ ହୋଇ, ଦଉଡ଼ି ଯାଇ ନିଜ ଶରୀର ଅଙ୍ଗ ପ୍ରତ୍ୟଙ୍ଗ ସବୁ ସୁସ୍ଥ ସବଳ ରଖି ଆଗତ ଜୀବନ ସଂଗ୍ରାମର ଭୀଷଣ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ ଶିକ୍ଷା କରେ, ପ୍ରାଣୀ ବିଶେଷତଃ ମନୁଷ୍ୟ ସେହିପରି ତାହାର ପରାଜୟ କ୍ଳେଶ ଓ ଯାତନାରୁ ହିଁ ବିରାଟ ବିଶ୍ୱ ସଂଗଠିତ ଉପାଦାନର ଯଥୋଚିତ ମୂଲ୍ୟ, ପ୍ରୟୋଜନ, ତତ୍ତ୍ୱ ବୁଝେ; ପ୍ରକୃତ ଆନନ୍ଦ ପାଇଁ କାୟମନୋବାକ୍ୟରେ ଆକୃଷ୍ଟ ହୁଏ ।

ଜୀବନର ଭିତ୍ତି ଓ ନୀତି ଏକ ଆଉ ଅଦ୍ୱିତୀୟ । ତାହା ଅସୀମ ବୈପରିତ୍ୟ ମଧ୍ୟରେ ପରିସ୍ଫୁଟ ହୁଏ । ପୂର୍ଣ୍ଣ ଚେତନ ସ୍ୱରୂପ ଏହି ପଦାର୍ଥ ମାୟାର ଅନିର୍ବଚନୀୟ-ଲୀଳା, ଶକ୍ତିର ବିସ୍ମୟାବହ କର୍ମଚକ୍ର ଘୂର୍ଣ୍ଣନକ୍ରମେ ଅଚେତନ ରୂପେ ପ୍ରତୀୟମାନ ହୋଇ ପୁଣି ସ୍ୱଭାବ ତଥା ସ୍ୱରୂପ ପାଇବାକୁ ଚେଷ୍ଟା କରେ । ଏହି ଅପରିସୀମ ପ୍ରଯତ୍ନର ପରିସର ଦୁଃଖ-ସୁଖ, ଜୟ-ପରାଜୟ, ଉତ୍‌ଥାନ-ପତନ ଇତ୍ୟାଦି ଦ୍ୱନ୍ଦ୍ୱସଂକ୍ରାନ୍ତ ଜୀବନର ସକଳ ବିଭାଗ ଆବୃତ କରିଥାଏ । ଅକୂପାରର ତରଙ୍ଗିତ ଅପାର ବକ୍ଷସ୍ଥଳରେ

ଗୋଟାଏ କ୍ଷୁଦ୍ର ବୁଦବୁଦ୍ ନିଜର ଅଶେଷ, ସ୍ଥାୟୀ ଜନ୍ମସ୍ଥଳରୁ ଭିନ୍ନ ହେବାକୁ ଚେଷ୍ଟା କରି ନିଜର କ୍ଷୁଦ୍ରତା କ୍ଷୀଣତା ବୋଧରେ ମୁହ୍ୟମାନ ହୋଇ ଚକ୍ରାବର୍ତ୍ତନର ଘୂର୍ଣ୍ଣି-ଲୀଳାରେ ବିଲୀନ ହୋଇ ଯେପରି କି ପୁଣି ଜଳରାଶି ମଧ୍ୟରେ ନିମଜ୍ଜିତ ହୁଏ । ଆନନ୍ଦରୁ ଜୀବନର ସୃଷ୍ଟି, ଆନନ୍ଦରେ ତାହାର ପୁଷ୍ଟି, ଆନନ୍ଦରେ ହିଁ ତାହାର କ୍ଷାନ୍ତି । ଜୀବ ସେହି ଚେତନ ସ୍ୱରୂପ ଆନନ୍ଦ ଉପଲବ୍ଧି ନ କରିବା ପର୍ଯ୍ୟନ୍ତ; ମାୟାସୃଷ୍ଟ ଅନ୍ନ, ପ୍ରାଣ, ମନ, ବିଜ୍ଞାନ, ଆନନ୍ଦ କୋଷ ଦ୍ୱାରା ଆବଦ୍ଧ ହେବା ପର୍ଯ୍ୟନ୍ତ ବାଧା, ନିଃସଙ୍ଗତା, ଅପରିତୃପ୍ତି ହିଁ ତାର ଜୀବନରେ ବିଶେଷ ଭାବରେ ଲକ୍ଷିତ ହେବା ସ୍ୱାଭାବିକ ଶାନ୍ତି ବୋଲି ଉଦ୍ଧୃତ ହେବା ତତ୍ତ୍ୱ ଦୃଷ୍ଟିର ପରିଚୟ ଦିଏ ନାହିଁ । ବିଶ୍ୱ-ଶକ୍ତି ଆଗରେ ସସୀମ ଶକ୍ତି ତୁଚ୍ଛ, ନଗଣ୍ୟ । କୌଣସି ଜଣେ କ୍ଲିଓପାଟ୍ରା ନିଜର ଦୈହିକ ସୌନ୍ଦର୍ଯ୍ୟ. ବିଳାସ-ବିଭବରେ ଗଜେନ୍ଦ୍ରାସନକୁ ବିମୋହିତ କରି ରୋମ ସାମ୍ରାଜ୍ୟକୁ ଖଣ୍ଡ ବିଖଣ୍ଡ କରି ପାରେ; ଜଣେ ନେପୋଲିଅନ୍ ସାମରିକ ସାହସ, ଅଜେୟ ଦୁର୍ଦ୍ଧର୍ଷତାରେ ସମଗ୍ର ଜଗତକୁ ପ୍ରକମ୍ପିତ କରିପାରେ; ଜଣେ କଲମ୍ବସ୍ ନୂତନ ନୂତନ ଭୂଖଣ୍ଡ ଆବିଷ୍କାର କରିପାରେ; ଜଣେ ବିଚକ୍ଷଣ ବୈଜ୍ଞାନିକ ମନୀଷୀ ଆଇନ୍-ଷ୍ଟାଇନ୍ ଚତୁର୍ଥ ମାପ (Four dimension) ତଥା ସମ୍ବନ୍ଧବାଦ ଦର୍ଶାଇ ପାରେ । ଏହି ସବୁର ମୂଲ୍ୟ ଅଛି । କିନ୍ତୁ ଆଂଶିକ ଶୁଦ୍ଧ ଚେତନର ଅଖଣ୍ଡ ଅପରିସୀମ ମଧ୍ୟରେ ଦେଶ-କାଳ ନିବଦ୍ଧ ଘଟଣାରାଜି ବିଶେଷ ଅଂଶ ମାତ୍ର । ସେହି ଚେତନାର ପୂର୍ଣ୍ଣ ଅବଧାରଣ ନ ହେଲେ ମନୁଷ୍ୟ କୃତକୃତ୍ୟ ହେଲା ବୋଲି କହିହେବ ନାହିଁ । ସେହି ଚେତନାରେ ଅବସ୍ଥିତ ମୁଁ କେଡ଼େ ମହୀୟାନ୍, ଶକ୍ତିମାନ୍, ଆନନ୍ଦମୟ, ଅନ୍ୟ ଦିଗରେ 'ମୁଁ' କେଡେ ଦୁର୍ବଳ, ଦୁଃଖୀ, ଦୀନ ! ବାସ୍ତବିକ ଏହାହିଁ ଜୀବନର ଏକମାତ୍ର ରହସ୍ୟ । ଏହି ରହସ୍ୟ ଉଦ୍‌ଘାଟନ ଜୀବନର ପ୍ରକୃତ ତତ୍ତ୍ୱ ଅନୁସନ୍ଧାନ କରି ଚରମ ଆନନ୍ଦ ଅନୁଭବ କରିବା ହିଁ ସାହିତ୍ୟର ଆଭିମୁଖ୍ୟ ଓ ମୂଳ ଉଦ୍ଦେଶ୍ୟ ।

କିନ୍ତୁ ଦର୍ଶନର ମଧ୍ୟ ଏହି ଅଭିପ୍ରାୟ । ତେବେ ଦର୍ଶନ ଓ ସାହିତ୍ୟ ମଧ୍ୟରେ ପ୍ରଭେଦ କେଉଁଠାରେ ? ସଂକ୍ଷେପରେ କହିଲେ, ଦର୍ଶନ ଆନନ୍ଦକୁ ଦ୍ରଷ୍ଟା ଦିଗରୁ ଅନୁଭବ କରେ, କିନ୍ତୁ ସାହିତ୍ୟ ତାହା କରେ ଦୃଷ୍ଟ ଦିଗରୁ । ଅବଶ୍ୟ ଦୃକ୍-ଦୃଶ୍ୟ ପ୍ରଭେଦ ସମୂହ-ଦୃଷ୍ଟିରେ ରହିପାରେ ନାହିଁ । ମନୁଷ୍ୟର ଜ୍ଞାନ-ପରିସର ଭେଦରହିତ, ଅଖଣ୍ଡ । ଅନୁଭୂତିର ବିଭିନ୍ନ ବିଭାଗ ମଧ୍ୟରେ ଆପାତତଃ ଭିନ୍ନ ରେଖା ଅଙ୍କନ କରା ଯାଇପାରେ, କିନ୍ତୁ ପ୍ରକୃତରେ ସେହି ସବୁ ବିଭାଗ ପରସ୍ପର ଘନିଷ୍ଠ ଭାବରେ ସମ୍ବନ୍ଧ । ଜଡ ବସ୍ତୁ ପ୍ରକୃତରେ ଜଡ ନୁହେ । ତାହା ମୟୋପହିତ ଚୈତନ୍ୟର ଲୀଳାବିକାଶ । ଅବସ୍ଥା ଓ ସମ୍ବନ୍ଧ ଦୃଷ୍ଟିରେ ଦୃକ୍ ଦୃଶ୍ୟ, ଦ୍ରଷ୍ଟା ସାକ୍ଷୀ, ଦୃଷ୍ଟ କ୍ଷେତ୍ର ମଧ୍ୟରେ ପ୍ରଭେଦ ସ୍ୱୀକାର କରାଯାଇ ପାରେ । କିନ୍ତୁ ଗୋଟିଏ ଅନ୍ୟର କାରଣ-ବୀଜର ଫଳବତ୍ତା ମାତ୍ର ।

ଉଭୟର ଲକ୍ଷ୍ୟ ଏକ । ପରସ୍ପର କ୍ରିୟା-ବିନିମୟରେ ହିଁ ଆନନ୍ଦର ଅନୁଭୂତି। ପରମାର୍ଥିକ ଦୃଷ୍ଟିରେ ମାର୍ଗ ଓ ଲକ୍ଷ୍ୟ ଏକ। ଦ୍ରଷ୍ଟା ଆନନ୍ଦ ସ୍ୱରୂପ, ଅନ୍ତିମ, ଅବାଙ୍ମନସଗୋଚର । ଦୃଷ୍ଟ ବିଶ୍ୱର ସକଳ ସ୍ତରରେ ତାହା ମନୋହାରିତା ରୂପରେ ପ୍ରକାଶ ପାଏ। ଜୀବନର ସୌନ୍ଦର୍ଯ୍ୟରେ ତହିଁର ବୈଚିତ୍ର୍ୟମୟ ସମୃଦ୍ଧି ଓ ସୀମାରହିତ ପ୍ରକାଶର ଉର୍ଦ୍ଧ୍ୱକୁ ଉଠି, ଅନୁଭୂତି ଓ ଜ୍ଞାନର ସକଳ ବିଷୟକୁ ଅବବୋଧ କରି, ସେଗୁଡ଼ିକ ବିବେଚନା ଓ ନିଷ୍ପକ୍ଷପାତ ବିଚାର ଦ୍ୱାରା ଶୃଙ୍ଖଳାବଦ୍ଧ ଓ ସଂଲଗ୍ନ କରି, ଗୋଟାଏ ସକଳ-ବ୍ୟାପ୍ତ ନିବନ୍ଧନମୟ ସମୂହତା ଗଠନ କରି, ତହିଁରେ ତତ୍ତ୍ୱ ନିଦର୍ଶନ କରିବା ଦର୍ଶନର ବିଭାଗ ବୋଲି ଧରାଯାଏ । ଅନ୍ୟ ଦିଗରେ ସାହିତ୍ୟ ନିୟତ ପ୍ରବାହମାନ, ଗଭୀର ଜୀବନ-ସ୍ରୋତରେ ନିମଜ୍ଜିତ ହୋଇ, ଇନ୍ଦ୍ରିୟ ପ୍ରତ୍ୟକ୍ଷୀଭୂତ ବିଷୟ-ଜଗତର ରୂପ-ରସ-ସ୍ପର୍ଶ-ଗନ୍ଧ-ଶବ୍ଦ ବିଭବରେ ଓତପ୍ରୋତ ନିଜକୁ ହରାଇ ଦେଇ, ଇଚ୍ଛା-କ୍ରିୟା-ଜ୍ଞାନ ଇତ୍ୟାଦି ବିବିଧ ମାନସିକ ଗତି ଓ ନିର୍ଦ୍ଦେଶ ହୃଦୟଙ୍ଗମ କରି, ନାନା ରୂପ-ବହୁମୁଖିତାରେ ସୌନ୍ଦର୍ଯ୍ୟ ସୂତ୍ର ଧାରଣ କରିଥାଏ। ଉପନିଷଦ୍‌ରେ କୁହାଯାଇଅଛି, ପ୍ରତ୍ୟେକ ସୃଷ୍ଟି ବସ୍ତୁ ପଞ୍ଚ ପଦାର୍ଥ ନିର୍ମିତ-ସତ୍, ଚିତ୍, ଆନନ୍ଦ, ନାମ, ରୂପ । ନାମ ଓ ରୂପ କ୍ଷଣିକ ଅସ୍ଥାୟୀ ପରିଚୟର ଚିହ୍ନମାତ୍ର। କିନ୍ତୁ ସତ୍, ଚିତ୍, ଆନନ୍ଦର ଶାଶ୍ୱତ ପ୍ରକାଶ ଚିରନ୍ତନ ସୃଷ୍ଟି-ପରମ୍ପରାରେ ହୁଏ । ବ୍ୟଷ୍ଟି ଚେତନାର ଫଳକରେ ପ୍ରତିଫଳିତ ହୋଇ ଏହି ଜ୍ୟୋତିଃ-ପ୍ରକାଶ ସହସ୍ର ଧାରାରେ ହୀରକ ଖଣ୍ଡର ମୟୂଖ ପରି ବିକୀରିତ ହୁଏ। ଜାଜ୍ୱଲ୍ୟମାନ, ବହୁମୁଖୀ ଏହି ପ୍ରକାଶକୁ ଘେନି ସାହିତ୍ୟସ୍ଥୂଳ ନାମରୂପ ପ୍ରଭେଦଠାରୁ ଅତି ସୂକ୍ଷ୍ମ ଏକୀକୃତ ତତ୍ତ୍ୱ ପର୍ଯ୍ୟନ୍ତ ଜୀବନର ସକଳ ବିଭବ ଓ ଅନୁଭବକୁ ଆଲିଙ୍ଗନ କରି ନିଜ କଳେବରର ସୌଷ୍ଠବ, ଶ୍ରୀ, କାନ୍ତି ସମ୍ପାଦନ କରେ । ଏହିଠାରେ ପୁଣି ଏକ ଦିଗରେ ସାହିତ୍ୟ ଓ ଅନ୍ୟ ଦିଗରେ ନୀତି, ଇତିହାସ, ମନସ୍ତତ୍ତ୍ୱ, ଭୂତତ୍ତ୍ୱ, ଶରୀରତତ୍ତ୍ୱ ଇତ୍ୟାଦି ବିଭିନ୍ନ ବିଜ୍ଞାନ ମଧ୍ୟରେ ସାଧାରଣ ପ୍ରଭେଦ ଅବଧାରିତ ହେବା ଆବଶ୍ୟକ। ବିଜ୍ଞାନ କେବଳ ପାର୍ଥିବ ଓ ବାସ୍ତବ । ବିଜ୍ଞାନ ଦେଶ-କାଳ-କାର୍ଯ୍ୟ-କାରଣ ନିୟନ୍ତ୍ରିତ ଜାଗତିକ ପରିବର୍ତ୍ତନ, ପରିବର୍ଦ୍ଧନ, ଅବସ୍ଥା, ଘଟଣାରାଜିର ବିଶ୍ଳେଷଣ କରେ। କିନ୍ତୁ ସାହିତ୍ୟ ସୃଷ୍ଟିର ଅତଳ ଗଭୀରତାରେ ପ୍ରବେଶ କରି ସୌନ୍ଦର୍ଯ୍ୟ ସ୍ୱରୂପ ସ୍ୱର୍ଣ୍ଣମୟ ସୂତ୍ର ନିବନ୍ଧନ ପ୍ରକୃତି-ସୃଷ୍ଟ ବୈବିଧ ଅନୁଭବ କରିବା ସଙ୍ଗେ ସଙ୍ଗେ ତହିଁର କେନ୍ଦ୍ରୀଭୂତ ଏକତା ଭୁଲିଯାଏ ନାହିଁ।

ସାହିତ୍ୟର ଦୁଇଟି ବିଭାଗ ଧରା ଯାଇଥାଏ—ଗଦ୍ୟ ଓ ପଦ୍ୟ। ଏପରି ବିଭାଗୀକରଣ କେବଳ ଆକୃତି ପରିଚୟର ଗୋଟାଏ ଚିହ୍ନ ମାତ୍ର। ବିଶଦ ଭାବରେ ଦେଖିଲେ ଗଭୀର ଭାବୋଚ୍ଛ୍ୱାସ, ଧ୍ୱନି-ମଧୁରତା, କଳ୍ପନା-ଶକ୍ତି, ରହସ୍ୟ-ବୋଧ

ଇତ୍ୟାଦି ପଦ୍ୟର ବିଭିନ୍ନ ଗୁଣ ଓ ବିଜ୍ଞାନ-ପ୍ରଣାଳୀ, ତର୍କ-ଅବଲମ୍ବନ, ଭାବ-ସଂଯମ ଓ ବାସ୍ତବ-ସଂକ୍ଷେପ ଇତ୍ୟାଦି ଗଦ୍ୟର ବିଭିନ୍ନ ଗୁଣ ମଧ୍ୟରେ ସାମଞ୍ଜସ୍ୟ ଅଛି । ସୂକ୍ଷ୍ମ ଦୃଷ୍ଟିରେ ସାହିତ୍ୟର ଉଦ୍ଦେଶ୍ୟ ଇନ୍ଦ୍ରିୟ ମନ, ବୁଦ୍ଧିମୂଳକ ଜୀବନକୁ ଅଚିନ୍ତ୍ୟ ମଧୁର ଆନନ୍ଦ-ଅମୃତରେ ପ୍ଲାବନ କରିବା । ଏହି ଦୃଷ୍ଟିରେ ସାହିତ୍ୟ ମାତ୍ରେ କାବ୍ୟମୟ ବୋଲି କୁହାଯାଇପାରେ । ପ୍ରକୃତ ସାହିତ୍ୟରେ ଚିନ୍ମୟ ଆନନ୍ଦ, ଅଖଣ୍ଡ ଆତ୍ମାରାମ, ଆମୋଦ, କଳ୍ପନାର ଅନ୍ତର୍ଦୃଷ୍ଟି ରହିବା ଆବଶ୍ୟକ ଏହା ସବୁ କାବ୍ୟର ଲକ୍ଷଣ । ଏଣୁ ସାହିତ୍ୟ ମାତ୍ରେ କାବ୍ୟମୟ । ଅବଶ୍ୟ ରଚନା ପରିପାଟୀ ଭେଦରେ କାବ୍ୟର ରୂପାନ୍ତର ହୋଇଥାଏ । ଚରିତ୍ର ଚିତ୍ରଣ, ମାନୁଷିକ ସ୍ୱଭାବ, ଘଟଣାର ଯଥାଯଥ ସନ୍ନିବେଶ ଘେନି ନାଟକ, ଦୃଶ୍ୟ ବର୍ଣ୍ଣନ, କଳ୍ପନାର ଅବାଧ ସ୍ୱଚ୍ଛନ୍ଦ ଗତି, ମୋହ-ଆବେଶ, କଠୋର ଜୀବନର ଅସାଧ୍ୟ ସାଧନର ପ୍ରଚେଷ୍ଟା ଘେନି ଔପନ୍ୟାସିକ କାବ୍ୟ; ପ୍ରାଚୀନ ପ୍ରତିଷ୍ଠିତ ରୁଚି, ମାଧୁର୍ଯ୍ୟ, ଭାବାପନ୍ନ ଔଦାର୍ଯ୍ୟ ନୈତିକ ଶିକ୍ଷା, ଆଦର୍ଶ-ଭାବ ଘେନି, ମହାକାବ୍ୟ; ହୃଦୟ ବିଗଳିତ ତରୁଣ ଗୀତି, ବଳିଷ୍ଠ ବ୍ୟକ୍ତିତ୍ୱର ଗଭୀର ଆକାଂକ୍ଷା ଅନୁପ୍ରାଣତା ଘେନି ଖଣ୍ଡ-କବିତା ପ୍ରଣୀତ ହୋଇଥାଏ । ଏହାସବୁ କାବ୍ୟକୃତିର ବିବିଧ ପ୍ରଣୟନ ମାତ୍ର । କାବ୍ୟ ଶରୀରୀକୃତ ଆନନ୍ଦ । ମନୁଷ୍ୟର ମନ ଓ ବୁଦ୍ଧି ସୀମାବଦ୍ଧ । ତହିଁର ଅନବଧାରଣୀୟ ସତ୍ ଓ ଚିତ୍ ଆନନ୍ଦ ସ୍ୱରୂପ । ପରମ ଜ୍ଞାତା ଜ୍ଞାତବ୍ୟ ନୁହେ, ପରମଦ୍ରଷ୍ଟା ଦ୍ରଷ୍ଟବ୍ୟ ନୁହେ ଏ କଥା ନ୍ୟାୟ ପ୍ରତିପାଦିତ । ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଇତ୍ୟାଦି ଅବସ୍ଥାତ୍ରୟର ଭିତ୍ତିସ୍ୱରୂପ ତୁର୍ଯ୍ୟାବସ୍ଥା । ତହିଁରେ ଜ୍ଞାତା-ଜ୍ଞେୟ-ଜ୍ଞାନ, ଦ୍ରଷ୍ଟା-ଦୃଷ୍ଟ-ଦର୍ଶନ ସମୀକୃତ ହୁଏ । ଦ୍ୱୈତଭାବ ସମୂଳେ ବିନଷ୍ଟ ହୁଏ । ସେହି ଅବସ୍ଥାରେ ସଚ୍ଚିଦାନନ୍ଦ ପଦାର୍ଥର ସମ୍ପୂର୍ଣ୍ଣ ଅବବୋଧ ସମ୍ଭବ; କିନ୍ତୁ ସାଧାରଣ ଜୀବନ ପକ୍ଷରେ ତାହା ଅତି ଗହନ । ସ୍ଥୂଳ ଭାବାପନ୍ନ ଶରୀର-ବୋଧ ଘେନି ପ୍ରାଣୀ ଶୈଶବଠାରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ "ଉତ୍ତିଷ୍ଠତ ଓ ଜାଗ୍ରତ" ହୋଇ ଜୀବନର ନିଷ୍ଠୁର ପଥରେ କେନ୍ଦ୍ର ଲକ୍ଷ୍ୟରେ ଚାଲି ଚାଲି ସୂକ୍ଷ୍ମରୁ ସୂକ୍ଷ୍ମତର ସତ୍ୟ ଅନୁସନ୍ଧାନ କରେ । ଏହାର ପ୍ରତିବନ୍ଧକ ଅଥଚ ସହାୟକ ରୂପେ ଅନାଦି କାଳ ସଞ୍ଚିତ ଓ ପ୍ରବାହିତ ପ୍ରବୃତ୍ତି ନିଚୟ, ସଂସ୍କାର ସମୂହ ପ୍ରାରବ୍ଧ-ସଞ୍ଚିତ-ଆଗାମୀ କର୍ମରୂପରେ ରହିଥାଏ । ପ୍ରତିବନ୍ଧକକୁ ଅତିକ୍ରମ କରିବାକୁ ହେଲେ ଚିତ୍ତ-ଶୁଦ୍ଧି ଆବଶ୍ୟକ । କାବ୍ୟ ଏହି ଚିତ୍ତ-ଶୁଦ୍ଧି ନିମନ୍ତେ ବିଶେଷ ସାହାଯ୍ୟ କରେ । ମନୁଷ୍ୟର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ-ବୋଧ ପ୍ରବୃତ୍ତିକୁ ଚରିତାର୍ଥ କରି, ତହିଁ ସଙ୍ଗେ ଅସତ୍-ତାମସ-ବିନାଶଶୀଳରୁ ସତ୍-ଜ୍ୟୋତି-ଅମୃତକୁ ଭିନ୍ନ କରି, ମନୋହର ଓ ପ୍ରିୟ-ଦର୍ଶନ ଭାବରେ ତାହାକୁ ଚିହ୍ନାଇ, ପରମର ସୂଚନା ଦେଇ କାବ୍ୟ ସକଳ ପଙ୍କିଳତା ଓ ଆବର୍ଜନା ଦୂର କରେ । କୁହାଯାଇଅଛି, କାବ୍ୟ ଅଙ୍ଗୀଭୂତ ଆନନ୍ଦ । ଭାଷା କାବ୍ୟର ଏହି ଅଙ୍ଗ ମାତ୍ର ।

ଭାଷା ଧ୍ୱନିମୂଳକ । ଦୃଷ୍ଟ ପଦାର୍ଥର ବାଚ୍ୟସାମଞ୍ଜସ୍ୟ-କାରକ ଶବ୍ଦାବଳୀରେ ଶୃଙ୍ଖଳିତ ସମନ୍ୱୟର ପ୍ରକାଶ ଭାଷା । ସାଧାରଣ ଦୃଷ୍ଟିରେ ଭାଷା ଭାବର ଅଭିବ୍ୟକ୍ତି ଭାବରେ ଜୀବନର ବିଭିନ୍ନ କ୍ଷେତ୍ରରେ ପ୍ରତି ନିମିଷରେ ଆବଶ୍ୟକ, ଯେହେତୁ ଜୀବନ ଭାବର ପୂର୍ଣ୍ଣତା ମାତ୍ର । କିନ୍ତୁ ଭାଷାର ପୂର୍ଣ୍ଣାଙ୍ଗ ତାତ୍ପର୍ଯ୍ୟ, ପ୍ରତ୍ୟେକ ପଦର ଅର୍ଥ-ଗୌରବ, ଆଶୟ, ପ୍ରସାର ଜାଣିବାକୁ ହେଲେ ଭାଷାର ସାହିତ୍ୟିକ ବ୍ୟବହାର ପ୍ରତି ଦୃଷ୍ଟି ଦେବାକୁ ହୁଏ । ଦାର୍ଶନିକ ମତରେ ଭାଷା ଶବ୍ଦ-ବ୍ରହ୍ମର, ସମ୍ମିଳିତ ଶିବ-ଶକ୍ତିରୁ ଜାତ ନାଦର ପ୍ରକାଶମାତ୍ର । ଭାଷାର ଲାଳିତ୍ୟ, ସ୍ୱର-ସନ୍ଦର୍ଭ ଏଥିରୁ ବୁଝାଯାଏ । କଳାର ସାହଚର୍ଯ୍ୟରେ ଭାଷାର ଏହି ସବୁ ଭଙ୍ଗୀ ଓ ବିନ୍ୟାସ ପରିସ୍ଫୁଟ ହୁଏ ।

କଳା କଅଣ ? ଚୈତନ୍ୟ ସ୍ତବକ ମକରନ୍ଦ ଏକମାତ୍ର ତତ୍ତ୍ୱ ସ୍ୱରୂପ ସ୍ଥୂଳ ପ୍ରକୃତି-ବିକୃତିର ପ୍ରକ୍ରିୟା ବଶରୁ ଅଶେଷ ବୈବିଧ୍ୟ ସଙ୍କ୍ରାନ୍ତ ସ୍ଥୂଳ ଜଗତରେ ପରିଣତ ହୁଏ । ପ୍ରକୃତିର ଏହି ବିଭିନ୍ନ ପ୍ରକାଶରେ ଜୀବନର ଦାୟିତ୍ୱ, ଆକାଂକ୍ଷା ଆବଶ୍ୟକତାର ସଂଯୋଜନାରେ ଯଥୋଚିତ ସଞ୍ଚୟ କରି ରୂପ ସମ୍ମୋହନ କରିବା କଳାର କାର୍ଯ୍ୟ । ବାସ୍ତବିକ ବିଶ୍ୱର ବୈଚିତ୍ର୍ୟ କି ଅତୁଳନୀୟ ! ଭୌଗୋଳିକ, ଐତିହାସିକ, ଜାତୀୟ, ମାନବୀୟ ବୈଜ୍ଞାନିକ, ପ୍ରାକୃତିକ ସୂକ୍ଷ୍ମ ପ୍ରଭେଦର ବିଶ୍ୱ କି ଜଟିଳଜାଳ ! ଆଧୁନିକ ବିଜ୍ଞାନ ବିଶ୍ଳେଷଣର ପନ୍ଥା ଅବଲମ୍ବନ କରି କରି ଅଣୋରଣୀୟାନ୍ ବିଦ୍ୟୁତ୍‌ବିନ୍ଦୁରେ ଉପନୀତ ହୋଇଅଛି । ଯେତେବେଳେ ଏକବିନ୍ଦୁ ଅନ୍ୟଠାରୁ ପୃଥକ୍, ଏହି ବିନ୍ଦୁ ସମୂହର ଘାତ-ପ୍ରତିଘାତ ତଥା ଘନ ସମାବେଶ ଜନିତ ପଦାର୍ଥର ପାର୍ଥକ୍ୟ ସମ୍ବନ୍ଧରେ ବା କି ସନ୍ଦେହ ରହିପାରେ ? ସାଗର-ଜଳଧର ଭୂବଳୟର ଅସୀମ ଆବର୍ତ୍ତନ, ନୀଳନଭ, ସୁଦୂର ଭୂଧର, ସ୍ମିତ ଶ୍ୟାମଳ କେଦାର, ସୁନ୍ଦର ସୁଗନ୍ଧ ପ୍ରସୂନ, କଳ ନିନାଦିନୀ ନିର୍ଝରିଣୀ, ତଡ଼ିଲ୍ଲେଖା ଶୋଭୀ ତମସାମୟ ପ୍ରାବୃଟ ନିଶୀଥ, ପ୍ରବଳ ବାତା ବିକ୍ଷୋଭିତ ରତ୍ନାକରଙ୍କ ଭୀମ-କାନ୍ତ ଦୃଶ୍ୟ ଦେଖିଲେ ମନରେ କି ଅପୂର୍ବ ଭାବାବେଶର ଉଦୟ ହୁଏ ! କାଳର ଅନାଦି ଅନନ୍ତ ଧାରରେ, ଦେଶର ଅସୀମ ବିସ୍ତୃତ ଗର୍ଭରେ ନାୟକ-ନାୟିକା, ଉଚ୍ଚ ନୀଚ, ଧନୀ-ଦରିଦ୍ର ଅସଂଖ୍ୟଜନ ସମୂହର ଚିନ୍ତା ଓ କ୍ରିୟାର ଅନୁଭୂତି ମୂଳରେ କଳ୍ପନାର କି ପ୍ରସାରିତ ପ୍ରଶେଦୃଷ୍ଟି ରହିଅଛି ! ତଥାପି ଏହି ସସାଗରା ପୃଥ୍ୱୀ ବିଶ୍ୱରୂପର ଗୋଟାଏ କ୍ଷୁଦ୍ରାଦପି କ୍ଷୁଦ୍ରଅଂଶ । ଏହିପରି, ଏହାଠାରୁ କୋଟି କୋଟି ଗୁଣ ବଳି କୋଟି କୋଟି ପୃଥ୍ୱୀ ଗ୍ରହ ଜ୍ୟୋତିଷ-ନକ୍ଷତ୍ର ମଣ୍ଡଳାକାରରେ ବିଶ୍ୱଚକ୍ରରେ ନିୟତ ଭ୍ରାମ୍ୟମାଣ, ଏ କଥା ଭାବିବାବେଳେ ମନୁଷ୍ୟ ସ୍ତମ୍ଭୀଭୂତ ହୁଏ । ଏହି ସୂକ୍ଷ୍ମତମ ପାର୍ଥକ୍ୟ ସମନ୍ୱିତ ଅତି ସର୍ବବ୍ୟାପକତା ଦ୍ୱାରା ମନୁଷ୍ୟର ଚକ୍ଷୁ-ମନ-ବୋଧଶକ୍ତିକୁ ଉଚ୍ଛ୍ୱସିତ କରି, ଠିକ୍

ଅନୁପାତ-ରୁଚି-ସୌନ୍ଦର୍ଯ୍ୟ ଅନୁକୂଳରେ ତାହାକୁ ସଂଗ୍ରହ କରିବାରେ କଳାର କି ଗଭୀର ଅର୍ଥ ଅଛି, ତାହା ସହଜରେ ବୁଝିହୁଏ ନାହିଁ । ଉତ୍କୃଷ୍ଟ କଳା ପ୍ରତିଭା ଜନିତ, ପ୍ରତିଭା ଗମ୍ୟ । ତାହା ଚିନ୍ତା, ମାଧ୍ୟମ କିମ୍ବା ଆଲୋଚନାକୁ ଅପେକ୍ଷା କରେ ନାହିଁ । କଳା ସୃଷ୍ଟିରେ ଚିନ୍ତା, ଆଲୋଚନା ବିଶ୍ଳେଷଣ, ସଂଶ୍ଳେଷଣ ଯେ ନ ଥାଏ, ଏପରି ନୁହେ କିନ୍ତୁ ଏହିସବୁ ମଧ୍ୟ ତହିଁ ମଧ୍ୟରେ । କଳାସୃଷ୍ଟିର ପ୍ରଥମ ଚେତନା, ଅନ୍ତିମ ମୂର୍ଚ୍ଛନାରେ ସେ ସବୁର ଅବକାଶ ରହେ ନାହିଁ । ସେଥିରେ ସହଜ ସରଳ ଆନନ୍ଦ ସ୍ୱତଃ ଫୁଟି ଉଠେ । ବିବେଚନାର ଆପାତ ସଂଘର୍ଷରେ ଏହି ଆନନ୍ଦର ରସାଭାସ ହୁଏ । ଉପାଦାନ ସଂଗ୍ରହରେ ଅବଶ୍ୟ କଳା ସହସ୍ର ଦିଗକୁ ଦୃଷ୍ଟି ନିକ୍ଷେପ କରେ; ଆଲୋକ ଓ ଛାୟା, ରଙ୍ଗ ଓ ବିଭବ ସଂପାଦନ କରେ; ଦୃଷ୍ଟିର ବିଭିନ୍ନ କୋଣରୁ ପରୀକ୍ଷା କରି ଉପାଦାନ ଗ୍ରହଣ କିମ୍ବା ପରିହାର କରେ । କିନ୍ତୁ କଳାର ଶେଷ ସ୍ପନ୍ଦନ, ଅନୁଭୂତି ଦ୍ୟୁଲୋକ-ଉଦ୍ଭାସିତ ଶରତ ସନ୍ଧ୍ୟାର ଶାନ୍ତ ନିର୍ମଳ ଆଲୋକ ପରି ସ୍ୱଚ୍ଛ, ମନୋରମ । ପରସ୍ପର ପୃଥକ୍ ବା ବିରୁଦ୍ଧ ସହସ୍ର ସ୍ୱରକୁ ମିଶାଇ କଳା ଗୋଟିଏ ମଧୁର ସଙ୍ଗୀତ-ପ୍ରବାହ ସୃଷ୍ଟି କରେ । ଅନ୍ତରାତ୍ମା ଏହି ସଙ୍ଗୀତ ଶ୍ରବଣରେ ମୁଗ୍ଧ ହୁଏ । ସତ୍ୟ-ଶିବ-ସୁନ୍ଦର ଛବି ତହିଁ ସମ୍ମୁଖରେ ଅଙ୍କିତ ହୁଏ । ଏହିପରି କଳା ଜୀବନର ଅନୁଭୂତି ମଞ୍ଜୁଷାରୁ ଭାଷା-ସୂତ୍ରରେ ଉପାଦାନମଣି ସଂଗ୍ରହ କରି ରସସ୍ପର୍ଶରେ ସାହିତ୍ୟ ରତ୍ନମାଳାକୁ ଗ୍ରଥିତ କରେ । ରସ ଜୀବନର ଅକ୍ଷୟ ସମ୍ପଦ । ଦୃଷ୍ଟଜଗତରେ ଯେଉଁ ଆନନ୍ଦ ମନୋହାରିତା ରୂପରେ ପ୍ରକାଶିତ ହୁଏ, ଜୀବନ ସାର ସଂଗ୍ରହ କରି ତାହା ରସ ରୂପରେ ପ୍ରବର୍ତ୍ତିତ ହୁଏ । ପ୍ରାଚୀନ ଅନୁଭବୀ ଆଳଂକାରିକମାନେ ମନୁଷ୍ୟର ମନ ଓ ବୁଦ୍ଧିଗମ୍ୟ ଅତ୍ୟନ୍ତ ପରିଣତ ଅନୁଭୂତିକୁ ଆଦି, କରୁଣ, ବୀର, ବୀଭତ୍ସ, ଶାନ୍ତ ଇତ୍ୟାଦି ରସର ନବଧାରେ ବ୍ୟକ୍ତ କରିଅଛନ୍ତି । ରସ ସାହିତ୍ୟର ଆତ୍ମା, ଭାଷା ଅଙ୍ଗ, ଅଳଙ୍କାର ମଣ୍ଡନ ବୋଲି କହି ଅଛନ୍ତି । ଏହିସବୁର ଯଥୋଚିତ ସମାବେଶ ଶୈଳୀନିବନ୍ଧନ, ଛନ୍ଦ ଇତ୍ୟାଦି ଅନେକ ବୈଜ୍ଞାନିକ ତଥ୍ୟ ସାପେକ୍ଷ । କିନ୍ତୁ ଏସବୁ ବିଶଦ ଭାବରେ ଏଠାରେ ବିସ୍ତାର କରିବା ଆବଶ୍ୟକ ନାହିଁ ।

ଶେଷରେ ଏତିକି କୁହାଯାଇପାରେ, ସାହିତ୍ୟ ଦୃଷ୍ଟ ଓ ଭାବ ଜଗତର ବହୁମୁଖୀ ବୈବିଧ, ଅନ୍ତର୍ନିହିତ ସୌନ୍ଦର୍ଯ୍ୟ, ସମୃଦ୍ଧିର ଚିତ୍ରଣ କରେ; କେବଳ ବହିର୍ମୁଖୀ ନୁହେ, ଅନ୍ତର୍ମୁଖୀ ଜଗତର ଜଟିଳ କୁହେଳିକା ଉଦ୍‌ଭେଦ କରେ; ସତ୍ ଓ ଅସତ୍‌ର ପ୍ରଭେଦ ସ୍ଥିର କରେ; ସଂସାର ଜଞ୍ଜାଳ-କ୍ଲିଷ୍ଟମନ ଆଗରେ ମହତ୍ ଆଦର୍ଶ ଉପସ୍ଥାପିତ କରେ; ନିଷ୍ପୀଡ଼ିତ, କ୍ଷତବିକ୍ଷତ ହୃଦୟରେ ବଳର ସଂଚାର କରେ, ଆଶା-ସଂଜୀବନୀ ଲତାକୁ ମୁକୁଳିତ କରେ, ଆହ୍ଲାଦ ଦିଏ ।

# ସାହିତ୍ୟ ଓ ଜୀବନ

(୨)

ବିଖ୍ୟାତ ଇଂରେଜି ସମାଲୋଚକ ମେଥ୍ୟୁଅର୍ନଲ୍ଡ୍ ସାହିତ୍ୟକୁ ଜୀବନର ସମାଲୋଚନା ବୋଲି କହିଛନ୍ତି । ବାସ୍ତବିକ ସାହିତ୍ୟ ବହୁମୁଖୀ ଜୀବନର ସମ୍ୟକ୍ ଆଲୋଚନା, ଗଭୀର ଅନୁସନ୍ଧାନ । ସାହିତ୍ୟ ଜୀବନର ଚିରନ୍ତନ ଜିଜ୍ଞାସାକୁ ରୂପରେଖ ଦିଏ; ସେ ଜିଜ୍ଞାସାକୁ ଚରିତାର୍ଥ କରିବାପାଇଁ ଜୀବନ ଭଣ୍ଡାରର ଅମୂଲ୍ୟ ମଣି ଆହରଣ କରି ଅନୁଭୂତି-ନିକଷରେ କଷେ । କାବ୍ୟଭାଷାରେ ଏ ଜିଜ୍ଞାସାର ରୂପ—

ଉନ୍ନୁକି ଉଠୁଚି ଚିନ୍ତା—କିଏ ? କାହାପାଇଁ ?
କେଉଁଆଡ଼େ ? କିବା ଲକ୍ଷ୍ୟ ? ସର୍ଜ୍ଜନା କିପାଇଁ ?

ଜୀବନର ଦୃଷ୍ଟିକୋଣ ବିଭିନ୍ନ । ଐତିହାସିକ ଜୀବନକୁ ଯେଉଁ ଦୃଷ୍ଟିରେ ଦେଖେ ବୈଜ୍ଞାନିକ ଠିକ୍ ସେହି ଦୃଷ୍ଟିରେ ଦେଖେ ନାହିଁ । ସାମାଜିକ ଓ ଆର୍ଥନୀତିକ ଜୀବନର ଭିନ୍ନ ଭିନ୍ନ ପାଖ ପର୍ଯ୍ୟବେକ୍ଷଣ କରନ୍ତି । ଭୌତିକବାଦୀ ଯାହା ପ୍ରତିପାଦନ କରେ, ଆଧ୍ୟାତ୍ମିକ ତାହା ପସନ୍ଦ କରେ ନାହିଁ । ସେହିପରି ଦାର୍ଶନିକ, ଗାଣିତିକ, ବୁଦ୍ଧି-ବ୍ୟବସାୟୀ ଜୀବନର ଗତି ଓ ଆଦର୍ଶ ସମ୍ବନ୍ଧେ ମତାନ୍ତର ପୋଷଣ କରନ୍ତି । ଏପରି କରିବା ସ୍ୱାଭାବିକ । ରୁଚିର ବୈଚିତ୍ର୍ୟରେ ସରଳ-କୁଟିଳ ନାନା-ପନ୍ଥା ମନୁଷ୍ୟ ଆଗରେ ପଡିଛି । ଗୋଟିଏ ମାର୍ଗ ଧରି ମନୁଷ୍ୟ ଚାଲେ । ତଥାପି ପୂର୍ଣ୍ଣତାରେ ଦେଖେ ସବୁ ପନ୍ଥା ଏକ ଲକ୍ଷ୍ୟରେ ସଂଯୋଜିତ । ଜୀବନର ମୂଳ ଏକ, ଅଭିନ୍ନ, ଅଦ୍ୱୈତ । ଏକ ବହୁରେ ପରିଣତ ହୁଏ । ବହୁ ପୁଣି ସାଙ୍ଗ ଖୋଜିଲେଡ଼ି ଏକରେ ପହଞ୍ଚେ । ଏହି କେନ୍ଦ୍ର-ପରିଧି ସଂଯୁକ୍ତ ବିପରୀତ ଶକ୍ତିର ଆକର୍ଷଣ—ଆକର୍ଷଣରୁ ହିଁ ଜୀବନ-ଚକ ଘୂରୁଥାଏ । ବ୍ୟାପ୍ତି, ଶକ୍ତି, ଆକର୍ଷଣ, ସଂଘର୍ଷ, କେନ୍ଦ୍ର, ପରିଧି, ସଂଯୋଗ, ବିଯୋଗ, ଘୂର୍ଣ୍ଣନ ସାହିତ୍ୟ-ତୂଳିକାରେ ଯେପରି ରମଣୀୟ ଚିତ୍ତ-ବିନୋଦକ ଭାବରେ ରଞ୍ଜିତ ହୋଇପାରେ, ଅନ୍ୟ କୌଣସି ତୂଳିକାରେ ସେପରି ହୋଇପାରେ ନାହିଁ । ଇତିହାସ, ସମାଜନୀତି, ଅର୍ଥନୀତି, ବିଜ୍ଞାନ, ଗଣିତ, ଦର୍ଶନ-ସାହିତ୍ୟ ଏଥିରୁ କେଉଁଟିକୁ ଅବହେଳା କରେ ନାହିଁ; ସବୁଥିରୁ ଯଥାଯଥ ଉପାଦାନ ସଂଗ୍ରହ କରେ । ପୁଣି ସେ ସବୁକୁ ନିଜର ମୌଳିକ ରଚନାତ୍ମକ ମନୋହର ଛାଞ୍ଚରେ ଢ଼ାଳି ଲାବଣ୍ୟ-ରସାଣିତ ଅପରୂପ କମନୀୟ ମୂର୍ତ୍ତି ଗଠନ କରେ । ଇତିହାସ ମାନବ-ଜୀବନର କ୍ରମପରଂପରାର ଇଙ୍ଗିତ ଦେବାକୁ ଚେଷ୍ଟାକରେ ସତ; କିନ୍ତୁ କେବଳ ଘଟନା-ବହୁଳତାରେ, ସମୟ-ନିରୂପଣରେ, କେତୋଟି ବିଚ୍ଛିନ୍ନ ସଂକେତ ଦେବାରେ ତାହାର କାର୍ଯ୍ୟ ଶେଷ ହେବା ମଣେ । ଅନ୍ତର୍ଗତ ସତ୍ତା ଅବବୋଧ କରିବାର ଅବକାଶ ପାଏ ନାହିଁ । ବିଜ୍ଞାନର ଚମତ୍କାର ଉଦ୍ଭାବନୀ, ବିଚକ୍ଷଣ ଅନୁଶୀଳନୀ, ବସ୍ତୁ-ତତ୍ତ୍ୱ ଉପରେ ଅସୀମ ପ୍ରଭାବ ଏ

ଯୁଗରେ ବା କିଏ ଅସ୍ୱୀକାର କରିପାରିବ ? ତଥାପି ବିଜ୍ଞାନର ସଙ୍କୁଚିତ ସୀମା ଆଜି ଆଖି ଆଗରେ ଜଳ ଜଳ ଦିଶୁଛି । ଆଦର୍ଶ ଅଭାବରୁ, ଉପଯୁକ୍ତ ପ୍ରୟୋଗ ଅଭାବରୁ, ଅସଦ୍ ବ୍ୟବହାରରୁ ଆଜି ବୈଜ୍ଞାନିକ ଆବିଷ୍କାର ଧରପୃଷ୍ଠରେ ସମର ନିଆଁ ଜାଳିବାରେ କିପରି ସହକାରୀ ହୋଇଛି, ତାହା ବା କାହାର ଅବିଦିତ ? ଅର୍ଥନୀତି ଜୀବନର ଅତି ପ୍ରୟୋଜନୀୟ ସଦ୍ୟ ସମସ୍ୟା ସମାଧାନରେ ପ୍ରବୃତ୍ତ ହୁଏ ସତ; ତଥାପି ପ୍ରବାଦ ଅଛି, ମନୁଷ୍ୟ କେବଳ ଖାଇବାରେ ବଞ୍ଚେ ନାହିଁ, ତାହାର ଆଉ କିଛି ଅଧିକ ଲୋଡ଼ା । ଦର୍ଶନ ନିଗୂଢ଼ ଚିନ୍ତାର ବିସ୍ମୟକର ସୌଧ ତୋଳିବାରେ ଲଗେ ସତ, ତଥାପି ବୁଦ୍ଧି ବୃତ୍ତିର କଠୋର ଶାସ୍ତିରେ, ଭାବ-ପ୍ରବଣତାର ଅଭାବରେ ସାଧାରଣ ଦୃଷ୍ଟିରୁ ତାହା ନୀରସ, କ୍ଳିଷ୍ଟ ବୋଧହୁଏ । ଏଥିପରି ଜୀବନର ପ୍ରତ୍ୟେକ ଦୃଷ୍ଟିକୋଣ ଗୋଟିଏ ଗୋଟିଏ ବିଶିଷ୍ଟ ଅଭିବ୍ୟକ୍ତିର ଚର୍ଚ୍ଚା କରୁଥିଲେ ହେଁ ପ୍ରତ୍ୟେକ ସୀମାବଦ୍ଧ ଏକଦେଶୀ । ସାହିତ୍ୟ ଏଥିପାଇଁ ଉତ୍କୃଷ୍ଟ ଯେ, ତାହା ଏ ସବୁ ଚର୍ଚ୍ଚାର ଆଲୋକରେ ନିଜକୁ ଆଲୋକିତ କରିବା ସଙ୍ଗେ, ଜ୍ଞାନ-ବାରିଧିରେ ବୁଡ଼ି ନିଜକୁ ଅସୀମ, ମହାନ୍, ଗମ୍ଭୀର କରିବା ସଙ୍ଗେ ରସ-ସୌନ୍ଦର୍ଯ୍ୟ-ଆନନ୍ଦ ପରଶମଣିର ସଂସ୍ପର୍ଶରେ ନିଜକୁ ରସାଳ, ସୁନ୍ଦର, ପ୍ରୀତିକର କରେ ।

ସାହିତ୍ୟର ପ୍ରକାରନ୍ତର ବିଭିନ୍ନ ଗଦ୍ୟ ଓ ପଦ୍ୟ, ପୁଣି ତା' ଭିତରେ ପ୍ରବନ୍ଧ, ନାଟକ, ଉପନ୍ୟାସ, ଗଳ୍ପ, କାବ୍ୟ ଇତ୍ୟାଦି । ଆମର ଏ ଛୋଟିଆ ବ୍ୟକ୍ତିତ୍ୱ ଯୁଗରେ ପୁଣି ଏ ସବୁର ଛୋଟିଆ ସଂସ୍କରଣର ବହୁଳ ପ୍ରଚାର ଦେଖୁଚୁ, ଯେପରି ଏକାଙ୍କ ନାଟିକା, ଛୋଟ ଗଳ୍ପ, ଛୋଟ କବିତା, ଇତ୍ୟାଦି । ଏ ପ୍ରତ୍ୟେକ ବିଭାଗର ବୈଶିଷ୍ଟ୍ୟ ଅଛି । ଯୁକ୍ତିଯୁକ୍ତ ଆଲୋଚନା, ଅନୁଶୀଳନ, ବର୍ଣ୍ଣନା ଗଦ୍ୟର ପରିସର ହେଲେ, ଭାବ, ଧ୍ୱନି, କଳ୍ପନା, ରୂପ-ଛଟା ପଦ୍ୟର । ପୁଣି ନାଟକ ଜୀବନର ଘାତପ୍ରତିଘାତିକ, ପରସ୍ପର ବିରୋଧୀ ଚରିତ୍ର ଓ ଘଟଣା ସମାବେଶକୁ ଦୃଶ୍ୟପଟରେ ଅଙ୍କିତ କଲେ, ଉପନ୍ୟାସ ଜୀବନର ବିଶାଳତା, ବୈଚିତ୍ର୍ୟ, ବାସ୍ତବ ଆଦର୍ଶର ସମ୍ମିଶ୍ରଣ ମାନସ-ପଟରେ ଫୁଟାଏ । ସେହିପରି କବିତା ବିଦ୍ୟୁତ୍ ଝଟକ ଭଳି କୌଣସି ଭାବ ତରଙ୍ଗରେ ଚଞ୍ଚଳ ଉନ୍ମାଦନାକୁ ଚିତ୍ତାକାଶରେ ଖେଳାଇ ଦେଉଥିଲେ; ଗଳ୍ପ ଗୋଟାଏ ବିଚ୍ଛିନ୍ନ ଘଟଣାର, ମୁହୂର୍ତ୍ତର, ବ୍ୟଷ୍ଟି-ଅନୁଭୂତିର ତାତ୍ପର୍ଯ୍ୟ, ଅନ୍ତରତମ ଅଭିପ୍ରାୟ ସଂକ୍ଷେପରେ ପରଶେ । କିନ୍ତୁ ମନେ ରଖିବାକୁ ହେବ, ଏ ସବୁ ବହିରାବରଣର ରୂପାନ୍ତର । ଭିତରେ ସବୁଗୁଡ଼ିକ ସାହିତ୍ୟ-ଗୋଲାପର ବିକଚ ପାଖୁଡ଼ା ପରି ।

ଜୀବନର ଭିତ୍ତି ସତ୍, ଚିତ୍, ଆନନ୍ଦ । ସତ୍‌କୁ ଚିତ୍‌କୁ ସାହିତ୍ୟ ଆଲୋଡ଼ନ କରେ; ତଥାପି ଆନନ୍ଦରେ ହିଁ ତାହାର ଅସ୍ତିତ୍ୱ, ଅଭିବୃଦ୍ଧି, ଚରମ ବିକାଶ ।

ଜୀବନର ଭିତ୍ତି ସତ୍ୟ, ଶିବ, ସୁନ୍ଦର । ସାହିତ୍ୟ ସତ୍ୟକୁ, ଶିବକୁ ଆଲୋଡନ କରେ, ତଥାପି ସୁନ୍ଦରରେହିଁ ତାହାର ଅସ୍ତିତ୍ୱ, ଅଭିବୃଦ୍ଧି, ଚରମ ବିକାଶ ।

ସୁନ୍ଦର କଅଣ ? ପାଶ୍ଚାତ୍ୟ ମନୀଷୀଗଣ ଏ ପ୍ରଶ୍ନର ଭିନ୍ନ ଭିନ୍ନ ଉତ୍ତର ଦେଇଛନ୍ତି । Plato ସୌନ୍ଦର୍ଯ୍ୟକୁ ଭାବଗର୍ଭିକ (Ideal) କହିଛନ୍ତି, କିନ୍ତୁ ତହିଁରେ ମୂର୍ଚ୍ଛନା ଦେଇ ନାହାନ୍ତି । Croce ସୌନ୍ଦର୍ଯ୍ୟକୁ ପ୍ରତିଭାମୂଳକ (Intuitional) ଅନୁଭୂତି କହିଲାବେଳେ, Kant ତାକୁ ବୁଦ୍ଧି ବୃତ୍ତିଗତ (Rational) ବୋଲି ମତ ଦେଇଛନ୍ତି । Hume ତାହାକୁ ଇନ୍ଦ୍ରିୟଗତ (Sensational) ବୋଲି ନିର୍ଦ୍ଦେଶ କରିଛନ୍ତି । ସୌନ୍ଦର୍ଯ୍ୟ ଘେନି କଳା କଳାର ରୂପ ଅଛି, ଆତ୍ମା ଅଛି । Bradley କଳାର ରୂପକୁ, ଠେକିଛନ୍ତି, ତାହାର ରୂପ ଓ ଆତ୍ମା ମଧ୍ୟରେ ବିରୋଧ ଭାବ ଦେଖିଛନ୍ତି । Bosanquet ଦୁଇଟିର ସମନ୍ୱୟ କରିବାର ଚେଷ୍ଟା କରିଛନ୍ତି । ସେ କହିଛନ୍ତି, କଳାର ବିକାଶ ପଙ୍କଜର ବିକାଶ ପରି । ପଦ୍ମ ପଙ୍କରୁ ଜାତହୁଏ ସତ, ତଥାପି ତାହାର ସୌନ୍ଦର୍ଯ୍ୟ ଓ ସୌରଭ କେଡେ ଆଦରଣୀୟ ! ପଙ୍କ ଓ ବିକଶିତ ଅରବିନ୍ଦ ମଧ୍ୟରେ କି ଆକାଶ-ପାତାଳ ପ୍ରଭେଦ ! ସେହିପରି କଳା ସଂସାରର ଜଞ୍ଜାଳ, ଯନ୍ତ୍ରଣା, ଅଭାବରୁ ଜାତହୁଏ ସତ; ତଥାପି ସ୍ୱର୍ଗରାଜ୍ୟ ଆଡ଼କୁ ତାହା ସର୍ବଦା ଉନ୍ମୁଖ ! ସୌନ୍ଦର୍ଯ୍ୟ ରବିର କନକ-କିରଣରେ ତାହା ସର୍ବଦା ଉଦ୍‌ଭାସିତ ! ସେ ପୁଣି କହିଛନ୍ତି, କଳା ସୃଷ୍ଟିର ଅନ୍ତର୍ନିହିତ, ମହତ୍ ବିଷୟ ମହତ୍ ଶୈଳୀରେ ରଚିତ ହେଲେ କଳାର କୃତିତ୍ୱ ମହତ୍ ହୁଏ । ଏ ଦୃଷ୍ଟିରେ ହିଁ Shakespeareଙ୍କ King Lear ବା Miltonଙ୍କ Paradise Lost ସାହିତ୍ୟ-କଳାର ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ । Hegel କଳାକୁ ଦର୍ଶନ ଠାରୁ ନ୍ୟୂନ ସ୍ଥାନ ଦେଇଛନ୍ତି; ତାଙ୍କ ମତରେ କଳା ସତ୍ୟର ଛାୟା ମାତ୍ର । Scopenhaeur ତାଙ୍କର ସ୍ୱାଭାବିକ ବିଷାଦବାଦ (Pessimism) ଦୃଷ୍ଟିରୁ କଳାକୁ ପଳାୟନବାଦ (Escapism) ବୋଲି ଆଖ୍ୟାତ କରିଛନ୍ତି । Scailler ଓ Scheling କଳାର ଚିରନ୍ତନ ମହତ୍ତ୍ୱ ଉପଲବ୍ଧି କରିଛନ୍ତି ।

ପାଶ୍ଚାତ୍ୟ ବିଶ୍ଳେଷଣରୁ ଦୃଷ୍ଟି ଫେରାଇ ଅତୀତ ଭାରତୀୟ ଚିନ୍ତାରାଜ୍ୟରେ ପ୍ରବେଶ କଲେହିଁ ସାହିତ୍ୟ ଓ କଳାର ଗୌରବ ଓ ମୌଳିକତା ପ୍ରତିପାଦିତ ହୁଏ । ପୃଥିବୀର ପ୍ରଥମ ରଚନା, ଆର୍ଯ୍ୟ ସଭ୍ୟତାର ମୂଳ ବେଦକୁ ଏ ପର୍ଯ୍ୟନ୍ତ ଧର୍ମର ନିଗୂଢ଼ ବନ୍ଧନରେ ଦେଖାଯାଇଛି । କିନ୍ତୁ ତହିଁର କାବ୍ୟିକ ପ୍ରବେଶ (Poetic Approach) କି ଉପାଦେୟ, କି ଶିକ୍ଷଣୀୟ, ତାହା ଆମେ ଆହୁରି ଭଲରୂପେ ହୃଦୟଙ୍ଗମ କରିନାହୁଁ । ଏକ ସତ୍ୟକୁ ବିପ୍ରମାନେ ବହୁଧା କହିଲାବେଳେ, ଏକ ବ୍ରହ୍ମ-ପଦାର୍ଥକୁ ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି, ସୁପର୍ଣ୍ଣ, ଗରୁତ୍ମାନ, ଯମ, ଆଦିତ୍ୟ, ବାୟୁ, ଚନ୍ଦ୍ରମସ୍,

ଆପସ୍ ପ୍ରଜାପତି ଇତ୍ୟାଦି କହିବା ବେଳେ ତପ-ସୃଷ୍ଟିର କି ବୈଚିତ୍ର୍ୟ, କି ବିପୁଳ ବିଭବ ଫୁଟି ଉଠେ, ତାହା କଳ୍ପନାତୀତ । ବେଦରେ ବିଶ୍ୱ-ଜୀବନକୁ ପିତୃତମ ପିତୃଣାମ୍ ମାତୃତମା ମାତୃଣାମ୍, ନୃତମ ନୃଣାମ, ଜ୍ୟୋତିଷ୍ଜ୍ୟୋତି, ମନ୍ମଥମନ୍ମଥ, ତ୍ରିଭୁବନ ସୁନ୍ଦର ଆଖ୍ୟାତ କଲାବେଳେ କାବ୍ୟ—କଳିକା କିପରି ଅପୂର୍ବ ରୂପ—ରସ—ଗନ୍ଧ ଘେନି ପ୍ରସ୍ଫୁଟିତ ହୁଏ, ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ । ପୁଣି ସେହି ବେଦରେ ପୁରୁଷସୂକ୍ତ ପର୍ଯ୍ୟାୟରେ ବିରାଟ ପୁରୁଷ କଳ୍ପନାରେ କବିତାର ଦୀପଶିଖା କିପରି ସ୍ନିଗ୍ଧ ଆଲୋକ ବିକୀରଣ କରି ଜଳି ଉଠୁଛି, ତାହା ବର୍ଣ୍ଣନା କରିବା ଏଠାରେ ସମ୍ଭବ ନୁହେଁ । ସହସ୍ର-ଚକ୍ଷୁ ସହସ୍ର-ପାଦ ପୁରୁଷ ଭୂମିକୁ ସବୁଠାରେ ଛୁଇଁଛନ୍ତି, ଅଥଚ ତହିଁର ଦଶ ଅଙ୍ଗୁଳିରେ ଉତିଷ୍ଠ—ତାହାଙ୍କ ମନରୁ ଚନ୍ଦ୍ରମା ଜାତ, ଆଖିରୁ ସୂର୍ଯ୍ୟ ଜାତ, ଶ୍ରୁତିରୁ ବାୟୁ ଓ ପ୍ରାଣ ଜାତ, ମୁଖରୁ ଅଗ୍ନି ଜାତ—ଅନ୍ଧକାରର ପରପାରରେ ଆଦିତ୍ୟ ବର୍ଣ୍ଣ ଏହି ମହାନ୍ ପୁରୁଷଙ୍କୁ ଚିହ୍ନି-ପାରିଲେ ଅମୃତ ମିଳିବ; ନହେଲେ ଅନ୍ୟ ପନ୍ଥା ନାହିଁ ! ଏଠାରେ ଜୀବ-ନର ଶେଷ ରହସ୍ୟ-ଯବନିକାର ଉନ୍ମୋଚନ, ଅନ୍ତିମ ସମସ୍ୟାର ସମାଧାନର ଭଙ୍ଗୀ ଓ ପ୍ରକାଶ କି ଅନୁପମ ! କିନ୍ତୁ ମନେ ରଖିବାର କଥା, ଏ ପ୍ରକାଶ ଗଣିତର ସୂତ୍ର (Formulae) ଦ୍ୱାରା ହୋଇ ନାହିଁ; (Experiments) ଦ୍ୱାରା ହୋଇ ନାହିଁ; ଦର୍ଶନର ମୀମାଂସା (Postulates) ଦ୍ୱାରା ହୋଇ ନାହିଁ; ନୀତିର ନିୟମ (Principles) ଦ୍ୱାରା ହୋଇ ନାହିଁ; ହୋଇଛି ସାହିତ୍ୟର ବ୍ୟାପକ ରୂପକ ଅନବଦ୍ୟ ଛନ୍ଦରେ । ଏଠାରେ ହିଁ ଜୀବନ ଓ ସାହିତ୍ୟର ଅବିଭାଜ୍ୟ ଯୋଗ ।

ରସାମୃତବୋଧରେ ପୁଣି ପ୍ରାଚୀନ ହିନ୍ଦୁଚିନ୍ତା ସାହିତ୍ୟର ଗମ୍ଭୀରତମ ପ୍ରାଣକୁ ସ୍ପର୍ଶ କରିଛି । ରସ ଓ ଅଳଙ୍କାରର ଗହନ ଆଲୋଚନା ଏଠାରେ କରିବା ଅସମ୍ଭବ । ଶୃଙ୍ଗାର, ରୁଦ୍ର, ବୀର, ବୀଭତ୍ସ, ହାସ୍ୟ, କରୁଣ, ଅଦ୍ଭୁତ, ଭୟାନକ, ଶାନ୍ତ—ଏ ନବଧାରେ ରସ ଆଲୋଚ୍ୟ । ଶରବିଦ୍ଧ କ୍ରୌଞ୍ଚର ଶୋକଜନିତ ଶ୍ଳୋକରେ ମହା-କାବ୍ୟ ରାମାୟଣର ଉପକ୍ରମ ହୋଇ କରୁଣ ରସର ଯେଉଁ ଚିରନ୍ତନ ଉତ୍ସ ଫିଟାଇଛି, ଯମୁନାତଟ ଶ୍ୟାମଳ ଲତାକୁଞ୍ଜ ଉତ୍ସଙ୍ଗରେ ମଧୁର ମୁରଲୀ ନାଦ ଶୃଙ୍ଗାରର ଯେଉଁ ଅତୁଳନୀୟ ସମ୍ଭାର ବାଢ଼ିଛି, ବାସ୍ତବିକ୍ ତା'ର ସମ ଆଉ କଅଣ ଅଛି ? ଏଠାରେ ଏତିକି କୁହାଯାଇ ପାରେ, ରସ ଗୋଟିଏ ସୂତ୍ର ବା ପ୍ରଣାଳୀ ନୁହେଁ; ତାହା ଜୀବନ ଓ ପ୍ରକୃତିର ଅଖଣ୍ଡ ସତ୍ତା । ମନୁଷ୍ୟ ଚିତ୍ତର କ୍ରିୟାକଳାପ, ପ୍ରକୃତିର କ୍ରିୟାକଳାପ ସହିତ ରସ ଅବିଚ୍ଛେଦ୍ୟ ଭାବରେ ଗୁନ୍ଥା । ପ୍ରାଚୀନମାନେ କହିଛନ୍ତି, କୁସୁମ ବିକାଶ ରୂପ ଚିତ୍ତ ବିକାଶରେ ଶୃଙ୍ଗାର, ସମୁଦ୍ରର ବିକ୍ଷୋଭ ରୂପ ଚିତ୍ତ ବିକ୍ଷୋଭରେ ରୌଦ୍ର, ବୃକ୍ଷର ବିସ୍ତାର ରୂପ ଚିତ୍ତ ବିସ୍ତାରରେ ବୀର, ବାୟୁର ବିଶେଷ ରୂପ ଚିତ୍ତ ବିକ୍ଷେପରେ

ଗ୍ରାଭସ୍ଥ, ଏପରି ରସସୃଷ୍ଟି ହୁଏ । ଏଠାରେ ଏତିକି ଦେଖିବାର କଥା, ରସ ମାର୍ଗରେ ସାହିତ୍ୟ କିପରି ପ୍ରାକୃତିକ, ଜୀବନ୍ତ ସ୍ଫୂର୍ତ୍ତି ସ୍ପନ୍ଦିତ !

ମୋର ବିଶ୍ୱାସ, ସଂସ୍କୃତ-ସାହିତ୍ୟରେ ସାହିତ୍ୟର ଏହି ଆଦିମ ପ୍ରକୃତି; ଜୀବନ; ସ୍ଫୂର୍ତ୍ତି ଓ ସ୍ପନ୍ଦନର ଝରଣା ଯେପରି ଝରଝର ବହିଛି ଆଉ କୌଣସି ସାହିତ୍ୟରେ ସେପରି ନାହିଁ । ହାୟ, କି ଦୁର୍ଭାଗ୍ୟରୁ ଆଜି ଆମେ ସଂସ୍କୃତକୁ, ମାତୃଭାଷା ମୃତ ସଭ୍ୟତା ବୋଲି କହିବାର ଗର୍ବ ଅନୁଭବ କରୁଛୁ ! କେଉଁ ଜଟାଧାରୀ ଆମକୁ ଏ ପାଠ ଶିଖାଇଛି ! ସଂସ୍କୃତିର ଅନ୍ୟାନ୍ୟ ଅଭ୍ୟୁଦୟ କଥା ଛାଡ଼, କେବଳ ସାହିତ୍ୟ ଦିଗରୁ ବିଚାର କଲେ, ଭବଭୂତି, ଭାରବୀ, ଶ୍ରୀହର୍ଷ, ବାଣ, ମାଘ, ଭର୍ତ୍ତୃହରି, କାଳିଦାସ— ଏ ଗୋଟିଏ ଗୋଟିଏ ନାମରେ କି ବିରାଟ ବ୍ୟକ୍ତିତ୍ୱ, ସାର୍ଥକତା, ଜୀବନୀ ଶକ୍ତି ରହିଛି, ତାହା ଅନୁଭବୀ ବିନା ଆଉ କିଏ କାହିଁକି ଜାଣିବେ ? ଗ୍ରାହକତା ନଥିଲେ, ନବୁଝିଲେ, ରସିକତା ନ ଥିଲେ, ଜଗତର ଅତି ଉତ୍କୃଷ୍ଟ ଜିନିଷର ମଧ୍ୟ ମୂଲ୍ୟ କଅଣ ? ଅଧିକ ନ କହି କେବଳ ଭର୍ତ୍ତୃହରିରୁ ଗୋଟିଏ ନମୁନା ଦେବି । ବୈରାଗ୍ୟ ଶତକରେ ଲେଖା ଅଛି, କଳଙ୍କ-ରହିତ ବିଦ୍ୟା ମୋର ଅଧିଗତ ହେଲା ନାହିଁ; ମୁଁ ବିତ୍ତ ଅର୍ଜନ କରିପାରିଲି ନାହିଁ; ଆଲୋଳାୟିତ ଲୋଚନା ପ୍ରିୟତମାକୁ ସ୍ୱପ୍ନରେ ସୁଦ୍ଧା ଆଲିଙ୍ଗନ କରିପାରିଲି ନାହିଁ; କେବଳ ପରପିଣ୍ଡଲୋଲୁପ ହୋଇ କାଉ ପରି କାଳ କାଟୁଛି । ଏ କେତୋଟି ପଦରେ କବି ଜୀବନର ସବୁ ବିଭବକୁ ତନ୍ନ ତନ୍ନ ଅନୁସନ୍ଧାନ କରି ଶେଷ ପରିଣତିର ନିଷ୍ଫଳତା କରୁଣ ବ୍ୟର୍ଥତା କି ନିଖୁଣ ଛବିଳ ଆବେଗମୟ ଭାବ ଓ ଭାଷାରେ ଫୁଟାଇଛନ୍ତି, ଅନ୍ୟ କେଉଁ ସାହିତ୍ୟରେ ଏପରି କେତୋଟି ଦୃଷ୍ଟାନ୍ତ ମିଳିବ ?

ସଂସ୍କୃତ-ସାହିତ୍ୟ-ଜନନୀର ସ୍ନେହ-ବତ୍ସଳା କନ୍ୟା ଉତ୍କଳ-ସାହିତ୍ୟର ପ୍ରାଚୀନ ବିଭବ ମଧ୍ୟ ଊଣା ନୁହେ । ମହାଭାରତ କଥିତ ଉତ୍କଳ ରାଜାଙ୍କ ପ୍ରତିଷ୍ଠିତ ଉତ୍କଳ ଦେଶର ଐତିହାସିକ ପରମ୍ପରା ସହିତ ଭାଷା ଓ ସାହିତ୍ୟ ଜଡ଼ିତ ଓ ପରିପୁଷ୍ଟ କୁହାଯାଇଛି, କଳା ଓ ସାହିତ୍ୟ ଅବିଭାଜ୍ୟ । ଶବର ବିଶ୍ୱାବସୁ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରାହ୍ମଣ ମନ୍ତ୍ରୀ ବିଦ୍ୟାଧରଙ୍କ ସ୍ମୃତି ଯେଉଁ ନୀଳମାଧବ ମୂର୍ତ୍ତି ସଙ୍ଗେ ଜଡିତ; ଯେଉଁ ମୂର୍ତ୍ତିକୁ ସ୍ଥାପନା କରି କେଶରୀ ବଂଶ-ଜନକ ଯଯାତି ମହିମୋଜ୍ଜ୍ୱଳ ବିଶାଳ ଜଗନ୍ନାଥ ମନ୍ଦିର ତୋଳିଥିଲେ; ଗଙ୍ଗ-ବଂଶ-ଶେଖର ଅନଙ୍ଗଭୀମ ଯାହାର ସଂସ୍କାର କରିଥିଲେ; ପୁଣି ସେହି ବଂଶର ଲାଙ୍ଗୁଳା ନରସିଂହଦେବ ଯେଉଁ ଅଦ୍ୱିତୀୟ-କଳା-ସୌଷ୍ଠବ-ସମ୍ପାଦିତ ପ୍ରଖ୍ୟାତ କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ; ପୁଣି କଥିତ କେଶରୀ ବଂଶ-ତିଳକ ଲଲାଟେନ୍ଦୁ ଯେଉଁ ଅନୁପମ ନିଃସର୍ଗ ସୁନ୍ଦର କାରୁକାର୍ଯ୍ୟ ଖଚିତ

ଭୁବନେଶ୍ୱର ଦେବାଳୟ ତିଆର କରିଥିଲେ;—ସେହି ସବୁ କଳା-ଉତ୍କର୍ଷ-ଭସ୍ମର ଉପାଦାନକୁ ବକ୍ଷରେ ଧରି ଅଦ୍ୟାପି ଯେଉଁ ଉତ୍କଳ ଇତିହାସ-ପୃଷ୍ଠାରେ ଅମର ହୋଇଛି, ଦୁର୍ବଳ ଓ ନିର୍ଧନ ହେଲେ ମଧ୍ୟ ଜଗତରେ ବିସ୍ମୟ ଉତ୍ପାଦନ କରୁଛି, ତାର ସାହିତ୍ୟ ମଧ୍ୟ ସେହିପରି ଉତ୍କୃଷ୍ଟ, ଧନ୍ୟ, ଶ୍ରେଷ୍ଠ ହେବା କି ବିଚିତ୍ର ? ଯେ କୌଣସି ପ୍ରାଥମିକ ରଚନାରେ ବହୁ ତ୍ରୁଟି ଦେଖାଯାଏ । ଓଡ଼ିଆ ସାହିତ୍ୟର ପ୍ରଥମ ରଚନାରୁ ମାର୍କଣ୍ଡଙ୍କର ଗୋଟିଏ ଧାଡ଼ି ଉଲ୍ଲେଖ କରୁଛି—

କୋଇଲି, ଉଆଁସ ନିଶିରେ ଚନ୍ଦ୍ର ନାହିଁ;
ପୂର୍ଣ୍ଣିମାର ଚନ୍ଦ୍ରମାକୁ କେ ନେଲା ଗ୍ରାସି ?
ପ୍ରଗତ ଲେଖାଠାରୁ ଏହା କେଉଁ ଗୁଣରେ ହୀନ ?

ଏଠାରେ ଜନନୀ ହୃଦୟର ସନ୍ତାନ ପ୍ରତି ଯେଉଁ ସୁକୁମାର ସରଳ ରୁଚିର ବାତ୍ସଲ୍ୟ ଫୁଟି ଉଠିଛି, ତାହା କି ଜୀବନ-ପୁସ୍ତକର ଏକ ମୁଖ୍ୟ ଆଙ୍ଗିକ ଅଧ୍ୟାୟ ନୁହେଁ ? ଦୀନକୃଷ୍ଣ, ଅଭିମନ୍ୟୁ, ଉପେନ୍ଦ୍ର, କବିସୂର୍ଯ୍ୟ କି ଜୀବନକୁ ବାଦ୍ ଦେଇ ତାଙ୍କର ଅମର କବିତା ସୃଷ୍ଟି କରିଛନ୍ତି ? ସେ ସବୁ କି କେବଳ ଶବ୍ଦପାଟବ; ଭାଷା-କସରତ, ଅଶ୍ଳୀଳ, ଅପ୍ରାକୃତ ? ହାୟ, ଏ ଯୁଗରେ ବଡ଼ ସହଜରେ ଆମେ-ମାନେ ଉତ୍କଟ ମତାନ୍ଧତା ପୋଷଣ କରିବାକୁ ଶିଖୁଛୁ ! ପ୍ରଗତି ଦୁରଭିମାନ ଆଗକୁ ଜୀବନ ସହିତ ସଂଲଗ୍ନ କରି ନାହିଁ । ବରଂ ନୀରସ ନିଷ୍ପ୍ରାଣ ଭାବରେ ଜୀବନକୁ କାଟି-ବାଟି ଟିକି ଟିକି ଚୂନ୍‌ଚୂନା କରିବା ଶିଖାଉଛି !

ପୁଣି ମନେ ରଖିବାକୁ ହେବ, ପାଣ୍ଡିତ୍ୟ ଦିଗରେ ମଧ୍ୟ ଭାରତ କୋଟୀରେ ଉତ୍କଳ-ସନ୍ତାନର କୃତିତ୍ୱ ଉଚ୍ଚଦରର ଥିଲା । ଅଳଙ୍କାର-ଶାସ୍ତ୍ରରେ ପୁରୀ ଶାସନୀ ବ୍ରାହ୍ମଣ ବିଶ୍ୱନାଥ କବିରାଜ ସନ୍ଧିବିଗ୍ରହିକ ମହାପାତ୍ରଙ୍କ ସ୍ଥାନ ବହୁ ଉଚ୍ଚରେ । ତାଙ୍କର ଗୋଟିଏ ଧାଡ଼ି—

'ଆଲାଉଦିନ୍ ନୃପତୌ, ନ ସନ୍ଧିଃ ନ ଚ ବିଗ୍ରହଃ'ରୁ ତାଙ୍କର ପ୍ରାଚୀନତା ଅନୁମାନ କରଯାଏ । ଦାର୍ଶନିକ ବାସୁଦେବ ରଥ ଦୀକ୍ଷିତଙ୍କ ବ୍ରହ୍ମପ୍ରକାଶ, କଣାଦ ପ୍ରକାଶ ଇତ୍ୟାଦି ଚଉଦ ପ୍ରକାଶରୁ ଖଣ୍ଡେ ହେଲେ ଏ ପର୍ଯ୍ୟନ୍ତ ପ୍ରକାଶିତ ହେବାର ଜଣାଯାଇ ନାହିଁ । ଧର୍ମ ଶାସ୍ତ୍ରକାର ଗଦାଧର ରାଜଗୁରୁଙ୍କ 'ଗଦାଧର ପଦ୍ଧତି'ର ଦାନସାର, କାଳସାର, ଆଚାରସାର, ପ୍ରାୟଶ୍ଚିତ୍ତସାର ଇତ୍ୟାଦି ଅଠର ସାରରୁ ଦୁଇତିନୋଟି ପ୍ରକାଶିତ ହେବାର ଜଣାଯାଏ । କବିଚନ୍ଦ୍ର ରାୟଗୁରୁଙ୍କ ଉଷା-ପରିଣୟ ଚମ୍ପୂ ଏ ପର୍ଯ୍ୟନ୍ତ ଦିବାର ଆଲୋକ ଦେଖିନାହିଁ । ଏ କେତୋଟି ବିଚ୍ଛିନ୍ନ ଦୃଷ୍ଟାନ୍ତ ମାତ୍ର ।

ଏପରି ପ୍ରାଚୀନ ଓ ନବୀନ କେତେ ଯେ ଅମୂଲ୍ୟଗ୍ରନ୍ଥ ଏବର ଏ ଦୁର୍ଗତ ଦେଶର କେଉଁ କୋଣରେ କେଉଁ ଅନ୍ଧକାରରେ ପଡ଼ି ନଷ୍ଟ ହେଉଛି, ପୁଣି ତହିଁର ସ୍ରଷ୍ଟା କେତେ ଯେ ପ୍ରତିଭା ପୂର୍ବକାଳରେ ଓ ଏବେ ମଧ୍ୟ ବନର ମାଳତୀପରି ଏବର ଏ ଦରିଦ୍ରଦେଶ-କାନନରେ ଫୁଟି ଝଡ଼ି ପଡ଼ିଛି ଓ ପଡୁଛି, ତାହାର କଳ୍ପନା କିଏ କରିବ ? ତହିଁର ପ୍ରକାଶପାଇଁ, ଉନ୍ନତି ପାଇଁ, ସଦ୍ ବିନିଯୋଗ ପାଇଁ କି ଏବର ଏ ହୀନିମାନ ଦେଶରେ କିଛି ସୁଯୋଗ, ବ୍ୟବସ୍ଥା ବା ସଂସ୍ଥା ଘଟିବ ନାହିଁ ?

ଘର କଥା ଛାଡ଼ି ପାଶ୍ଚାତ୍ୟ ପ୍ରତି ଦୃଷ୍ଟି ସଞ୍ଚାଳନ କଲେ ମଧ୍ୟ ସେହି ଏକ କଥା ଛତ୍ରେ ଛତ୍ରେ ଦେଖିବାକୁ ମିଳେ, ଯେ ଯେତେଦୂର ଜୀବନ ନଦୀରେ ଅବଗାହନ କରିଛି, ସେ ସେତେ ସାହିତ୍ୟର ଉଚ୍ଚ ସ୍ତରକୁ ଉଠିଛି । ପୁଣି ଯେ ସାହିତ୍ୟର ଉଚ୍ଚ ସ୍ତରକୁ ଉଠିଛି, ସେହି ଜଗତର ବରେଣ୍ୟ ହୋଇଛି । ମାନବ ଇତିହାସରେ ତାହାରି ନାମ ହିଁ ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ହୋଇଛି । ହୋମର୍, ଭର୍ଜିଲ୍, ଏରିଷ୍ଟଟଲ୍, ଦାନ୍ତେ, ପିଟ୍ରାର୍କ, ସେକ୍ସପିଅର, ଗେଟେ, ହ୍ୟୁଗୋ, ଟଲ୍ଷ୍ଟୟ, ଏମର୍ସନ୍—ଏ ଭିତରୁ ଜଣେ ଜଣେ ବି ବାସ୍ତବିକ୍ ଅଜ୍ଞାନ-ଅନ୍ଧକାର-ଆଛନ୍ନ ମୋହଗ୍ରସ୍ତ ଜଗତର ଗୋଟିଏ ଗୋଟିଏ ଦୀପ-ସ୍ତମ୍ଭ ନୁହନ୍ତି ?



# ସଂସ୍କୃତ ସାହିତ୍ୟର ଗୌରବ

"ସାହିତ୍ୟର ବିଶାଳ ବପୁ, ଦର୍ଶନ, ବିଜ୍ଞାନ, କଳା ଓ ପ୍ରକୃତ ସାହିତ୍ୟ ଦ୍ୱାରା ପରିପୁଷ୍ଟ ହୋଇଥାଏ । ଏହିସବୁ ବିଭାଗରେ ଭାରତୀୟ ପ୍ରାଚୀନ ଆର୍ଯ୍ୟମାନଙ୍କ କୃତି ଏତେ ବିସ୍ତାରିତ, କ୍ଷିପ୍ର, ସ୍ଫୂର୍ତ୍ତ ଓ ଜୀବନ ପ୍ରବାହ ଏତେଦୂର ଚିତ୍ରିତ ଯେ ଗୋଟିଏ କ୍ଷୁଦ୍ର ପ୍ରବନ୍ଧର ପରିସରରେ ତହିଁର କ୍ଷୀଣ ପରିଚୟ ମଧ୍ୟ ଦେବା ଅସମ୍ଭବ । କେବଳ କେତୋଟି ବିଚ୍ଛିନ୍ନ ସଙ୍କେତ ଏଠାରେ ଦିଆଯାଇପାରେ ।

ବ୍ୟାବହାରିକ ଦୃଷ୍ଟିରେ ଭାଷା ସାହିତ୍ୟର ମୂଳ ବସ୍ତୁ । ବିସ୍ତୃତ ଭାବରେ ମନୁଷ୍ୟଜଗତ କାହିଁକି, ସମଗ୍ର ପ୍ରାଣୀ ଜଗତରେ ବ୍ୟବହୃତ ଭାବଦ୍ୟୋତକ, ଅର୍ଥ-ପ୍ରକାଶକ ସମସ୍ତ ପ୍ରକାର ଇଙ୍ଗିତ, ଧ୍ୱନି, ଚିହ୍ନ, ବାଚିକ ଅନୁକରଣ ଭାଷାର ଅଙ୍ଗ । ତଥାପି ପ୍ରତିଭା ବିକଶିତ, ବିଜ୍ଞାନ-ବିଶ୍ଳେଷଣ ସମ୍ବଳିତ, ଶବ୍ଦ-ଅର୍ଥ-ପ୍ରତ୍ୟୟ ସମନ୍ୱିତ ଲିପିବଦ୍ଧ ଭାଷା ମନୁଷ୍ୟ ଜୀବନର ବିଶିଷ୍ଟ ପ୍ରକାଶ । ତଦ୍ୱାରା ମନୁଷ୍ୟ ଭୂତ ଓ ଭବିଷ୍ୟତକୁ ବର୍ତ୍ତମାନର ସଂଯୋଗରେ ସଂଲଗ୍ନ କରେ । ପୁରାଣ ପରମ୍ପରା ସଞ୍ଚିତ ସ୍ମୃତି ଗ୍ରହଣ ଓ ଅଧିକ ସମୃଦ୍ଧ କରି ଉତ୍ତରାଧିକାରୀଙ୍କ ପାଇଁ ଦାନ କରେ । ତଦ୍ୱାରା ବ୍ୟଷ୍ଟି ମନୁଷ୍ୟ ଓ ସମଷ୍ଟି-ସମାଜର ଅନ୍ତର୍ନିହିତ ପ୍ରକୃତିର ଆଦାନ-ପ୍ରଦାନ ହୁଏ । ଦେଶ ଓ କାଳର ଭେଦ ପ୍ରକୃତରେ ଭାଷାଦ୍ୱାରା ଗୋଟାଏ ଦିଗରୁ ବିନଷ୍ଟ ହୁଏ । ଗୋଟାଏ ଦିଗରୁ ମନୁଷ୍ୟଜାତିର ଆତ୍ମିକତା, ବୁଦ୍ଧିବୃତ୍ତି, ସୌନ୍ଦର୍ଯ୍ୟବୋଧ, ହିତାହିତ-ଜ୍ଞାନମୂଳକ ସମସ୍ତ ସମ୍ପତ୍ତି ଭାଷାର ଅର୍ଜନ । ଭାଷା ଭାବର ଅଭିବ୍ୟକ୍ତି, ଏ କଥା ସର୍ବଦା ସମ୍ମତ; କିନ୍ତୁ ସୂକ୍ଷ୍ମ ଦୃଷ୍ଟିରେ ଭାଷା ସୃଷ୍ଟିକାରକ ମଧ୍ୟ । ଭାବ-ଗଠନ ରୀତି ଓ ମାର୍ଗକୁ ଶକ୍ତ ଓ ସଂକ୍ଷେପ କରି ଅନ୍ତର୍ନିହିତ ଅସଂଲଗ୍ନ କିମ୍ଭୂତ କିମାକାର ବୃତ୍ତି ନିଚୟକୁ ନିବନ୍ଧନମୟ ପୂର୍ଣ୍ଣତାରେ ପରିଣତ କରି ଭାଷା ମାନବୀୟ ଚିନ୍ତାକୁ ପରିସ୍ଫୁଟ କରେ । ପ୍ରାଚୀନ ଆର୍ଯ୍ୟମାନେ ଭାଷାର ମହାତତ୍ତ୍ୱକୁ ପାଣିନି ଦର୍ଶନରେ ସ୍ଫୋଟବାଦ ବୋଲି ଆଖ୍ୟାତ କରିଅଛନ୍ତି । ଅବ୍ୟୟ ଶବ୍ଦ ଅଂଶବିହୀନ, ସଂସାର-କାରଣ ସ୍ୱରୂପ ବ୍ରହ୍ମ । ଅନାଦି-ଅନନ୍ତ ବ୍ରହ୍ମ ଅକ୍ଷୟ ସାର ବଚନ ପଦାର୍ଥ ଆକାରରେ ପ୍ରତୀୟମାନ ହୁଏ । ତହିଁରୁ ଜଗତ୍-ସୃଷ୍ଟି ଆରମ୍ଭ ହୁଏ । ବ୍ୟଷ୍ଟି ବା ସମଷ୍ଟି ଭାବରେ କୌଣସି ପଦର ବର୍ଣ୍ଣମାଳାର ଅର୍ଥ ପ୍ରକାଶରେ ସାମର୍ଥ୍ୟ ନାହିଁ । ଅର୍ଥପ୍ରତ୍ୟୟ ନିମନ୍ତେ

ସ୍ଫୋଟ ଆବଶ୍ୟକ; ବର୍ଣଦ୍ୱାରା ତାହା ସ୍ଫୁଟ ହୁଏ ବୋଲି ତାହାର ନାମ ସ୍ଫୋଟ । ବିଚ୍ଛିନ୍ନ କେତୋଟି ପୁଷ୍ପର ସଂଗ୍ରହ ଗ୍ରଥନସୂତ୍ରବିହୀନରେ ଯେପରି ମାଳା ବୋଲଯାଇ ନ ପାରେ, ସେପରି କେତୋଟି ବର୍ଣର ପାର୍ଶୀକରଣ କୌଣସି ଅନ୍ତର୍ନିହିତ କାରଣ ବ୍ୟତିରେକେ ପଦ, ଅର୍ଥର ଉପତ୍ତି କରିପାରେ ନାହିଁ । ସମସ୍ତ ପଦର ଅର୍ଥ କେବଳ ସେହି ଅନ୍ତିମ ଅପବର୍ଗ, ଚିରନ୍ତନ ସ୍ଥିତି । ପୂର୍ଣଜ୍ଞାନ, ପରମ ସତ୍ତର ଗୁଣାତୀତ ଅବସ୍ଥାର କ୍ଷୀଣ ପରିଚୟ ହୁଏ । ଶବ୍ଦାର୍ଥର ନାନା ବିଭାଗରେ ଏକ ଓ ଅଦ୍ୱିତୀୟ ସତ୍-ଦ୍ୟୋତକ ବିଶ୍ୱବ୍ୟାପକ ଅର୍ଥ ନାନା ଆକାରରେ ପଦାର୍ଥ ସଙ୍କେତରେ ବୁଝାଯାଏ । ଯେଉଁ ବ୍ୟକ୍ତି ଶବ୍ଦ-ବ୍ରହ୍ମର ତତ୍ତ୍ୱ ଅବଧାରଣ କରେ ସେ ପରମବ୍ରହ୍ମ ପ୍ରାପ୍ତ ହୁଏ । ଏପରି ଭାବରେ ପଦାବଳୀର ଅନ୍ୱୟ ଓ ବିଶ୍ଳେଷଣ ଚରମ ଆନନ୍ଦ ପ୍ରାପ୍ତିର ଉପାୟ । ପଦଧ୍ୱନି-ସମଷ୍ଟି ହେତୁ କଣ୍ଠ୍ୟ, ତାଲବ୍ୟ, ମୂର୍ଦ୍ଧଣ୍ୟ, ଦନ୍ତ୍ୟ, ଓଷ୍ଠ୍ୟ, ଅନୁନାସିକ, ଗୁରୁ, ଲଘୁ, ମନ୍ଦ୍ର, ଦୀର୍ଘ, ହ୍ରସ୍ୱ, ପ୍ଲୁତ, ଉଦାତ୍ତ, ଅନୁଦାତ୍ତ, ସ୍ୱରିତ, ଅଭିଧା, ବ୍ୟଞ୍ଜନା, ଲକ୍ଷଣା ଇତ୍ୟାଦି ସ୍ଥାନ ସ୍ଥାୟିତ୍ୱଭେଦରେ ବୈଜ୍ଞାନିକ ପ୍ରଣାଳୀ ଅନୁସାରେ ପଦ-ଉଚ୍ଚାରଣ, ଧ୍ୱନି-ବିଜ୍ଞାନ, ସ୍ୱର-ସନ୍ଦର୍ଭ, ଅର୍ଥବୋଧ ଉପରେ ସଂସ୍କୃତ ସାହିତ୍ୟରେ ଏତେ ପ୍ରାଧାନ୍ୟ ଦିଆଯାଇଛି । ସେଥିପାଇଁ ଆମର ଦୁଇଟି ବେଦାଙ୍ଗ ଶିକ୍ଷା ଓ ଛନ୍ଦ ଏ ଦିଗରେ ବିନିଯୋଗ ହୋଇଅଛି ।

ଜୀବନର ଭିତ୍ତି ଏକ । ତାହା ଅସୀମ ବୈବିଧ ମଧ୍ୟରେ ନିଜକୁ ଫୁଟାଏ । ଉପନିଷଦରେ କଥିତ ଅଛି, ସୃଷ୍ଟି ଆରମ୍ଭରେ କେବଳ ଏକ ଥିଲା, ଐକ୍ୟର ଭୟାବହ ବିସ୍ମୟକର ନିଃସଙ୍ଗତାରେ କ୍ଲିଷ୍ଟ ହୋଇ ଯେପରି କି ତାହା ବହୁ ହେବାକୁ ପ୍ରୟାସୀ ହେଲା । ଏଥିରୁ ଜାତ ହେଲା ବହୁମୁଖୀ ବିଚିତ୍ର ସୃଷ୍ଟି । ମନୁଷ୍ୟ ବିବେକୀ, ଚିନ୍ତକ, ଧୀଶକ୍ତିସମ୍ପନ୍ନ । ସେ ଭଲମନ୍ଦ, ସୁନ୍ଦର ଅସୁନ୍ଦର, ଉଚ୍ଚନୀଚର ପାର୍ଥକ୍ୟବୋଧ କରିପାରେ । ତାହା ପକ୍ଷରେ ଏହି ମୂଳ ଅଦ୍ୱିତୀୟ ଭିତ୍ତି ସଙ୍ଗେ ତହିଁର ଅସୀମ ଅଶେଷ ଦିଗନ୍ତପ୍ରସାରୀ ସୃଷ୍ଟି ପ୍ରକୃତିକୁ ଅଖଣ୍ଡ ପୂର୍ଣ ଅଚ୍ଛିଦ୍ର ସତ୍ତଭାବରେ ବୋଧ କରିବାହିଁ ଜୀବନର ମୁଖ୍ୟ ଅଭିପ୍ରାୟ । ଏହି ଗଭୀର ପରମ ଅନ୍ୱେଷଣରେ କଳ୍ପନା, ପନ୍ଥା ଓ ପ୍ରଗତି ଆଦି କାଳରୁ ମନୁଷ୍ୟ ସମ୍ପାଦିତ ଜ୍ଞାନ-ଭଣ୍ଡାର ସଜାଡ଼ି ରଖିଛି । ସଂକ୍ଷେପରେ କହିଲେ, ଏ ଦିଗରେ ଆର୍ଯ୍ୟ ଋଷିଙ୍କ କୃତି ଓ ଚିନ୍ତା ବିଷ୍ଣୁ ପୁରାଣୋକ୍ତ ଏହି ଅଷ୍ଟାଦଶ ବିଦ୍ୟା ବିଭାଗରେ ସଞ୍ଚିତ, ବ୍ୟବହୃତ ହୋଇ ଆସିଅଛି । ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ, ଛନ୍ଦ, ଋକ, ଯଜୁଃ, ସାମ, ଅଥର୍ବ, ମୀମାଂସା, ନ୍ୟାୟ, ଧର୍ମଶାସ୍ତ୍ର, ପୁରାଣ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବ, ଅର୍ଥଶାସ୍ତ୍ର—ଏହି ବିଭାଗମାନଙ୍କରେ ବିଶାଳ ଲୋକ-ସମାଜର ଗୋଟିଏ ଭାଗ

ଜୀବନକୁ ଅଧିକ ସୁନ୍ଦର, ସରସପୂର୍ଣ୍ଣ, ମୂଲ୍ୟବାନ୍ କରିବାକୁ ଯାଇ ଯେଉଁସବୁ ଦର୍ଶନ, ବିଜ୍ଞାନ, କଳା ଓ ସାହିତ୍ୟର ଅବତାରଣା ଓ ଅଭିବୃଦ୍ଧି କରିଥିଲେ, ତାହା ବିଶେଷଭବରେ ବର୍ଣ୍ଣିତ ହୋଇଅଛି ।

ଦର୍ଶନର ମୂଳ ଉଦ୍ଦେଶ୍ୟ ସତ୍ୟର ଅନୁସନ୍ଧାନ; କିନ୍ତୁ ଏହି ଅନୁସନ୍ଧାନ ସଫଳ ହେବାପାଇଁ କଠୋର ସାଧନା, ଆତ୍ମସଂଯମ, ସଦାଚାର, ସାଧୁ ବ୍ୟବହାର (Ethics) ଆବଶ୍ୟକ । ପୁଣି ପ୍ରକୃତ ତତ୍ତ୍ୱବୋଧ କରିବାକୁ ହେଲେ ମନୁଷ୍ୟ ଚିନ୍ତା ନିର୍ମଳ, ସଙ୍ଗତ, ନ୍ୟାୟବନ୍ତ, ଭ୍ରମଶୂନ୍ୟ (Epicstemology) ହେବାକୁ ହେବ । ଅଥଚ ତାହା ଯେତେ ବିଶଦ ହେଉ ନା କାହିଁକି ସତ୍ ଚିତ୍-ଆନନ୍ଦ ପଦାର୍ଥର ନିର୍ଦ୍ଦେଶ କେବଳ ନ୍ୟାୟ, କାର୍ଯ୍ୟକାରିତା-କ୍ରମ, ବାଦତର୍କଯୁକ୍ତିଦ୍ୱାରା ହୋଇପାରେ ନାହିଁ । ପ୍ରତିଭା ବିକାଶ (Intuition) ଦ୍ୱାରାହିଁ ତାହା ସମ୍ଭବ । ଅବଶ୍ୟ ନ୍ୟାୟ ଓ ତର୍କ ଏ ଦିଗରେ ସହାୟକ । ପୁଣି କେବଳ ନ୍ୟାୟ ଓ ତର୍କ କାହିଁକି ସକଳ ପ୍ରକାର ଜ୍ଞାନ ଅନୁସନ୍ଧାନ ମାର୍ଗରେ ଆମକୁ କେତୋଟି ମୂଳ ବିଜ୍ଞାନ (Metaphysics), ସ୍ଥିତିର ପୂର୍ବଦତ୍ତ ଅବସ୍ଥା (Given condition of existence), ପ୍ରାଥମିକ ସୂତ୍ର (First pinciples) ମାନିନେବାକୁ ହୁଏ । ତାକୁ ମାନିନେଲେ ହିଁ ଆଲୋଚନା ସମ୍ଭବ । ଏହି ମୂଳ ବିଜ୍ଞାନ ମନୁଷ୍ୟର ମାନସରାଜ୍ୟରେ (Psychology), ଶିକ୍ଷା କ୍ଷେତ୍ରରେ (Education), ସମାଜର ବିଶାଳ ପରିସରରେ (Sociology), ଶାସନତନ୍ତ୍ରରେ (Politics), ମତ ବିଶ୍ୱାସ (Theology) ଇତ୍ୟାଦିରେ କିଭଳି ପ୍ରକାଶ ପାଏ, ତାହା ପରୀକ୍ଷା କରିବାରେ ମଧ୍ୟ ଦର୍ଶନର ପ୍ରକାଣ୍ଡ ସୌଧ ନିର୍ମାଣ କରାଯାଏ । ପ୍ରାଚୀନ ଭାରତୀୟ ଅସଂଖ୍ୟ ଦାର୍ଶନିକ, ସାଧକ, ଯୋଗୀ, ବୈଜ୍ଞାନିକ, ଆଦର୍ଶବାଦୀ ଓ ଦ୍ରଷ୍ଟା ହିନ୍ଦୁ ଦର୍ଶନର ଯେଉଁ ବିରାଟ ହର୍ମ୍ୟ ତୋଳି ଯାଇଛନ୍ତି, ତହିଁର ପ୍ରାଶସ୍ତ୍ୟ, ବ୍ୟାପ୍ତି ବା ଗଭୀରତା କିଞ୍ଚିତ୍ ଆଭାସ ମଧ୍ୟ ଏଠାରେ ଦେବା ପଲ୍ଲବଗ୍ରାହୀ ପାଣ୍ଡିତ୍ୟ ହେବ । ପାଶ୍ଚାତ୍ୟ ଜଗତରେ ଦର୍ଶନକୁ କେବଳ ଚମତ୍କାର ଚିନ୍ତା କୌତୂହଳତା ରୂପେ ଧରାଯାଇଛି । କିନ୍ତୁ ଆମ ପକ୍ଷରେ ପ୍ରକୃତରେ ତାହା 'ଦର୍ଶନ'—ସତ୍ୟ ଦର୍ଶନ, ସତ୍ୟ ଦୀପ୍ତ ଜୀବନଯାପନ, ପୂର୍ଣ୍ଣ ସତ୍ୟ ପ୍ରାଣର ଦୀପ୍ତ ଆକାଂକ୍ଷା । ଦୃଷ୍ଟାନ୍ତ ସ୍ୱରୂପ ଏଠାରେ ଏତିକି କୁହାଯାଇପାରେ, ଏଦିଗରେ ଆଚାର୍ଯ୍ୟ ମାଧବଙ୍କ ପ୍ରଣୀତ "ସର୍ବ ଦର୍ଶନ ସଂଗ୍ରହ" ତାତ୍ତ୍ୱିକ ସମାଲୋଚନା ଶକ୍ତିର ବିଶିଷ୍ଟ ପ୍ରକାଶ । ସେଥିରେ ସଂକ୍ଷେପରେ ଚାର୍ବାକ୍‌ଠାରୁ ଆରମ୍ଭ କରି ବୌଦ୍ଧ, ଜୈନ, ରାମାନୁଜ, ପୂର୍ଣ୍ଣପ୍ରାଜ୍ଞ, ନାକୁଲଶ, ପାଶୁପତ, ଶୈବ, ପ୍ରତ୍ୟଭିଜ୍ଞ, ରସେଶ୍ୱର, ବୈଶେଷିକ, ଅକ୍ଷପାଦ, ଜୈମିନୀୟ, ପାଣିନୀୟ, ସାଂଖ୍ୟ, ପାତଞ୍ଜଳକୁ ମିଶାଇ ବେଦାନ୍ତ ପର୍ଯ୍ୟନ୍ତ ବିସ୍ତାର କରାଯାଇ ପ୍ରତ୍ୟେକର ପ୍ରଧାନ ସୂତ୍ରଗୁଡ଼ିକ ଦିଆଯାଇଛି । ବିଭାଗଗୁଡ଼ିକ କ୍ରମଗତିରେ ଲିପିବଦ୍ଧ କରାଯାଇ ଲୋକାୟତଠାରୁ ଚୂଡ଼ାନ୍ତ ଦ୍ୱନ୍ଦ୍ୱର ସୂକ୍ଷ୍ମ ଚିନ୍ତା ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରୁଅଛି ।

ସଂସ୍କୃତ ସାହିତ୍ୟର ଆଦି ସ୍ଫୁରଣ ବେଦ । ଜ୍ଞାନ-ପ୍ରକାଶକ ଭାବରେ ଅନାଦିକାଳରୁ ତାହାର ସ୍ଥିତି । କୌଣସି ବ୍ୟକ୍ତିବିଶେଷର ଲେଖା ନୁହେଁ ବୋଲି ତାହା ଅପୌରୁଷେୟ । ବେଦ ଆର୍ଯ୍ୟଋଷିଙ୍କ ପ୍ରତିଭାମୁକୁରରେ ପ୍ରତିବିମ୍ବିତ, ସ୍ୱତଃ-ପ୍ରକାଶିତରୁ ସ୍ୱତଃପ୍ରମାଣିତ, ସ୍ୱତଃସିଦ୍ଧ ଅକ୍ଷୟ ଜ୍ଞାନଭଣ୍ଡାର । ବୈଦିକ ସାହିତ୍ୟର ଚତୁର୍ବିଧ ବିଭାଗ-ସଂହିତା, ବ୍ରାହ୍ମଣ, ଆରଣ୍ୟକ, ଉପନିଷଦ୍ । ତହିଁରେ ଜ୍ଞାନବୀଜ ଯେପରି ଭାବରେ କ୍ରମଶଃ ଅବଧାରିତ, ଅଭିବୃଦ୍ଧି, ବ୍ୟଷ୍ଟିସମାଜ ଜୀବନ ପ୍ରଯୋଜ୍ୟ, ଏକାଗ୍ର ବିଚାର୍ଯ୍ୟ ଓ ଆଧ୍ୟାତ୍ମିକତା ସଂଯୁକ୍ତ ହୋଇଅଛି, ତାହାର ଏଠାରେ ବିଶଦ ଆଲୋଚନା କରିବାର ସ୍ଥାନ ନାହିଁ । ଏତିକି କହିଲେ ଯଥେଷ୍ଟ ହେବ, ବେଦ ବିଚାର-ବିରୋଧ ନୁହେଁ ଯଦି ବା ସ୍ଥାନେ ସ୍ଥାନେ ତାହା ବିଚାରସୀମାକୁ ଅତିକ୍ରମ କରି ଊର୍ଦ୍ଧ୍ୱକୁ ଉଠିଅଛି । ବିଚାର ବେଦକୁ ତନ୍ନ ତନ୍ନ କରି ବିଶ୍ଳେଷଣ ପରୀକ୍ଷା, ନ୍ୟାୟାଶ୍ରିତ କରିପାରେ; କିନ୍ତୁ ଏହା କରିବା ପୂର୍ବରୁ ବିଚାର ଏହି ଅତିମାନବ ଚିନ୍ତା କରିବା ପାଇଁ କେତେଦୂର ସମର୍ଥ, ତାହା ପ୍ରଥମେ ଭାବିବା କଥା । ଇନ୍ଦ୍ରିୟ ପରତନ୍ତ୍ର ମନୋବୃତ୍ତି ପ୍ରକୃତ ବିଚାରପଦବାଚ୍ୟ ନୁହେଁ । ସାଧନାଦ୍ୱାରା ବିଚାରକୁ ପ୍ରଥମେ କଳୁଷ-ମାୟା ଆବରଣମୁକ୍ତ କରିବାକୁ ହେବ । ଐତିହାସିକ କ୍ରମରେ ବେଦୋକ୍ତ ଚିରନ୍ତନ ସତ୍ୟ ଓ ଆଦର୍ଶ କିପରି ଭାବରେ ବାସ୍ତବ ସାଂସାରିକ ଜୀବନରେ ଫୁଟିଉଠିଛି, ତାହା ତହିଁପରେ ପ୍ରଣୀତ ସ୍ମୃତି, ରାମାୟଣ, ମହାଭାରତ ଓ ଅଷ୍ଟାଦଶ ପୁରାଣାଦିରେ ବିବୃତ ହୋଇଅଛି । ସାଧାରଣତଃ ଆମ ଆଧୁନିକ ଶିକ୍ଷାପ୍ରାପ୍ତ ଅନେକଙ୍କର ଗୋଟାଏ ଧାରଣା ସଂସ୍କୃତ ସାହିତ୍ୟ କେବଳ ଅବାସ୍ତବ ଅତୀନ୍ଦ୍ରିୟ ପରଲୋକଗତ ଚିନ୍ତାବିଳାସର ପୂଷା; କିନ୍ତୁ ଏହା ଠିକ୍ ନୁହେଁ । ପ୍ରାଚୀନ ଚିନ୍ତା କେବଳ ଜନ୍ମ, ମୃତ୍ୟୁ, ଜରା, ବ୍ୟାଧିକ୍ଲିଷ୍ଟ, ଦ୍ୱନ୍ଦ୍ୱପୂର୍ଣ୍ଣ ଦୁଃଖ, ଜଞ୍ଜାଳ, ଅଭାବ, ହାହାକାରମୟ ମାୟାସଂସାର-ଚକ୍ରରୁ ଉଦ୍ଧାରିବାକୁ ଚେଷ୍ଟା କରି ନାହିଁ । ବାସ୍ତବ ଓ ଆଦର୍ଶ, ଇହ ଓ ପର ଉଭୟ ଜଗତକୁ ନିଖୁଣ, ସାମ୍ପ୍ରଦାୟିକଭାବରେ ତାହା ବିଶ୍ଳେଷଣ କରିଛି । ଜୀବନ କେବଳ ମୁକ୍ତିପାଇଁ ନୁହେଁ, ଭୁକ୍ତିପାଇଁ ମଧ୍ୟ । ରାମାୟଣ ଓ ମହାଭାରତ ଲୋକଶିକ୍ଷାର ଅସରନ୍ତି ଭଣ୍ଡାର । ଉଚ୍ଚ ଦାର୍ଶନିକ ଚିନ୍ତାସଙ୍ଗେ ନୈତିକ ଶିକ୍ଷା ଓ ଧର୍ମସମାଜ ରାଜନୀତିକଭାବ ଆଦର୍ଶ ପ୍ରେରଣାରେ ଅଭିବ୍ୟଞ୍ଜିତ ହୋଇ ତହିଁରେ ଦିଆଯାଇଛି । ଯଦି ଆଜି ପୃଥିବୀବ୍ୟାପୀ ନାନା ଧର୍ମ ସାମାଜିକ ଓ ରାଷ୍ଟ୍ରୀୟ ବିପ୍ଳବସତ୍ତ୍ୱେ ଭାରତୀୟ ସାଧାରଣ ଲୋକଜୀବନ ଉଚିତ ମାର୍ଗ ଓ ସାମ୍ୟ ହରାଇ ନାହିଁ, ପାଶ୍ଚାତ୍ୟ ସଭ୍ୟତାର ହୁଣ୍ଡା ନୀତି, ଶାଠ୍ୟାଦିର, ପାଶବିକ ଦର୍ପ, ସମହଙ୍କାର ଯଦି ଆଜି ଭାରତୀୟ ପ୍ରାଣକେନ୍ଦ୍ରକୁ ସ୍ପର୍ଶ କରୁନାହିଁ, ତେବେ ଏହା ଅନେକ ପରିମାଣରେ ଆମର ପୁରାଣ ପାରାୟଣର ଫଳ । ବର୍ତ୍ତମାନ ଆମ ଦେଶରେ ସବୁ ଲୋକଙ୍କୁ ସାକ୍ଷର କରିବାପାଇଁ ପ୍ରବଳ ଉଦ୍ୟମ ଚାଲିଛି । ଅଭିପ୍ରଶ

ରଲିଛି । ଅଭିଶପ୍ତ ନିରକ୍ଷରତାକୁ ଦୂର କରଇବାପାଇଁ ତୁମୁଳ ଆନ୍ଦୋଳନ ଦେଖା-ଯାଉଛି, ଭଲ କଥା, କିନ୍ତୁ ଗୋଟିଏ ଯନ୍ତ୍ରଗ୍ଵଳିତ ଗତାନୁଗତିକ ପ୍ରାଥମିକ ଅକ୍ଷର ଓ ଅଙ୍କ ପରିଚୟ (Three Rs) ଉପରେ ଜୋର ଦେବା ସଙ୍ଗେ, ସର୍ବସାଧାରଣ ପାରମ୍ପରିକ ସଂସ୍କୃତିରେ ଭଗୀ କରଇ ରମାୟଣାଦି ଗ୍ରନ୍ଥ ଭରତୀୟ ସମାଜର ବିଭିନ୍ନ ଶ୍ରେଣୀ ମଧ୍ୟରେ ପଠନ, ଶ୍ରବଣ, ମନନ, ସ୍ମରଣ ସୂତ୍ରରେ କିପରି ଶିକ୍ଷାଲୋକ ସହସ୍ର ସହସ୍ର ବର୍ଷ ଧରି ଜାରିରଖିଅଛି, ତାହା ଯେପରି ଆମେ ଭୁଲି ନ ଯାଉ । ଅବଶ୍ୟ ପୁରଣାଦିରେ ସ୍ଥାନେ ସ୍ଥାନେ କଳ୍ପନାର ଆତ୍ୟନ୍ତିକତା ପ୍ରକ୍ଷେପ, ଅତିରଞ୍ଜନ, ବର୍ଣ୍ଣନା-ବାହୁଲ୍ୟ, ପ୍ରହେଳିକା ନାହିଁ—ଏପରି ନୁହେଁ, କିନ୍ତୁ ବିବେକୀ ପାଠକ ପକ୍ଷରେ ଆବରଣ ଉନ୍ମୋଚନ କରି ତତ୍ତ୍ଵ ପାଇବା ଅସାଧ୍ୟ ନୁହେ । ରମାୟଣ ମହାଭରତଠାରୁ ପୁରଣଗୁଡ଼ିକ ଗଳ୍ପ ଆଖ୍ୟାୟିକା, ଗାଥା, ଦୃଷ୍ଟାନ୍ତ, ଲୋକ-ସାହିତ୍ୟ, ସାମାଜିକ ଆଗ୍ଵର ବ୍ୟବହାର—ଏ ସବୁକୁ ପ୍ରଥମ କରି ତାକୁ ସାହିତ୍ୟିକ ଅଳଙ୍କାରରେ ମଣ୍ଡାଇ ଜୀବନକୁ ଅଧିକ ନଗ୍ନ ନିପଟ ନିରଟଭବରେ ଚିତ୍ରଣ କରିଅଛନ୍ତି । ପୁଣି ଧର୍ମଶାସ୍ତ୍ର, ବର୍ଣ୍ଣାଶ୍ରମ ନୀତିରେ ସଫଳ କରିବାପାଇଁ ଜୀବନକୁ ନିୟନ୍ତ୍ରଣ କରିଅଛି । ଆହୁରି ସଂସ୍କୃତରେ ଏପର୍ଯ୍ୟନ୍ତ ଆବିଷ୍କୃତ, ଅନାବିଷ୍କୃତ, ଧ୍ଵଂସପ୍ରାପ୍ତ ଏତେଗୁଡ଼ିଏ ସୂତ୍ରଗ୍ରନ୍ଥି, ସାରସଂଗ୍ରହ, ଟୀକାଟିପ୍ପଣୀ, ସମାଲୋଚନା, ସ୍ଥାପତ୍ୟ, ସଙ୍ଗୀତ, ଚିତ୍ରବିଦ୍ୟା, କଳା-ବିଷୟକ ଶରୀର-ମନ-ପ୍ରାଣ ବିଜ୍ଞାନମୂଳକ ପୁସ୍ତକ ଥିଲ ଓ ଅଛି, ତାହା କଳ୍ପନା କରିବା ସାଧ୍ୟାତୀତ । ଦୃଷ୍ଟାନ୍ତ-ସ୍ଵରୂପ କେବଳ ରଜନୀତି ବିଷୟକୁ ନିଆଯାଉ । ଆଜି ଆମର ଆଧୁନିକ ବୁଦ୍ଧି-ବ୍ୟବସାୟୀ ଦଳ; କମ୍ୟୁନିଷ୍ଟ ରୁଷିଆ, ନାଜୀ ଜର୍ମାନୀ, ଫାସିଷ୍ଟ ଇଟାଲି, ସଂକ୍ଷେପରେ ପାଶ୍ଚାତ୍ୟର ବିଭିନ୍ନ ଦେଶରେ ପ୍ରଚଳିତ ବିଭିନ୍ନ ଗଣତନ୍ତ୍ର, ପ୍ରଜାତନ୍ତ୍ର, ରଜତନ୍ତ୍ର ଇତ୍ୟାଦିମୂଳକ ବିଭିନ୍ନ ନୀତି-କୌଶଳ-ପନ୍ଥା-ପ୍ରଣାଳୀ ଅସ୍ତ୍ରଦ୍ଵାର ଭରତୀୟ ବାୟୁମଣ୍ଡଳକୁ ଆଘାତ କରିବାକୁ ବ୍ୟଗ୍ର; କିନ୍ତୁ ସେପରି କରିବା ପୂର୍ବରୁ ଥରେ ସେହି ପରମ୍ପରର ମୂଳ ବୃହସ୍ପତି-ଶୁକ୍ର-ଚାଣକ୍ୟ-କାମନ୍ଦକ ଅନୁସୃତ ଅର୍ଥଶାସ୍ତ୍ର, ହିତୋପଦେଶ ନୀତିଶାସ୍ତ୍ର ବିବୃତ ବିଶଦଭବରେ ଆଲୋଚନା କରିବା ଉଚିତ୍ ନୁହେଁ କି ?

ପ୍ରକୃତ ସଂସ୍କୃତ ସାହିତ୍ୟ-କ୍ଷେତ୍ର ଉପରେ ଦୃଷ୍ଟି ନିବନ୍ଧ କଲେ ଆମ୍ଭେମାନେ ଦେଖୁଁ, ସବୁ ଯୁଗର ସବୁ ଦେଶର ଶୀର୍ଷସ୍ଥାନୀୟ କବି ଓ ଦ୍ରଷ୍ଟା—ଭବଭୂତି, ଭରବି, ଶ୍ରୀହର୍ଷ, ମାଘ, ବାଣଭଟ୍ଟ, ଭର୍ତ୍ତୃହରି, କାଳିଦାସ, ମହାବୀରଚରିତ, ମାଳତୀମାଧବ ଓ ଉତ୍ତର ରମଚରିତର ଶବ୍ଦନୈପୁଣ୍ୟ ଓ ମାନବ-ଚରିତ୍ର-ଅଭିଜ୍ଞତା ଅନନ୍ୟସାଧାରଣ । କେବଳ ଉତ୍ତର ରମଚରିତରେ ରମଙ୍କର ପ୍ରାଣ-ପ୍ରିୟତମାଙ୍କ ବିସର୍ଜନ ଓ ତାହାର ହିରଣ୍ମୟ ପ୍ରତିମା ସ୍ଥାପନ ପୂର୍ବକ ଅଶ୍ଵମେଧ ଯାଗ ପ୍ରତିଷ୍ଠାରେ କବି ଲୋକ-ରଞ୍ଜନ

ସଙ୍ଗେ ପ୍ରେମ-ପରାକାଷ୍ଠାର ମହନୀୟ ଆଦର୍ଶ କିପରି ସୁନ୍ଦର ଭାବରେ ମିଳାଇଛନ୍ତି, ତାହା ଲୋକଶିକ୍ଷାର ଚିରନ୍ତନ ମୂଲ୍ୟବାନ ବସ୍ତୁ । ଭାରବିରେ ଅର୍ଥ ଗୌରବପୂର୍ଣ୍ଣ ବାକ୍ୟ-ରଚନା ପ୍ରଚ୍ଛନ୍ନ ଗାମ୍ଭୀର୍ଯ୍ୟ, ମନୋମୋହନ ଭାବପ୍ରକାଶ ଅତୁଳନୀୟ । ନୈଷଧର ଲଳିତ ପଦ ବିନ୍ୟାସ ଓ ଅଲୌକିକ ଭାବପ୍ରବଣତା ପ୍ରଣିଧାନଯୋଗ୍ୟ । ଶିଶୁପାଳବଧରେ ସବୁ ଗୁଣ ଏକାଧାରରେ ଅଛି ବୋଲି କୁହାଯାଉଅଛି । ପ୍ରବଚନ ଅଛି- କାଳିଦାସଙ୍କ ଉପମା, ଭାରବିଙ୍କ ଅର୍ଥଗୌରବ, ଶ୍ରୀହର୍ଷଙ୍କ ପଦଲାଳିତ୍ୟ, ମାଘଙ୍କର ତ୍ରୟଗୁଣର ସମାବେଶ, କାଦମ୍ବରୀ କଥାସାହିତ୍ୟରେ ଅନୁପମ କୁହାଯାଇଛି । ଏହି ଜଗତ୍ ବାଣୋଚ୍ଛିଷ୍ଟ: ଏପରି ଶବ୍ଦ ନାହିଁ, ଯାହା ବାଣ ନିଜ ବାକ୍ୟରେ ପ୍ରୟୋଗ କରି-ନାହାନ୍ତି । ଶେଷରେ କାଳିଦାସ । ବାସ୍ତବିକ କାଳିଦାସଙ୍କ ନାମୋଚ୍ଚାରଣମାତ୍ରେ ସଂସ୍କୃତ ସାହିତ୍ୟ-ଶିକ୍ଷାର୍ଥୀଙ୍କ ହୃଦୟରେ କି ମଧୁର ଭାବାବେଶର ଉଦୟ ହୁଏ, ତାହା ଅନୁଭବୀ ଜାଣନ୍ତି । କଥା ଅଛି—ପୁଷ୍ପରେ ଜାଗ, ନଗରୀରେ କାଞ୍ଚୀ, ନାରୀରେ ରମ୍ଭା, ନରପତିମାନଙ୍କରେ ରାମ ନଦୀରେ ଗଙ୍ଗା, ପୁରୁଷମାନଙ୍କରେ ବିଷ୍ଣୁ, କାବ୍ୟରେ ମାଘ ଭଳି, କବିରେ କାଳିଦାସ । କାଳିଦାସୀୟ ସୂକ୍ତି ରସମୟ, ପ୍ରୀତି-ମାଧୁର୍ଯ୍ୟରେ ଆର୍ଦ୍ର, ମଞ୍ଜରୀ ପରି ଲାବଣ୍ୟଯୁକ୍ତ । ରଘୁବଂଶ, ମେଘଦୂତ, କୁମାରସମ୍ଭବ, ଅଭିଜ୍ଞାନ-ଶକୁନ୍ତଳା କାବ୍ୟ-ସୌନ୍ଦର୍ଯ୍ୟରେ ବିଶ୍ୱମନୋରମ । ମାଳବିକାଗ୍ନିମିତ୍ର ଓ ବିକ୍ରମୋର୍ବଶୀୟ ମଧ୍ୟ ଏହି ଭାରତୀୟ ସେକ୍ସପିଅରଙ୍କ ଲେଖା ବୋଲି ଧରାଯାଇଅଛି । ପାଣ୍ଡିତ୍ୟରେ କାଳିଦାସଙ୍କୁ ବଳି କବି ଅଛନ୍ତି, ତଥାପି କାଳିଦାସୀୟ ଉପମା, ସ୍ୱାଭାବିକ ବର୍ଣ୍ଣନା ଭିତରେ ନୀତି-ମଣି ଆହରଣ, ସରଳ ପଦାବଳୀ, ପ୍ରକୃତିଚିତ୍ରଣ, ପ୍ରେମର ସରଳ ବର୍ଣ୍ଣନ ସାହିତ୍ୟ-ଜଗତରେ କି ଉପାଦେୟ ସାମଗ୍ରୀ, ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ ।

ସଂସ୍କୃତ ସାହିତ୍ୟର ପ୍ରକୃତ ଅଭିପ୍ରାୟ ଓ ସୌନ୍ଦର୍ଯ୍ୟ ଗ୍ରହଣ କରିବାକୁ ଗଲେ ଅଳଙ୍କାର-ଶାସ୍ତ୍ରରେ ପ୍ରବେଶ ନିତାନ୍ତ ଆବଶ୍ୟକ । ଆମର ଆଧୁନିକ ଶିକ୍ଷିତମଣ୍ଡଳୀ ପେଟ୍ର, ଅରନଲ୍ଡ୍, ହଡ୍ସନ୍ ପଛେ ବାଇ । ଅବଶ୍ୟ ଏଥିରେ ଅସଙ୍ଗତି ନାହିଁ । ସୌନ୍ଦର୍ଯ୍ୟ ଯେକୌଣସି କ୍ଷେତ୍ରରୁ ଆହରଣ କରାଯାଇପାରେ; କିନ୍ତୁ ଏହି ବାଇପଣିଆ ଯଦି ନିଜ ପରମ୍ପରା, ସଂସ୍କୃତ ସାହିତ୍ୟ-ସମାଲୋଚନା ପ୍ରତି ଅବହେଳାରେ ପରିଣତ ହୁଏ, ତେବେ ଦୁଃଖର କଥା । କାବ୍ୟ କଅଣ ? କବି କିଏ ? ଏ ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରାଚୀନ-ହିନ୍ଦୁ-ଅଳଙ୍କାର କି ସୁନ୍ଦର ଦେଇଅଛି, ତାହା କହିବା ବାହୁଲ୍ୟ ମାତ୍ର । କବି ମୂର୍ତ୍ତିମନ୍ତ ଆନନ୍ଦ । କବିତା ଉପଧା ମିଳାଇବା ନୁହେଁ ବା ମଧୁର ଅର୍ଥସୂଚକ ରଚନା-ସୀମାରେ ମଧ୍ୟ ଆବଦ୍ଧ ନୁହେଁ । କବିତା ତହିଁରୁ ଅଧିକ କିଛି । ତାହା ପୂର୍ଣ୍ଣର ଆଭାସ, ପରମ ପରି ଚିରନ୍ତନ, ଅସ୍ପଷ୍ଟ, ଅସୀମ, ବିଚିତ୍ର, ବହୁତୋମୁଖୀ, ସତ୍ୟ, ଶିବ

ଓ ସୁନ୍ଦର ମଧ୍ୟ । ଆନନ୍ଦଲହରୀରେ କଥିତ ଅଛି, ମାତୃଶକ୍ତିର ସୌନ୍ଦର୍ଯ୍ୟ ତୁଳନା କରିବାକୁ ଯାଇ ସୃଷ୍ଟି-ସ୍ଥିତି-ସଂହାର-କର୍ତ୍ତା କଷ୍ଟେ ମଷ୍ଟେ କଳ୍ପନା କରନ୍ତି, ତଥାପି ପାରନ୍ତି ନାହିଁ । ବ୍ରହ୍ମା, ବିଷ୍ଣୁ, ମହେଶ ପ୍ରକୃତରେ କବି । ବାସ୍ତବିକ କବି ଦ୍ରଷ୍ଟା । ସେ ବିଶ୍ୱପ୍ରାଣରେ ସ୍ପନ୍ଦିତ, ପରମାନନ୍ଦରେ ଆହ୍ଲାଦିତ, ପରମ ସତ୍ତା ଅବବୋଧର ଉତ୍କୃଷ୍ଟ ଯୋଗ-ସାଧକ । ସର୍ଜନା-ଶକ୍ତିର କନକ ଅରୁଣିମାରେ କବିମନ-ପଦ୍ମବନ ସର୍ବଦା ରଞ୍ଜିତ; ତରୁଣର ଶୃଙ୍ଗାର-ଲହରୀରେ କବି-ହୃଦ୍‌ୟସିନ୍ଧୁ ସର୍ବଦା ଉଦ୍‌ବେଳିତ; ମଧୁ-କ୍ଷୀର-ଦ୍ରାକ୍ଷାର ମଧୁରିମାରେ କବି-ଭଣିତି ଚିର-ମଧୁର । ରସ କାବ୍ୟର ଆତ୍ମା, ସାହିତ୍ୟ ଶରୀର ଅଳଙ୍କାର ମଣ୍ଡନ, ବିଭବ-ଅନୁଭବ-ସଞ୍ଚାରୀ ଆଲମ୍ବନ-ଉଦ୍ଦୀପନ ପ୍ରକରଣରେ ଆଦି, କରୁଣ, ବୀର, ବୀଭତ୍ସ, ଶାନ୍ତ ଇତ୍ୟାଦି ନବଧାରେ ସେ ଆଲୋଚ୍ୟ । ସାହିତ୍ୟ-ଦର୍ପଣକାର ବିଶ୍ୱନାଥ ରସକୁ ଅଖଣ୍ଡ, ସ୍ୱପ୍ରକାଶ, ଆନନ୍ଦ-ଚିନ୍ମୟ, ବେଦ୍ୟାନ୍ତର-ସ୍ପର୍ଶଶୂନ୍ୟ, ବ୍ରହ୍ମାନନ୍ଦସହୋଦର ଅନ୍ତର ଅନୁଭୂତି ବୋଲି ନିର୍ଦ୍ଦେଶ କରିଅଛନ୍ତି । ରସ ଲୋକୋତ୍ତର ଚମତ୍କାର ପ୍ରାଣସତ୍ତ୍ୱୋଦ୍ରେକ, ଚିତ୍ତବିସ୍ତାର । ତମ ଓ ରଜର ନିବାରଣ ରସଦ୍ୱାର ସାଧିତ ହୁଏ; କୃତି ଓ ବାପ୍ତିକୁ ପଛେଇ ଦିଆଯାଏ ରସର ଅନୁଭୂତି ସ୍ୱାଦନରେ । ସ୍ୱାଦନ ପାରମ୍ପରିକ ସଂଗୃହୀତବାସନାସାପେକ୍ଷ । ସ୍ୱାଦନଜ୍ଞାପ୍ୟ ନୁହେଁ, ସ୍ୱାନୁଭବ୍ୟ । ସାଧାରଣ କୃତି ବ୍ୟାପାର—ପ୍ରସୂତ । ସ୍ଥାୟୀ ଓ ଉତ୍ସାହ ସ୍ଥିତିରେ ପ୍ରଭାବରେ ଏହା ସାଧିତ ହୁଏ । ନାୟକଭେଦରେ ଉଦାତ୍ତ, ଉଦ୍ଧତ, ଲଳିତ, ଶାନ୍ତ; ନାୟିକାଭେଦରେ ମୁଗ୍‌ଧା, ମଧ୍ୟା ପ୍ରଗଲ୍‌ଭା; ·ପ୍ରେମପ୍ରକାଶିକା-ଭେଦରେ ଅଭିସାରିକା, ବାସକସଜ୍ଜା, ବିପ୍ରଲବ୍‌ଧା, କଳହାନ୍ତରିତା; ପ୍ରେମିକଭେଦରେ ଅନୁକୂଳ, ଦକ୍ଷିଣ, ଶଠ, ସାହିତ୍ୟିକ; ଶରୀରଭେଦରେ ଦ୍ରାକ୍ଷାଖର୍ଜୁରନାରିକେଳପାକ ଇତ୍ୟାଦି ବିଷୟ ଅତି ଗହନ । ଏଠାରେ ଆଲୋଚନା କରିବାର ସ୍ଥାନ ନାହିଁ ।

ଶେଷରେ ସାହିତ୍ୟର ଅପରିହାର୍ଯ୍ୟ ସଙ୍ଗୀ କଳା । ଶଙ୍କର କଳାକୁ କାମ ଓ କର୍ମ ବ୍ୟତିରେକେ କେବଳ ଅବିଦ୍ୟାରୂପକ ବୋଲି ନିର୍ଦ୍ଦେଶ କରିଅଛନ୍ତି । କାମର ଉତ୍କଟ ଆକାଂକ୍ଷା ଓ କର୍ମର ଚଞ୍ଚଳ ଉନ୍ମାଦ କଳାରେ ନ ଥାଏ । ଅନ୍ତର୍ନିହିତ ସୌନ୍ଦର୍ଯ୍ୟର ସ୍ଥିର ନିମଗ୍ନ ଅନୁଭବ କଳାର ବିଷୟ । ବ୍ୟାବହାରିକ ଦୃଷ୍ଟିରେ ଜଗତ୍ ଓ ଜୀବନର ବହୁତୋମୁଖୀ ବୈଚିତ୍ର୍ୟକୁ ସଂଗ୍ରହ କରି ତାତ୍ପର୍ଯ୍ୟକ୍ରମେ ରୂପ-ସମ୍ମୋହନ କରିବା କଳାର କାର୍ଯ୍ୟ; କଳାର ବିକାଶ ରୂପକ ଭାଷାସାପେକ୍ଷ । ପୂର୍ଣ୍ଣସ୍ୱରୂପ ଲକ୍ଷଣରେ ତତ୍ତ୍ୱାତୀତ । ତଥାପି ମନୁଷ୍ୟର ବୁଦ୍ଧି, ମନ ଓ ବଚନ—ତହିଁର ଚିନ୍ତା ଓ ପ୍ରକାଶରେ ତତ୍ପର ·ହେବାରେ ହିଁ ଜୀବନର ସାର୍ଥକତା । ଏହା କରିବାକୁ ହେଲେ ତଟସ୍ଥ ଲକ୍ଷଣରେ ରୂପକଭାଷା ଆବଶ୍ୟକ ।

ଏହାହିଁ ସକଳ ଉପମା, ଉତ୍ପ୍ରେକ୍ଷା, ଶ୍ଲେଷ, ବକ୍ରୋକ୍ତିମୂଳକ ଭବ-ସଂଯୋଗର ଭିତ୍ତି । ମୁଖକୁ ଚନ୍ଦ୍ର, ଚିକୁରକୁ ଭ୍ରମର, ନାସିକାକୁ ତିଳପୁଷ୍ପ, ଅଧରକୁ ବନ୍ଧୂଳୀ, ବାହୁକୁ ମୃଣାଳ, ଅପାଙ୍ଗକୁ ବିଶିଖ, X X X X X କଟିକୁ ସିଂହ, ଜାନୁକୁ ରମ୍ଭା, ଯୌବନକୁ ବସନ୍ତ, ମାୟାକୁ ମରୀଚିକା, ଜ୍ଞାନକୁ ଆଲୋକ, ସଂସାରକୁ ସାଗର ସଙ୍ଗେ ତୁଳନା କଲାବେଳେ ସ୍ୱରୂପର ଏହି ତଟସ୍ଥତା ପ୍ରକାଶିତ ହୁଏ । ବିଶ୍ୱର ଏକୀକରଣ ଓ ସାମଞ୍ଜସ୍ୟ ପ୍ରତିପାଦିତ ହୁଏ ।

ବାସ୍ତବିକ ମହିମ୍ନକଥନରେ ସଂସ୍କୃତସାହିତ୍ୟ ଅନନ୍ତ, ଅନୁପମ, ମନୋହାରୀ, ପୁଣ୍ୟ, ସକଳ-ଐଶ୍ୱର୍ଯ୍ୟ-ବର୍ଣ୍ଣନଶୀଳ ।



# ଭଞ୍ଜ-ସାହିତ୍ୟରେ ରାଜ୍ୟ-ପାଳନ

କବିସମ୍ରାଟ ଉପେନ୍ଦ୍ରଭଞ୍ଜ ନାମ ଉଚ୍ଚାରଣରେ ଆଜିକାଲି ସାଧାରଣରେ ଆମର ଆଧୁନିକ ଶିକ୍ଷିତ ମଣ୍ଡଳୀ ମଧ୍ୟରେ ଦୁଇପ୍ରକାର ପ୍ରତିକ୍ରିୟା ଦେଖାଯାଇଥାଏ । ଗୋଟାଏ, ଭଞ୍ଜ-ସାହିତ୍ୟର ଅଗ-ମୂଳ ପ୍ରାୟ କିଛି ନ ଜାଣି, ନ ବୁଝି, ନ ଖୁଜି, ଗତାନୁଗତିକ ଭାବରେ ସ୍ୱର୍ଣ୍ଣ ପୁରାତନର ଛଳନାରେ ଅସମାଲୋଚକ ଦୃଷ୍ଟିରେ ପ୍ରଶଂସା ମୁଣି ଝାଡ଼ିବା; ଅନ୍ୟଟି, ଦୁଃସମାଲୋଚକ ଦୃଷ୍ଟିରେ ପ୍ରଗତି-ଦୁରଭିମାନ-ସ୍ରୋତରେ ଭାସି ସଙ୍କୀର୍ଣ୍ଣ-ମତବାଦ ଛଳନାରେ ସେହିପରି କିଛି ନ ବିଗ୍ରରି, ଆଲୋଚ୍ୟ ବିଷୟରେ ପ୍ରବେଶ ନକରି, ତହିଁରେ ଅବଗାହନ ନକରି ନିନ୍ଦାବାଣୀ ଶୁଣାଇବା । ଭଞ୍ଜ ସାହିତ୍ୟ ଆଲୋଚନା କଲେ, ବିଶ୍ୱାସ ହୁଏ, ଦୁଇଟିଯାକ ଅତିଶୟ ଉକ୍ତି । ଭଞ୍ଜ-ସାହିତ୍ୟରେ ଠାଏଁ ଠାଏଁ ଅଶ୍ଳୀଳତା ଦୋଷ, କୁରୁଚିର ନଗ୍ନପ୍ରକାଶ, ଅପ୍ରାକୃତିକ ବିସ୍ମୃତି, ଶବ୍ଦ-ପାଟବର ଅତିଶୟତା, କ୍ଲିଷ୍ଟତା, ଦୁର୍ବୋଧତା, ସହଜ ସରଳ ଭାବର ଆଚ୍ଛାଦନ ନଥାଇ ନାହିଁ । କିନ୍ତୁ ମନେରଖିବାକୁ ହେବ ପ୍ରାଚୀନଠାରୁ ନବୀନ ପର୍ଯ୍ୟନ୍ତ ବିଶ୍ୱ-କବିମାନଙ୍କଠାରେ ମଧ୍ୟ ଥାନେ ଥାନେ ଏ ଦୋଷଗୁଡ଼ିକ ଆରୋପ କରାଯାଏ । ଇଂରେଜ କବି ବ୍ରାଉନିଂଙ୍କ କବିତା ତାଙ୍କର ସମସାମୟିକ ବିଖ୍ୟାତ କବି ଟେନିସନ୍‌ଙ୍କ କବିତା ତୁଳନାରେ ଅତି କଠୋର, ଅବୋଧ, ଅପ୍ରାକୃତ ବୋଲି ବହୁ କାଳ ମତ ପୋଷଣ କରାଯାଇଥିଲା । କିନ୍ତୁ ଗଭୀର ଆଲୋଚନା ଉତ୍ତାରୁ ବର୍ତ୍ତମାନ କୁହାଯାଇଛି ବ୍ରାଉନିଂ ଟେନିସନ୍‌ଙ୍କ ଅପେକ୍ଷା ଗଭୀର ଭାବୁକ, ବଳିଷ୍ଠ ବ୍ୟକ୍ତି, ଚିନ୍ତାପୂର୍ଣ୍ଣ ଆଲୋଚକ, ଦକ୍ଷ ଜୀବନ-ଅନୁସନ୍ଧିତ୍ସୁ । ଆଦିରସର ବାହୁଲ୍ୟ ଦାନ୍ତେ, କାଳିଦାସ ଇତ୍ୟାଦିଙ୍କଠାରେ ଲଗାହୁଏ । ମୂଳ କଥା, ଆମକୁ ଯୁଗଧର୍ମ, କାଳର ଗତି, ବିଭିନ୍ନ ସାମାଜିକ ପରିସ୍ଥିତି, ବିଭିନ୍ନ ଚିନ୍ତାର ସ୍ତର ଉପରେ ଦୃଷ୍ଟି ରଖି କୌଣସି ବିଷୟ ଆଲୋଚନା କରିବାକୁ ପଡ଼ିବ । ନ ହେଲେ, ପକ୍ଷପାତୀ ବା ଏକଦର୍ଶୀ ହେବାର ସମ୍ଭାବନା ବେଶି । ସେ ଯାହା ହେଉ, ଆଧୁନିକ-ସମାଲୋଚନା-ନିକଷରେ

ମଧ୍ଧ ଭଞ୍ଜ-ସାହିତ୍ୟ—ସ୍ୱର୍ଣ୍ଣକୁ କଷିଲେ, ତହିଁରେ ଯଥେଷ୍ଟ ଉତ୍କର୍ଷ, ଉପାଦେୟତା, ବହୁମୁଖୀ ପ୍ରତିଭାର ପରିଚୟ ମିଳିବ ବୋଲି ବିଶ୍ୱାସ ହୁଏ । ଭଞ୍ଜ-ସାହିତ୍ୟକୁ ଆମେ ନାନା ବିଭବରୁ ଆଲୋଚନା କରି ନାହୁଁ । କେବଳ 'ଶୃଙ୍ଗାର' 'ନାୟକ' 'ନାୟିକା' ଇତ୍ୟାଦି କେତୋଟି ମାମୁଲି ଦୃଷ୍ଟିରୁ ରହିଛୁ । ଜଣେ ସେକ୍ସପିଅରଙ୍କ ଲେଖାର ସମ୍ୟକ ଅନୁଶୀଳନ ଫଳରେ ସହସ୍ର ସହସ୍ର ଗ୍ରନ୍ଥ ଲେଖା ହୋଇଛି । ଓଡ଼ିଆ ସାହିତ୍ୟ ସମ୍ରାଟଙ୍କ ଲେଖା ଉପରେ ଦୁଇ ତିନି ଖଣ୍ଡ ଆଲୋଚନା-ମୂଳକ ଗ୍ରନ୍ଥ ପ୍ରଣୟନର ଉପାଦାନ, ପରିସର, ଅବକାଶ ନାହିଁ ? ମନସ୍ତତ୍ତ୍ୱ, ଭାଷାତତ୍ତ୍ୱ, ସମାଜତତ୍ତ୍ୱ, ନୀତି, ସାଧାରଣ ଜୀବନ, ଉଚ୍ଚକୋଟୀ ଜୀବନ, ରାଜନୀତି-ଇତ୍ୟାଦି ବିଭିନ୍ନ ଦିଗରୁ ପ୍ରାଚୀନ ଓଡ଼ିଆ ସାହିତ୍ୟ ତଥା ଭଞ୍ଜ-ସାହିତ୍ୟ ଅନୁଶୀଳନ କରିବାର ମାର୍ଗ ଫିଟୁ, ଏହାହିଁ ଆନ୍ତରିକ କାମନା ।

ଏ ବିଷୟରେ କ୍ଷୀଣ ଅନୁକ୍ରମର ଗୋଟିଏ ବିକ୍ଷିପ୍ତ ଉଦାହରଣ ସ୍ୱରୂପ ଭଞ୍ଜ-ସାହିତ୍ୟରେ ରାଜ୍ୟ-ପାଳନର ସଙ୍କେତ ଦିଆଯାଉଛି । ଆରମ୍ଭରେ ଏପରି ଗୋଟାଏ ବିଷୟ ବାଛିବାରେ କି ଆବଶ୍ୟକତା, ବିଜ୍ଞ ପାଠକ ଅନୁମାନ କରି ପାରୁଥିବେ । ରାଜନୀତିର ପ୍ରବଳତା ଆଜି ସର୍ବବାଦୀସମ୍ମତ । ଐତିହାସିକ ମାର୍ଗରେ ଆଜି ରାଷ୍ଟ୍ର-ତନ୍ତ୍ର ଉପରେ ବେଶି ଦୃଷ୍ଟି ଦିଆଯାଇଛି । ରାଷ୍ଟ୍ର-ଗଠନ, ପାଳନ, ଏକୀକରଣ ବିଭିନ୍ନ ରାଷ୍ଟ୍ର ମଧ୍ୟରେ ସମ୍ବନ୍ଧ, ସମ୍ମିଳିତ ରାଷ୍ଟ୍ର ଇତ୍ୟାଦି ଆଜି ରାଷ୍ଟ୍ରନୀତିଜ୍ଞ କାହିଁକି ଜନ ସାଧାରଣଙ୍କର ମଧ୍ୟ ଦୈନିକ ବ୍ୟବସାୟ ହୋଇଯାଇଛି । ରାଷ୍ଟ୍ରର ଆଦର୍ଶ, କର୍ମ-ପନ୍ଥା, ଯୋଜନା ପ୍ରଣାଳୀ, ରାଷ୍ଟ୍ରମଧ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷା, ସଂଖ୍ୟାଧିକ ସମ୍ବନ୍ଧ, ବ୍ୟଷ୍ଟି-ସମଷ୍ଟିର ପରସ୍ପର କର୍ତ୍ତବ୍ୟ-ଦାୟିତ୍ୱ-ଅଧିକାର ନିରୂପଣ, ସମୂହ କଲ୍ୟାଣ, ସର୍ବବିଧ ମଙ୍ଗଳ ଇତ୍ୟାଦି ସମସ୍ୟା ଆଜିକାଲିର ପ୍ରଧାନ ଆଲୋଚ୍ୟ ବିଷୟ । ଏ ବିଷୟରେ ଭଞ୍ଜ-ସାହିତ୍ୟରେ କି କିଛି ସୂଚନା ଅଛି ? ନା ଭଞ୍ଜ ସାହିତ୍ୟ କେବଳ ରସ-ସନ୍ଦର୍ଭ, ମିଳନ-ବିରହ, କାମକେଳି ବର୍ଣ୍ଣନାରେ ଶେଷ ହୋଇଛି ?

'ଲାବଣ୍ୟବତୀ'ରୁ କେତୋଟି ଧାଡି ଉଦ୍ଧାର କରୁଛୁଁ । କର୍ଣ୍ଣାଟ ଦେଶର ବୟସାଗତ ରାଜାଙ୍କ ପରେ ରସିକ, ବୀର, କର୍ମପ୍ରବୀଣ ଯୁବରାଜ ଚନ୍ଦ୍ରଭାନୁଙ୍କର ସିଂହାସନାରୋହଣ ସମ୍ପୃକ୍ତ ଅଭିଷେକ ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହେଲା । ବିଶାଳ ରାଜ୍ୟପାଳନର ଗୁରୁ-ଦାୟିତ୍ୱ ଆଉ ଚନ୍ଦ୍ରଭାନୁଙ୍କୁ ଲାବଣ୍ୟବତୀର ବାହୁ-ମୃଣାଳ-ବନ୍ଧନରେ ସବୁ ସମୟ ରଖି ପାରିଲା ନାହିଁ । ସେ ସୁରଗୁରୁ ରୂପେ ରାଜକାର୍ଯ୍ୟ ଏପରି କୃତିତ୍ୱ ସହକାରେ ସମ୍ପାଦନ କଲେ ଯେ ଅଳ୍ପଦିନ ମଧ୍ୟରେ—

ସେ ନରେଶ୍ୱର ପାଳିବାରେ ଦେଶ,
ନୋହିଲା ଆଉ ମିଥ୍ୟାବକାଶ ।

ଦିବସ ନାମରେ ଦିନ ରହିଲା,
ଦିନକୁ ଦଣ୍ଡ ଆଶ୍ରୟ କଲା ।

ଭସ୍ମ ଚିତାରେ ମାତ୍ର ଶୋଭା ବହି
ଯାଜ୍ଞିକ ଦ୍ୱିଜ ଲଲାଟେ ତହିଁ ।

ଆଶ୍ରେ କଲା ମନ ମଳୟାନିଳେ,
କଳଙ୍କ ଯାଇ ଚନ୍ଦ୍ର ମଣ୍ଡଳେ ।

କୁଟିଳ ନଦୀ ଗତିରେ ଲୁଚିଲେ,
ବିଟପୀ ବୃକ୍ଷ ହୋଇ ବଞ୍ଚିଲେ ।

କଳିସ୍ଥାନ କଲା ପୁଷ୍ପବଲ୍ଲୀକି,
ମଧୁପ ପଦ ଶୋଭା ଅଳିକି ।

ଯଶସ୍ୱୀ ଶ୍ରୁତକୀର୍ତ୍ତି ଚନ୍ଦ୍ରଭାନୁଙ୍କର ରାଜ୍ୟପାଳନ ଫଳରେ କର୍ଣ୍ଣାଟ ଦେଶରେ ଆଉ ମିଥ୍ୟା ଅବକାଶ ରହିଲା ନାହିଁ, କେହି ମିଛ କହିଲେ ନାହିଁ; ସମସ୍ତେ ନିର୍ଭୀକ, ସତ୍ୟବାଦୀ, ସ୍ୱାଧୀନଚେତା ହେଲେ । ସେ ରାଜ୍ୟ ସୀମା ମଧ୍ୟରେ ଆଉ ଦୀନ ବା ଦରିଦ୍ର ରହିଲେ ନାହିଁ; ଦାରିଦ୍ର୍ୟ-ବାଧା ସେ ଦେଶରୁ ଏକାଥରକେ ଘୁଞ୍ଚିଗଲା; ଅଭାବ କଅଣ କେହି ଜାଣିଲେ ନାହିଁ; ସମସ୍ତଙ୍କର ଅଭାବ ପୂର୍ଣ୍ଣ ହେଲା; ସମସ୍ତେ ସୁଖ-ସମୃଦ୍ଧିରେ କାଳ ଅତିପାତ କଲେ, ଧନ-ଜନ-ଗୋପଲକ୍ଷ୍ମୀରେ ଦେଶ ହସି ଉଠିଲା । ପୁଣି ସେଠାରେ ଲୋକଙ୍କୁ ଆଉ ଦଣ୍ଡ ଦିଆଗଲା ନାହିଁ, ଯେହେତୁ ସେଠାରେ କୌଣସି ପ୍ରକାର ଦୋଷ, ଅକର୍ତ୍ତବ୍ୟ, ଅନାଚାର, ଅଧର୍ମ ଆଚରିତ ହେଲା ନାହିଁ; ପାପର ପଙ୍କିଳତା ସେ ଦେଶରୁ ଧୋଇ ହୋଇଗଲା; ଶୁଦ୍ଧପୂତ ନୈତିକ ଧାର୍ମିକ ଜୀବନର ଭିତ୍ତି-ପତନ ହେଲା; ଧର୍ମରାଜ୍ୟ ପ୍ରତିଷ୍ଠିତ ହେଲା । ଲୋକେ ଅମର ହେଲେ; ଚିତାଗ୍ନି ଆଉ ସେଠାରେ ଜଳିଲା ନାହିଁ । ମଳୟ ସମୀର ମନ୍ଦ ମନ୍ଦ ବହିବା ଛଡ଼ା ସେଠାରେ ଆଉ କିଛି ମନ୍ଦ ରହିଲା ନାହିଁ; କୌଣସି ଖରାପ ଲୋକ ରହିଲେ ନାହିଁ; ଦୁଷ୍ଟ, ହିଂସ୍ରକ, ଅପକାରୀ ମନୁଷ୍ୟ ପ୍ରକୃତି ବଦଳିଗଲା; ସମସ୍ତେ ପରସ୍ପର ମଙ୍ଗଳ ବାଞ୍ଛାକଲେ; ଖଳ ସ୍ୱଭାବ, ଅସାଧୁତା, ନୀଚ ମନୋବୃତ୍ତି, ଅନିଷ୍ଟକର ଇଚ୍ଛା ବା କ୍ରିୟା ଦୂରୀଭୂତ ହେଲା । ତେଣୁ ସେଠାରେ କେହି ଚନ୍ଦ୍ରମଣ୍ଡଳରେ କଳଙ୍କ ଦେଖିବା ଛଡା ଆଉ ଅନ୍ୟ କୌଣସି କଳଙ୍କ ଦେଖିଲେ ନାହିଁ । ଦେଶ ନିଷ୍କଳଙ୍କ ହେଲା; ପବିତ୍ରତା, ନିର୍ମଳତା, ନିଷ୍ପାପ

ଆଚରଣ ସମସ୍ତଙ୍କୁ ସଦ୍‌ମାର୍ଗରେ ପରିଚାଳିତ କରଇଲା । ନଦୀରେ ଲହରୀର କୁଟିଳ ଗତି ଛଡ଼ା ଅନ୍ୟ ସବୁ କୁଟିଳତା ସେ ଦେଶର ଜନ-ସମାଜରୁ ଅଦୃଶ୍ୟ ହେଲା । ମହତ୍ ଆଶୟ, ଉଚ୍ଚ ମନୋବୃତ୍ତି ଘେନି ସମସ୍ତେ ସରଳ, ନିରହଙ୍କାର, ନିଷ୍କପଟ ଜୀବନ ଯାପନ କଲେ । କେବଳ ବୃକ୍ଷ ଛଡ଼ା ଆଉ ସେଠାରେ ବିଟପୀ ରହିଲେ ନାହିଁ, ବ୍ୟଭିଚାର ଦେଖାଗଲା ନାହିଁ; ଗୃହସ୍ଥ ଜୀବନରେ, ଦାମ୍ପତ୍ୟ ସମ୍ବନ୍ଧରେ, କିଛି ବ୍ୟତିକ୍ରମ, ଅପକ୍ରମ ରହିଲା ନାହିଁ; ପାତିବ୍ରତ୍ୟର ବିଜୟ ବୈଜୟନ୍ତୀ ଉଡ଼ିଲା; ସତୀତ୍ୱର ବିମଳ ପରାକାଷ୍ଠା ପ୍ରକଟିତ ହେଲା । କୁସୁମ-ଲତାରେ କଳି ବା କଳିକା ସ୍ଥାନ ପାଇବା ଛଡ଼ା ଆଉ ଅନ୍ୟ କୌଣସି ଠାରେ ତାହାକୁ ସ୍ଥାନ ମିଳିଲା ନାହିଁ; ଦ୍ୱେଷ, ଶତ୍ରୁତା, ସକଳ ପ୍ରକାର କଳହ, ମନୋମାଳିନ୍ୟ, ସଂଘର୍ଷ, ଆକ୍ରମଣ ସେ ଦେଶରୁ ସ୍ଥାନାନ୍ତରିତ ହେଲା; ସ୍ନେହ, ମୈତ୍ରୀ, କରୁଣାର ନିର୍ଝର ଝର ଝର ବହିଲା । ଅଳି ଫୁଲରୁ ମଧୁ ଶୋଷଣ କରିବା ଛଡ଼ା ସେ ରାଜ୍ୟରେ ଆଉ ମଦ୍ୟପ ଦେଖାଗଲେ ନାହିଁ; ମଦ୍ୟପାନ ସ୍ୱପ୍ନପ୍ରାୟ ହେଲା ।

ଆଉରି ଲେଖା ଅଛି—

ଶରଣ କଲା ବୈଦ୍ୟଙ୍କୁ ମାରଣ,
ଇନ୍ଧନେ ଦେଖାଗଲା ଦାରଣ ।
ରହିଲା କୂଳ ଲଙ୍ଘନ ସରିତେ,
ଶ୍ରୁତିରେ ସ୍ୱେର ଶବଦ ସତେ ।
ବିଷ ଭକ୍ଷଣ ହଂସେ ରହେ ଏକା,
ସ୍ତନରେ କରପୀଡ଼ା ଆଶଙ୍କା ।
ବନ୍ଧନ ରହିଲା ବାହୁରେ ମାତ୍ର,
ମୃଗୟା ଯହିଁ ହୋଇଲା ଚିତ୍ର ।
+ + +

ବୈଦ୍ୟ ଔଷଧକୁ ମାରଣ କରିବା ଛଡ଼ା କର୍ଣ୍ଣାଟ ଦେଶରେ ଅନ୍ୟ କୌଣସି ମାରଣା କାମ ଦେଖାଗଲା ନାହିଁ; କାଠ ହାଣିବା ଛଡ଼ା ଅନ୍ୟ କୌଣସି ହଣା ହଣି ଚଳିଲା ନାହିଁ; ଲୋକେ ହଣାମରଙ୍କୁ ପରମ ଶତ୍ରୁ ମଣିଲେ । ବନ୍ୟା ସମୟରେ ନଦୀ-କୂଳକୁ ଡେଇଁବା ଛଡ଼ା ଲୋକେ କୁଳଧର୍ମ କୌଣସି ପ୍ରକାରେ ଲଙ୍ଘନ କଲେ ନାହିଁ । କୁଳରୁ ବାହାରିଯିବା ଘୋର ପାପ ମନେ କଲେ; କୁଳଭ୍ରଷ୍ଟର ନଷ୍ଟଗତି, ବର୍ଣ୍ଣାସାଙ୍କର୍ଯ୍ୟର ପରିଣାମ ଭୟାବହ, ଧର୍ମ ପରମ୍ପରା, ସାମାଜିକ ସ୍ଥିତି, ଆଗ୍ରର ରକ୍ଷାପାଇଁ କୁଳଧର୍ମ ପାଳନ ସର୍ବାଦୌ କର୍ତ୍ତବ୍ୟ—ଗୀତାର ଏହି ମହନୀୟ ବାଣୀ ମର୍ମେ ମର୍ମେ

ଉପଲବ୍ଧି କଲେ । ପୁଣି ଲୋକେ କାନରେ 'ଗ୍ରେର' ଶବ୍ଦ ଶୁଣିବା ଛଡା ପ୍ରକୃତରେ ଗ୍ରେରକୁ ଦେଖିଲେ ନାହିଁ; କୌଣସି ଗ୍ରେରି ହାରି ରହିଲା ନାହିଁ; ପରସ୍ୱାପହରଣ, ପରଦ୍ରବ୍ୟରେ ଆସକ୍ତି, ଲୋଭ ଇତ୍ୟାଦି ସେ ଦେଶରୁ ଉଠିଗଲା । ହଂସ ବିଷ ବା ପଦ୍ମ-ମୃଣାଳ ଖାଇବା ଛଡା ଅନ୍ୟ କିଏ ସେ ବିଷ ପାନକରିବା ଅନ୍ତର୍ହିତ ହେଲା । ବିଷପାନ କରିବାର ନିମିତ୍ତ ରହିଲା ନାହିଁ । କୌଣସି ଭୟ-ବିପଦ, ତାପ, ଭଗ୍ନ-ମନୋରଥ, ନିରଟ ନିରାଶା ହେତୁ ମନୁଷ୍ୟ ବିଷପାନ ବା ଅନ୍ୟ କୌଣସି ପ୍ରକାର ଆତ୍ମହତ୍ୟା କରେ; କିନ୍ତୁ ସେ ଦେଶରେ ତ ସେ ସବୁ କିଛି ନାହିଁ; ଆତ୍ମହତ୍ୟା କାହିଁକି ହେବ କାରଣ ନଥିଲେ କାର୍ଯ୍ୟ ଆସିବ କୁଆଡ଼େ ? ପ୍ରେମିକ ପୁଣି ପ୍ରେମିକାର ଘନ-କୁଚ-ଯୁଗକର-ଯୁଗଳରେ ମର୍ଦ୍ଦନ କରିବା ଛଡା ସେ ଦେଶର ପ୍ରଜାଗଣ କରଦ୍ୱାରା ପୀଡ଼ିତ ହେଲେ ନାହିଁ; ରଜା ସ୍ୱଳ୍ପ କର ଆଦାୟ କଲେ । ଏଣୁ ପ୍ରଜା-ମାନେ ସୁଖରେ ରହିଲେ । ପ୍ରଣୟୀ-ପ୍ରଣୟିନୀର ପରସ୍ପର ଭୁଜ-ବନ୍ଧନ ଛଡ଼ା ଅନ୍ୟ କୌଣସି ପ୍ରକାର ବନ୍ଧନରେ ସେ ଦେଶବାସୀ ଆବଦ୍ଧ ହେଲେ ନାହିଁ; ସମସ୍ତେ ସ୍ୱାଧୀନତା, ସ୍ୱାତନ୍ତ୍ର୍ୟ ଅନୁଭବ କଲେ । ଦାସତ୍ୱର ଶୃଙ୍ଖଳା ରହିଲା ନାହିଁ, ଜଣେ ଅନ୍ୟ ଜଣକ ଉପରେ ଅଯଥା ଅଧିକାର, ଅତ୍ୟାଗ୍ତର କରିପାରିଲା ନାହିଁ; ଶୋଷଣ ନୀତିର ମୂଳୋତ୍ପାଟନ ହେଲା । ପୁଣି ସେ ଦେଶବାସୀ ମୃଗୟା କଅଣ ଜାଣିଲେ ନାହିଁ, କେବଳ ତାହାର ଦୃଶ୍ୟ ଚିତ୍ରପଟରେ ଦେଖିଲେ । ମୃଗୟା ଗୋଟିଏ ବ୍ୟସନ, ତହିଁରୁ ପ୍ରମାଦ ଜନ୍ମେ । ସେ ଦେଶରୁ ତ ସବୁ ବ୍ୟସନ ଦୂର ହୋଇଥିଲା, ମୃଗୟା ରହନ୍ତା କୁଆଡ଼ୁ ?

ବିଷୟ ବଢ଼ାଇବାର ପ୍ରୟୋଜନ ନାହିଁ । ବିଜ୍ଞ ପାଠକ ବୁଝିପାରିବେ, ପ୍ରାଚୀନ ପ୍ରତିଷ୍ଠିତ ହିନ୍ଦୁ-ପରମ୍ପରା ସହିତ ସଂଗୃହୀତ ରାଜନୀତିର ସାର ଗ୍ରୁଣି ଓଡ଼ିଆ ସାହିତ୍ୟର ସମ୍ରାଟ ଏଠାରେ କିପରି ପରଶିଛନ୍ତି, ନୀତିର ଶୁଷ୍କ ବ୍ୟାଖ୍ୟାନ ମାର୍ଗରେ ନୁହେଁ, କବିତାର ରୂପକ ସୁଧାମୟ ଆହ୍ଲାଦିନୀ ଶ୍ଳେଷ ଭଙ୍ଗୀରେ । ପୁଣି ପାଶ୍ଚାତ୍ୟ ରାଜନୀତି ଏହାଠାରୁ ବଳି ଅଧିକ ଆଉ କଅଣ କହୁଛି ? ଆଜି ଯେଉଁ ସାମ୍ୟବାଦ, ସମାଜବାଦ, ଜାତିବାଦ, ପ୍ରଗତିବାଦ, ବିଜ୍ଞାନବାଦ ଇତ୍ୟାଦି ଅଗଣିତ ମତବାଦର ଢେଉ ଆମ ଦେଶକୁ ପ୍ଲାବିତ କରୁଛି, ତହିଁର ଯଥାଯଥ ସାର ସଂଗ୍ରହ କଲେ, ଏହାଠାରୁ ବଳି ଆଉ କି ସୁନ୍ଦର ଚିତ୍ର, କି ବିଚିତ୍ର ଆଦର୍ଶ ଫୁଟି ଉଠିବ ? ଆଜି ଆମଦେଶରେ ବିଭିନ୍ନ ରାଜନୈତିକ ତଥା ଅନ୍ୟ ପ୍ରକାର ଅନୁଷ୍ଠାନ ପକ୍ଷରୁ ଯେଉଁ ତୁମୁଳ ପ୍ରଗ୍ତର ପୁର-ପଲ୍ଲୀରେ, ଘରେ ଘରେ ଲାଗିଛି, ତାହାର ସାମୟିକ ଦଳାଦଳି, ସଂକୀର୍ଣ୍ଣତା, ଉଦ୍ଭଟତା, ପ୍ରହେଳିକାକୁ ବାଦ୍ ଦେଇ ନିରଟ ସତ୍ୟ ସଙ୍କଳନ କରି ବସିଲେ, ଏହାଠାରୁ ଆମେ ଆଉ କି ଅଧିକ ଶିକ୍ଷା ପାଉଁ ? ଧନୀ ଦରିଦ୍ର ଭେଦ ଘୁଞ୍ଚିଯିବ, ସମସ୍ତେ ସମାନ ଅଧିକାର ପାଇବେ, ଶୋଷଣ ନୀତି ଉଠିଯିବ, ତହିଁ

ଉପରେ ପ୍ରତିଷ୍ଠିତ ସାମ୍ରାଜ୍ୟବାଦ ଉଠିଯିବ, ଆଉ ପ୍ରଳୟଙ୍କର ସମର ହେବନାହିଁ, ପୃଥିବୀ ବ୍ୟାପୀ ଶାନ୍ତିରାଜତ୍ୱ କରିବ, ଅନୀତି ଘୁଞ୍ଚିଯିବ, ଆନ୍ତର୍ଜାତିକ ମାନବିକତା ଉନ୍ନତିର ଉଚ୍ଚତର ସ୍ତରକୁ ଉଠିବ, ହତ୍ୟା-ଲୁଣ୍ଠନ-ଦହନର ଲୋମହର୍ଷଣ କାଣ୍ଡ ଲିଭିଯିବ, ଅଭାବର ତୀବ୍ର ତାଡ଼ନା ଲୋକ-ପ୍ରାଣକୁ ମୁହ୍ୟମାନ କରିବ ନାହିଁ, ଉପଯୁକ୍ତ ଅବସର, ଆମୋଦ ପ୍ରମୋଦ, ଜୀବନର ସୌନ୍ଦର୍ଯ୍ୟ ଅନୁଭୂତିର ଅବକାଶ ସମସ୍ତେ ପାଇବେ—ଏହି ତ ଆମ ଦେଶର କାହିଁକି ସମଗ୍ର ପୃଥିବୀର ଆଜିକାଲିକାର ଭାବନା-ତରଙ୍ଗ । ବୀର-ଉପେନ୍ଦ୍ର ସଂକ୍ଷେପରେ କେତୋଟି ଧାଡ଼ି କବିତାରେ ତହିଁରୁ କେଉଁଟି ଛାଡ଼ିଛନ୍ତି ? ଓଡ଼ିଶାର ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ମଣ୍ଡଳୀରେ ଭଞ୍ଜ-ସାହିତ୍ୟ ସମାଲୋଚନାର ନୂଆ ମାର୍ଗ ଫିଟିଲେ ସୁଖ ଓ ଉପକାର ହେବ ।



# ଭଞ୍ଜ-ସାହିତ୍ୟର କେତୋଟି ବିଭବ

'ଭଞ୍ଜ-ସାହିତ୍ୟରେ ରାଜ୍ୟପାଳନ' ଶୀର୍ଷକରେ କବିସମ୍ରାଟ ଉପେନ୍ଦ୍ର ରାଜନୀତି ଓ ଶାସନ-ତନ୍ତ୍ର ପରି ନୀରସ ବିଷୟର ସାର କିପରି କାବ୍ୟ-ରସରେ ରସାଳ କରି, ଅଳଙ୍କାର ଛଟାରେ ରୁଚିର କରି ପରଶିଛନ୍ତି, ତା' ଠାରୁ ଆମର ବର୍ତ୍ତମାନ ବିଭିନ୍ନ 'ବାଦ' ସମ୍ବଳିତ ଦଳ-ପ୍ରଗ୍ରରରୁ ଅଧିକ ଶିଖିବାର କିଛି ନାହିଁ ତାହାର ସୂଚନା ଦିଆଯାଇଛି । ସେଥିସଙ୍ଗେ ଭଞ୍ଜ-ସାହିତ୍ୟର ଆଧୁନିକ ବିଶ୍ଳେଷଣ ମୂଳକ ଯୁଗୋପଯୋଗୀ ସମାଲୋଚନା ଅଧ୍ୟାୟ ଫିଟିବାର ଆଶା କରାଯାଇଛି । ସେ ଆଲୋଚନା କ୍ରମରେ ସେହି ସାହିତ୍ୟର ଆଉ କେତୋଟି ବିଭବର ଉଲ୍ଲେଖ ଏଠାରେ କରାଯାଉଛି । ଏଥିଦ୍ୱାରା ଭଞ୍ଜସାହିତ୍ୟରେ ଆଧୁନିକ ଉତ୍କଳ ସାହିତ୍ୟିକଙ୍କ ଆଗ୍ରହ ଓ ମନୋନିବେଶ ଜନ୍ମିବାର ମନୋବାଞ୍ଛା ରହିଛି ।

ଭଞ୍ଜସାହିତ୍ୟ ଅନୈତିକ; ତହିଁରେ ଶୃଙ୍ଗାର, ଉଦ୍ଭଟ କାମ-ପ୍ରବୃତ୍ତିର ଚିତ୍ରଣ ସକଳ ନୀତି ନିୟମର ବିରୋଧୀ; ତଦ୍ୱାରା ଚରିତ୍ର ହାନିର ଆଶଙ୍କା ଅଛି— ଇତ୍ୟାଦି ଆକ୍ଷେପ ତ ଶୁଣିଥାଉଁ । ଶୃଙ୍ଗାର ବର୍ଣ୍ଣନର ସାହିତ୍ୟିକ ପରମ୍ପରା ଭିତରକୁ ନ ଯାଇ ଏଠାରେ କେବଳ ନୀତିଶିକ୍ଷାର କେତୋଟି ଉଦାହରଣ ଭଞ୍ଜ-ସାହିତ୍ୟରୁ ଦେଉଛୁ—

ପରଦ୍ରବ୍ୟ ପରସ୍ତ୍ରୀଙ୍କି ହରଣକୁ
ଲେଖୁ ଶୁଭକରି ତହୁଁ ମରଣକୁ—

କବି ପରସ୍ୱାପହରଣ, ପରଦାର ସମ୍ଭୋଗ ସକଳ ଶାସ୍ତ୍ର, ଧର୍ମର ସନାତନ ଶିକ୍ଷା ପ୍ରକାରେ ମହାପାପ ବୋଲି କହିବାରେ କୁଣ୍ଠିତ ହୋଇନାହାନ୍ତି । ବରଂ ମରଣ ତାହାଠାରୁ ଶ୍ରେୟସ୍କର ବୋଲି ବଜ୍ର-ନିର୍ଘୋଷରେ କହିଛନ୍ତି । ବ୍ୟଭିଚାର, ଉଚ୍ଛୃଙ୍ଖଳତା, ଚରିତ୍ର ଦୋଷର ସ୍ଥାନ ଏଠାରେ ରହିଲା କେଉଁଠାରେ ? ପକ୍ଷାନ୍ତରେ, ଆମର ଆଧୁନିକ କେତେକ ସାହିତ୍ୟର ନଗ୍ନ ଅସଂଯତ ପରକୀୟା-କାମକେଳିର ତରଳ ଚିତ୍ରରୁ ଭଞ୍ଜ-ସାହିତ୍ୟ କେତେ ଦୂରରେ, ତାହା ଏପରି କେତୋଟି ପଂକ୍ତିରୁହିଁ ବୁଝାଯାଇ ପାରେ । ଅନ୍ୟତ୍ର—

ଦୁଃଖ ସହି ଧୈର୍ଯ୍ୟ ହେଲେ କାର୍ଯ୍ୟ
ଲଭି ଅବଶ୍ୟ—

ସହିଷ୍ଣୁତା, ସହନଶୀଳତା, ଦୁଃଖରେ ଅଟଳତା ଅବଲମ୍ବନ କରି ଜୀବନର ପରମ ଉଦ୍ଦେଶ୍ୟ, ପୁରୁଷାର୍ଥ ସାଧନ କରିବାକୁ କବି ଯେଉଁ ଚିରନ୍ତନ ମହତ୍ ଶିକ୍ଷା, ପ୍ରେରଣା ଦେଇଛନ୍ତି, ତାହାକି ନୀତିଶାସ୍ତ୍ର ଅନୁମୋଦିତ ନୁହେଁ ? ପୁଣି—

ଦୁର୍ବଳ ମାରିବାକୁ ସମସ୍ତେ ଆଗ—

କବି ଏଠାରେ ଦୁର୍ବଳ ଉପରେ ପ୍ରବଳର ଅନବରତ ଅତ୍ୟାଚାର, ଶୋଷଣ-ନୀତି, ଅଧିକାର-ମୋହ, କ୍ଷମତା ରାଜନୀତିର ସାରାଂଶ ଗୋଟିଏ ଧାଡ଼ିରେ କିପରି ସୂଚେଇ-ଛନ୍ତି, ତାହାହିଁ ବିଚାର୍ଯ୍ୟ । କବିର କାର୍ଯ୍ୟ ସୂଚନାମୂଳକ (Suggestive) । କିନ୍ତୁ ବର୍ଣ୍ଣନାଶୀଳ (Descriptive) ବା ବିଶ୍ଳେଷଣାତ୍ମକ (Analytic) ନୁହେ । 'ସମାଜବାଦ' ବା 'ସାମ୍ୟବାଦ' ଏହାଠାରୁ ଅଧିକ କଅଣ କହୁଛି ? ଅନ୍ୟସ୍ଥାନରେ—

ଜୀବନରୁ ଅଧିକ କେହି ନଲେଖ—

ଦର୍ଶନ ଓ ମନସ୍ତତ୍ତ୍ୱର କି ସୁନ୍ଦର ସୂକ୍ଷ୍ମ ନିଦର୍ଶନ ! ଜୀବ ପକ୍ଷରେ ଜୀବନଠାରୁ ମୂଲ୍ୟବାନ ଆଉ କଅଣ ଅଛି ? ଜୀବନ ଉପାସନା, ଜୀବନ ନୀରଞ୍ଜନର ମଧୁର ଅଭିବ୍ୟକ୍ତି ! ଏହା କି ଯୁଗ ବିରୋଧୀ ? ଅପିଚ—

ବିଷହିଁ ହୋଏ ହିତ ସନ୍ନିପାତର—

ଜୀବନର ବାସ୍ତବ ଅନୁଭୂତିର ପ୍ରକାଶ । ଦେଶ-କାଳ-ପାତ୍ର ବିବେଚନାର ସମୁଚିତ ଶିକ୍ଷା । ସବୁକଥା ସବୁଠାରେ ପ୍ରଯୁଜ୍ୟ ନୁହେ; ବିପରୀତ-ଦ୍ୱନ୍ଦ୍ୱ-ପୂର୍ଣ୍ଣ ଜଗତ ଅସାମଞ୍ଜସ୍ୟର ହେତୁ; ଶୁଭାଶୁଭ ମିଶ୍ରିତ; ସହଜ ଅମଙ୍ଗଳ ବୋଲି କିଛି ନାହିଁ; ସରସତାହିଁ ଅମୃତର ସୋପାନ-ଇତ୍ୟାଦିର ଶିକ୍ଷା କବି ଏଠାରେ ଧାଡ଼ିକରେ ଦେଇଛନ୍ତି । ନୈତିକ କ୍ଷେତ୍ରରେ ଏହାର କି କିଛି ମୂଲ୍ୟ ନାହିଁ ? ପୁନର୍ବାର—

ଆରତ ହେଲେ କାର୍ଯ୍ୟ ନୁହଇ ବେଗ
କାଳକୁ ଚାହିଁ ଭେଗ ହୁଅଇ ଯୋଗ—

ସେହି ଜୀବନ ଶିକ୍ଷା ! ଜୀବନ-ଗୁରୁର ଉଦ୍‌ବୋଧନ-ଆଶାର ବାଣୀ, ଆଶ୍ୱାସନାର ଅଭୟ ! ପୁନରପି—

ଦୀର୍ଘନେତ୍ରୀ ସତ୍ୟଜନୟିତ୍ରୀ ବୋଲ ଘେନ
ଅଙ୍ଗୀକାର କଲକଥା ନ କରିବ ଆନ ।

ସତ୍ୟେ ବିଷ ଭକ୍ଷୀ ହର
'ସତ୍ୟେ ଲଙ୍ଘୁ ନାହିଟି କୂଳକୁ ଅକୁପାର ।
ଅସୁର ଯୁବତୀ ବୃନ୍ଦାବତୀ ପୂର୍ବେ ଥିଲା
ଶ୍ରୀପତି କେତେ ସୁନ୍ଦର ବର ନ ରସିଲା
ମାୟାଧର କଲେ ମାୟା
ସତ୍ୟଘେନି ଅନଳେ ଦହନ କଲା କାୟା—

ସତ୍ୟର ଡ଼ିଣ୍ଡିମ ! ସନାତନ ସତ୍ୟର ବିଜୟ ଘୋଷଣା ! କେଉଁ ପ୍ରାଚୀନ କାଳର ଉପନିଷଦ ମୁଖରିତ 'ସତ୍ୟମେବ ଜୟତେ'ର ପୌରଣିକ ପ୍ରତିପାଦନ ! ଏ ବିଂଶ ଶତାବ୍ଦୀର ମିଛ ଭଣ୍ଡାର, କୌଶଳ ନୀତି, ହିଂସା କପଟ, 'ମୁଖେ ହରି ପେଟେ ଛୁରି' ଆଗରେ ଅଡୁଆ ବୋଧହୋଇପାରେ. ପୁରୁଣାକାଳିଆ ମରହଟ୍ଟି ଅମଳିଆ ଲାଗି-ପାରେ । ତଥାପି ସତ୍ୟ ଯୁଗ ଉପରେ ନିର୍ଭର କରେ ନାହିଁ । ସତ୍ୟ ଚିରକାଳ ସତ୍ୟ; ଆଲୋକ ଚିରନ୍ତନ ଆଲୋକ । ଭଞ୍ଜ-କବି ସେ ବୈଦିକ ଛନ୍ଦର ଆବୃତ୍ତି କରିଛନ୍ତି କାବ୍ୟକଳାର ସମ୍ମୋହନ ରୂପରେ । ଏପରି ଅସଂଖ୍ୟ ଉଦାହରଣ ଅଛି । ତେବେ ଭଞ୍ଜ-କବି କି ଅନୈତିକ ?

ଭଞ୍ଜ-ସାହିତ୍ୟର ଆଉ ଗୋଟିଏ ବିଭବ ଭୁଗୋଳ ଚର୍ଚ୍ଚା ଟିକିଏ ଦେଖିବା । ଭୁଗୋଳ ଆଧୁନିକ ଶିକ୍ଷାର ଗୋଟିଏ ପ୍ରଧାନ ପଠିତବ୍ୟ ବିଷୟ । ଦେଶ, ସମାଜ, ବ୍ୟକ୍ତି, ରାଜନୀତି, ଅର୍ଥନୀତି ଇତ୍ୟାଦି ଉପରେ ଭୌଗୋଳିକ ପରିସ୍ଥିତିର ପ୍ରଭାବ ଆଜି ନାନା ଗବେଷଣାର ବିଷୟ ହୋଇଚି । ବିଭିନ୍ନ ସ୍ଥାନ ଓ ଭୂଖଣ୍ଡର ନାମ ଓ ପରିଚୟ ଭୌଗୋଳିକ ଇତିହାସର ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ । କବିବର ପରମ୍ପରା କ୍ରମେ ସପ୍ତଦ୍ୱୀପ—ଜମ୍ବୁ, ପ୍ଲକ୍ଷ, କ୍ରୌଞ୍ଚ, ଶାକ, ଶାଲ୍ମଳୀ, ପୁଷ୍କରର ଉଲ୍ଲେଖ କରିଛନ୍ତି; ସପ୍ତ ପାତାଳ—ଅତଳ, ବିତଳ, ନିତଳ, ଭସ୍ତି, ମହାକ୍ଷ, ସୁତଳ, ପାତାଳ ପୁଣି ସପ୍ତ ଭୁବନ—ଭୂ, ଭୁବ, ସ୍ୱହ, ମହ, ଜନ, ତପ, ସତ୍ୟର ଉଲ୍ଲେଖ ମଧ୍ୟ କହିଛନ୍ତି । ମହାଭରତ ନିର୍ଦ୍ଦିଷ୍ଟ ଉତ୍ତର—କୁରୁ, ରମ୍ୟକ, ଭଦ୍ରାଶ୍ୱ, କିଂପୁରୁଷ, ଇଳାବୃତ, ହରିବର୍ଷ, କେତୁମାଳ ଇତ୍ୟାଦିର ଅବତାରଣା ମଧ୍ୟ ଭଞ୍ଜ-ସାହିତ୍ୟରେ ଦେଖାଯାଏ । ଏହାଛଡ଼ା ଭରତର ଯେତେବେଳର ବିଭିନ୍ନ ନଗର ତଥା ପ୍ରଦେଶର ପରିଚୟ 'ବୈଦେହୀଶ ବିଳାସ'ରେ ସୀତାଙ୍କ ବିଭୂଷଣ ଓ ପ୍ରସାଧନ ସୂତ୍ରରେ ଦ୍ୱିବିଧାର୍ଥରେ କିପରି କାବ୍ୟଛଟାରେ ଦିଆଯାଇଛି, କବି ଶୁଷ୍କ ଭୌଗୋଳିକ ତାଲିକାକୁ ମଧ୍ୟ ନିଜ ପ୍ରତିଭା ବଳରେ କିପରି କୌତୂହଳପ୍ରଦ ଓ ଚିତ୍ତାକର୍ଷକ କରିପାରେ, କବି ସଂସାରର ସାଧାରଣ ବିଷୟ ବସ୍ତୁ କିପରି ରସାପ୍ଳୁତ କରି

ମନୋରଞ୍ଜନ କରିପାରେ—ତାହାର ପ୍ରବେଶ ଏହି କେତୋଟି ପଂକ୍ତିର ପରିଷ୍କାର ଜଣାଯିବ—

ବେଶ କରି ସାରି ଥିଲେ ଆଗୁ ଜାଣି
ବିହରଇ ସର୍ବ ଶୋଭ ପୂରି ପୁଣି ।
ବିଦ କୁନ୍ତଳ ଚମ୍ପା ପୁଷ୍ପାଲିଙ୍ଗନ
ବିମଳକ ଗ୍ରେଳ ମାଳବରେ ଘେନ ।
ବିଚଳିତ କନକ କଟକ କାଞ୍ଚୀ
ବେଳେ ବେଳେ ଖଞ୍ଜିତ ହେବାର ପାଞ୍ଚି ।
ବିଭୂଷଣ ରତ୍ନପୁର ଶ୍ରୀନଗର
ବିଶାଳରେ କରିଅଛି ସେ ଆଦର ।
ବାହ୍ଲୀକରେ ଅଙ୍ଗକୁ କରଇ କୋଳ
ବର୍ଦ୍ଧମାନ କରେ ହାସ ମହୋଜ୍ଜ୍ୱଳ—

ସୀତାଙ୍କୁ ସଖୀମାନେ ତାଙ୍କ ଅଙ୍ଗରେ ସବୁ ଶୋଭପୂରି ବିହାର କରଇ ବେଶ କରି ସାରିଥିଲେ । ଚମ୍ପାଫୁଲ ମଣ୍ଡନରେ ତାଙ୍କର କେଶଗୁଚ୍ଛ ସୁନ୍ଦର ହୋଇଥିଲା । ଶୁଭ୍ର ଅଙ୍ଗବାସ ମାନରେ ସଜ୍ଜିତ ହୋଇଥିଲା । ସୁନା କଙ୍କଣ ଓ କଟିକିଙ୍କିଣୀ ଖଞ୍ଜାହେବା ଦ୍ୱାରା ସେ ଗୁଡିକ ଦୋହଲି ଥିଲେ । ସୀତାଙ୍କର ଅଙ୍ଗ ବିପୁଳ ଭବରେ ରତ୍ନ ଅଳଙ୍କାର ଦ୍ୱାରା ବିଭୂଷିତ ହୋଇ ଲକ୍ଷ୍ମୀଙ୍କର ନିବାସ ସ୍ୱରୂପ ହୋଇଥିଲା । ସେହି ଅଙ୍ଗକୁ କର୍ପୂର ରଜ, କୁଙ୍କୁମ ଇତ୍ୟାଦିରେ ସମ୍ମାର୍ଜ୍ଜନ କରିବା ଦ୍ୱାରା ତାଙ୍କର ଅତି ଉଜ୍ଜ୍ୱଳ ହାସ ବୃଦ୍ଧି ପାଇଥିଲା । ଆମର ପ୍ରାଚୀନ ପ୍ରସାଧନର ଶୈଳୀ ଓ ରୁଚିର ରସପୂର୍ଣ୍ଣ ଆଲେଖ୍ୟ ସଙ୍ଗେ କୁନ୍ତଳ, ଚମ୍ପା, ପୁଷ୍ପପୁର, ଗ୍ରେଳ, ମାଳବ, ଲଙ୍କା, କାଞ୍ଚୀ, ରତ୍ନପୁର, ଶ୍ରୀନଗର, ବିଶାଳ, ଅଙ୍ଗ, ବର୍ଦ୍ଧମାନ ଇତ୍ୟାଦି ନଗରୀ ବା ରାଜ୍ୟର ଆଭାସ ଏଠାରେ କିପରି ଯୋଡା ଯାଇଛି—ତାହାହିଁ ଅନୁଭବ କରିବାର କଥା । ଦଶରଥ-ଜନକ ମିଳନ ପ୍ରକରଣରେ ସେହି ଗ୍ରନ୍ଥରେ ଅନ୍ୟତ୍ର କବି ଗାଇଛନ୍ତି—

ବାରନିଧି ସଙ୍ଗମ କି ଋଷିକୁଲ୍ୟା—

ନଦୀର ସାଗର ସଙ୍ଗମର ନୈସର୍ଗିକ ପରିଣତ ମୂଳକ ପ୍ରାକୃତିକ ବିଭବର ସଙ୍କେତ ସଙ୍ଗେ, ହୃଦୟପୂର୍ଣ୍ଣ ସ୍ନେହପୂର୍ଣ୍ଣ ଏକୀଭୂତ ବନ୍ଧୁମିଳନର ମଧୁର ମନସ୍ତତ୍ତ୍ୱପୂର୍ଣ୍ଣ ଆଭାସ ସଙ୍ଗେ, କବି ଏଠାରେ ପ୍ରାଚୀନ ଉତ୍କଳର ଗୋଟିଏ ପ୍ରଧାନ ତୀର୍ଥ ଋଷିକୁଲ୍ୟାର ପୂର୍ବଗାମିନୀ ପ୍ରବାହ ବଙ୍ଗୋପସାଗରରେ କିପରି ନିଜକୁ ମିଶାଇ ଦେଇଛି, ସେହି ଭୌଗୋଳିକ କଥା-ବସ୍ତୁ ମଧ ପ୍ରକଟ କରିଅଛନ୍ତି । ବିଷୟ ବତାଇବାର ଏଠାରେ ଅବକାଶ ନାହିଁ ।

ଭଞ୍ଜ ସାହିତ୍ୟର 'ଆଉ ଗୋଟିଏ ବିଭବ—'

ଲଳିତ କଳା (Fine Arts) କିଞ୍ଚିତ୍ ଏଠାରେ ଦେଖାଯାଉ । କାବ୍ୟ ବା କବିତା (Poesy) ନିଜେ ଗୋଟିଏ ଲଳିତ କଳା । ସତ୍-ଚିତ୍-ଆନନ୍ଦ ମଧ୍ୟରୁ କଳାରେ ଆନନ୍ଦର ବିଶେଷ ବିଳାସ; ସତ୍ୟ-ଶିବ-ସୁନ୍ଦର ମଧ୍ୟରୁ କଳାରେ ସୁନ୍ଦରର ବିଶେଷ ପ୍ରକାଶ । କଳା ପୁଣି ସ୍ଥୂଳ ଓ ସୂକ୍ଷ୍ମ ବିଭେଦରେ ଗ୍ରହଣୀୟ । କଳାର ସୂକ୍ଷ୍ମତାରେ, ଲାଳିତ୍ୟରେହିଁ ସୌନ୍ଦର୍ଯ୍ୟର ଦିବ୍ୟରୂପ ପ୍ରତିଭାତ ହୋଇଥାଏ । ଏଣୁ କାବ୍ୟ, ଚିତ୍ରବିଦ୍ୟା, ସଙ୍ଗୀତ ଏହି ଦୃଷ୍ଟିରୁ ଗୋଟିଏ ଅବିଭକ୍ତ ପୁଞ୍ଜ ବୋଲି ପରମ୍ପରାକ୍ରମେ ବିବେଚିତ ହୋଇଅଛି । ସୌନ୍ଦର୍ଯ୍ୟର ବର ଉପାସକ, ସୌନ୍ଦର୍ଯ୍ୟ-ଦେବତାର ସର୍ବଶ୍ରେଷ୍ଠ ପୂଜାରୀ, କାବ୍ୟକଳାର ଅନୁପମ କଳାକର ଯେ ସଂଲଗ୍ନ ଅନ୍ୟ ଲଳିତ କଳା ସଙ୍ଗୀତ, ଚିତ୍ରବିଦ୍ୟା ଇତ୍ୟାଦିର ଭୂରିଭୂରି ପ୍ରଶସ୍ତି ଗାୟନ କରିବେ—ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ଏ ବିଷୟ ଏତେ ବିଶାଳ ଯେ ତାର କ୍ଷୀଣ ଆଭାସ ଦେବା ମଧ୍ୟ ଏଠାରେ ସମ୍ଭବ ନୁହେ । ବାସ୍ତବିକ ଦେଖିଲେ ତାଙ୍କ ଗ୍ରନ୍ଥର ଆଦ୍ୟୋପାନ୍ତ ଏହି ଦୃଷ୍ଟିରୁ ବୋଧ କରାଯାଇପାରେ । ଯାହାହେଉ, ଆଲୋଚ୍ୟ ବିଷୟର କେତୋଟି ବିଚ୍ଛିନ୍ନ ଉଦାହରଣ ଦେବା ଏଠାରେ କର୍ତ୍ତବ୍ୟ ମନେ କରୁଛୁ । ସଙ୍ଗୀତ ଲଳିତ କଳାର ଶ୍ରେଷ୍ଠ ଅଙ୍ଗ ବୋଲି କହନ୍ତି । କାବ୍ୟ ବା ଚିତ୍ର ବା ସ୍ଥାପତ୍ୟରେ ଉପାଦାନ ସଂଗ୍ରହ ଓ ତହିଁର ପ୍ରୟୋଗର ଯେଉଁ ବାଧା, ନିବନ୍ଧନ, ଲକ୍ଷଣର ପ୍ରତିବନ୍ଧକତା ଆସେ ସଙ୍ଗୀତରେ ତାହା ରହେ ନାହିଁ । ସଙ୍ଗୀତରେ ଆନନ୍ଦ ଶାଶ୍ୱତ ସହଜ ସରଳ ଭାବରେ ଫୁଟି ଉଠେ । ସେଥିପାଇଁ ସୃଷ୍ଟିର ଆଦ୍ୟକାଳରୁ ମନୁଷ୍ୟକଣ୍ଠରୁ ସଙ୍ଗୀତର୍ ଢେଉ ଖେଳିଛି; ପ୍ରଥମ ବୈଦିକ ଛନ୍ଦ ସଙ୍ଗୀତମୟ ହୋଇ ଉଠିଛି । ଏହି ସଙ୍ଗୀତ-ପର୍ଯ୍ୟାୟରେ ଭାରତୀୟ ପରମ୍ପରାକ୍ରମେ ବୀଣା-ବାଦନ ପ୍ରଥମ ସ୍ଥାନ ଅଧିକାର କରିଛି । ଭଞ୍ଜ-ସାହିତ୍ୟରେ ଏହାର ଅସଂଖ୍ୟ ଉଲ୍ଲେଖ ଅଛି । ସେଥିସଙ୍ଗେ ସ୍ୱର ଓ ଯନ୍ତ୍ର ଉଭୟ ସଙ୍ଗୀତର ବୈଜ୍ଞାନିକ ପ୍ରଣାଳୀ (Technique) ସମ୍ବନ୍ଧରେ ମଧ୍ୟ କବିଙ୍କର ଶ୍ରଦ୍ଧାପୂର୍ଣ୍ଣ ସ୍ୱାନୁଭୂତି ପ୍ରକାଶ ପାଉଛି ।

ରାବଣ ତପସ୍ୟା କଲାବେଳେ ତାହାର ଭୁଜକୁ ବୀଣାଦଣ୍ଡ, ମୁଣ୍ଡକୁ ତୁମ୍ବୀ, ନାଡ଼ିକୁ ଗୁଣ କରି ବିଧାତାର ବିନୟ ଗୀତ ଗାଉଗାଉ ବ୍ରହ୍ମା ପ୍ରସନ୍ନ ହେଲେ । ଅନ୍ୟତ୍ର—

ବଲ୍ଲକୀ ଅନ୍ତରେ ଯାଇ ଆରମ୍ଭିଲେ ଗୀତ
ବଲ୍ଲକୀ ବଜାଇ ସପ୍ତସ୍ୱର କଲେ ଜାତ—

ଜଳକ୍ରୀଡ଼ା ପୂର୍ବରୁ ସୀତାଙ୍କ ସହଚରୀମାନେ ପ୍ରମୋଦ ଉଦ୍ୟାନରେ ଭ୍ରମଣ କଲାବେଳେ ଅନ୍ତରାଳରୁ ଗୀତ ଗାଇଲେ, ବୀଣା ବଜାଇ ସପ୍ତସ୍ୱର ଜାତ କଲେ । ପୁନରପି—

ବସନ୍ତଦୂତ ଧ୍ୱନି କଲବେଳେ କେତେ ଇଙ୍ଗିତ
ବସନ୍ତ ରାଗରେ ଆଳାପ କରଇ ଗୀତ—

ପ୍ରଣୟ-ପର୍ବର ଅନୁକୂଳ କାଳ ବସନ୍ତଋତୁ ଆଗମନରେ ବସନ୍ତ-ଦୂତ କୋକିଳ କେତେ ଇଙ୍ଗିତ କରି ବସନ୍ତ ରାଗରେ ଆଳାପନ କରି ଗୀତ ଗାଇଲା । ସଙ୍ଗୀତ ଶାସ୍ତ୍ରର ରାଗରାଗିଣୀରେ କବିଙ୍କର ପ୍ରବେଶ ଏଠାରେ ସ୍ପଷ୍ଟ ।

ପୁନର୍ବାର—

ରାମ ଲକ୍ଷ୍ମଣ ମିଥିଳାରେ ପ୍ରବେଶ କରନ୍ତେ—

ବୟସୀଏ ଗୀତଗାଇ କେ ରମା ବୀଣା ବଜାଇ
ଥୋଇ ଅଛି ଭବି ତହିଁ କୁଚ ରେମାଞ୍ଚି
ବାଜିତ କିଙ୍କିଣୀ ସ୍ୱର ମଣିତ ଧାଇଁ ପ୍ରସ୍ୱର
ଆମ୍ଭଠାରେ ଦେଲଭଳି ରମିଲା ଆଜି
ବିକ୍ଷୋର ସେ ରାଗରେ ରାଗ ।

ବୋଲୁଥିଲେ ରାମକେଶ୍ୱ ରଳ ସଂଯୋଗ—

କେଉଁ ତରୁଣୀ ଗୀତ ଗାଉଥିଲା । ସେ ଗୀତକୁ ଅନୁସରଣ କରି ତାର ସଖୀ ବୀଣା ବଜାଉଥିଲା । ରାମ ଲକ୍ଷ୍ମଣ ଆସିବା ଶୁଣି ସଖୀ ବୀଣାଟାକୁ ଫିଙ୍ଗିଦେଇ ଧାଇଁଲା । ସେ ଧାଇଁବାରେ ତାର କଟି କିଙ୍କିଣୀ ନାଦ କଲିବାରୁ, ତରୁଣୀ ବାସ୍ତବ ପରିସ୍ଥିତି ପ୍ରତି ଦୃଷ୍ଟିଦେଇ କୁଚ-ରେମାଞ୍ଚିକୁ ଦେଖି ଭାବିଲା, "ସଖୀ ମୋଠାରେ ବୀଣାକୁ ଦେଇ ପଳାଇଲାକି ?" ସେ ସ୍ନେହରେ ଗାୟିକା ନିଜ ଗୀତର ରାଗ ପାଶୋରି ପକାଇଲା; ରାମକେଶ୍ୱ ରାଗ ବୋଲୁଥିଲା, ରାମକେଳି ହୋଇଗଲା; ଅର୍ଥାତ୍ ରାମଦର୍ଶନ ପିପାସା ଚିତ୍ତ ବିଭ୍ରମ-ଜାତକଲା । ସ୍ୱର ଶାସ୍ତ୍ରର ଜ୍ଞାନ, ଶ୍ଳେଷ ପ୍ରଣୟାନୁରାଗ, ଗାର୍ହସ୍ଥ୍ୟ ସଙ୍ଗୀତ ଚର୍ଚ୍ଚା, ସଖୀମେଳ, ରୂପସମ୍ମୋହ, ପ୍ରେମ ଉତ୍କଣ୍ଠା, ସ୍ନେହାତିଶଯ୍ୟରେ ସଂଜ୍ଞାଲୋପ ଇତ୍ୟାଦିର ଗୋଟିକ ପଂକ୍ତିରେ କି ମଧୁର ସମାବେଶ ! ଏହା ସ୍ୱାଦ୍ୟ । ଏହାଉପରେ ଆଲୋଚନା ଆଖୁଖାଇ ପାଣି ପିଇଲା ଭଳି ହେବ ।

ଚିତ୍ରବିଦ୍ୟା ସମ୍ବନ୍ଧରେ ଗୋଟିଏ ଦୃଷ୍ଟାନ୍ତ—

ବନ୍ଧନ କଲେ ନାନାଛନ୍ଦେ ସେ ନିବି ପୁନଃପୁନଃ
ବନ୍ଧଚିତ୍ର ପଟ ଏକାନ୍ତେ ଗ୍ରହିଁବାରେ ସୁମନ—

ସୀତା ଯୌବନ ପ୍ରାପ୍ତି ଉତ୍ତାରୁ ନିବି ଥରକୁ ଥର ବାନ୍ଧୁଥାନ୍ତି, ବନ୍ଧ ଚିତ୍ରପଟକୁ ଏକାନ୍ତରେ ଗ୍ରହିଁବାରେ ଆନନ୍ଦ ଅନୁଭବ ହେଉଥାନ୍ତି । ଘରେ ଚିତ୍ରବିଦ୍ୟାର ପ୍ରସାର,

ତରୁଣୀର ଚିତ୍ରସମ୍ଭାରରେ ଆଦର, ପ୍ରଣୟ ଔତ୍ସୁକ୍ୟରେ ଏକାନ୍ତ ବିହାରର ନିଦର୍ଶନ ଏଠାରେ ସନ୍ନିହିତ । ସ୍ଥାପତ୍ୟ ସମ୍ବନ୍ଧେ ଗୋଟିଏ ଦୃଷ୍ଟାନ୍ତ—

ବନାଇବାରେ ପୁଣି ଯେ, ପ୍ରତିମାଏ
ବପୁବନ୍ତ ହେଲ ଘୁଣାକ୍ଷର ପ୍ରାୟେ
ବିଶ୍ୱକର୍ମାକୁ ଘେନି ଗର୍ବିଲେ ଦୁଇ
ବିନ୍ଧାଣିତ୍ୱ ବିବାଦକୁ ସେ ଦେଖାଇ—

ବିଧାତା ଓ ବିଶ୍ୱକର୍ମା ଦୁହେଁ ପ୍ରତିଯୋଗିତା କରି ଗୋଟିଏ ପ୍ରତିମା ତିଆର କଲେ । କିନ୍ତୁ ତାଙ୍କର ପାରିବାର ପଣିଆ କିଛି ଦିଶିଲ ନାହିଁ । ପୋକ କାଟୁ କାଟୁ ଅକ୍ଷର ହେଲପରି ସେ ପ୍ରତିମା ବପୁବନ୍ତ ହେଲ । ସୃଜନ-କଳାର ବିଚିତ୍ର ପରିପାଟୀର କି ସରଳ ଅଭିବ୍ୟକ୍ତି ! ବୟନ କଳା (Weaving)ର ଗୋଟିଏ ଦୃଷ୍ଟାନ୍ତ—

ବାଁଶ ନଳୀରେ ଥିବାର ଯେ
ବାଛି ପିନ୍ଧି ଦୂର୍ବାଦଳ ନୀଳତେଜ
କୋଳଇଛି ଶ୍ରୀରମର ଯେ—

ସୀତା ଶ୍ରୀରମଙ୍କର କୋଳରେ ବସିବାକୁ ଇଚ୍ଛାକରି ବାଉଁଶ ନଳୀରେ ଥିବାର ଘାସ ବର୍ଣ୍ଣ ଶାଢ଼ି ବାଛି ପିନ୍ଧିଲେ । ସରୁ ଝିନବସ୍ତ୍ର ବୟନରେ ପ୍ରାଚୀନ ଭରତର ଉତ୍କର୍ଷ ସଙ୍ଗେ କ୍ରମେ ପରାଧୀନତା ବଶରୁ ତାହା କିପରି ଲୋପ ହୋଇଛି, ସେ ଐତିହାସିକ ସଙ୍କେତ କବି ଏଠାରେ ଦେଇଛନ୍ତି । ଉପେନ୍ଦ୍ରଙ୍କ ଏ ବହୁମୁଖୀ ପ୍ରତିଭ ଦୃଷ୍ଟିରେ ସେ ଖାଲି ବୀଭତ୍ସ ଯୌନକ୍ରିୟା ବର୍ଣ୍ଣନାରେ ନିଜକୁ ଶେଷ କରିଛନ୍ତି, ଏହା ଯେଉଁମାନେ କହୁଛନ୍ତି, ତାଙ୍କର ଆଖି ଏବେ ହେଲେ ଫିଟିବକି ?



# ଅତୀତ ଭାରତ

ଅତୀତ ପ୍ରତି ସତୃଷ୍ଣ ଦୃଷ୍ଟି ଫେରାଇବା ମନୁଷ୍ୟର ସ୍ୱଭାବଗତ । ଅତୀତ ମୃତ, ନୀରସ, ଜଡ଼—ଏପରି ଭାବିବା ଗୋଟାଏ ମାନସିକ ବିକୃତି । ବାସ୍ତବିକ୍ ଦେଖିବାକୁ ଗଲେ ନିୟତ ପ୍ରଧାବିତ ତରଙ୍ଗାୟିତ ଜୀବନ-ପ୍ରବାହରେ ବର୍ତ୍ତମାନର ଅସ୍ତିତ୍ୱ ମାନିବାହିଁ ଦୁରୂହ । ଯାହା ଏହି ମୁହୂର୍ତ୍ତରେ ନିକଟ ଇନ୍ଦ୍ରିୟାନୁଭୋଗ୍ୟ ବସ୍ତୁତଃ ବିଦ୍ୟମାନ, ପର ମୁହୂର୍ତ୍ତରେ ତାହା ଅତୀତର ଅନନ୍ତ ଆବର୍ତ୍ତନରେ ଲୁକ୍କାୟିତ । ଜୀବନର ଉଭୟ ପାର୍ଶ୍ୱରେ ଦୁଇଟି ବିପରୀତ ଅନନ୍ତ ପଥ ଦୃଶ୍ୟ-ମାନ—ଅତୀତ ଓ ଭବିଷ୍ୟତ୍ । ଶତ ଆଶା-ଆକାଂକ୍ଷା-କଳ୍ପନା-ରଞ୍ଜିତ ଭବିଷ୍ୟତ ପ୍ରତି ଉତ୍ସୁକ ଦୃଷ୍ଟି ପକାଇଲାବେଳେ ଅତୀତହିଁ ଆମର ଉପବେଶନର ସ୍ଥାନ । ଆଜି ସୃଷ୍ଟି ଯାହା, ଧର୍ମ ଯାହା, ସଭ୍ୟତା-ସଂସ୍କୃତି ଯାହା, ଜୀବନ ଯାହା, ତାହା କେବଳ ଅତୀତର ଭାବ, ଚିନ୍ତା ଓ ଘଟଣାରାଜି ସଂଘର୍ଷର ପ୍ରତିଫଳ । ସୃଷ୍ଟିର ମହାୟାନ ବୈଚିତ୍ର୍ୟରେ ବିଭୋର ହୋଇ ଆମ୍ଭେମାନେ ଅତୀତକୁ ଦୃଷ୍ଟି ଫେରାଉ, ଭବିଷ୍ୟତକୁ ଦୃଷ୍ଟି ପକାଉ—କ୍ଷଣିକ ବର୍ତ୍ତମାନର ଅଭାବ ଓ ଉତ୍କଣ୍ଠା ଆକୁଳ ହୋଇ ଦୀର୍ଘଶ୍ୱାସ ନିକ୍ଷେପ କରୁ । ଏହି ଚିର ଉତ୍କଣ୍ଠାରେ ହିଁ ଆମର ରୁକ୍ଷ ବାସ୍ତବ—ତାକୁ ସରସ ସୁନ୍ଦର ମଧୁର କରିଦିଏ ଅତୀତର ପ୍ରେରଣା ଓ ଭବିଷ୍ୟତର ଆକାଂକ୍ଷା । କିନ୍ତୁ ଭବିଷ୍ୟତ୍ ଅନିର୍ଦ୍ଦିଷ୍ଟ, ସନ୍ଦେହ ଛାୟା-ବିଜଡ଼ିତ, ପରିବର୍ତ୍ତନଶୀଳ, ତେଣୁ ଆଜି ଅତୀତ ହିଁ ଆମର ସମ୍ବଳ ।

ଭାରତ ! ପୁଣ୍ୟଭୂମି ଧର୍ମପ୍ରାଣ ପୌରାଣିକ ଭାରତ ! ଉତ୍ତରରେ ଯାହାର ଅଭ୍ରଚୁମ୍ବି ତୁଷାରବୃତ ଦେବାଧିଷ୍ଠିତ ହିମାଳୟ; ଅନ୍ୟ ତିନିପାର୍ଶ୍ୱରେ ଯାହାର ସୁନୀଳ ବୀଚି-ବିକ୍ଷୋଭିତ ବିକମ୍ପିତ ସାଗର; ବକ୍ଷରେ ଯାହାର ସ୍ୱଚ୍ଛ-ସଲିଳା ଶସ୍ୟ-ଶ୍ୟାମଳା ପ୍ରାଣ ଦାୟିନୀ ସିନ୍ଧୁ-ଗଙ୍ଗା-ଗୋଦାବରୀ କୃଷ୍ଣା, ଶ୍ୟାମଳ ସ୍ୱର୍ଣ୍ଣପ୍ରସୂ ଦିଗନ୍ତବିସ୍ତାରିତ କ୍ଷେତ୍ରରାଜି, ଉପତ୍ୟକାଶୋଭୀ ମଣିମାଣିକଭରା ନିବିଡ଼ ଅରଣ୍ୟାନୀ । ଭାରତର ଜଳବାୟୁରେ ଆମର କଳେବର ପୁଷ୍ଟ, ଭାରତର ସଭ୍ୟତା ଆଲୋକରେ ଆମର ଜୀବନ ପ୍ରତିଭାତ, ଭାରତ ସଂସ୍କୃତିରେ ଆମର ଜ୍ଞାନ ସମୃଦ୍ଧ, ଭାରତର ମଞ୍ଜୁଳ ନୈସର୍ଗିକ କଳା ସାହିତ୍ୟରେ ଆମର ପ୍ରାଣ ସ୍ନିଗ୍ଧ ଓ ସରସ, ଭାରତର ସୁଖ-ଦୁଃଖହିଁ ଆମର କାମ୍ୟ ବସ୍ତୁ-ଭାରତହିଁ ଆମର ସମ୍ବଳ । ଭାରତର ଅତୀତ ହିଁ ଆମ ଭଗ୍ନ ଜୀବନ ବୀଣାତାରରେ ପୀୟୂଷନିସ୍ୟନ୍ଦୀ ଅମର ଝଙ୍କାର !

କିନ୍ତୁ ହାୟ, ବର୍ତ୍ତମାନ ଭାରତ କି କ୍ଷୀଣ କରୁଣ ବିଷାଦ ଘନ ଆଚ୍ଛାଦିତ ! ନିରାଶାର ଗଭୀର ବ୍ୟଥା ଆଜି ଭାରତୀୟ ପ୍ରାଣକୁ ସ୍ପର୍ଶ କରିଅଛି । ଦୁର୍ବଳତାର ଉତ୍କଟ ଅନ୍ଧକାର ଆଜି ଭାରତରେ ଅମାନିଶାର ସୃଷ୍ଟି କରିଅଛି । ଦାସତ୍ୱର ଲୌହ ଚାପ ଆଜି ଭାରତୀୟର ଭବିଷ୍ୟତ୍ ସ୍ୱାଧୀନ ସ୍ପନ୍ଦନକୁ କ୍ଷୀଣତର କରୁଅଛି । ଦାରିଦ୍ର୍ୟର ଘୋର ଘନଘଟା ଆଜି ଭାରତ-ଭାଗ୍ୟ-ଆକାଶକୁ ନୀରନ୍ଧ୍ର ଭାବରେ ଘୋଟି ରଖିଅଛି । ଆଜି ଭାରତରେ ବୟୋବୃଦ୍ଧ ଶତ-ଅନୁଭୂତି ଘେନି ସମାଜରେ ଜ୍ଞାନର ଦିବ୍ୟ ଆଲୋକ ପ୍ରସାରଉ ନାହାନ୍ତି; ତରୁଣ ନିର୍ଭୟ ଚିତ୍ତରେ କେଶରୀ ସମ ଜୀବନର ଅନନ୍ତ ଲକ୍ଷ୍ୟ ସାଧନରେ ବ୍ରତୀ ନାହାନ୍ତି, କୁଳକାମିନୀ ପ୍ରେମ ଓ ସତ୍ୟର ଆଦର୍ଶ ପଥ ଅନୁସରଣ କରି ଜୀବନ-ମରୁରେ ଶାନ୍ତିର ଅନାବିଳ ମନ୍ଦାକିନୀ-ଧାରା ବୁହାଉ ନାହାନ୍ତି; ଶିଶୁ ଅମର ବିଭବର ମଧୁ ସ୍ୱପ୍ନରେ ଭାସିଭାସି ସ୍ମିତ ଅଧରରେ ହାସ୍ୟର ଅପୂର୍ବ ଛଟା ଖେଳାଉ ନାହାନ୍ତି । ଭାରତର ପଲ୍ଲୀ ଆଜି ଶ୍ରୀହୀନ; କଳହ, ମନୋମାଳିନ୍ୟ, ମୂର୍ଖତା ଓ ଆଳସ୍ୟର ପୈଶାଚିକ କେନ୍ଦ୍ର । ଭାରତରେ ଶିକ୍ଷାର ମଧୁର ମୋହନ ଦୀପ୍ତି ଆଜି ଖେଳି ଉଠୁ ନାହିଁ । ଭାରତୀୟ ବାଣିଜ୍ୟ ତରୀ ଆଜି ସୁଦୂର ରୋମ ସାମ୍ରାଜ୍ୟ କୂଳରେ ଲାଗିବାର ଦେଖାଯାଉ ନାହିଁ । ଭାରତର ସଭ୍ୟତା, ବିଶ୍ୱବ୍ୟାପକ ଚିନ୍ତା, ଆଧ୍ୟାତ୍ମିକ ସାଧନା ଆଜି ପୁସ୍ତକ ଓ ପରମ୍ପରାଗତ; କିନ୍ତୁ ଭାରତ କି ଚିରଦିନ ଏହିପରି ଥିଲା ? ଏହାର ଉତ୍ତରରେ ଅତୀତର ବର୍ଣ୍ଣନାତ୍ମକ ପୃଷ୍ଠା ଇତିହାସହିଁ ଆମର ବର୍ତ୍ତମାନ ଆଲୋଚ୍ୟ ।

ବହୁଯୁଗ ପୂର୍ବରେ ଯେତେବେଳେ ଅସଭ୍ୟତାର ଘନ ଅନ୍ଧକାର ସମଗ୍ର ଜଗତକୁ ଆବର୍ତ୍ତ କରି ରଖିଥିଲା, ଭାରତ ସେତେବେଳେ ଚିନ୍ତା ଓ ସାଧନାପଥରେ ଉତ୍କର୍ଷ ଲାଭ କରିଥିଲା, ଏହା କହିବା ଚର୍ବିତ ଚର୍ବଣ ମାତ୍ର । ହିନ୍ଦୁସ୍ଥାନର ନୈସର୍ଗିକ ସୁଷମା ଓ ପ୍ରକୃତି ବୈଚିତ୍ର୍ୟରେ ଆକୃଷ୍ଟ ହୋଇ ଭାରତୀୟ ଆର୍ଯ୍ୟ ସେତେବେଳେ ସୃଷ୍ଟିର ନିଗୂଢ଼ ଉଦ୍ଦେଶ୍ୟ ବିଶ୍ଳେଷଣରେ ପ୍ରୟାସୀ ହୋଇଥିଲେ; କିନ୍ତୁ ସେଇ ପ୍ରୟାସ ତାହାଙ୍କୁ କେବଳ ଇନ୍ଦ୍ରିୟାନୁଭେଦ୍ୟ ପରିଦୃଶ୍ୟମାନ ବହିର୍ଜଗତରେ ଆବଦ୍ଧ ନ କରି ମନୋରାଜ୍ୟର ସୁବିସ୍ତୃତ ପଥରେ ପଥିକ କରାଇଥିଲା । ମାତ୍ର ଅମରାତ୍ମାର ସତ୍ୟ ପ୍ରତିଷ୍ଠା ଦୃଷ୍ଟିରେ ମନୋରାଜ୍ୟର ଅସୀମ ପଥ ସୁଦ୍ଧା ତାହାଙ୍କୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ପାରିଲା ନାହିଁ । ସେଥିପାଇଁ ଆର୍ଯ୍ୟ ଜୀବନ ଅତୀନ୍ଦ୍ରିୟ ଅବସ୍ଥାକୁ ଉଠି, ଦେଶକାଳ-କାର୍ଯ୍ୟକାରଣ-ନିୟନ୍ତଣର ବହୁ ଊର୍ଦ୍ଧ୍ୱକୁ ଉଠି ଆତ୍ମାର ଏକତତ୍ତ୍ୱ ଓ ଅମରତ୍ୱ ପ୍ରତିଷ୍ଠିତ କରିଅଛି । ଏହି ପ୍ରତିଷ୍ଠା ପ୍ରାଚ୍ୟଧର୍ମ, ସାହିତ୍ୟ ଓ ଦର୍ଶନର ମୂଳଭିତ୍ତି ହୋଇଅଛି । ବେଦବେଦାଙ୍ଗ ଓ ଷଡ଼୍‌ଦର୍ଶନ ଏହାର ପ୍ରମାଣ । ଆତ୍ରେୟ, ବଶିଷ୍ଠ, ଯମଦଗ୍ନି, ଯାଜ୍ଞବଲ୍‌କ୍ୟ, ପାତଞ୍ଜଳ, କପିଳ, ଶ୍ରୀକୃଷ୍ଣ ପ୍ରମୁଖ ଦିବ୍ୟାଞ୍ଜନପ୍ରାପ୍ତ

ବିଶ୍ୱ ବିଜୟସାଧକ ଭରତୀୟ ଆଧାତ୍ମ-ପ୍ରାସାଦର ଗୋଟିଏ ମୂଳସ୍ତମ୍ଭ। ବର୍ତ୍ତମାନ ପାଶ୍ଚାତ୍ୟ ବିଜ୍ଞାନ ଆବିଷ୍କାର ଓ ପ୍ରାକୃତିକ ଶକ୍ତି ନିୟୋଗର ବାହ୍ୟିକ କ୍ରିୟା ଦେଖି ଅନେକଙ୍କର ଧାରଣା ଯେ, ବେଦବେଦାଙ୍ଗ ଓ ଷଡ୍‌ଦର୍ଶନ କେବଳ ଗୋଟିଏ ମାନସିକ ବିଶ୍ଳେଷଣ; କିନ୍ତୁ ତାହା ସତ୍ୟ ନୁହେଁ। ଉପନିଷଦ ଓ ଷଡ୍‌ଦର୍ଶନ ପ୍ରତିଭର ଉଚ୍ଚତମ ବିକାଶ, ସତ୍ୟ-ଶିବ-ସୁନ୍ଦର ଅନ୍ୱେଷଣର ଶେଷତମ ପରିସ୍ଥିତି, ଆଦର୍ଶର ପରିଣତ ଅଭିବ୍ୟକ୍ତି। ସେଥିପାଇଁ ଆଜି ବିଚକ୍ଷଣ ପାଶ୍ଚାତ୍ୟ ଅନୁସନ୍ଧିତ୍ସୁ ଅତୀତ ଭରତର ଅଧ୍ୟାତ୍ମ ପ୍ରତି ଦୃଷ୍ଟି ପକାଇଛନ୍ତି। ଗେଟେ (Gothe), ହୋରେସ୍ ଉଇଲସନ (H. H. Wilson), ରୋମେଁରୋଲାଁ (Romain Rolland) ଏହିଭଳି ମନୀଷୀମାନଙ୍କ ମଧ୍ୟରୁ ଜଣେ ଜଣେ। ଆଜି ବିଜ୍ଞାନର ଗୂଢ଼ ଆବିଷ୍କାର ପାଶ୍ଚାତ୍ୟ ଧର୍ମକୁ ଆସନଚ୍ୟୁତ କରି ସେ ଦେଶବାସୀଙ୍କ ମନରେ ଧର୍ମପ୍ରତି ଗୋଟାଏ ସାଧାରଣ ଅବିଶ୍ୱାସ ଓ ବିତୃଷ୍ଣା ଜାତ କରିଅଛି। ଖ୍ରୀଷ୍ଟିୟାନ ଧର୍ମର ପାପ ଓ ତଜ୍ଜନିତ ଚିର ଦୁଃଖାନୁଭୋଗ ନୀତି (Theory of sin and enternal damnation) ଦୃଶ୍ୟମାନ ଜଗତର ସୀମାବଦ୍ଧ ଚିନ୍ତା। ଜଗତ୍ ପିତାଙ୍କ ସଂସାର ରୂପକ ଖେଳଘର ସୃଷ୍ଟି, ଅଜନ୍ମାନ୍ତର-ବାଦ, ଏହି ସବୁ ତଥ୍ୟକୁ ଆଜି ବିଜ୍ଞାନ-ଆଲୋକ-ଉଦ୍ଭାସିତ ମସ୍ତିଷ୍କ ଭ୍ରମାତ୍ମକ ବୋଲି ଧରି ନେଇଅଛି। ସେଥି ସଙ୍ଗେ ହିନ୍ଦୁ ଧର୍ମର ମାନବତ୍ୱର ଅନ୍ତର୍ନିହିତ ଦେବତ୍ୱ ନୀତି, ଜନ୍ମାନ୍ତର-ବାଦ, କର୍ମଫଳବାଦ, ସୃଷ୍ଟିର କ୍ରମ-ବିକାଶ ନୀତିର ସତ୍ୟତା ଆଜି ସେହି ମସ୍ତିଷ୍କ ଉପଲବ୍ଧ କରିଅଛି।

କିନ୍ତୁ ଅତୀତ ଭରତର ଗୌରବମୟ କାହାଣୀ ଯେ ଏହି ଆଧ୍ୟାତ୍ମିକ କ୍ଷେତ୍ରରେହିଁ ପର୍ଯ୍ୟବସିତ, ତାହା ନୁହେଁ। କି ଧର୍ମ, କି ରାଜନୀତି, କି ସମାଜ-ନୀତି, କି ସାହିତ୍ୟ, କି କଳା, ସର୍ବଦିଗର ଅତୀତ ଭରତର କୀର୍ତ୍ତିସ୍ତମ୍ଭ ଇତିହାସ ବକ୍ଷରେ ବିରାଜିତ। କେତେ ସମ୍ରାଟଙ୍କ ଜାଜ୍ୱଲ୍ୟମାନ ଶାସନ; କେତେ ମନୀଷୀଙ୍କର ପ୍ରତିଭର ବିକାଶ, କେତେ ସାଧକଙ୍କ ଅଦମ୍ୟ ଆତ୍ମବଳି, କେତେ ସାହିତ୍ୟକଙ୍କ ନିସର୍ଗ ସୁଷମା, କେତେ ବୀରଙ୍କ ଅତୁଳନୀୟ ବିକ୍ରମ, କେତେ ସତୀଙ୍କ ଅମର ବିଶ୍ୱାସ, କେତେ ଶିଳ୍ପୀଙ୍କ ଅଲୌକିକ ପରାକାଷ୍ଠା ଭରତର ପରମ୍ପରାକୁ ଚିର ସୁନ୍ଦର ଓ ମହତ୍ କରି ରଖିଅଛି—ଆଜି ସେହି ପରମ୍ପରାର କ୍ଷୀଣ ଆଭାସ ହିଁ ହୃଦୟରେ ପ୍ରଶାନ୍ତି ଆଣିଦିଏ!

ବର୍ତ୍ତମାନ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ସହିତ ଜଗତ ସମ୍ପୂର୍ଣ୍ଣରୂପେ ପରିଚିତ! ପାଶବିକ ବଳରେ ବଳୀୟାନ ହୋଇ, ଅସଂଖ୍ୟ ଜାତିର ସ୍ୱାଧୀନତା କାମନା ଖର୍ବକରି, ପାର୍ଥକ୍ୟ ଓ ଶାସନ (Divide and Rule) ନୀତି ଚଳାଇ, ଭୋଗ ବିଳାସର ଚରମ

ସାର୍ଥକତାରେ ଉପନୀତ ହୋଇ, ପାଶ୍ଚାତ୍ୟ ସାମ୍ରାଜ୍ୟନୀତି ଯେପରି ଭବରେ ଜଗତରେ ପ୍ରସାରିତ ହୋଇଅଛି, ତାହା କାହାରିକି ଅବିଦିତ ନାହିଁ । ଅତୀତ ଭାରତରେ ସ୍ୱଦ୍ଧା କେତେ ସାମ୍ରାଜ୍ୟର ଉତ୍‌ଥାନ ଓ ପତନ ହୋଇ ଯାଇଅଛି, କିନ୍ତୁ ସେହି ସାମ୍ରାଜ୍ୟବାଦ ନୀତି ଏବଂ ବର୍ତ୍ତମାନ ସାମ୍ରାଜ୍ୟବାଦ ନୀତି ମଧ୍ୟରେ ବହୁତ ପ୍ରଭେଦ । ବର୍ତ୍ତମାନ ସାମ୍ରାଜ୍ୟ ନୀତିରେ ଆମ୍ଭେମାନେ କେବଳ କଳହ, ମନୋମାଳିନ୍ୟ, ହତାଶା ଓ ବ୍ୟଥାର ଚିତ୍କାର ଶୁଣିବାକୁ ପାଉ । ରାଜା ପ୍ରଜା ମଧ୍ୟରେ କଳହ, ମଧ୍ୟବିତ୍ତ ଉଚ୍ଚପଦସ୍ଥ ମଧ୍ୟରେ କଳହ, ଧନୀ ନିର୍ଧନଙ୍କ ମଧ୍ୟରେ କଳହ, ବ୍ୟବସାୟୀ ଶ୍ରମିକଙ୍କ ମଧ୍ୟରେ କଳହ, ଶାସକ ଶାସିତଙ୍କ ମଧ୍ୟରେ କଳହ, ପଣ୍ଡିତ ମୂର୍ଖଙ୍କ ମଧ୍ୟରେ କଳହ, ଧର୍ମୀ ବିଧର୍ମୀଙ୍କ ମଧ୍ୟରେ କଳହ, କଳା ଗୋରାଙ୍କ ମଧ୍ୟରେ କଳହ—ଏହିପରି ଅସଂଖ୍ୟ କଳହର ଅଶାନ୍ତି, ହୃଦୟଭଙ୍ଗ ଓ ହାହାକାରରେ ଆଜି ଜଗତ କଳ୍ପିତ ନରକର ପ୍ରତିକୃତି ହୋଇ ଯାଇଅଛି । ଏଥିର ମୂଳକାରଣ ସ୍ୱାର୍ଥ—ନୀଚକ୍ରୂର ସ୍ୱାର୍ଥର ବିଷମ ସଂଘର୍ଷ । କିନ୍ତୁ ଅତୀତ ଭାରତୀୟ ସାମ୍ରାଜ୍ୟବାଦର ମୂଳନୀତି ଏଇ ସ୍ୱାର୍ଥବୃକ୍ଷମୂଳରେ କୁଠାରଘାତ । ଆଧ୍ୟାତ୍ମିକତାହିଁ ସେହି ସାମ୍ରାଜ୍ୟବାଦର ମୂଳଭିତ୍ତି । ଧର୍ମ ତାହାର ପ୍ରାଣ; ଏକତା, ଶାନ୍ତି, ପ୍ରେମ ଓ ମୈତ୍ରୀର ପ୍ରତିଷ୍ଠାହିଁ ତାହାର ଲକ୍ଷ୍ୟ । ଲୋକସେବା ଓ ସମାଜର ମଙ୍ଗଳବିଧାନହିଁ ତାହାର ନିୟନ୍ତ୍ରଣ । ଅତୀତ ଭାରତରେ ଏହିଭଳି ସାମ୍ରାଜ୍ୟବାଦର ବିଶାଳ ଆକାଶରେ ଦେଦୀପ୍ୟମାନ ରବି ଅଶୋକ-ସାମ୍ରାଜ୍ୟ । ବୀରବର ଚନ୍ଦ୍ରଗୁପ୍ତଙ୍କର ପ୍ରତିଷ୍ଠିତ, ମେଧାବୀ ରାଜନୀତି ଧୂରନ୍ଧର ବହୁଦର୍ଶୀ ଚାଣକ୍ୟଙ୍କ ପ୍ରବୁଦ୍ଧ, ହିମାଳୟଠାରୁ ଆସାମ ପର୍ଯ୍ୟନ୍ତ ବ୍ୟାପ୍ତ ଅଶୋକ-ସାମ୍ରାଜ୍ୟର ଧର୍ମପ୍ରାଣତା, ଅହିଂସା ଓ ସତ୍ୟ ପ୍ରତିଷ୍ଠାର ଅଦ୍ୟାପି ସ୍ଥାନେ ସ୍ଥାନେ ସ୍ଥାପିତ ପ୍ରସ୍ତର, ସ୍ତମ୍ଭ, ଖୋଦିତ ଲିପି ମୂକ ପରିଚୟ ଦିଏ ।

ସେତେବେଳେ ପାଟଳୀପୁତ୍ର ଧର୍ମ ଓ ଶାସ୍ତ୍ରଚର୍ଚ୍ଚାର ପ୍ରଧାନ କେନ୍ଦ୍ର ଥିଲା । ଆଧ୍ୟାତ୍ମିକତାର ଆଲୋକ ସୁଦୂର ଚୀନ, ଜାପାନ, ସିଂହଳ, ମାଳୟ, ଆଫ୍ରିକା ଓ ଗାନ୍ଧାରରେ ପ୍ରସାରିତ ହୋଇଥିଲା । ସେଥିଯୋଗୁଁ ଆଜି ବୌଦ୍ଧଧର୍ମ ଜଗତର ପ୍ରଧାନ ଧର୍ମମାନଙ୍କ ମଧ୍ୟରୁ ଅନ୍ୟତମ । ଅଶୋକଙ୍କ ନିର୍ମିତ ସଡକ, ପାନ୍ଥଶାଳା, ଚିକିତ୍ସାଳୟ ଇତ୍ୟାଦି ଲୋକସେବା ଓ ସମାଜ-ମଙ୍ଗଳ-ବିଧାନର ସାକ୍ଷୀ । ନିର୍ଲୋଭ, ସାଧାରଣ-ପରିଚ୍ଛଦଧାରୀ, ସହିଷ୍ଣୁ, ନିରଳସ ବୌଦ୍ଧଭିକ୍ଷୁ ସେତେବେଳେ ଉଦବ୍ରଜରେ ଯେପରି ଦେଶ ବିଦେଶରେ "ଅହିଂସା ପରମଧର୍ମ"ର ମୃଦୁ-ତରଙ୍ଗ ଖେଳାଇ ଦେଉଥିଲେ, ନାଳନ୍ଦା ଓ ତକ୍ଷଶିଳା ବିଶ୍ୱବିଦ୍ୟାଳୟମାନଙ୍କରେ ଯେପରି ଶିକ୍ଷାର ଦିବ୍ୟ ଆଲୋକ ପ୍ରସାରଇ ଦେଇଥିଲେ, ତ୍ୟାଗ ଓ ସେବାର ମହାୟାନ୍ ଆଦର୍ଶରେ ସର୍ବସାଧାରଣଙ୍କୁ ଅନୁପ୍ରାଣିତ କରିଥିଲେ, ତାହା ଆଜି କୁଟିଳ, ସ୍ୱାର୍ଥପର, ଅତ୍ୟାଗ୍ରହୀ ପାଶ୍ଚାତ୍ୟ ରାଜନୀତିଜ୍ଞମାନଙ୍କୁ ପରିହାସ କରୁ ନାହିଁ କି ?

ମୌର୍ଯ୍ୟ ସାମ୍ରାଜ୍ୟର କାଳକ୍ରମେ ଅବସାନ ହୋଇଗଲା ସତ୍ୟ, କିନ୍ତୁ ତାର ପରବର୍ତ୍ତୀ କନିଷ୍କ ସାମ୍ରାଜ୍ୟ ଏବଂ ଗୁପ୍ତ ସାମ୍ରାଜ୍ୟ ମଧ୍ୟ ସେହି ମୂଳନୀତି ଉପରେ ପ୍ରତିଷ୍ଠିତ ହୋଇଥିଲା । ବସ୍ତୁତଃ ଭାରତର ଯେ କୌଣସି ସାମ୍ରାଜ୍ୟ ଯେତେ ପରିମାଣରେ ମହତ୍, କାର୍ଯ୍ୟକାରୀ ଓ ଇତିହାସ ନାମାଙ୍କିତ ହୋଇଅଛି । ମୋଗଲ ଯୁଗର ଆକବରଙ୍କ ବିଶାଳ ସାମ୍ରାଜ୍ୟ ସୁଦ୍ଧା ଏହି ମୂଳନୀତି ଅବଲମ୍ବନ କରି ନ ଥାଇ ନାହିଁ । ମହତ୍‌ପ୍ରାଣ ଆକବର ସଙ୍କୀର୍ଣ୍ଣ ସାମ୍ପ୍ରଦାୟିକ ନୀତିର ବହୁଉର୍ଦ୍ଧ୍ୱକୁ ଉଠି ମନୀଷୀ ଆବୁଲ ଫୈଜଲଙ୍କ ହିତପୂର୍ଣ୍ଣ ପରାମର୍ଶାନୁଯାୟୀ ଜିଜିୟା ଓ ଯାତ୍ରୀକର ଉଠାଇଦେଇ, ରାଜପୁତ୍‌ମାନଙ୍କ ସଙ୍ଗେ ବିବାହ ସମ୍ବନ୍ଧ ସ୍ଥାପନ କରି ଧର୍ମାଚରଣରେ ସମ୍ପୂର୍ଣ୍ଣ ସ୍ୱାଧୀନତା ମହତ୍ ପ୍ରଦାନ ପୂର୍ବକ ବିଭିନ୍ନ ଧର୍ମର ମୂଳନୀତି ମିଳାଇ ଗୋଟିଏ ସାଧାରଣ ସର୍ବବ୍ୟାପକ ଧର୍ମରାଜ୍ୟ (Din Ilihi)ର ପ୍ରତିଷ୍ଠା କରିବାକୁ ଯେପରି ପ୍ରୟାସ କରିଥିଲେ, ତାହା ଅତୀତ ଭାରତର ଗୋଟିଏ କୀର୍ତ୍ତିସ୍ତମ୍ଭ । ତା ପରେ ମରହଟ୍ଟା ଓ ଶିଖ୍ ଜାତିର ଅଭ୍ୟୁତ୍‌ଥାନ ମୂଳରେ ସୁଦ୍ଧା ଧର୍ମନୀତି ନ ଥାଇ ନାହିଁ । ଭବାନୀ-ଉପାସନା-ପ୍ରଦୀପ୍ତ ଭାରତରେ ରାମରାଜ୍ୟର ଆଦର୍ଶ ଦେଖାଇବାକୁ ଚେଷ୍ଟା କରିଥିଲେ । ଗୁରୁ ନାନକଙ୍କ ତେଜୋମୟ ବ୍ୟକ୍ତିତ୍ୱର ପରାକାଷ୍ଠାରେ ଶିଖ ଜାତୀୟତା ଫୁଟି ଉଠିଥିଲା । କହିବା ବାହୁଲ୍ୟ, ଯେଉଁ ମୁହୂର୍ତ୍ତରେ ମରହଟ୍ଟା ଜାତି ଭାରତ ସାମ୍ରାଜ୍ୟ-ବାଦର ମୂଳନୀତି ପ୍ରତି ଅବହେଳା ଦେଖାଇ ଦସ୍ୟୁବୃତ୍ତି, ଅତ୍ୟାଚାର ଓ ରକ୍ତପାତର ସୂତ୍ରପାତ କରିଥିଲା ଏବଂ ଶିଖ୍‌ଜାତି ବିଶ୍ୱବ୍ୟାପକତା ପାଶୋରି ସଙ୍କୀର୍ଣ୍ଣତା ଓ ସମର ପ୍ରତିଦ୍ୱନ୍ଦିତାର ଆଶ୍ରୟ ନେଲେ, ସେତେବେଳେ ଭାରତର ଭାଗ୍ୟଆକାଶରୁ ଦୁଇଟି ସମୁଜ୍ଜ୍ୱଳ ନକ୍ଷତ୍ର ଖସିପଡ଼ିଲା । ଧୂମକେତୁ ତୁଲ୍ୟ ସ୍ୱାର୍ଥ-ଲୋଲୁପ ବଣିକଦଳ ସେହି ଆକାଶରେ ଦେଖା ଦେଇ ତାହାର ଅନ୍ଧକାରକୁ ଆହୁରି ଗମ୍ଭୀର, ଭୟଙ୍କର ଭ୍ରମସଙ୍କୁଳ କରିଦେଲେ ।

ଅତୀତ ଭାରତ ବୈଦେଶିକମାନଙ୍କ ସଙ୍ଗେ ଚିର ପରିଚିତ । ଅତୀତ ଯୁଗରୁ ବୈଦେଶିକଗଣ ଦଳ ଦଳ ହୋଇ ଭାରତବର୍ଷ ପ୍ରତି ଅଭିଯାନ ଚଳାଇ ତା'ର ଇତିହାସ ପୃଷ୍ଠାକୁ ସଜୀବିତ କରି ରଖି ଅଛନ୍ତି । ଭାରତ-ଜୀବନ ବିଭିନ୍ନ ସୂତ୍ରରେ ଗଠିତ ହୋଇଅଛି; ବିବିଧ ଭାବ, ଚିନ୍ତା, ବ୍ୟକ୍ତିତ୍ୱ, ଜାତୀୟତା, ସଭ୍ୟତା ଓ ସଂସ୍କୃତର ସମନ୍ୱୟରେ ଭାରତ-ଜୀବନ-ସ୍ରୋତ କ୍ଷିପ୍ର ବିଶାଳକାୟ ହୋଇଅଛି । ଗ୍ରୀକ୍, ପାରଶ୍ୟ, ତୁରସ୍କ, ମଙ୍ଗୋଲ, ସିଦୀୟାନ୍, ଶକ, କୁଷାନ୍, ହୁନ— ଏହିପରି ଅସଂଖ୍ୟ ବୈଦେଶିକ ଆକ୍ରମଣର ଘୂର୍ଣ୍ଣିବନ୍ୟା ଭାରତ-ଶୈଳ ଉପରେ ଘନ ଘନ ବାଜି ଭାଜି ଯାଇଅଛି । ବୈଦେଶିକ ଗଣ ଭାରତ ଇତିହାସ ପୃଷ୍ଠାରେ କେତେ ଅତ୍ୟାଚାର କାହାଣୀ ଲିପିବଦ୍ଧ କରିଯାଇ ଅଛନ୍ତି । ଖଣ୍ଡାଦାଢ଼ରେ ଭାରତୀୟଙ୍କୁ ଧର୍ମ ପରିବର୍ତ୍ତନ କରିବା ସକାଶେ ଭୟ ଦେଖାଇ ଅଛନ୍ତି; ଗ୍ରାମେ ଗ୍ରାମେ ଲୁଣ୍ଠନ

ଦହନ ହତ୍ୟା ଓ ପୈଶାଚିକ ଆକ୍ରମଣ କରିଅଛନ୍ତି; ବାଳକର ଆର୍ତ୍ତନାଦରେ, ସ୍ତ୍ରୀର କରୁଣ ସ୍ୱରରେ, ଗୃହସ୍ଥର ଗମ୍ଭୀର ମନୋବ୍ୟଥାରେ, ସ୍ଥବିରର କ୍ଷୀଣ ମୁମୂର୍ଷୁ ଚିତ୍କାରରେ ପୁଣ୍ୟଭୂମିକୁ ହାହାକାରମୟ କରିଅଛନ୍ତି । ଚିଙ୍ଗୀଜ୍‌ଖାନ୍, ତୈମୁର, ନାଦୀର୍‌ଶା ଭଳି କେତେ ଆକ୍ରମଣକାରୀ ଭାରତ-ବକ୍ଷରେ ରକ୍ତ ନଦୀ ବୁହାଇ ଦେଇ-ଅଛନ୍ତି; କିନ୍ତୁ ଧର୍ମ-ପ୍ରବଣ ଉଦାର ଉନ୍ମୁକ୍ତ ଭାରତ ପଦେ ସୁଦ୍ଧା ଅଭିଯୋଗ ବା ଅଭିଶାପ ପ୍ରକାଶ କରି ନାହିଁ—ସିଏ ଗଭୀର ପ୍ରଶାନ୍ତ ଚିତ୍ତରେ ବୈଦେଶିକଙ୍କ ପ୍ରତି ସ୍ନେହ-ପ୍ରବଣ ହୋଇ କୋଳକୁ ଟାଣି ଆଣିଅଛି । ଭାରତ "ରକ୍ତପାଇଁ ରକ୍ତ, ହତ୍ୟା ପାଇଁ ହତ୍ୟା, ଅତ୍ୟାଚାର ପାଇଁ ଅତ୍ୟାଚାର" ନୀତି କେବେ ଧରି ନାହିଁ । ଭାରତ ହତ୍ୟାର ପ୍ରତିଦାନରେ ଦେଖାଇଛି—ସହନଶୀଳତା, ଗୁରୁ-ଗାମ୍ଭୀର୍ଯ୍ୟ, ସୌଜନ୍ୟ, ସାର୍ବଜନୀନ ମୈତ୍ରୀ । ସେଥିପାଇଁ ଆଜି ଚିଙ୍ଗୀଜ ବା ତୈମୁର୍ ବା ନାଦୀର୍ ଇତିହାସ ଦୂଷିତ ହୋଇ କାଳର ଅନନ୍ତ ଗର୍ଭରେ ବିଲୀନ ହୋଇ ଯାଇଅଛି—କିନ୍ତୁ ଭାରତୀୟ ଜୀବନ-ସ୍ରୋତ ଚିରପ୍ରବହମାନ । ଫଳରେ ଏତିକି ହୋଇଛି ଯେ, ବୈଦେଶିକଙ୍କ ଚିନ୍ତା, ସଭ୍ୟତା ଓ ସଂସ୍କୃତିର ସଂଘର୍ଷରେ ଭାରତୀୟ ସଭ୍ୟତା ଓ ଆଦର୍ଶ ଅଧିକ ପରିପୁଷ୍ଟ, ସମୃଦ୍ଧିମନ୍ତ ହୋଇଛି; ସୁଦୂର ଫିଲିପାଇନସ୍, ଚୀନ, ପାରସ୍ୟ, ଆରବ, ରୋମ୍ ଇତ୍ୟାଦି ଦେଶ ବିଦେଶରେ ବ୍ୟାପ୍ତ ହୋଇଅଛି ।

ବୈଦେଶିକ ସଂଘର୍ଷର ଅନ୍ୟତମ ଫଳ ହୋଇଥିଲା ରାଜପୁତ-ଜାତୀୟତାର ଭିତ୍ତି ସ୍ଥାପନ । ବୀରତ୍ୱ ଭାରତୀୟ ଜୀବନର ଗୋଟିଏ ବିଶିଷ୍ଟ ସ୍ପନ୍ଦନ; ରାଜପୁତ-କାହାଣୀ ସେହି ସ୍ପନ୍ଦନର ବିଶିଷ୍ଟ ଅଭିବ୍ୟକ୍ତି । ବାସ୍ତବିକ୍ ରାଜପୁତ-କାହାଣୀରେ କି ଔଦାର୍ଯ୍ୟ, କି ଗାମ୍ଭୀର୍ଯ୍ୟ, କି ଦେଶପ୍ରୀତି, କି ମାତୃପୂଜା, କି ଅତିଥି ସତ୍କାର, କି ରହସ୍ୟର ନିଦର୍ଶନ ରହିଛି—ତାହା ଭାବିଲେ ହୃଦୟରେ କି ଆନନ୍ଦ ଓ ବିସ୍ମୟ ସଞ୍ଚାରିତ ହୁଏ । ରାଜପୁତ ଜାତିର ଗଠନହିଁ ଆରମ୍ଭରୁ ଅତି ବିସ୍ମୟକର, ବୀରତ୍ୱ-ବ୍ୟଞ୍ଜକ, ସମର-ପିପାସା-ଉନ୍ମାଦକ । ଚୌହାନ୍, ରାଠୋର୍, ଚନ୍ଦେଲ୍, ପରିହାର୍ ଇତ୍ୟାଦି ପ୍ରତିଭାଶାଳୀ ବିକ୍ରମୀ ବଂଶର ଯେଉଁ ଜାତୀୟ ଇତିହାସରେ ବିକାଶ; ପୃଥ୍ୱୀରାଜ, ସଂଗ୍ରାମସିଂହ, ପ୍ରତାପସିଂହଙ୍କ ଭଳି ବୀରମାନଙ୍କର ଯେଉଁ ଜାତିରେ ଜନ୍ମ; ସଂଯୁକ୍ତା, ପଦ୍ମିନୀଙ୍କ ଭଳି ବୀରାଙ୍ଗନାଙ୍କ ଅଦମ୍ୟ ତ୍ୟାଗ ଓ ଜ୍ୱଳନ୍ତ ଆଦର୍ଶ ଜାତିକୁ ଉଦ୍ଭାସିତ, ଜାଗ୍ରତ କରିଥିଲା; ତାରାଇନ୍, ହଳଦୀଘାଟ ସମରକ୍ଷେତ୍ର ଯେଉଁ ଜାତିର ଗୌରବମୟ ପୂତ କାହାଣୀର ମୂକସାକ୍ଷୀ; ଭୀମ-ସୁନ୍ଦର "ଜହର ବ୍ରତ" ଯେଉଁ ଜାତିର ନିୟନ୍ତ୍ରଣ; ସେହି ଜାତି ଭାରତ-ସମୂହ ଜୀବନକୁ କି ମହୋଚ୍ଚ ସୋପାନରେ ଆରୂଢ଼ କରାଇଅଛି, ତାହା କହିବା ବାହୁଲ୍ୟ ମାତ୍ର ।

ଭରତର ସାହିତ୍ୟ ସମ୍ବନ୍ଧରେ ବିଶେଷ କହିବା ନିଷ୍ପ୍ରୟୋଜନ । ପ୍ରାଚ୍ୟ ପୌରଣିକ ସଂସ୍କୃତ ସାହିତ୍ୟର ଭବପ୍ରବଣତା ଆଜି ପ୍ରାଚ୍ୟ-ପାଶ୍ଚାତ୍ୟ ସମସ୍ତଙ୍କ ମନରେ ଗଭୀର ପ୍ରେରଣା ସଞ୍ଚାର କରିଅଛି । କି ଚରିତ୍ର ଚିତ୍ରଣରେ, କି ପ୍ରକୃତି-ବୈଚିତ୍ର୍ୟ ବର୍ଣ୍ଣନାରେ, କି ବିଶ୍ୱବ୍ୟାପକ-ଚିନ୍ତା ବିଶ୍ଲେଷଣରେ, ପଦଲାଳିତ୍ୟରେ, କି ଆଦର୍ଶବାଦ ପ୍ରତିଷ୍ଠାରେ, କି ସତ୍ୟ-ଶିବ-ସୁନ୍ଦର ଅନୁସନ୍ଧାନରେ, ମୂଳତଃ ଜୀବନର କ୍ରିୟା-ପ୍ରତିକ୍ରିୟା-ବିଧାନରେ ସଂସ୍କୃତ ସାହିତ୍ୟର ଚମତ୍କାରିତା ଓ ଉଚ୍ଚସ୍ଥାନ ଆଜି ପାଶ୍ଚାତ୍ୟ ମନୀଷୀଗଣ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛନ୍ତି । ଭର୍ତ୍ତୃହରି, ଶ୍ରୀହର୍ଷ, ବାଣ, କାଳିଦାସ, ଭବଭୂତି ଆଜି ଜଗତର ବିଶିଷ୍ଟ ଶିକ୍ଷାକେନ୍ଦ୍ରମାନଙ୍କରେ ଗୋଟିଏ ଅମୂଲ୍ୟ ରତ୍ନ ସ୍ୱରୂପ ପୂଜା ପାଉଅଛନ୍ତି । ଭରତ ମାତା, ଅସଂଖ୍ୟ ମନୀଷୀ ଓ କଳାବିଶାରଦଙ୍କୁ ଜନ୍ମ ଦେଇ ଆଜି ଧନ୍ୟା ହୋଇଅଛି । ଶଙ୍କରଙ୍କ ଅଦ୍ୱୈତ-ଭବ-ପ୍ରତିଷ୍ଠା, ଚୈତନ୍ୟଙ୍କ ପ୍ରାଣପୂର୍ଣ୍ଣ-ଭକ୍ତି-ସମନ୍ୱିତ ପ୍ରେମ, ମିଆଁ ତାନ୍‌ସେନ୍‌ଙ୍କ ଚମତ୍କାର ଜୀବନ୍ତ ସଙ୍ଗୀତ, ନୁରଜାହନ୍‌ଙ୍କ ବିଳାସ ସୌନ୍ଦର୍ଯ୍ୟରୁଚି, ଔରଙ୍ଗ୍‌ଜେବ୍‌ଙ୍କର ପୂତ ସରଳ ଦାମ୍ପତ୍ୟ-ଜୀବନ ଆଜି ଭରତ ଇତିହାସର ବଡ଼ ଉପାଦେୟ ସାମଗ୍ରୀ । ବିଚିତ୍ର କାରୁକାର୍ଯ୍ୟ-ଶୋଭିତ ଅସଂଖ୍ୟ ପୌରଣିକ ଦେବାଳୟ, ଗହ୍ୱର, ସ୍ତମ୍ଭ, କୁତୁବ୍‌ମିନାର, ତାଜ୍‌ମହଲ, ମୟୂର ସିଂହାସନ, ଶାହାଜାନବାଦ, ମୋତିମସ୍‌ଜାଦ୍‌, କୋଣାର୍କ, ଭୁବନେଶ୍ୱର ଦେବ ମନ୍ଦିର ଅତୀତର ନିଦର୍ଶନ ଭରତ ସମୃଦ୍ଧିଶାଳିତାର ମୂକସାକ୍ଷୀ-ରୂପେ ଦର୍ଶକ ଆଗରେ ଦଣ୍ଡାୟମାନ ।

ଏହିଭଳି ଅଧ୍ୟାତ୍ମ-ଗୌରବ-ସଭ୍ୟତା-କଳା-ସଙ୍ଗଠିତ ଭରତ କି କୁକ୍ଷଣରେ କାଳପୁରୁଷର କି କୁଟିଳ ବିଷାକ୍ତ-କଟାକ୍ଷର ଇଙ୍ଗିତରେ ଅଧଃପତନର ନିମ୍ନତମ ସୋପାନକୁ ଖସି ଆସିଲା, ତାହା ବିଶ୍ୱନିୟନ୍ତାଙ୍କ ଗୋଚର । ବାସ୍ତବିକ୍ ଏହି ଶେଷ ଦୁଇଶତ ବର୍ଷ ମଧ୍ୟରେ ଭରତର ସମୁଜ୍ଜ୍ୱଳ ଚିତ୍ର ଯେପରି ଭବରେ କର୍ଦ୍ଦମାକ୍ତ, କଳୁଷିତ ଓ ବିନଷ୍ଟ ହୋଇଅଛି ତାହା ବିଶ୍ୱାସ କରିହୁଏ ନାହିଁ । ପ୍ରତିଭର ସେ ସୂକ୍ଷ୍ମ ପରିଚାଳନା, ହୃଦୟର ସେ ଅନନ୍ତ ପ୍ରସାରଣ, ମନର ସେ ସ୍ୱାଧୀନ ଅବାଧ ଉଚ୍ଚାଭିଳାଷ, ଶରୀରର ସେ କମନୀୟ କାନ୍ତି, ଜୀବନର ସେ ଅପୂର୍ବ ବିଶ୍ୱ-ବିଜୟୀ ଶକ୍ତି ସମୟର ଗୋଟାଏ ସାମାନ୍ୟ ପରିବର୍ତ୍ତନରେ କାହିଁ ଲୁଚିଗଲା ! ବାସ୍ତବିକ୍ ମରହଟ୍ଟା ଯୁଦ୍ଧରେ, ଆଫଗାନ୍ ଯୁଦ୍ଧରେ, ଶିଖ୍‌ଯୁଦ୍ଧରେ, ବର୍ମାଯୁଦ୍ଧରେ, ପଲାଶୀ ସମର କ୍ଷେତ୍ରରେ ଭରତୀୟ ଯେପରି ଭବରେ ପଦଦଳିତ ହୋଇ ସ୍ୱାଧୀନତା-ମଣି ବୈଦେଶିକ ହସ୍ତରେ କର୍ମିତ ଲାଞ୍ଛିତ ଅଭିଶପ୍ତ ହସ୍ତରେ, ସମର୍ପଣ କଲା—ହାୟ, ସେ କି ଘୋର ଅପମାନ ଓ ବିଷାଦର କାହାଣୀ ! ସାଧାରଣ ବାଣିଜ୍ୟ ଛଳରେ

ଆସି, ଅନ୍ତର୍ବିବାଦର ସୁବିଧା ନେଇ, ସରଳ ବିଶ୍ୱାସର ଘୋର ଅବମାନନା କରି, ଧନଲୋଲୁପତାର ପ୍ରବଳ ପିପାସାରେ ଅନ୍ଧୀଭୂତ ହୋଇ, ପରର ଦୁଃଖ, କାତରତା ଓ ଦାରିଦ୍ର୍ୟ ପ୍ରତି ତିଳେ ଦୃଷ୍ଟି ନ ଦେଇ, ଅର୍ଥଶୋଷଣ ନୀତି ଅବଲମ୍ବନ କରି ଗୋଟାଏ ଅତୀତ ଇତିହାସ ପ୍ରସିଦ୍ଧ-ଜାତିକୁ ବାହ୍ୟାଡ଼ମ୍ବର ଓ କ୍ଷଣିକ ଆତ୍ମପ୍ରସାଦରେ ଭୁଲାଇ ଦେଇ ବୈଦେଶିକ ଶାସନର ବଜ୍ର ମୁଷ୍ଟି ଭାରତକୁ ଯେପରି ଚାପି ରଖିଅଛି, ତାହା ଭାବିଲେ ଚକ୍ଷୁରେ ଲୁହ ଆସେ—ବିଶ୍ୱନିୟନ୍ତାଙ୍କ ନ୍ୟାୟ ଓ ସମଦର୍ଶିତାରେ ସନ୍ଦେହ ମଧ୍ୟ ଆସେ । କିନ୍ତୁ ବୃଥା କ୍ଷୋଭ—ବୃଥା ସନ୍ଦେହ । ଆଜି ଭାରତ ଅତୀତକୁ ଦୃଷ୍ଟି ଫେରାଇଛି; ସେହି ଅତୀତର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଉଠିଛି । ପ୍ରବୁଦ୍ଧ ଭାରତର ଜୟ ହେଉ ।



# ପାଶ୍ଚାତ୍ୟ ରାଜନୀତି ଓ ଆଧୁନିକ ଭାରତ

—୧—

ମାନବିକତା ଏକ । ଅବିଚ୍ଛିନ୍ନ କାଳ ଓ ଦେଶର ଗତି ଓ ବ୍ୟାପ୍ତିରେ ମନୁଷ୍ୟର ଐତିହାସିକ ଭୂୟୋବିକାଶରେ ପ୍ରାଚୀନ ଓ ଅର୍ବାଚୀନ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଇତ୍ୟାଦି ଭେଦ ଏକପ୍ରକାର ଅପ୍ରାକୃତ । ସାହିତ୍ୟ, କଳା ବା ଦର୍ଶନ ରାଜ୍ୟର ସୀମାକୁ ଜୀବନ କେତେକ ନିର୍ଦ୍ଦିଷ୍ଟ ସମୟ ଓ ଅଂଶରେ ମାତ୍ର ସ୍ପର୍ଶ କରେ । କିନ୍ତୁ ତାହାର ସାଧାରଣ ଦୈନନ୍ଦିନ ପ୍ରବାହ ରାଜନୀତିକୁ କେନ୍ଦ୍ର କରି ବହେ । ରାଜ୍ୟ ଓ ରାଜନୀତିକ ଅନୁଷ୍ଠାନ ବାସ୍ତବ ଜୀବନକୁ ଯେପରି ଆଘାତ, ଆଲୋଡନ, ସଗଠନ କରେ, ତାହା ସହଜରେ ଜଣାଯାଏ । ଦୁଃଖ-ଦୈନ୍ୟର ଦୀର୍ଘ ସୁଷୁପ୍ତି ପରେ ପୌରାଣିକ ସଂସ୍କୃତିମନ୍ତ ଭାରତ ଆଜି ଉତ୍‌ଥିତ ଓ ଜାଗ୍ରତ । ପାଶ୍ଚାତ୍ୟର ସଂସ୍ପର୍ଶ ଓ ସଂଘର୍ଷ ତାକୁ ଆଜି ନବ ଉନ୍ମାଦନା ଓ ଚଞ୍ଚଳତା ଆଣିଦେଇଛି । ଲୋକ-ଶାସନ, ଗଣ-ତନ୍ତ୍ର ଆଜି ଭାରତର ବଳିଷ୍ଠ ଦାବୀ । ଏ ଦାବୀ ମୂଳରେ ପାଶ୍ଚାତ୍ୟ ରାଜନୀତିର ପ୍ରେରଣା ଓ ପ୍ରବର୍ତ୍ତନା କମ୍ ନାହିଁ । ଏହି ଦୃଷ୍ଟିରେ ବର୍ତ୍ତମାନ ଭାରତୀୟ ପରିସ୍ଥିତି ସଙ୍ଗେ ପାଶ୍ଚାତ୍ୟ ରାଜନୀତିର ମୌଳିକ ସ୍ଥିତି ଠାରୁ ଆରମ୍ଭ କରି ତାର କ୍ରମବିକାଶ ଓ ତୁଳନାତ୍ମକ ମୂଲ୍ୟର ଆଲୋଚନା ଶିକ୍ଷଣୀୟ ବିଷୟ ହେବ, ସେଥିରେ ସନ୍ଦେହ ନାହିଁ ।

—୨—

ସକଳ ଦିଗରୁ ପାଶ୍ଚାତ୍ୟ ସଂସ୍କୃତିର ଭିତ୍ତି ଗ୍ରୀକ୍ ଚିନ୍ତା, ଏ କଥା ଜଣାପଡ଼ିଛି । ହେଲେନିକ୍ ରାଜ୍ୟପୁଞ୍ଜର ପ୍ରାଥମିକ ରାଜନୀତିର ଧାରା କିପରି ସ୍ୱେଚ୍ଛାତନ୍ତ୍ର ଅଥଚ ପୋଷକ ରାଜଶାସନରୁ ଆରମ୍ଭ କରି ଅଭିଜାତ-ତନ୍ତ୍ର (Aristocracy), କେତେକ ବ୍ୟକ୍ତିଙ୍କ ଦ୍ୱାରା ନିର୍ବାହିତ ଶାସନତନ୍ତ୍ର (Oligarchy), ମଧ୍ୟ ଦେଇ ପ୍ରଜାତନ୍ତ୍ର ଶାସନ ଆଡ଼କୁ ଗତି କରିଥିଲା, ତାର ନିପୁଣ ଚିତ୍ର ଆମେ ପ୍ରତିଷ୍ଠିତ ଆଦ୍ୟ ଗ୍ରୀକ୍ କବି ହୋମର୍‌ଙ୍କ ମହାକାବ୍ୟ-ପୃଷ୍ଠାରେ ଦେଖିବାକୁ ପାଉଁ । କ୍ରମେ ସୋଫିଷ୍ଟ୍‌ବାଦ (Sophism)ର ପ୍ରସାର ଯୋଗୁ ଅବିଶ୍ୱାସ-ଢେଉ ଜୀବନର ସକଳ ସ୍ତରରେ ମାଡି ଚାଲିଲା । ରାଜ୍ୟ ଓ ମାନବୀୟ ସକଳ ଅନୁଷ୍ଠାନ କେବଳ ଭଣ୍ଡାମି,

ପ୍ରବଳର ଦୁର୍ବଳ ଉପରେ ସ୍ୱାର୍ଥ ବଜାୟ ରଖିବାର ଚକ୍ର ବୋଲି ପ୍ରଗ୍ୱର ହେଲା । ଏଣୁ ସେହି ଅନୁଷ୍ଠାନଗୁଡ଼ିକର ଠିକ ମୂଲ୍ୟ, ତାତ୍ପର୍ଯ୍ୟ ଓ ବ୍ୟବହାର ନିର୍ଦ୍ଦେଶ କରିବାର ଆବଶ୍ୟକତା ପଡ଼ିଲା । ବିଖ୍ୟାତ ଦାର୍ଶନିକ ପ୍ଲେଟୋ ଓ ଏରିଷ୍ଟଟଲ୍ ସୋଫିଷ୍ଟ୍‌ବାଦର ଏ ସମର-ଡାକ (Challenge ର ଠିକ୍ ଉତ୍ତର ଦେଇଥିଲେ । ମନୁଷ୍ୟ ବିଜନତାରେ ପ୍ରକୃତ ମନୁଷ୍ୟତା ବା ମଙ୍ଗଳ ଲଭ କରିପାରେ ନାହିଁ, ସମାଜ କ୍ରୋଡରେହିଁ ତାହା କରିବାର ଅବକାଶ ପାଏ । ରାଜ୍ୟର ଉଦ୍ଦେଶ୍ୟ ଓ କର୍ତ୍ତବ୍ୟ ସର୍ବସାଧାରଣଙ୍କ ସୁଖ, କଲ୍ୟାଣ, ସମୃଦ୍ଧିର ବ୍ୟବସ୍ଥା କରିବା । ଅତ୍ୟନ୍ତ ମନୁଷ୍ୟ ସ୍ୱାଭବିକ ଭବରେ ପୂର୍ଣ୍ଣତା-ଲଭ କରନ୍ତି, ତେଣୁ ରାଜ୍ୟର ଆବଶ୍ୟକତା । ରାଜ୍ୟ ନ୍ୟାୟର ଆଶ୍ରୟରେ ଚଳିବା ଉଚିତ । ଏ ଦିଗରେ ପ୍ଲେଟୋ ସମସ୍ତ ରାଜ୍ୟବାସୀଙ୍କୁ, ବ୍ୟବସାୟ, ରାଜ୍ୟ-ରକ୍ଷା ଓ ବ୍ୟବସ୍ଥା ଦୃଷ୍ଟିରୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରି ଦାର୍ଶନିକ ଶାସକ (Philsopher-statesmen)ଙ୍କ ଯେପରି କଳ୍ପନା କରିଥିଲେ, ତାହା ପ୍ରାଚୀନ ହିନ୍ଦୁ ଚିନ୍ତା ପ୍ରସୂତ ବର୍ଣ୍ଣାଶ୍ରମ-ନୀତି ସଙ୍ଗେ ତୁଳନୀୟ । ଅନ୍ୟଦିଗରେ ତାଙ୍କର ସାମ୍ୟବାଦ ଓ ସମ୍ଭ୍ରାନ୍ତମାନଙ୍କ ସକାଶେ ସମ୍ପତ୍ତିର ସାଧାରଣ ସମାନ ଅନୁଭେଗ (Common possession) ଯେ ଆଧୁନିକ ମାର୍କ୍‌ସ୍-ନୀତି (Marxian ideology)କୁ ଉଦ୍‌ବୁଦ୍ଧ ନ କରିଛି । ଏହା କିଏ କହିବ ? ଅବଶ୍ୟ ମାର୍କ୍‌ସୀୟ ଆଦର୍ଶବାଦର ବର୍ତ୍ତମାନ ପରିସର ସେବର କ୍ଷୁଦ୍ର ରାଜ୍ୟପୁଞ୍ଜରୁ ଖୁବ୍ ବିଶାଳ ଓ ତହିଁରେ ଅନେକ ନୂତନ ତଥ୍ୟ ସଂଯୋଗ କରାଯାଇଛି । ଏରିଷ୍ଟଟଲ୍ ରାଜ୍ୟକୁ ଆହୁରି ପ୍ରାଧାନ୍ୟ ଦେଇଥିଲେ । ତାଙ୍କ ମତରେ ରାଜ୍ୟ ମନୁଷ୍ୟ ଜୀବନ-ବିକାଶର ଅନ୍ତିମ ଲକ୍ଷ୍ୟ । ଅପର ଦିଗରୁ ଉତ୍ତମ ନାଗରିକ (Citizen) ସୃଷ୍ଟି କରିବା ରାଜ୍ୟର ଆକାଂକ୍ଷା । ଏପରି ଭବରେ ସେ ବ୍ୟଷ୍ଟି – ମନୁଷ୍ୟ ଓ ସମଷ୍ଟି – ସମାଜକୁ ମିଳାଇଥିଲେ । ସେ ଆହୁରି କହିଛନ୍ତି—ସମସ୍ତେ ଠିକ୍ ସମାନ ଅଧିକାର ପାଇବା ଅସମ୍ଭବ । ବ୍ୟକ୍ତିଗତ ସାମର୍ଥ୍ୟ, ଜନ୍ମ, ସ୍ୱାତନ୍ତ୍ର୍ୟ, ସମ୍ପଦ, ଅନୁଭେଗ ଇତ୍ୟାଦି ବିଭିନ୍ନ ବିଭଗ ଦୃଷ୍ଟିରେ ଲୋକ ମଧ୍ୟରେ ବହୁତ ପ୍ରଭେଦ ରହିଛି । ଏହି ପ୍ରଭେଦ ଓ ତଜ୍ଜନିତ ପାରିପାର୍ଶ୍ୱ ଅନୁଯାୟୀ ଭିନ୍ନ ଭିନ୍ନ ଲୋକଙ୍କୁ ଭିନ୍ନ ଭିନ୍ନ ରୀତି ଓ ପଦ୍ଧତିରେ ପରିଚର୍ଯ୍ୟା କରିବା ରାଜ୍ୟର ଧର୍ମ । ପୁଣି ସେହିପରି କୌଣସି ଶାସନତନ୍ତ୍ର ଆପେ ଆପେ ସର୍ବୋତ୍କୃଷ୍ଟ କୁହାଯାଇ ନ ପାରେ । ବ୍ୟବହାର ନିକଷରେ ତାର ଉପକାର ଓ ମୂଲ୍ୟ ଧରାପଡ଼େ । ଭଲ ମଧ୍ୟ ମନ୍ଦରେ ପରିଣତ ହୋଇଯାଇପାରେ—ଯେପରି ରାଜତନ୍ତ୍ର ଅତ୍ୟାଗ୍ରରରେ, ସାମନ୍ତତନ୍ତ୍ର ସ୍ୱେଚ୍ଛାଗ୍ରରିତାରେ, ପ୍ରଜାତନ୍ତ୍ର ଅନ୍ଧ-ଜନତାର କୋଳାହଳରେ । ଆଉ ଗୋଟିଏ ବିଗ୍ରରିବାର କଥା ଯେ, ପ୍ଲେଟୋ ଓ ଏରିଷ୍ଟଟଲଙ୍କ ପରି ବିଚକ୍ଷଣ ବୁଦ୍ଧିମାନ ରାଜ-ପ୍ରବର୍ତ୍ତକମାନେ ମଧ୍ୟ ଦାସପ୍ରଥାକୁ ଗୋଟିଏ ଆବଶ୍ୟକୀୟ ଅନୁଷ୍ଠାନ ବୋଲି ମତ ଦେଇଛନ୍ତି ।

କ୍ରମେ ସମାଜ ଓ ବ୍ୟକ୍ତି, ଏ ଦୁଇଟିର ଭିନ୍ନ ଭିନ୍ନ ଆକାଂକ୍ଷାର ପ୍ରଣୋଦନା ବଢ଼ି ବଢ଼ି ଷ୍ଟୋଇକ୍ ଓ ଏପିକ୍ୟୁରିଏନ୍ ବାଦର ବିପରୀତ ଦିଗ୍‌ଦର୍ଶନରେ ପହଞ୍ଚିଥିଲା । ଏପିକ୍ୟୁରସ୍‌ଙ୍କ ମତରେ ବ୍ୟକ୍ତିଗତ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟହିଁ ଏକାନ୍ତ କାମ୍ୟ । ରାଷ୍ଟ୍ର ଜୀବନ ସଂସର୍ଗରେ ଏ ସୁଖସ୍ୱାଚ୍ଛନ୍ଦ୍ୟ ଉପରେ ବାଧାପଡେ । ଏଣୁ ସେ ପ୍ରକାର ଜୀବନ ଅସ୍ପୃହଣୀୟ । ଏକାନ୍ତ ନ୍ୟାୟ ବୋଲି ଜଗତରେ କିଛି ନାହିଁ; ନ୍ୟାୟ ମାର୍ଗରେ ଗଲେ ଆମେ ଲାଭ ପାଉ ବୋଲି ଆମେ ନ୍ୟାୟମନ୍ତ ହେଉ । ସବୁ ଅନୁଷ୍ଠାନ, ନିୟମ, ଆଇନର ମୂଳରେ ରହିଛି ସ୍ୱାର୍ଥରକ୍ଷାର ଅପ୍ରତିହତ ଲିପ୍‌ସା । ଏ ମତ ଖଣ୍ଡନ କରି ଷ୍ଟୋଇକ୍‌ବାଦ ପ୍ରତିଷ୍ଠାତା ଜିନୋ କହନ୍ତି, ସ୍ୱାର୍ଥପୂର୍ଣ୍ଣ ପ୍ରୟାସରେ ସୁଖ ନାହିଁ ଅଛି ବିଶ୍ୱଜନୀନ ମୈତ୍ରୀ, ପ୍ରୀତି, କରୁଣାରେ । ନୈତିକ ଅଭ୍ୟୁନ୍ନତି ଆମର ଏକାନ୍ତ କାମ୍ୟ । ସୃଷ୍ଟିର ସଫଳତା ଏକ ବିଶ୍ୱ-ପରିବାରର ପରସ୍ପର ସୌହାର୍ଦ୍ଦ୍ୟ-ଅନୁପ୍ରାଣିତ ନିୟନ୍ତ୍ରଣରେ । ସମରତ୍ରସ୍ତ ରକ୍ତାକ୍ତ ବର୍ତ୍ତମାନ ଜଗତରେ ଷ୍ଟୋଇକ୍ ମତବାଦର ଏ ପବିତ୍ର ନୈତିକ ଦୃଷ୍ଟ, ସତ୍ୟପ୍ରାଣ, ବିଶ୍ୱପ୍ରାଣ, ଗୋଷ୍ଠୀଗତ ଭବର ସଂକୀର୍ଣ୍ଣ ପରିହାର କେଡ଼େ ମୂଲ୍ୟବାନ୍, ତାର ବିଶଦ୍ ଆଲୋଚନା ଅନାବଶ୍ୟକ ।

ଗ୍ରୀକ୍ ଯୁଗର ଅବସାନ ହେଲା । ତା ପରେ ଆସିଲା ମଧ୍ୟଯୁଗ (Middle Ages) ତା'ର ପ୍ରବଳ ଖ୍ରୀଷ୍ଟିୟାନ ମତ-ବିଶ୍ୱାସ (Theology) ଘେନି । ଫଳରେ ରାଜନୀତି କାହିଁକି, ଜୀବନର ସକଳ କ୍ରିୟା-କଳାପ ଚର୍ଚ୍ଚ (Church) ସେବାରେ ବିନିଯୋଗ ହେଲା । ଥମାସ୍ ଏକ୍ୱୀନସ୍ (Thomas Aquinas) ଖ୍ରୀଷ୍ଟିୟାନ ଶାସନତତ୍ତ୍ୱକୁ ଏରିଷ୍ଟଟଲ୍ ନୀତି ସଙ୍ଗେ ମିଳାଇବାକୁ ଚେଷ୍ଟା କଲେ । ତାଙ୍କ ମତରେ ଆଭ୍ୟନ୍ତରୀଣ ଏକତା, ଶାନ୍ତି ଓ ନିରାପଦତା ରକ୍ଷା କରିବା ପାଇଁ ଏକ ବଳିଷ୍ଠ କେନ୍ଦ୍ରଶାସନ ଆବଶ୍ୟକ । ଏହି କାର୍ଯ୍ୟ ପାଇଁ ରାଜତନ୍ତ୍ର (Monarchy) ବଡ ଉପଯୋଗୀ । ଅବଶ୍ୟ ସମୟ ସମୟରେ ରାଜଶାସନ ଅତ୍ୟାଚାର, ପ୍ରପୀଡନରେ କଳୁଷିତ ହୁଏ ଏବଂ ସେଭଳି କଳୁଷ ଦୂର କରିବାକୁ ହେବ । ମାତ୍ର ତାହା ବୋଲି ରାଜବିଦ୍ରୋହ, ବିପ୍ଳବ କେବେ କ୍ଷମଣୀୟ ନୁହେ । ସେ ସବୁ ବଡ଼ ମାରାତ୍ମକ କଥା । ରାଜା ସର୍ବଦା ଦୈବନିବନ୍ଧନ ପ୍ରତି ଜାଗରୂକ୍ ହେବେ । ମନୁଷ୍ୟ-ଜୀବନର ଅତ୍ୟୁଚ୍ଚ ସାଧନ ଚିରନ୍ତନ ମୁକ୍ତି । ଏହି ମଙ୍ଗଳର ଜାଗତିକ ପ୍ରତୀକ ଚର୍ଚ୍ଚ୍ (Church) । ଏଣୁ ରାଜା ଚର୍ଚ୍ଚର ପ୍ରରୋଚନା ଏ ଇଙ୍ଗିତରେ କାର୍ଯ୍ୟ କରିବେ; ତାର ଆଜ୍ଞା ମାନି ଚଳିବେ ।

ତହୁଁ ଆସିଲା ନବଯୁଗ ମତାନ୍ଧତାର ଶୃଙ୍ଖଳା ଛିନ୍ନକରି, କୁସଂସ୍କାରର ଅନ୍ଧକାରକୁ ଆଲୋକିତ କରି । ନୂତନ ଲୋକ ସମାଗମ, ନୂତନ ତଥ୍ୟ, ନୂତନ ଭବ ଓ ଚିନ୍ତାର ଉନ୍ମୁକ୍ତ ଦିଗ୍‌ଦର୍ଶନ, ପ୍ରସାରିତ ମାନବିକତାର ସବେଗ ସ୍ଫୂର୍ତ୍ତି, ବୈଜ୍ଞାନିକ ଓ ଭୌଗୋଳିକ ଆବିଷ୍କୃତି, ପ୍ରକୃତିପ୍ରାଣତା—ସବୁ ନୂତନ । ରାଜନୀତି

ଦିଗରୁ ମେକିଆଭିଲି (Machiaveli) ପ୍ରବର୍ତ୍ତିତ ସ୍ୱାଧୀନ ଜାତୀୟ ରାଷ୍ଟ୍ର ହେଲା ଆଦର୍ଶ । ରାଜନୀତି ଧର୍ମ ବନ୍ଧନରୁ ସମ୍ପୂର୍ଣ୍ଣ ନିଷ୍କୃତି ଲାଭକଲା । ମନୁଷ୍ୟର ସହଜ ପ୍ରାକୃତ-ସ୍ୱଭାବର ବିଶ୍ଳେଷଣ ଅନୁସାରେ ଶାସନ-ଅନୁଷ୍ଠାନ ଗଢ଼ାଗଲା । ଏହି ଗଠନରେ ପ୍ରତ୍ୟେକ ଲୋକର ମତାମତକୁ ଅପେକ୍ଷା ରଖିବା ଉଚିତ ବୋଲି ପ୍ରଚାରିତ ହେଲା । ପ୍ରାକୃତିକ ଅଧିକାରରେ କେବଳ ଆପଦ ଆସିଲେ ଯୁଦ୍ଧ କ୍ଷମଣୀୟ; ତଥାପି ଯୁଦ୍ଧ କରିବାରେ ଅମାନୁଷିକ ହତ୍ୟାକାଣ୍ଡ ନିନ୍ଦନୀୟ ବୋଲି ସ୍ଥିର ହେଲା । ଫ୍ୟୁଡେଲ୍ (feudal) ଯୁଗର ଜମିଦାରୀ ପ୍ରଥା କ୍ରମେ ଲୋପ ହେଲା । ସମ୍ମିଳିତ ରାଷ୍ଟ୍ର, ଜାତୀୟ ରାଷ୍ଟ୍ର, କେନ୍ଦ୍ରିକ ରାଷ୍ଟ୍ର ଇତ୍ୟାଦି ବିଭିନ୍ନ ପ୍ରକାର ରାଜ୍ୟ ପ୍ରବର୍ତ୍ତିତ ହେଲା । ରାଜ୍ୟ କ୍ରମେ ସର୍ବେସର୍ବା ହୋଇଉଠିଲା ଓ ତା'ର ଅଧିକାର ଓ କର୍ମକ୍ଷେତ୍ର ବଢ଼ିଗଲା । କ୍ରମେ ଏକାନ୍ତ ରାଜାଧିକାର ଫ୍ରାନ୍ସର ବିକ୍ରମୀ ନରପତି ଚତୁର୍ଦ୍ଦଶ ଲୁଇ (Louis XIV)ଙ୍କ ଠାରେ ସଫଳୀକୃତ ହେଲା । ରାଜା ରାଜ୍ୟର ସବୁ, କଥା ସ୍ପଷ୍ଟ ହେଲା । ତେଣେ ଅନ୍ୟ ଦିଗରୁ ଏ ନୀତି ଉପରେ ପ୍ରବଳ ଧକ୍କା ଲାଗିଲା ସାମ୍ୟବାଦୀ ଓ ସମାଜବାଦୀ-ମାନଙ୍କ ଆକ୍ରମଣରୁ । ଫଳରେ ତହିଁର ଲୋକପ୍ରିୟତା କ୍ରମେ ଊଣା ହେଲା ଓ ଲୋକ-ପ୍ରତିନିଧିମୂଳକ ଶାସନତନ୍ତ୍ର ବା ଅବିକଳ ରାଜତନ୍ତ୍ର ବା ଅବିକଳ ପ୍ରଜାତନ୍ତ୍ର ରାଜନୀତି କ୍ଷେତ୍ରରେ ଆଦରଣୀୟ ହେଲା ।

ବିଖ୍ୟାତ ଇଂରେଜୀ ରାଜନୀତିଜ୍ଞ ହବ୍ସ୍ (Thomas Hobbes) ପ୍ରଥମ ଅର୍ଥାତ୍ ପୂର୍ଣ୍ଣ ରାଜାଧିକାର ନୀତିର ପକ୍ଷପାତୀ ଥିଲେ । ତାଙ୍କ ମତରେ ପ୍ରାକୃତିକ ଅଧିକାରର ଅବାଧ ପ୍ରୟୋଗ ଫଳରେ ଭୟଙ୍କର ଅବସ୍ଥା ନିଶ୍ଚୟ ଘଟିବ; କାରଣ ସମସ୍ତେ ସମସ୍ତଙ୍କ ବିପକ୍ଷରେ ଯୁଦ୍ଧ କରିବାକୁ ସେପରି ଅବସ୍ଥାରେ ବାଧ୍ୟ ହେବେ । ମନୁଷ୍ୟ ବାସ୍ତବିକ ଗୋଟିଏ ହିଂସ୍ର କ ଜନ୍ତୁ; କିନ୍ତୁ ସେହି ହିଂସା ପ୍ରବୃତ୍ତିର ସ୍ୱଚ୍ଛନ୍ଦ ଚରିତାର୍ଥକୁ ଯଦି ପ୍ରଶ୍ରୟ ଦିଆଯାଏ, ତେବେ ଅଧିକାର—ଇଚ୍ଛା ଆପେ ଆପେ ବିଫଳ ହୁଏ । ଯେହେତୁ ମନୁଷ୍ୟକୁ ନିଜ ପ୍ରାକୃତିକ ଅଧିକାରର କେତେକାଂଶ ଛାଡ଼ିଦେବାକୁ ହେବ । ସେ ଅନ୍ୟମାନଙ୍କଠାରୁ ନିଜକୁ ସେତିକି ସ୍ୱାଧୀନ ରଖିବାକୁ ଇଚ୍ଛା କରିବ, ସେତିକି ପରିମାଣରେ ଅନ୍ୟମାନଙ୍କୁ ସ୍ୱାଧୀନତା ଦେବା ପାଇଁ ବାଧ୍ୟ । ସେତିକିରେ ସେ ସନ୍ତୁଷ୍ଟ ହେବା ଉଚିତ । ଏହି ନୀତିରୁ ତାର କର୍ତ୍ତବ୍ୟର ଅବଧାରଣା ଓ ସାମାଜିକ ନିୟମ ସବୁର-ଗଠନ କିନ୍ତୁ ସେ ଏହି କର୍ତ୍ତବ୍ୟ ଠିକ୍ କରୁଛି କି ନାହିଁ ଓ ଅନ୍ୟ ସମସ୍ତେ ତାଙ୍କର ନିଜ ନିଜ କର୍ତ୍ତବ୍ୟ ପରସ୍ପର ଠିକ୍ କରୁଛନ୍ତି କି ନାହିଁ, ଏହା ବୁଝିବା ପାଇଁ ଓ ତହିଁରେ ଦୋଷ ହେଲେ ଉଚିତ ଦଣ୍ଡ ଦେବାପାଇଁ କୌଣସି ଦଣ୍ଡମୂଳକ ଶକ୍ତି ଆବଶ୍ୟକ । ଏହି ଶକ୍ତି ସାମୁଦାୟିକ ଭାବରେ ସମ୍ମିଳିତ ସମାଜଦ୍ୱାରା ସ୍ଥାପନ କରାଯାଇପାରେ । ବାସ୍ତବ ପ୍ରୟୋଗରେ ଏହି ଶକ୍ତି ଜଣେ ଲୋକ ବା ଲୋକ-

ପରିଷଦଦ୍ୱାରା ବ୍ୟବହାର କରାଯାଏ । ସେପରି କଲେହିଁ ଶାନ୍ତି ଶୃଙ୍ଖଳା ରହେ । ଲୋକପରିଷଦ ଅପେକ୍ଷା ଜଣେ ଲୋକ ହସ୍ତରେ ସେହି ଶକ୍ତି ନ୍ୟସ୍ତ ହେଲେ ଆହୁରି ଭଲ । ରାଜତନ୍ତ୍ର ସର୍ବୋତ୍କୃଷ୍ଟ । ଏହି ଶକ୍ତି ଥରେ ନ୍ୟସ୍ତ ହେଲେ ପୁଣି ପ୍ରତିଗ୍ରହ କରାଯାଇ ନ ପାରେ ଏପରି ଶକ୍ତି ଦ୍ୱାରା ମନୁଷ୍ୟର ଆଇନ ପ୍ରଣୟନ, ନ୍ୟାୟ ବିଚାର, ଯୁଦ୍ଧକରଣ, ଶାନ୍ତି ସ୍ଥାପନ, ମନ୍ତ୍ରିମଣ୍ଡଳ ଗଠନ, ମୁଦ୍ରା ପ୍ରଚଳନ ଇତ୍ୟାଦି ସକଳ ଦିଗରେ ସମ୍ପୂର୍ଣ୍ଣ କ୍ଷମତା ରହେ । ଏପରି ନିରଙ୍କୁଶ କ୍ଷମତାରୁ ଅବଶ୍ୟ ସାମୟିକ କ୍ଷତି ଘଟେ । କିନ୍ତୁ ଅରାଜକତା ସମ୍ଭବ ଭୀଷଣ ବିଶୃଙ୍ଖଳା ଆଗରେ ଏହା କିଛି ନୁହେ । ହବ୍‌ସ୍ ସେତେବେଳର ଷ୍ଟୁଆର୍ଟ୍ ରାଜାମାନଙ୍କର ଅନୁଗ୍ରହ ପ୍ରାର୍ଥୀ ଥିଲେ ଓ ସେହି ରାଜାମାନେ ଲୋକଙ୍କ ସହିତ ଅଧିକାର ପାଇଁ କିପରି ଘୋର ସଙ୍ଘର୍ଷରେ ମାତିଥିଲେ, ତାହା ଇଂରେଜୀ ଇତିହାସରେ ସ୍ମରଣୀୟ କାହାଣୀ ହୋଇ ରହିଛି । ସେମାନଙ୍କ ଦାବୀକୁ ଦୃଢ଼ କରିବାର ପ୍ରବଳ ଆକାଂକ୍ଷାର ଛାୟା ହବ୍‌ସ୍‌ଙ୍କ ଯୁକ୍ତିରେ ଯେତେ ଦୂର ପଡ଼ିଛି, ତାହା ସହଜରେ ଜଣାଯାଏ । ବାସ୍ତବିକ ରାଜନୀତି କାହିଁକି, ଯେ କୌଣସି କ୍ଷେତ୍ରରେ ବ୍ୟକ୍ତିଗତ ଆଶା-ଆଶଙ୍କାର ମାୟା ମମତା ଏଡ଼ାଇବା ସହଜ ନୁହେ ।

ଅକ୍ଷୁଣ୍ଣ ରାଜାଧିକାରରେ ଏହି ନୀତି ବିରୁଦ୍ଧରେ ଯୁକ୍ତି କରିଛନ୍ତି ଅନ୍ୟତମ ଲବ୍‌ଧପ୍ରତିଷ୍ଠ ଇଂରେଜ ଦାର୍ଶନିକ ଜନ୍‌ଲକ୍ (John Locke) । ପ୍ରାକୃତିକ ସ୍ୱାତନ୍ତ୍ର୍ୟ ଓ ସମାନତା ପାଇଁ ସେ ବ୍ୟାକୁଳ ହୋଇଛନ୍ତି । ସେ କହନ୍ତି, ମନୁଷ୍ୟ କଦାପି ହିଂସ୍ରକ ଜନ୍ତୁ ନୁହେ । ତା'ର ନୈସର୍ଗିକ ଅବସ୍ଥା ବାସ୍ତବିକ ଶାନ୍ତି, ସଦିଚ୍ଛା, ପରସ୍ପର ସାହାଯ୍ୟ ଉପରେ ନିର୍ଭର କରେ । କିନ୍ତୁ ସେପରି ଅବସ୍ଥାରେ ମଧ୍ୟ ଅନେକ ଅଭାବ ଅଛି । ତହିଁରେ କୌଣସି ଅନୁସୃତ ନିୟମ, ନିରପେକ୍ଷ ନ୍ୟାୟଦାତା, କର୍ତ୍ତୃତ୍ୱ ଶକ୍ତି ପ୍ରଥମେ ଦେଖାଯାଏ ନାହିଁ । ଯେତେବେଳେ କେତେକ ମନୁଷ୍ୟ ଗୋଟିଏ ସମାଜ ଗଢ଼ି ଗୋଟିଏ ଶାସନ ଅମଳରେ ରହିବାକୁ ଚେଷ୍ଟା କରନ୍ତି, ସେତେବେଳେ ଏ ସବୁ ଅଭାବ ଯଥାସମ୍ଭବ ପୂର୍ଣ୍ଣ ହୁଏ । ସ୍ୱାଧୀନ ସମାଜର ବିବେଚନାରେ ନିରଙ୍କୁଶ ରାଜାଧିକାର କେଭେ ସଙ୍ଗତ ନୁହେ । କୌଣସି ଲୋକ-ସମାଜର ପ୍ରଥମ ମୌଳିକ କ୍ରିୟାବ୍ୟବସ୍ଥାପକ (Legislative) ସ୍ଥାପନ । ଏହି ବ୍ୟବସ୍ଥାପକ ଶକ୍ତି ପବିତ୍ର ଓ ଅପରିବର୍ତ୍ତନୀୟ । କିନ୍ତୁ ଏହି ଶକ୍ତିକୁ ମଧ୍ୟ କେତୋଟି ନିୟମ ମାନି ଚଳିବାକୁ ହେବ । ସମାଜର ମଙ୍ଗଳରେ ନିଜକୁ ନିୟୋଜିତ କରି, ଇଚ୍ଛାମତ କ୍ଷଣିକ ଆଦେଶଦ୍ୱାରା ଶାସନ ନ କରି, ସଂଖ୍ୟାଧିକଙ୍କ ଇଙ୍ଗିତ ମାନି ଚଳିବାକୁ ହେବ । ଶାସନ ପରିଚାଳନା ଅଧିକାର ନ୍ୟସ୍ତ ଲୋକ ବା ଲୋକସମୂହଙ୍କ ହସ୍ତରୁ କ୍ଷମତା କାଢ଼ି ନେଇ, ସେହି କ୍ଷମତାର ଅପବ୍ୟବହାରର ସମୁଚିତ ଶାସ୍ତି ଦେବାର ବିଧାନ ମଧ୍ୟ ବ୍ୟବସ୍ଥାପକର ଅଛି । ଲୋକଙ୍କର ବ୍ୟବସ୍ଥାପକକୁ ବଦଳାଇବାର

ଅକ୍ଷୁଣ୍ଣ କ୍ଷମତା ମଧ୍ୟ ଅଛି । ରାଷ୍ଟ୍ରର ଆତ୍ମା ଲୋକସମୂହରେ ପ୍ରକଟିତ, ରାଜ୍ୟରେ ନୁହେ; ବ୍ୟବସ୍ଥାପକ ଲୋକସମୂହର ପ୍ରତିନିଧି ।

କ୍ରମେ ମୌଳିକ ବିଜ୍ଞାନର ଉନ୍ନତି ସଙ୍ଗେ ଶାସନ ମୂଳକ ରାଜନୀତି ଉପରେ ଦିଆଯିବା ଜୋର ସମାଜବିଜ୍ଞାନ ଉପରେ ଆସି ପଡ଼ିଲା । ସମାଜ ସ୍ଥିତି ଓ ଉନ୍ନତିର ଶିକ୍ଷା ସମସ୍ତଙ୍କ ମନକୁ ଆକର୍ଷଣ କଲା । କମ୍‌ଟେ (Comte) ଏ ଶିକ୍ଷାର ମୁଖ୍ୟ ପ୍ରବର୍ତ୍ତକ । ମିଲ୍‌ଙ୍କ (John Stuart Mill) ବିଚକ୍ଷଣ ବିଶ୍ଳେଷଣ ସାମାଜିକ ଓ ରାଜନୀତିକ ସଂସାରରେ ପନ୍ଥା ଫିଟାଇଲା । ଜ୍ଞାନାଲୋକ, ଅଗ୍ରଗତି, ପୁରୋବର୍ତ୍ତନ, ଉତ୍କର୍ଷ ପାଇଁ ପ୍ରବଳ ଉତ୍ତେଜନା ଚାରିଆଡେ ଖେଳିଗଲା । ଶିକ୍ଷାହିଁ ସବୁଥିର ମୂଳମନ୍ତ୍ର । ଏ କଥା ଅନ୍ଧବିଶ୍ୱାସ ସହିତ ମଧ୍ୟ ପ୍ରଚାର କରାଗଲା । ସମାଜର ସ୍ଥାୟିତ୍ୱ ଓ ଗତିଶୀଳ ବର୍ଦ୍ଧନର ପରିଶୀଳନ ପ୍ରତ୍ୟେକର ଚିତ୍ତବୃତ୍ତି ଆଲୋଡ଼ିତ କଲା । ଏପରି ଭାବରେ ସାମାଜିକତା ବୀଜ କ୍ରମେ ସୁରକ୍ଷିତ କୋମଳ ବୃକ୍ଷ ଲତାରେ ପରିଣତ ହେଲା । ଅପର ପକ୍ଷରେ ସାମାଜିକ୍ ରାଷ୍ଟ୍ରର ବିରୁଦ୍ଧରେ ସ୍ପେନ୍‌ସର (Herbert Spencer)ଙ୍କ ଘୋଷଣା ବାଜି ଉଠିଲା । ସେ କହିଲେ, ରାଷ୍ଟ୍ର ଜୀବନର ସକଳ ବିଭାଗରେ ସାମୁଦାୟିକ ଭାବରେ କର୍ତ୍ତୃତ୍ୱ ଚଳାଇବା ଉଚ୍ଚ ସଭ୍ୟତାର ଲକ୍ଷଣ ନୁହେ । ସମାଜ ଯେତିକି ସଭ୍ୟତା ସୋପାନରେ ଉଠୁଥିବ, ରାଷ୍ଟ୍ର ସେତିକି ତାହା ଅଧିକ ଛାଡ଼ି ଦେଉଥିବ । ରାଷ୍ଟ୍ରର କର୍ତ୍ତବ୍ୟ କେବଳ ତା'ର ସଭ୍ୟମାନଙ୍କୁ ବୈଦେଶିକ ଆକ୍ରମଣ ଓ ଆଭ୍ୟନ୍ତରୀଣ ବିଦ୍ରୋହରୁ ରକ୍ଷା କରି ଶାନ୍ତି ପ୍ରତିଷ୍ଠା କରିବାରେ ଶେଷ ହୁଏ । ତହିଁରୁ ଅଧିକ କରିବାକୁ ବସିଲେ ରାଷ୍ଟ୍ର ଅନ୍ୟାୟ କରେ । ଏଭଳି ଅନ୍ୟାୟମୂଳକ ରାଷ୍ଟ୍ର କ୍ଷମତାର ବ୍ୟବହାର ମନୁଷ୍ୟ ଚରିତ୍ରରେ ଅବନତି ଘଟାଏ । ମୁକ୍ତ ପ୍ରତିଯୋଗିତା କ୍ଷେତ୍ରରେହିଁ ବେସରକାରୀ ଅନୁଷ୍ଠାନଗୁଡ଼ିକ ଭଲ ଭାବରେ କାର୍ଯ୍ୟ କରିବାର ସୁଯୋଗ ପାଆନ୍ତି ।

ପ୍ରସିଦ୍ଧ ଜର୍ମାନ୍ ଦାର୍ଶନିକ ନୀତ୍‌ଚ୍ (Nietzsche) ନୀତିକୁ ଏସବୁ କାଟି ଦେଇ, ସବୁ ପୁରୁଣା ରାସ୍ତାକୁ ଛିନ୍ନଭିନ୍ନ କରି ନିଜ ମତ ବ୍ୟକ୍ତ କରିଛନ୍ତି । ସୃଷ୍ଟିର ଲକ୍ଷ୍ୟ ଉଚ୍ଚ ଧରଣର ଅତିମାନବିକ ବୀରଜାତି (Race of heroes) ଗଠନ କରିବା । ଦୁର୍ବଳ ଦମନ, ସଂଘର୍ଷ, ବାଧା, କ୍ଳେଶବିନା ଏ ଲକ୍ଷ୍ୟ କେବେ ପୂରଣ ହୋଇ ପାରିବ ନାହିଁ । ଶାନ୍ତି ଅପେକ୍ଷା ସମର ସ୍ପୃହଣୀୟ । ଶାନ୍ତି ମରଣର ପ୍ରତୀକ । ଆମେ ବଞ୍ଚୁଛୁ ନିଜର ଅଧିକାର ବଜାୟ ରଖିବାକୁ, ଯେ କୌଣସି ମତେ ଆତ୍ମ ପ୍ରତିଷ୍ଠା କରିବାକୁ ।

— ୩ —

କୁହାଯାଇଛି, ଐତିହାସିକ ଗତି ନିରବଚ୍ଛିନ୍ନ । ଆଧୁନିକ ଜଗତର ବିଭିନ୍ନ ଦେଶରେ, ବିଭିନ୍ନ ଜାତି-ଗୋଷ୍ଠୀ-ଶ୍ରେଣୀର ସ୍ୱଭବ-ରୁଚି ଅବସ୍ଥାର ପ୍ରକରଣଭେଦରେ. ବିଭିନ୍ନ ମାତ୍ରା ଓ ଅନୁପାତରେ ଆମେ ଏହି ବିଭିନ୍ନ ମତବାଦର ପ୍ରଚଳନ ଦେଖୁ । ଆଜି ସାମାଜିକତା ବହୁତ ପରିବର୍ତ୍ତନ ଘେନି ସାମ୍ୟବାଦ ବେଶରେ ସୋଭିଏଟ୍ ଋଷିଆର ଦୀକ୍ଷା ହୋଇଛି । ନୀଜ୍‌ଙ୍କ ଅତିମାନବିକ ଶକ୍ତିବାଦ ସ୍ୱତଃ ନାଜୀ ଓ ଫାସିଷ୍ଟ ଇଟାଲୀକୁ ପ୍ରଭବିତ କରିଛି । ଆମେରିକା ଯୁକ୍ତରଷ୍ଟ ଗଣତନ୍ତ୍ରର ପ୍ରତିଷ୍ଠା ନାନା ପ୍ରଲୋଭନ ସତ୍ତ୍ୱେ ଛାଡି ନାହିଁ । ପରଂପରଗତ ଇଂଲଣ୍ଡ ରଜତନ୍ତ୍ରକୁ ଛାଡ଼ି ନାହିଁ; କିନ୍ତୁ ଏ ରଜତନ୍ତ୍ର ଲୋକ-ପ୍ରତିନିଧି ଦ୍ୱାର ମାର୍ଜିତ ହୋଇଛି । ପ୍ରତିଯୋଗିତା ନୀତି (Laisser faire) ନିର୍ମମ ନିଗଚ ସ୍ୱାର୍ଥପର ଭବରେ ପ୍ରୟୋଗ କରଯାଇ ସାମ୍ରାଜ୍ୟବାଦରେ ପରିଣତ ହୋଇଛି । ତାହା ଉପନିବେଶମାନ ଗଢ଼ି, ଅସଂଖ୍ୟ ଲୋକଙ୍କ ଦୁର୍ବଳ ଅବସ୍ଥାର ସୁବିଧା ନେଇ, ରଜନୀତିକ-ନୈତିକ ଆର୍ଥନୀତିକ ଦଳନରେ ସେମାନଙ୍କର ସ୍ୱାଧୀନ କାମନାକୁ ଖର୍ବ କରୁଛି । ଅନ୍ୟ ଦିଗରେ ସହ-ଯୋଗିତା ଆନ୍ତର୍ଜାତିକ ମିଳନ ଓ ବୁଝାମଣା ପାଇଁ ଡ଼ାକ ପକାଉଛି । କିନ୍ତୁ ସେ ଡାକ ଅତି କ୍ଷୀଣ. ଶୁଣୁଛି କିଏ ? ସମରର ତୀବ୍ର, ତୂର୍ଯ୍ୟ ନିନାଦରେ. ମୁମୂର୍ଷୁ ବିକଳାଙ୍ଗ ନିହତର ଆର୍ତ୍ତନାଦରେ ବସୁନ୍ଧର ଆଜି ଥରିଉଠୁଛି । ସମର ଉତ୍ତାରୁ ସମର, ତାର ଯେପରି ଅନ୍ତ ନାହିଁ ! ପୂର୍ବଠାରୁ ପର ଆହୁରି ଭୀଷଣ, ନିଷ୍ଠୁର, ଧ୍ୱଂସକାରୀ । ବାସ୍ତବିକ ଆମେ ଗୋଟାଏ ଅନ୍ୟାୟ ବିଶୃଙ୍ଖଳ ଧର୍ମଛଡା ପ୍ରଳୟ ସଂସାରରେ ଥିଲପରି ଲଗୁଛି ।

— ୪ —

ପାଶ୍ଚାତ୍ୟ ରଜନୀତିର ଏ ବିଭିନ୍ନ ଧାରଣା ଭରତର ଏବର ସଙ୍କଟ କାଳ ଓ ସଂଶୟ ସ୍ଥଳ (Crisis)ରେ କିପରି ଠିକ୍ ଅନୁପାତରେ ମିଳାଯାଇ ଗୋଟିଏ ଉପଯୋଗୀ କଲ୍ୟାଣକର ରଜନୀତିକ ଗୁମ୍ଫ ତୁଳାଯିବ ? ସେ ସବୁର ଦୋଷ ଗୁଣ ବାଛି, ଦୋଷ ପରିହାର ଓ ଗୁଣ ଗ୍ରହଣ କିପରି କରଯିବ ? ସାମାଜିକ ଉନ୍ନତି ସଙ୍ଗେ ବ୍ୟକ୍ତିର ସନ୍ତୁଷ୍ଟି, ରଷ୍ଟ୍ରର ଅଧିକାର ସଙ୍ଗେ ନାଗରିକର ସ୍ୱାତନ୍ତ୍ର୍ୟ, ପ୍ରତିଯୋଗିତା ସଙ୍ଗେ ସମବାୟ, ନିର୍ମଳ ପ୍ରତିନିଧି-ମୂଳକ ଶାସନ ସଙ୍ଗେ ସହନଶୀଳ କାର୍ଯ୍ୟ ନିର୍ବାହିକା ଶକ୍ତିର ପରକାଷ୍ଠା, ବଳିଷ୍ଠ କେନ୍ଦ୍ର ଶାସନ ସଙ୍ଗେ ପ୍ରାଦେଶିକ ଓ ସ୍ଥାନୀୟ ସ୍ୱାୟତ୍ତଶାସନ, ଲୋକ-ଅଧିକାର ସଙ୍ଗେ ରଜଗୌରବ ପ୍ରତିଷ୍ଠା, ଶ୍ରେଣୀ-ସଂଘର୍ଷଶୂନ୍ୟ ତୁଳାଧିକାର ବ୍ୟବସ୍ଥା ସଙ୍ଗେ ଅନ୍ୟାୟ ଶୂନ୍ୟ ପୁଞ୍ଜିବାଦ,—ଏହି ଆପାତ ବିପରୀତ ନୀତିଗୁଡ଼ିକର ସାମଞ୍ଜସ୍ୟ ରଖି, ଭରତୀୟ ସଂସାର ଓ ପାରିପାର୍ଶ୍ୱର ଅନୁକୂଳ

ଶାସନତନ୍ତ୍ର ଗଢ଼ି, ତା'କୁ ସତ୍ୟ-ଶିବ-ସୁନ୍ଦରର ପ୍ରୀତିକର ସୁଖକର ଜୀବନର ଅନ୍ୱେଷଣରେ କିପରି ଅନୁପ୍ରାଣିତ କରାଯିବ ? ବିଶାଳ ଭାରତର ବିଭିନ୍ନ ଧର୍ମ-ସମ୍ପ୍ରଦାୟ ଆଚାର-ବ୍ୟବହାର-ରୁଚି-ଭାଷା ସଂସ୍କୃତି-ପରଂପରାଗତ ସଂଖ୍ୟାଧିକ-ସଂଖ୍ୟାଳ୍ପଙ୍କ ପରସ୍ପର ବିରୋଧଜନିତ ଦାବୀଗୁଡ଼ିକର କିପରି ବିଚାର କରାଯାଇ ନ୍ୟାୟମାର୍ଗରେ ବିଭିନ୍ନ ସମସ୍ୟାଗୁଡ଼ିକର ସନ୍ତୋଷଜନକ ସମାଧାନ କରାଯିବ ? ଏକଛତ୍ର ମିଳନାତ୍ମକ ସଂଶ୍ଳିଷ୍ଟ ସମ୍ୟକ୍ କାର୍ଯ୍ୟକ୍ଷମ ଫଳୋତ୍ପାଦକ ଶାସନ ତନ୍ତ୍ରେ, ତାର ଆଧାତ୍ମିକ ପ୍ରାଣର ଗଭୀର ଅନୁଭୂତି ସମ୍ପାତରେ ପ୍ରାଚୀନ ଭାରତ କିପରି ବୃହତ୍ତର, ମହତ୍ତର ଋଦ୍ଧିମନ୍ତ ହେବ ? ବର୍ତ୍ତମାନର ଯୁଦ୍ଧ ବିପଦ ସଙ୍ଗେ ଯେ ଶାସନଗତ ପ୍ରତିରୋଧ (Constitutional deadlock) ପହଞ୍ଚିଛି, ତାହା କିପରି ଘୁଞ୍ଚିବ ? ଏ ସବୁ ପ୍ରଶ୍ନ ଆଜି ପ୍ରତ୍ୟେକ ଭାରତୀୟର ହୃଦୟ-ତନ୍ତ୍ରୀରେ ବାଜି ଉଠୁଛି । ଏ ସବୁର ଯୁକ୍ତିଯୁକ୍ତ ମୀମାଂସା ନିମନ୍ତେ ଆମ ରାଜନୀତିଜ୍ଞଙ୍କ କେତେ ହୃଦୟବତ୍ତା, ଦୂରଦୃଷ୍ଟି, ବିବେକତା, ଦେଶ ଧର୍ମ-ପ୍ରାଣତା, ସହାନୁଭୂତି ଲୋଡ଼ା, ତାହା ବୁଝାଇ କହିବାର ପ୍ରୟୋଜନ ନାହିଁ । ବିଧାତାଙ୍କ ମଙ୍ଗଳମୟ ବିଧାନରେ ସବୁ ଭଙ୍ଗ-ବିଭେଦ-ସୃଷ୍ଟି (Disruptive) କଥା ଓ କ୍ରିୟା ଲୋପ ପାଉ; ସେମାନଙ୍କର ସଂହତ ସଂଘବଦ୍ଧ ସାଧୁ ଉଦ୍ୟମ ସମ୍ପୂର୍ଣ୍ଣ ସଫଳ ହେଉ ।



# ଚାର୍ବାକ୍

ଚାର୍ବାକ୍ ନାସ୍ତିକବାଦର ମହୁଡମଣି । ଚାର୍ବାକ୍ ଦର୍ଶନର ପ୍ରତିଷ୍ଠାତା ବୃହସ୍ପତି ବୋଲି କୁହାଯାଇଛି ।

ବାସ୍ତବିକ୍ ଚାର୍ବାକ୍-ଶିକ୍ଷା କେବେହେଁ ଲୋପ ହୋଇ ନ ପାରେ । ସଂସାରରେ ଅଧିକାଂଶ ଲୋକ ସବୁ ଯୁଗରେ ସେହି ଶିକ୍ଷାର ମୂଳନୀତିକୁ ଅନୁସରଣ କରି ଚଳନ୍ତି । ଲୋକଭାଷାରେ ସେହି ମୂଳନୀତି ହେଉଛି—

ଯାଏଁ ଥିବାଯାକ ଭାଇ ଜୀଅଁ ହେ ସୁଖରେ
ମରଣ ଚକ୍ଷୁ ଆଗେ କିଏ ଲୁଚିପାରେ ?
ଥରେ ପୋଡ଼ି ଜଳି ଗଲେ ଶରୀର ଆମର,
ତାହା କିହେ ଫେରେ କେବେ କେଉଁ ପରକାର ?

ପ୍ରକୃତରେ ଲୋକସମୂହ ସବୁବେଳେ କୌଶଳ ଓ ସୁଖ ଭୋଗ ପନ୍ଥା ଅବଲମ୍ବନ କରନ୍ତି, କାମ ଓ ଅର୍ଥ କେବଳ ପୁରୁଷାର୍ଥ ବୋଲି ବିଚାରନ୍ତି, କଥାରେ ନ ହେଲେ ମଧ୍ଯ କାର୍ଯ୍ୟରେ ପରଲୋକ ମାନନ୍ତି ନାହିଁ । ଏଣୁ ଊଣା-ଅଧିକରେ ପ୍ରାୟ ସମସ୍ତେ ଚାର୍ବାକ୍‌ଙ୍କର ଶିଷ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେଥିପାଇଁ ଏହି ଦର୍ଶନର ଅନ୍ୟ ନାମ ଲୋକାୟତ । ଲୋକ ପ୍ରଚଳିତ ବୋଲି ଏହାର ଏହି ନାମ ଲୋକାୟତ । ଲୋକ ପ୍ରଚଳିତ ବୋଲି ଏହାର ଏହି ନାମ । ଶଙ୍କର, ଭାସ୍କର ଓ ଅନ୍ୟ ଭାଷ୍ୟକାରମାନେ ଲୋକାୟତିକ ଚାର୍ବାକ୍‌ବାଦୀଙ୍କର ଗୋଟିଏ ବିଶିଷ୍ଟ ସମ୍ପ୍ରଦାୟ ବୋଲି ଉଲ୍ଲେଖ କରିଅଛନ୍ତି । ପାଣିନୀରେ ଲୋକାୟତିକ ପଦ ବ୍ୟବହୃତ ହୋଇଛି ।

ଚାର୍ବାକ୍ ମତରେ ସୃଷ୍ଟିର ମୂଳତତ୍ତ୍ୱ ଚାରୋଟି ମହାଭୂତ—ତେଜ, ବାୟୁ, ଅପ୍, ପୃଥ୍ୱୀ । ଏ ଚାରୋଟି ପଦାର୍ଥର ଯଥାଯଥ ସଂମିଶ୍ରଣରେ ଦେହ ସୃଷ୍ଟି ହୁଏ, ତହିଁରୁ ଚେତନା ଜାତ ହୁଏ । ଗୁଡ଼, ଚାଉଳ, ତୋରାଣି ଇତ୍ୟାଦି ପଦାର୍ଥର ସଂଯୋଗରେ ଯେପରି ମାଦକତା ଜନ୍ମେ—ପାନପତ୍ର, ଚୂନ, ଗୁଆ, ଖଇର ଇତ୍ୟାଦି ସଂଯୋଗ କରି ଖାଇଲେ ଯେପରି ଉଲ୍ଲାସଗୁଣ ଜାତ ହୁଏ, ସେପରି ଏହି ଚେତନା ସୃଷ୍ଟି ହୁଏ; ପୁଣି ଦେହର ବିନାଶରେ ତାହା ବିନଷ୍ଟ ହୁଏ । ଏ କଥାର ପ୍ରମାଣସ୍ୱରୂପ

ଚାର୍ବାକବାଦୀମାନେ ବୃହଦାରଣ୍ୟକ ଉପନିଷଦ୍‌ର ନିମ୍ନ ପଂକ୍ତି ଉଦ୍ଧାର କରନ୍ତି,— "ଏହି ଭୂତମାନଙ୍କରୁ ଜାତ ହୋଇ ଚେତନା ସେମାନଙ୍କ ସଙ୍ଗେ ଲୋପ ପାଏ, ଚେତନା ଜ୍ଞାନ-ରୂପ; ମୃତ୍ୟୁପରେ ତାହାର ସତ୍ତା ରହେ ନାହିଁ" । ଅବଶ୍ୟ ଏହାର ବିଭିନ୍ନ ଦର୍ଶନରେ ବିଭିନ୍ନ ପ୍ରକାର ଅର୍ଥ କରଯାଇଛି । ଜୈମିନୀସୂତ୍ର ଟୀକାକାର ଶବର ଲେଖିଛନ୍ତି ଯେ ଶଙ୍କର କହିଛନ୍ତି ଏଠାରେ ବିନଷ୍ଟିର ଅର୍ଥ ପରମର ଅବବୋଧରେ ସଙ୍କୀର୍ଣ୍ଣ ବ୍ୟକ୍ତିତ୍ୱର ବିଲୋପ । କିନ୍ତୁ ନାସ୍ତିକବାଦୀ ଏହାର ଭାବ ବୁଝେ— ଦେହ ଭିନ୍ନ ଆତ୍ମା ବୋଲି କିଛି ନାହିଁ; ଦେହ ଅନ୍ତର୍ନିହିତ ଚେତନାହିଁ ଆତ୍ମିକ ପଦାର୍ଥ ।

ଏପରି ଦୃଷ୍ଟିରେ ଇନ୍ଦ୍ରିୟ ସୁଖଭୋଗହିଁ ଜୀବନର ଅନ୍ତିମ ଲକ୍ଷ୍ୟ ହେବ, ଏଥିରେ ସନ୍ଦେହ ରହି ନ ପାରେ । କିନ୍ତୁ ଏଠାରେ ଅନ୍ୟପନ୍ଥୀ ବାଦ କରିପାରେ— ସେପରି ସୁଖ ତ ଅନାବିଳ ଭାବରେ କେଉଁଠାରେ ମିଳେ ନାହିଁ, ତହିଁରେ ଦୁଃଖ ଅହରହ ଜଡ଼ିତ ରହେ, ତେବେ ତାହା କିପରି ମନୁଷ୍ୟର ଶ୍ରେଷ୍ଠ ଉଦ୍ଦେଶ୍ୟ ହୋଇପାରେ ? ଏହାର ଉତ୍ତରରେ ନାସ୍ତିକ କହେ,—ସୁଖ ଦୁଃଖ ମିଶାମିଶି, ଏ କଥା ଠିକ୍ । ନିର୍ମଳ, ପରିପୂର୍ଣ୍ଣ, ଅଖଣ୍ଡ ସୁଖ କାହାକୁ ମିଳେନାହିଁ । ତଥାପି ଏହି ମିଶାମିଶିରୁ ଦୁଃଖ ଅଂଶକୁ ପରିହାର କରି ସୁଖ ଅଂଶ ଯେତେଦୂର ସମ୍ଭବ ଉପଭୋଗ କରିବାରେ ହିଁ ଆମର ବିବେଚନା, ବିଜ୍ଞତା ପ୍ରକାଶ ପାଏ । ଯେଉଁ ବ୍ୟକ୍ତି ମାଛ ଖାଇବାକୁ ଇଚ୍ଛାକରେ, ସେ ମାଛରେ କାତି-କଣ୍ଟା ଥାଏ ବୋଲି କି ତାହା ଫିଙ୍ଗି ଦିଏ ? ଯେଉଁ ଲୋକ ତଣ୍ଡୁଳ ଇଚ୍ଛାକରେ, ସେ ତହିଁରେ ତୁଷ, କୁଣ୍ଡା, ଧୂଳି ଥାଏ ବୋଲି କଣ ତାହା ଲୋଡେ ନାହିଁ ? ମାଛକୁ ଧୂଆକଟା କରି, ତଣ୍ଡୁଳକୁ କୁଟାକଣ୍ଡା କରି ଭାତ, ତିଅଣ, ଭଜା, ଆମ୍ବିଳ ଇତ୍ୟାଦି ରନ୍ଧିବାଢ଼ି-ଖାଇ ନିଜର ଅଭିଳାଷ ପୂର୍ଣ୍ଣ କଲାପରି ଜୀବନରେ ସବୁ ଅଭିଳାଷ ପୂର୍ଣ୍ଣ କରିବାକୁ ହେବ । ବାଧାଭୟରେ ଅପୂର୍ଣ୍ଣ ମନୋରଥ ହେବା କାପୁରୁଷର ଲକ୍ଷଣ । ପକ୍ୱଶସ୍ୟକୁ ବନ୍ୟଜନ୍ତୁ ଖାଇଯିବା ଭୟରେ କେହି କ'ଣ ବୀଜ ବୁଣେ ନାହିଁ ? ଭିକ୍ଷୁକ ମାଗିବେ ବୋଲି ଆତଙ୍କିତ ହୋଇ କେହି କ'ଣ ଅନ୍ନ ରନ୍ଧେ ନାହିଁ ? ଚୋରର ଭୟରେ କେହି କ'ଣ ସମ୍ପତ୍ତି ଅର୍ଜେ ନାହିଁ ? କୁଟୁମ୍ବ ଜଞ୍ଜାଳ ଭୟରେ କେହି କ'ଣ ବିବାହ କରେ ନାହିଁ ? ଶଙ୍କା ଯୋଗୁଁ ଦୃଷ୍ଟ ସୁଖ ପରିତ୍ୟାଗ କରିବା ମନୁଷ୍ୟୋଚିତ ନୁହେଁ; ଏହା ମୂର୍ଖତ୍ୱ, ପଶୁତ୍ୱ । ଏଠାରେ ଆଉ ଗୋଟିଏ ପ୍ରଶ୍ନ ଉଠିପାରେ,—ଯଦି ପରଲୋକ ବା ସ୍ୱର୍ଗସୁଖ ନାହିଁ, ତେବେ ବୁଦ୍ଧିମନ୍ତ ଅନୁଭବୀ ଲୋକେ ଅଜସ୍ର ଅର୍ଥବ୍ୟୟ ଓ କାୟିକ ପରିଶ୍ରମ କରି ଅଗ୍ନିହୋତ୍ର ଇତ୍ୟାଦି ଯଜ୍ଞ କରନ୍ତି କାହିଁକି ? ଚାର୍ବାକୀ ଉତ୍ତର ଦିଏ,—ଏହା ସବୁ ବଞ୍ଚିବାର ବ୍ୟବସାୟ । ମିଥ୍ୟା, ପରସ୍ପର-ବିରୋଧ, ପୁନରାବୃତ୍ତି,—ଏ ତିନୋଟି ଦୋଷରେ ବେଦ ଦୂଷିତ; ଜ୍ଞାନକାଣ୍ଡ ଓ କର୍ମକାଣ୍ଡ ପରସ୍ପର ନିନ୍ଦାରେ ନିଯୁକ୍ତ ! ବୈଦିକ ପଣ୍ଡିତ ଠକ,

ବେଦ କେବଳ ଭଣ୍ଡମାନଙ୍କର ସଙ୍ଗତିହୀନ ଚିତ୍କାର । ସେଥିପାଇଁ ଲୋକମୁଖରେ ଗୀତ ହୁଏ —

ଅଗ୍ନି ହୋତ୍ର, ତିନି ବେଦ, ଭସ୍ମ-ଆବରଣ,
ବୈରାଗୀର ଦଣ୍ଡ ହସ୍ତ, କୌପୀନ ଧାରଣ
ଅବୋଧ, ଦୁର୍ବଳରତ ଏ ପେଟପୋଷା ନୀତି,
ନିଶ୍ଚୟ ଏ କଥା, କହିଛନ୍ତି ବୃହସ୍ପତି ।

ଏଣୁ ସାଂସାରିକ କ୍ଲେଶ ଛଡା ନରକ କିଛି ନାହିଁ । ଏହି କ୍ଲେଶର କାରଣ କଣ୍ଟକାଦି ଜାଗତିକ ବସ୍ତୁ । ଦେହର ବିନାଶହିଁ ମୁକ୍ତି । ଆତ୍ମା ଓ ଦେହ ଅଭିନ୍ନ ହେବାରୁ, 'ମୁଁ କୃଶ' 'ମୁଁ ଶ୍ୟାମଳ' ଏ କଥା ସହଜବୋଧ; କାରଣ ଏଠାରେ କୃଶତା ବା ଶ୍ୟାମଳ ବର୍ଣ୍ଣ ଓ ଆତ୍ମଚେତନାର ଆଶ୍ରୟ ଏକ ଶରୀର । 'ମୋର ଶରୀର' ବୋଲି ଯାହା କୁହାଯାଏ, ତହିଁରୁ ପ୍ରକୃତରେ ଆତ୍ମା ଓ ଶରୀରର ଭିନ୍ନତା ଜଣାଯାଏ ନାହିଁ । 'ରାହୁଙ୍କ ମସ୍ତକ' ପରି ଏ ପ୍ରୟୋଗ କେବଳ ଆଲଙ୍କାରିକ, ଯେପରି ରାହୁ କେବଳ ମସ୍ତକ ମାତ୍ର ।

ଏଠାରେ ପୁଣି ଏକ ପ୍ରଶ୍ନ ଉଠେ,—ହଁ ହୋଇପାରେ, କିନ୍ତୁ ଚାର୍ବାକ ତ ପ୍ରତ୍ୟକ୍ଷ ଛଡ଼ା ଅନୁମାନ, ଆପ୍ତବଚନ, ଉପମାନ ଇତ୍ୟାଦି ଜ୍ଞାନର ଅନ୍ୟ ପ୍ରମାଣ ସବୁ ମାନନ୍ତି ନାହିଁ । କିନ୍ତୁ ଏ ସବୁ ତ ନ ମାନିବାର ଉପାୟ ନାହିଁ । ଏ ସବୁ ସତ୍ୟ ନ ହେଲେ 'ଧୂମ" ଶବ୍ଦ ଶୁଣିମା ମାତ୍ରେ ମନ "ବହ୍ନି" ଆଡ଼କୁ କିପରି ଧାଏଁ ? "ନଦୀତଟରେ ଫଳବୃକ୍ଷ ଅଛି" ଏ କଥା ଶୁଣିବା ମାତ୍ରେ ଫଳକାମୀ ଲୋକର ମନ ହଠାତ୍ ତଟ ପ୍ରଦେଶକୁ କିପରି ଧାଏଁ ? ଚାର୍ବାକ ଏହାର ସନ୍ଧାନ ଦିଏ—ଏ ସବୁ କଳ୍ପନାର ବିସ୍ତାର; ଜ୍ଞାନ ଅର୍ଜନପାଇଁ ଓ ଅଜ୍ଞାତ ମଧ୍ୟରେ ଯୋଗସୂତ୍ର ସ୍ଥାପିତ ହେବା ଆବଶ୍ୟକ । ଏହି ଯୋଗସୂତ୍ର ସବୁବେଳେ ବ୍ୟଷ୍ଟିରେହିଁ ରହିବ,ପୁଣି ସମୟେ ସମୟେ ବଦଳି ପାରିବ; ତହିଁରେ ସନ୍ଦେହର ଛାୟା ସର୍ବଦା ପଡ଼ିବ । ଅପରିବର୍ତ୍ତନୀୟ ନିଶ୍ଚୟତା ତହିଁରେ ଆରୋପ କରଯାଇପାରିବ ନାହିଁ, କାରଣ ଯୋଗସୂତ୍ରରେ ବିଶ୍ୱବ୍ୟାପ୍ତି କଦାପି ରହିପାରିବ ନାହିଁ । ପ୍ରତ୍ୟକ୍ଷ ଦୁଇପ୍ରକାର—ବାହ୍ୟ ଓ ଆନ୍ତରିକ । ପ୍ରଥମଟିରେ ଇନ୍ଦ୍ରିୟ ଓ ବିଷୟ ସଂସର୍ଗରେ ଜ୍ଞାନ ଜନ୍ମେ; ସେପରି ଜ୍ଞାନ କେବେ ବିଶ୍ୱବ୍ୟାପକ ହୋଇ ନ ପାରେ, ଯେହେତୁ ତହିଁରେ ବର୍ତ୍ତମାନ ସଙ୍ଗେ ଭୂତ ଓ ଭବିଷ୍ୟତ୍ ସଂଲଗ୍ନ ହୋଇ ନ ପାରେ । ମାନସିକ କ୍ରିୟା ମଧ୍ୟ ଇନ୍ଦ୍ରିୟଭୋଗ୍ୟ ବିଷୟ ଉପରେ ନିର୍ଭର କରେ । ଏଣୁ ତହିଁରେ ବୈଶିଷ୍ଟ୍ୟ କିଛି ନାହିଁ । ଗୋଟିଏ ଅନୁମାନ ଆଉ ଗୋଟିଏ ଅନୁମାନ ଉପରେ ନିର୍ଭର କରେ; ଦ୍ୱିତୀୟଟି ତୃତୀୟ ଉପରେ—ଏହିପରି ତାହାର ଶେଷ ନିଷ୍ପତ୍ତି ହୋଇ ନ ପାରେ । ଆପ୍ତବଚନ ମଧ୍ୟ ଅନେକ ପରିମାଣରେ ଅନୁମାନ

ଉପରେ ନିର୍ଭର କରେ—ଏ କଥା କଣାଦ ତାଙ୍କର ବୈଶେଷିକ ଦର୍ଶନରେ ବୁଝାଇଛନ୍ତି । ପୁଣି ଆପ୍ତବଚନ ବୟସାଧିକ ଲୋକ ପିଲାକୁ କଥାରେ ଭଣ୍ଡାଇଲାପରି । ଧୂମ ଓ ବହ୍ନି ଅବିଚ୍ଛିନ୍ନ, ଏ କଥା ଅନ୍ୟ ଜଣେ କହିଲେ ଆମେ ମାନିବୁ କାହିଁକି ? ଏହି ନୀତିରେ ଆମେ ମନୁ ଆଦି କାହାକୁ ମାନୁନାହୁଁ । ଉପମାନରେ ଦୁଇଟି ବସ୍ତୁ ତୁଳନା କରାଯାଏ । ତହିଁରେ ବା ଚିରନ୍ତନ ସତ୍ୟ କିପରି ଆସିବ ? ତେବେ ତୁମେ କହିପାର,— ବ୍ୟଷ୍ଟିରେ ସମଷ୍ଟିର ଗୁଣ ରହେ । କିନ୍ତୁ ଜାତିର ସବୁଗୁଣ ବ୍ୟକ୍ତିଠାରେ ରହେ ନାହିଁ । ମନୁଷ୍ୟ ବୁଦ୍ଧିମାନ୍ ଜୀବ ବୋଲି ପରିଚିତ; ତଥାପି ମୂର୍ଖଲୋକ ମଧ୍ୟ ମନୁଷ୍ୟ ବୋଲି ଧରାଯାଏ । ଆଉ ଗୋଟିଏ କଥା । ସବୁ ବହ୍ନିରୁ ତ ଧୂମ ଜାତ ହୁଏ ନାହିଁ; ଜାଳକାଠ ଓଦା ଥିଲେ ଧୂଆଁ ବାହାରେ । କିନ୍ତୁ ବହ୍ନିକୁ ଏପରି ଭାବରେ ସଙ୍କୁଚିତ କରାଗଲେ, ତହିଁରେ ବ୍ୟାପ୍ତି ରହିଲା କେଉଁଠି ? ବିଶ୍ୱବ୍ୟାପ୍ତି ଉପାଧି ଜ୍ଞାନ ଉପରେ ନିର୍ଭର କରେ ପୁଣି ଉପାଧିଜ୍ଞାନ ବିଶ୍ୱବ୍ୟାପ୍ତି ଉପରେ ନିର୍ଭର କରେ । ଏପରି ଚକ୍ର-ନ୍ୟାୟରେ ପ୍ରକୃତ ସତ୍ୟ ରହି ନ ପାରେ । ସେହେତୁ ଶେଷରେ ଏତିକି କୁହାଯାଇ ପାରେ, କେବଳ ପୂର୍ବରୁ ଥରେ ସେପରି ଦେଖାଯାଇଥିବାରୁ ମନ ଧୂମରୁ ବହ୍ନି ବୋଧକରେ । ତାହା ଭ୍ରମ ହୋଇପାରେ । ଯଦି ଅନେକ ସମୟରେ ସତ୍ୟ ହୁଏ, ତେବେ ତାହା ଘଟଣାବଶତଃ—ଯେପରି ଔଷଧ, ମଣି, ମନ୍ତ୍ର ଇତ୍ୟାଦିର ଫଳ ।

ଏହି ବୁଝାମଣାରେ ନାସ୍ତିକ ଭାଗ୍ୟ, ଅଦୃଷ୍ଟ, ଧର୍ମାଧର୍ମ, ପାପପୁଣ୍ୟ ମାନେ ନାହିଁ । ଏଠାରେ ପ୍ରତିବାଦୀ ପୁଣି ପଚାରିପାରେ,— ତେବେ କାରଣ ନ ଥାଇ କାର୍ଯ୍ୟ କିପରି ଘଟେ ? ସଂସାର ସୃଷ୍ଟିର କାରଣ କଅଣ ? ନାସ୍ତିକ ଜବାବ ଦିଏ,— ନିଜ ନିଜର ସହଜ ସରଳ ଗୁଣରେ ଜଗତର ସବୁ ବିଷୟ ସୃଷ୍ଟି ହୁଏ । ସେଥିପାଇଁ କୁହାଯାଇଛି—

ଜଳେ ସ୍ନେହ-ଶୀତଳତା, ଅଗ୍ନିରେ ତପତି,
ଉଷା ସମୀରରେ ମୃଦୁ-ପରଶ-ଶକତି,
ବାର୍ଦ୍ଧକ୍ୟର ଦୁର୍ବଳତା, ଯୌବନର ରୂପ,
ଶୈଶବର ହାସ; କ୍ରୂର-ପ୍ରକୃତି-ପ୍ରକୋପ,
ନବ-ବିକଶିତ-ପୁଷ୍ପ ସୌନ୍ଦର୍ଯ୍ୟ-ସୌରଭ,
ଘନ କୋଳେ ଚଞ୍ଚଳାର ଜ୍ୟୋତି କ୍ଷଣପ୍ରଭ,—
ଏ ବିଚିତ୍ର ସର୍ଜନାର ସ୍ରଷ୍ଟା କିଏ ମିତ ?
କିଏ ନାହିଁ, ନିଜ ସହଜାତ ଗୁଣ ସେ ତ ।

ବୃହସ୍ପତି ପୁଣି ଶେଷ ମୀମାଂସା କରିଛନ୍ତି—

ସ୍ୱର୍ଗ ନାହିଁ, ମୋକ୍ଷ ନାହିଁ, ନାହିଁ ଅନ୍ୟ ଲୋକ,
ଚାରି ବର୍ଣ୍ଣ-ଆଶ୍ରମର କିଛିନାହିଁ ଠେକ;

ଜ୍ୟୋତିଷ୍ଟୋମେ ତହୁଁ ପଶୁ ଗଲେ ସ୍ୱରଗକୁ,
ଦେଉ ବଳି ଯଜ୍ଞ-କର୍ତ୍ତା ନିଜର ପିତାଙ୍କୁ;
ଶ୍ରାଦ୍ଧ ଯେବେ ମୃତ ଲୋକେ ଦିଅଇ ସନ୍ତୋଷ,
ପାନ୍ଥ କିପାଁ ବାଟ ପାଇଁ ନେବେ ହେ ଜିନିଷ ?
ଋଣ କରି ଖାଅ ଘିଅ ଭେଜି ଘତ ଗନ୍ଧି,
କିପାଁ ବୃଥା ତର୍କ-ଜାଲେ ହେଉଅଛ ବାନ୍ଧି ?
ମୃତବ୍ୟକ୍ତି ଯେବେ ଯାଏ ଅନ୍ୟାନ୍ୟ ଲୋକକୁ,
କିପାଁ ବନ୍ଧୁ-ଦେଖା ପାଇଁ ନ ଆସେ ଏଠାକୁ ?
ଅଶ୍ୱମେଧ ଆଦି କ୍ରିୟା, ବ୍ରାହ୍ମଣେ ଦକ୍ଷିଣା, –
ବ୍ରାହ୍ମଣ ଭିଆଣ ସବୁ, ମାର ତହିଁ ଠଣା ।

ଚାର୍ବାକ୍ ଦର୍ଶନର ସମାଲୋଚନା ଏଠାରେ ଅଭିପ୍ରେତ ନୁହେଁ । ନ୍ୟାୟ, ଅଧ୍ୟାତ୍ମ, ତାତ୍ପର୍ଯ୍ୟ, ନୈତିକତା, ସଭ୍ୟତା ଇତ୍ୟାଦି ବିଭିନ୍ନ ଦୃଷ୍ଟିରୁ ଅସଂଖ୍ୟ ବିଖ୍ୟାତ ଦାର୍ଶନିକ, ଭାବୁକ, କବି, ଯୋଗୀ, ଆଦର୍ଶକର୍ମୀ ତାହାର ସମାଲୋଚନା କରି ନାସ୍ତିକ-ଭୌତିକ-ବାଦର ଅମୂଳକତା, ଅପରିପକ୍ୱତା ଦର୍ଶାଇ ଅଛନ୍ତି । ବାସ୍ତବିକ୍ ପ୍ରାଚ୍ୟ ବା ପ୍ରତୀଚ୍ୟର ଯେ କୌଣସି ଉତ୍କୃଷ୍ଟ ଚିନ୍ତାଧାର ଆବହମାନ କାଳରୁ ଏ ବସ୍ତୁପ୍ରଧାନ ସଙ୍କୀର୍ଣ୍ଣ ଦୃଷ୍ଟି ଓ ତଜ୍ଜନିତ ଅତି ନିମ୍ନସ୍ତରର ସଂସ୍କୃତିର ପ୍ରତିକ୍ରିୟା କରିବାରେହିଁ ପ୍ରୟାସୀ ହୋଇଅଛି । ସେ ଯାହାହେଉ, ଯେପରି ପ୍ରଥମେ କୁହାଯାଇଛି ସଂସାର ଥିବାଯାକ ଏ ଦର୍ଶନର ଆକର୍ଷଣ ଯଥାଯଥ ପ୍ରତିଷ୍ଠା ରହିଥିବ । ଜୀବନ କେବଳ ଆଧ୍ୟାତ୍ମିକ ବା ଆଧିଦୈବିକ ନୁହେ, କେବଳ ନ୍ୟାୟର ଶୃଙ୍ଖଳାରେ ରହିବା ପଦାର୍ଥ ନୁହେଁ । ପ୍ରବହମାନ ଦୈନନ୍ଦିନ ଜୀବନରେ ବସ୍ତୁବାଦର ଯଥାପ୍ରକାର ସନ୍ନିବେଶ ଓ ପ୍ରାଧାନ୍ୟ ରହିବ; ନଚେତ୍ ଯେ କୌଣସି ଏକଦର୍ଶୀ, ତର୍କବହୁଳ, ଶସ୍ତା-ଦାର୍ଶନିକ, ପ୍ରବଞ୍ଚନାପୂର୍ଣ୍ଣ, ବିଡ଼ାଲ-ବୈରାଗ୍ୟ-ଜଡ଼ିତ ପ୍ରଗ୍ରର ବିରୁଦ୍ଧରେ ଚିରକାଳ ଚାର୍ବାକ ଏପରି ନିର୍ଭୀକ ସମରଡ଼ାକ (Challenged) ଦେଉଥିବ । ଏହି ସମର ଡାକର ଠିକ ଉତ୍ତର ଦେବାପାଇଁ ପ୍ରସ୍ତୁତ ହେବାରେ ହିଁ ମନୁଷ୍ୟ ସମଦର୍ଶୀ, ଗମ୍ଭୀର, ଅନୁଭବସମ୍ପନ୍ନ, ନିଷ୍କପଟ ହେବାର ସମ୍ଭାବନା ଓ ଉଦ୍ଦୀପନା ରହେ । ନଚେତ୍ ସେ ଶିଥିଳ, ନିଶ୍ଚିନ୍ତ, ଅଳ୍ପ-ସନ୍ତୁଷ୍ଟ, ସଦ୍ୟ-ଲାଭ-ବ୍ୟବସାୟୀ, ଲକ୍ଷ୍ୟଭ୍ରଷ୍ଟ ହେବାର ଆଶଙ୍କା ପଦେ ପଦେ ରହିଛି । ଏଠାରେହିଁ ଚାର୍ବାକ-ଶିକ୍ଷାର ମୂଲ୍ୟ ଓ ଅଭିବ୍ୟକ୍ତି ।



# ପାଶ୍ଚାତ୍ୟ ମନସ୍ତତ୍ତ୍ୱ ଓ ଧର୍ମନୀତି

ପାଶ୍ଚାତ୍ୟ ବିଜ୍ଞାନ ଜଗତିରେ ଏ ଯୁଗରେ ଯେତୋଟି ପ୍ରଧାନ ପ୍ରଧାନ ନୂଆକଥା ବାହାରିଛି, ତାହା ଭିତରେ "ମନସ୍ତାତ୍ତ୍ୱିକ ବିଶ୍ଳେଷଣ" (Psycho-Analysis) ଅନ୍ୟତମ । ଫ୍ରୁଡ୍ (Freud) ଏହାର ଜନକ ବୋଲି ଧରଯାଏ । ତାଙ୍କ ପୂର୍ବରୁ ତାହାର ଆଭାସ ଥିଲା । ତଥାପି ଫ୍ରୁଡ୍ ହିଁ ପ୍ରଥମରେ ଏହାର ରୂପରେଖ, ଆକାର-ପ୍ରକାର ନିର୍ଣ୍ଣୟ କରିଛନ୍ତି । ତାଙ୍କ ମତରେ, ମନୁଷ୍ୟ ମନର କେଉଁ ଗଭୀର ଗହ୍ୱରରେ ତାହାର ବହୁ ଅପୂର୍ଣ୍ଣ ଆଶା ଓ ଆକାଂକ୍ଷା ଲୁଚି ରହେ । ବହୁ ସମୟରେ ସେଗୁଡ଼ିକ ଚେତନ-ରାଜ୍ୟ (Conscious କୁ ଆସି ନିଜନିଜକୁ ଚରିତାର୍ଥ କରିବାର ଚେଷ୍ଟା କରନ୍ତି । କିନ୍ତୁ ସେ ଗୁଡ଼ିକୁ ଅସତ୍ ବୋଧ କରି ମନୁଷ୍ୟ ଦବାଇ ଦେବାକୁ ଚେଷ୍ଟା କରେ । କିନ୍ତୁ ତାହା ପାରେନାହିଁ । ସେଗୁଡ଼ିକ ଛପି ରହିଯାନ୍ତି । ଏପରି ଭାବରେ ମନୁଷ୍ୟର ମାନସିକ ସଂଘର୍ଷ ଜାତ ହୁଏ । ଏହି ଛପି ରହିଯିବା ପ୍ରବୃତ୍ତିଗୁଡିକର ସମଷ୍ଟି ହିଁ ମନୁଷ୍ୟ ମନରେ ଅଚେତନ-ରାଜ୍ୟ (Unconscious) ସୃଷ୍ଟି କରେ । ମନୁଷ୍ୟ-ଜୀବନ ଉପରେ ଏହି ଅଚେତନର ପ୍ରଭାବ ଅକଳନୀୟ, ଏପରି କି ଚେତନଠାରୁ ମଧ୍ୟ ଖୁବ୍ ବେଶି । ଅଚେତନ ବୋଲି ଏହାକୁ ଦଳିଦେଲେ ଲାଭନାହିଁ । ତଦ୍ୱାରା କେବଳ ଭୟଙ୍କର ଶାରୀରିକ ଓ ମାନସିକ ବ୍ୟାଧି ଜାତହୁଏ । ଏଣୁ ଅଚେତନର ଦାବୀକୁ ମାନିବାକୁ ହେବ ।

ଏଠାରେ ପ୍ରଶ୍ନ ଉଠିପାରେ, ଅଚେତନ ଯଦି ଅସତ୍ ପ୍ରବୃତ୍ତିର ସମଷ୍ଟି, ତେବେ ତାହାକୁ ଚରିତାର୍ଥ କରିବା କି ଆପଦଜନକ ନୁହେ ? ତଦ୍ୱାରା କି ମାନବ ଜୀବନର ନୈତିକ ଓ ଆତ୍ମିକ ଅଧୋଗତି ହେବନାହିଁ ? ବୈଜ୍ଞାନିକ କିନ୍ତୁ ଏହାର ଜବାବ୍ ଦିଏ—ଭଲ-ମନ୍ଦ, ନୀତି-ଅନୀତି ପ୍ରସଙ୍ଗ ଆମର କିଛି ଲେଡ଼ା ନାହିଁ; ଆମେ କେବଳ ପ୍ରକୃତ କଥା କହି ରଖୁଛୁ; ଅଚେତନକୁ ଅମାନ୍ୟ କରିବା ଅର୍ଥ ପ୍ରକୃତିକୁ ଲଙ୍ଘିବାକୁ ଯିବା; ପ୍ରକୃତିକୁ ଲଙ୍ଘିବାକୁ ଗଲେ ମନୁଷ୍ୟର ଶାନ୍ତି ସୁଖ କାହିଁ ରହିବ ?

ଫ୍ରୁଡ୍ଙ୍କର ଚିନ୍ତାଧାରାରେ ପରେ ପରେ ତାଙ୍କର ପ୍ରଧାନ ଶିଷ୍ୟ କେତେଜଣ କିଛି କିଛି ପରିବର୍ତ୍ତନ ଆଣିଛନ୍ତି । କିନ୍ତୁ ମୋଟାମୋଟି ଭାବ ସେତିକି । ଅଲ୍‌ଫ୍ରେଡ୍

ଅଲ୍‌ଦର୍ (Alfred Alder) କହନ୍ତି—ମନୁଷ୍ୟର ମୁଖ୍ୟ ପ୍ରବୃତ୍ତିର ଶକ୍ତି ଦେଖାଇବା, ଅନ୍ୟ ଉପରେ ଅଧିକାର କରିବା । ଯଥେଷ୍ଟ ଅଧିକାର ଚଳେଇବା ପାଇଁ ମନୁଷ୍ୟ ଯେତେବେଳେ ସୁଯୋଗ ପାଏନାହିଁ, ସେ କ୍ଳେଶ ଅନୁଭବ କରେ, ନିଜର ମନରୂପକ ବନ୍ୟଜନ୍ତୁ ଦ୍ୱାରା ଆଘାତ ପ୍ରାପ୍ତ ହୁଏ । ତେଣୁ ଅଭିବୃଦ୍ଧି ଓ ପ୍ରକାଶ ପାଇଁ ମନୁଷ୍ୟକୁ ଉପଯୁକ୍ତ କ୍ଷେତ୍ର ଯୋଗାଯିବା ଆବଶ୍ୟକ । ସେ ସ୍ୱତନ୍ତ୍ର ଓ ସ୍ୱାଧୀନ ହେବା ଉଚିତ । ଧର୍ମ-ଭାଷାରେ କହିଲେ ଫ୍ରଡ୍ ମନୁଷ୍ୟର ପଶୁସ୍ୱଭାବ ଉପରେ ଜୋର ଦେଲାବେଳେ, ଅଲ୍‌ଦର୍ ତାହାର ଅସୁର-ସ୍ୱଭାବ ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଆଉଜଣେ ଶିଷ୍ୟ ଡକ୍ଟର୍ ଜଙ୍ଗ୍ (Dr. C Jung)ଙ୍କ ମତରେ ଅଚେତନ କେବଳ ପ୍ରତିହତ ପ୍ରବୃତ୍ତିର ସମଷ୍ଟି ନୁହେ, ତାହା ମନୁଷ୍ୟର ଅନ୍ତର୍ନିହିତ ଆଦ୍ୟ ଜୀବନୀ ଶକ୍ତିର ଅଭାବ ଜନିତ ଗଭୀର ପ୍ରତିକ୍ରିୟା । ମୁଖ୍ୟତଃ ମନୁଷ୍ୟ ଦୁଇ ପ୍ରକାରର ବହିର୍ମୁଖୀ (Extrovert) ଓ ଅନ୍ତର୍ମୁଖୀ (Introvert) । ପ୍ରଥମ ଶ୍ରେଣୀରେ ଭାବ ପ୍ରବଣତା ବେଶି ଦେଖାଯାଏ; ଦ୍ୱିତୀୟରେ ଚିନ୍ତା-ଶକ୍ତିର ପ୍ରଖରତା ବେଶି ଦେଖାଯାଏ । ଯେତେବେଳେ ଭାବବିହ୍ୱଳ ଲୋକ ଏପରି ପରିସ୍ଥିତିରେ ପଡ଼େ ଯହିଁରେ ତାହାର ଭାବ ତରଙ୍ଗ ମୁକ୍ତ ଭାବରେ ଖେଳିପାରେ ନାହିଁ, କିନ୍ତୁ ଚିନ୍ତା-ଶକ୍ତି ଆବଶ୍ୟକ ହୁଏ, ଅଥବା ଯେତେବେଳେ ଚିନ୍ତାଶୀଳ ଲୋକ ଏପରି ପରିସ୍ଥିତିରେ ପଡ଼େ ଯହିଁରେ ତାହାର ଚିନ୍ତାଶକ୍ତି ରୁଦ୍ଧ ହୁଏ, କିନ୍ତୁ ଭାବାତିଶଯ୍ୟ ଲୋଡ଼ାପଡ଼େ, ସେତେବେଳେ ମନୁଷ୍ୟ ମନରେ ବିପ୍ଳବ ପହଞ୍ଚେ; ତାହାର ସ୍ନାୟୁ ଦୁର୍ବଳ ହୁଏ; ଅଚେତନ ତାହା ଉପରେ ବାଘପରି ମାଡ଼ିବସେ ।

ସେ ଯାହାହେଉ ଏ ଚିନ୍ତାଧାରାର ପ୍ରଭାବ ଆଧୁନିକ ଜୀବନ ଉପରେ କିପରି ପଡ଼ିଛି ? ଦେଖାଯାଉଛି, ଏ ଯୁକ୍ତିର ଦ୍ୱାହିରେ ମନୁଷ୍ୟ ଆଜି ଅଚେତନର ଶୃଙ୍ଖଳରେ ନିଜକୁ ନିଜେ ବାନ୍ଧିହେବା ପ୍ରୀତିକର ମନେ କରୁଛି, ନିଜକୁ ଅଚେତନର କ୍ରୀତଦାସ ରୂପେ ପରିଗଣନ କରୁଛି । ସେ ମନେ କରିଛି—ଅଚେତନର କରାଳ କବଳରୁ ରକ୍ଷାନାହିଁ; ପାଶବିକ ପ୍ରବୃତ୍ତିଗୁଡ଼ିକୁ ଧ୍ୱଂସ କରିବାକୁ ଯିବା ବିଡମ୍ବନା ମାତ୍ର; ତାଙ୍କର ରାଜତ୍ୱ ଅନିବାର୍ଯ୍ୟ । ଅବଶ୍ୟ ଠାଏଁ ଠାଏଁ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ପାଶବିକ ପ୍ରବୃତ୍ତିକୁ ମହତ୍ ମାର୍ଗରେ ଚାଳନ କରିବା (Sublimation), ଉଚ୍ଚକୋଟୀକୁ ବଦଳ କରିବା (Transference) ଇତ୍ୟାଦିର ଉଲ୍ଲେଖ ଅଛି । କିନ୍ତୁ ମନେହୁଏ—ସମସ୍ତେ ଯଦି ପଶୁ-ପ୍ରବୃତ୍ତିକୁ ଅବାରିତ ଭାବରେ ଗତି କରାଇବାକୁ ଦେବେ, ତେବେ ସମାଜ ତ ରହିବ ନାହିଁ—ଏହି ନ୍ୟାୟରେ ଏହି କେତୋଟି ଛାଡ଼ଦିଆ କଥା (Concessions) ମାତ୍ର ।

ଏଠାରେ ଏ ମତବାଦ ପୁଣି ଆମର ପ୍ରାଚୀନ ଧାର୍ମିକ ଓ ନୈତିକ ଦୃଷ୍ଟି-କୋଣ ମଧ୍ୟରେ କି ବ୍ୟବଧାନ, ତାହା ପରିଷ୍କାର ଜଣାଯାଉଛି । ନୈତିକ ଧର୍ମ ବଜ୍ର-ଗମ୍ଭୀର କଣ୍ଠରେ କହେ—ସଂଯମ ! ଅସତ୍ ପ୍ରବୃତ୍ତିର ପ୍ରତିରୋଧ ! ତାହା ନ ହେଲେ ଲକ୍ଷ୍ୟସାଧନ ଅସମ୍ଭବ । ପ୍ରେୟ ଓ ଶ୍ରେୟ ପୃଥକ୍ । ଇନ୍ଦ୍ରିୟ କାମନାର ବଶବର୍ତ୍ତୀ ହେଲେ ପତନ କେତେଦୂର ହେବ, କଳ୍ପନାତୀତ । କାମନାକୁ ଚରିତାର୍ଥ କରି ତାହାକୁ ଧ୍ୱଂସ କରିବା ପ୍ରୟାସ ବାତୁଳତା ସିନା । ପରିତୃପ୍ତି ଆହୂତିରେ କାମନା ଅନଳ ଲିଭିବ କୁଆଡ଼ୁ ? ବରଂ ଅଧିକ ଅଧିକ ଜଳିଉଠି, ଜୀବାକୁ ପୋଡ଼ି ପକାଇବ ।

ତେବେ ଏ ବୈପରୀତ୍ୟର କି ସମାଧାନ ନାହିଁ ? ସମନ୍ୱୟ ନାହିଁ ? ଆଶା ହୁଏ, ପାଶ୍ଚାତ୍ୟ ବିଜ୍ଞାନର ସସୀମ ଏକଦର୍ଶିତା ସଙ୍ଗେ ପ୍ରାଚୀନ ଆର୍ଯ୍ୟ ଚିନ୍ତାର ନିଗୂଢ଼ ତାତ୍ପର୍ଯ୍ୟ ବୁଝିଲେ ଏ ବ୍ୟବଧାନର କାରଣ ରହିବ ନାହିଁ ।

ପ୍ରଥମେ, ଅଚେତନ କାହିଁକି କେବଳ ଅସତ୍‌ପ୍ରବୃତ୍ତିର, ନୀଚ ଦୁଷ୍ଟ ଆଶୟର ସମଷ୍ଟି ହେବ ? ଏଠାରେହିଁ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ଭ୍ରାନ୍ତି । ଅସତ୍ ଯେପରି ମନୁଷ୍ୟର ପ୍ରକୃତି, ସତ୍ ମଧ୍ୟ ସେହିପରି । ନ ହେଲେ ଶତ ଶତ ପ୍ରଲୋଭନ ସତ୍ତ୍ୱେ ମନୁଷ୍ୟ ମନରେ ଆତ୍ମସଂଯମର ମୌଳିକ ସହଜ ଆକାଂକ୍ଷା ଫୁଟି ଉଠନ୍ତା କାହିଁକି ? ଆଚରିତ ପାପ ପାଇଁ ତାହାର ହୃଦୟରେ ଅନୁତାପ, ପଶ୍ଚାତାପ, ପ୍ରାୟଶ୍ଚିତ୍ତର ଉଦ୍‌ବେଗ ଦେଖାଯାନ୍ତା କାହିଁକି ? ଏ ସବୁ ମଧ୍ୟ ଅଚେତନର ଅନ୍ତର୍ଗତ ବୋଲି ବୁଝିବାରେ ଆପତ୍ତି କଅଣ ? ଅସଲ କଥା, ତତ୍ତ୍ୱ ଦୃଷ୍ଟିରେ ଚେତନ ଓ ଅଚେତନ ମଧ୍ୟରେ ସେପରି କିଛି ଅଚ୍ଛିଦ୍ର କାନ୍ଥ ନାହିଁ । ପୁଣି, ଏ ଅଚେତନ କି ଜିନିଷ ? ତାହାର ଉତ୍ପତ୍ତି କିପରି ? ତାହାର ସଙ୍ଗଠନ, ରୂପ, କ୍ରିୟା କିପରି ସାଧିତ ହୁଏ ? ପ୍ରବୃତ୍ତି ତହିଁରେ କିପରି ସଞ୍ଚିତ ହୁଏ ? ହିନ୍ଦୁର ଜନ୍ମାନ୍ତରବାଦହିଁ ଏ ପ୍ରଶ୍ନର ଠିକ୍ ଉତ୍ତର ଦେଇପାରିବ ବୋଧହୁଏ । ବହୁ ପୂର୍ବଜନ୍ମର ବାସନା ବୀଜ ଆଗମନରେ ସୂକ୍ଷ୍ମ ଶରୀରରେ ସଞ୍ଚିତ ରହେ । ଜୀବର ବହୁ ପୂର୍ବଜନ୍ମ ଥିଲେ, ବହୁ ଭବିଷ୍ୟ ଜୀବନ ମଧ୍ୟ ଅଛି । କାଳପାରାବାର ଉପରେ ଜୀବନ-ଲହରୀ ଢେଉ ମାରୁଛି । ବାସନା ସତ୍ ଓ ଅସତ୍ । ଉପଯୁକ୍ତ ପାରିପାର୍ଶ୍ୱ ପାଇ ଏ ବାସନା ରୂପ ଧରେ । ଫଳରେ ମନୁଷ୍ୟ ଏକ ସମୟରେ ଉର୍ଦ୍ଧ୍ୱଗାମୀ ହେଲେ, ଅନ୍ୟ ସମୟରେ ଅଧୋଗାମୀ ହୁଏ ।

ପୁଣି ଏ ସମ୍ପର୍କରେ ଆଧୁନିକ ଜୀବନର ଆଉ ଗୋଟିଏ ବୈଷମ୍ୟ ଲକ୍ଷ୍ୟ କରିବା କଥା । ଆଧୁନିକ ମାନବ ସ୍ୱାଧୀନତାର, ସ୍ୱାତନ୍ତ୍ର୍ୟର ଦୁହାଇ ଉଠାଏ; ସେଥିଲାଗି

ଭୟଙ୍କର ରାଜନୈତିକ ଓ ଅର୍ଥନୈତିକ ବିପ୍ଳବ ସୃଷ୍ଟି କରେ; ସମର ହୁଙ୍କାରରେ ଧରଣୀକୁ ସ୍ତମ୍ଭିତ କରେ । କିନ୍ତୁ ଏଣେ ନିଜ ମନ-ଦଉଡିରେ ନିଜକୁ କିପରି ବାନ୍ଧି-ପକାଏ, ମନ-ପ୍ରଭୁର ନିତାନ୍ତ ଆଜ୍ଞାଧୀନ ଭୃତ୍ୟ ହୋଇପଡ଼େ, ତାହାହିଁ ଆଶ୍ଚର୍ଯ୍ୟର ବିଷୟ । ଯଦି ମନୁଷ୍ୟ ଅଚେତନର କ୍ରୀଡନକ, ହତିଆର ମାତ୍ର, ତେବେ ତାହାର ଆଉ ମୁକ୍ତି କାହିଁ ? ତେବେ ତାହାକୁ ଯନ୍ତ୍ର-ବିଶେଷ ଛଡ଼ା ଆଉ କଅଣ ବୋଲିବାକୁ ହେବ ? କିନ୍ତୁ ମନୁଷ୍ୟ ତ ବାସ୍ତବିକ ତାହା ନୁହେଁ । ମନୁଷ୍ୟ ବଞ୍ଚେ । କେବଳ ବଞ୍ଚେନାହିଁ, ଆଶାକରେ; ଆଦର୍ଶ ଆଡକୁ ସତୃଷ୍ଣ ଦୃଷ୍ଟି ପକାଏ; ଅନ୍ଧକାରରୁ ଆଲୋକକୁ, ମରଣରୁ ଅମରକୁ, ଅସତ୍‌ରୁ ସତ୍‌କୁ ଡ଼େଇଁ ଯିବା ପାଇଁ ତାହାର ପ୍ରାଣ ଉତ୍କଣ୍ଠିତ ହୁଏ; ଅସୀମ, ବିରାଟ, ମହାନ୍‌ର ପରିକଳ୍ପନା କରି ତାହାର ଇଚ୍ଛା କ୍ରିୟା ଜ୍ଞାନର ଧାରା ସେହି ଆଡକୁ ବୁହାଏ । ମନ-ଦଉଡ଼ି ଦ୍ୱାରା ଗାଈପରି ଯେଣିକି ଟଣା-ଗଲେ ତେଣିକି ଯିବାରେ ତାହାର ଆତ୍ମ ମର୍ଯ୍ୟାଦା କ୍ଷୁଣ୍ଣ ହୁଏ; ବ୍ୟକ୍ତିତ୍ୱ ବିନଷ୍ଟ ହୁଏ । ଏ ଅହେତୁକ ନୈରାଶ୍ୟମୟ ଅନ୍ଧ ପରିସ୍ଥିତିରେ ସେ କଦାପି ସନ୍ତୁଷ୍ଟ ହୁଏନାହିଁ, ହୋଇପାରେ ନାହିଁ । ବହୁମୂଲ୍ୟ ଦୁର୍ଲଭ ମାନବ ଜୀବନର ଏ ହତାଶ ବ୍ୟଥିତ ଆତଙ୍କିତ ଚିତ୍ର ଦେଖି ସେ ସ୍ଥିର ରହେନାହିଁ, ରହିପାରେ ନାହିଁ ।

ତେବେ ଏ ଅର୍ଦ୍ଧସତ୍ୟ ଘେନି ଏ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ବିଜ୍ଞାନ ଆଜି ଏତେ ଲୋକପ୍ରିୟ ହୋଇଛି କାହିଁକି ? ସମସ୍ତଙ୍କର ମନକୁ ସ୍ପର୍ଶ କରୁଛି କାହିଁକି ? ଏଠାରେହିଁ ସତର୍କତା ଆବଶ୍ୟକ । ଲୋକପ୍ରିୟତା ସତ୍ୟର ମାପକାଠି ନୁହେଁ । ଲୋକ-ଜୀବନ ଇନ୍ଦ୍ରିୟ-ସୁଖ ଲାଳସା ଦ୍ୱାରା ସଦା ଉଦ୍‌ବେଳିତ । ପୁଣି ସେ ଲାଳସା ଯଦି ଗୋଟିଏ ବୈଜ୍ଞାନିକ ତତ୍ତ୍ୱର ପ୍ରଶ୍ରୟ ପାଏ, ଛଳନାର ସୁବିଧା ପାଏ, ତେବେ ନିଜକୁ ଆହୁରି ବଡ ମନେକରି ପାଇଲଟ୍ ଭଳି ଗର୍ହିତ ଆଚରଣ କରି ସ୍ୱଚ୍ଛନ୍ଦ ନିଶ୍ଚିନ୍ତ ରହେ । ପ୍ରକୃତିର ଖରସ୍ରୋତରେ କାଠିକୁଟା ପରି ଭସିଯିବାରେ କଷ୍ଟ କଅଣ ? ପର୍ବତ ଉପରୁ ତଳକୁ କାଠ ପଥର ପରି ଗଡ଼ିଯିବାରେ କଷ୍ଟ କଅଣ ? ପର୍ବତ ଚଢିବା, ପ୍ରକୃତିକୁ ଜିଣିବା ପୁରୁଷ-ସିଂହର କର୍ତ୍ତବ୍ୟ । କିନ୍ତୁ ସଂସାର-ମାର୍ଗରେ ବୀର ସାଧକ କେତେଜଣ ? ସେଥିପାଇଁ ପ୍ରେୟରେ ଏତେ ଶ୍ରଦ୍ଧା, ଶ୍ରେୟରେ ନୁହେ । ଫଳରେ ଆଜି ଜଗତର ଅବସ୍ଥା କି ଆକାର ଧରିଛି ? ଆମର ସବୁ ପ୍ରଗତି ଅଭିମାନ ସତ୍ତ୍ୱେ, ବିଂଶ-ଶତାବ୍ଦୀ-ସଭ୍ୟତାର ଆସ୍ଫାଳନ ସତ୍ତ୍ୱେ, ଆମର ଭିତର କଥା ଆଜି କଅଣ ? ବହୁପୂର୍ବ କଥା କାହିଁକି, ପଚାଶ ଶହେ ବର୍ଷ ପୂର୍ବେ ପୂର୍ବପୁରୁଷେ ଯେଉଁ ଅନୈତିକ ଆଚରଣ କରିବା ପାଇଁ କାହିଁକି ମନରେ ଆଣିବା ପାଇଁ ମଧ୍ୟ ଧର୍ମ ଭୟ ବା ସଙ୍କୋଚ ବୋଧ କରୁଥିଲେ, ତାହା ଏବେ ଆମେ କେବଳ କରୁଛୁ, ତାହାନୁହେ, ହସି ହସି କରୁଛୁ, କରିବାରେ ଗର୍ବ ଅନୁଭବ କରି ପ୍ରଗତି ବୋଲି ଧେଣ୍ଡୁରା ପିଟୁଛୁ;

ପୂର୍ବଜଙ୍କ ମୂର୍ଖତାରେ ସ୍ମିତହାସ ପ୍ରକାଶ କରୁଛନ୍ତି । ହେଉ । କିନ୍ତୁ, ଏହା କରୁଛନ୍ତି ବୋଲି କି ସୁଖୀ ହୋଇଛନ୍ତି ? ଆମ ସମାଜ କି ଆଜି ସୁସ୍ଥ ? ହାୟ, ଆଜି ଆମର ଶାନ୍ତି କାହିଁ, ବିଶ୍ରାମ କାହିଁ, ଆନନ୍ଦ ନାହିଁ ? ଆମର ଧୀରତା, ସୌମ୍ୟତା, ବିବେଚନା କାହିଁ । ବିଚ୍ଛିନ୍ନ ଘଟଣାର, ସାମୟିକ ଉତ୍ତେଜନାର, ବିଶୃଙ୍ଖଳ ଦୁରାକାଂକ୍ଷାର ଝଞ୍ଜାରେ ଆମେ ଆଜି ଉତ୍‌କ୍ଷିପ୍ତ । ଆମର ଜୀବନ ବ୍ୟତିବ୍ୟସ୍ତ, ପରତନ୍ତ୍ର, ବିକ୍ଷୁବ୍‌ଧ !

ତଥାପି ପାଶ୍ଚାତ୍ୟ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ମୂଲ୍ୟ ନ ଥାଇ ନାହିଁ । ତାହାର ବିଧିବଦ୍ଧ ଚିକିତ୍ସା-ପ୍ରଣାଳୀ ଦ୍ୱାରା ଅନେକ ବ୍ୟାଧିର ଉପଶମ ହେଉଛି । ଶରୀର ଉପରେ ମନର ପ୍ରଭାବ ବହୁତ; ଏ କଥା ତ ନିଶ୍ଚୟ । କିନ୍ତୁ ଏହା ବୋଲି ଏ ବିଜ୍ଞାନକୁ ଧର୍ମତତ୍ତ୍ୱର ଗୁରୁତ୍ୱ ଦେବା ବାତୁଳତା । ଏକପ୍ରକାର ଚିକିତ୍ସା ସବୁ ରୋଗୀଙ୍କୁ ଖଟେନାହିଁ । ସବୁ ରୋଗର ନିଦାନ ପାଇଁ ଅଚେତନକୁ ଧରିବା ଅର୍ଥ ମନକୁ ରୋଗ-ଗ୍ରସ୍ତ କରିବା । ଦେଖାଯାଉଛି, ଏ.ବିଜ୍ଞାନ ଯେତେ ଲୋକଙ୍କୁ ରୋଗମୁକ୍ତ କରିଛି ତହିଁରୁ ଅଧିକ ଲୋକଙ୍କୁ ବିକାରଗ୍ରସ୍ତ ମନ କରିଛି, ଯେହେତୁ ସେମାନେ ଏହାର ପ୍ରଭାବାଧୀନ ହୋଇ ନାନାବିଧ କାଳ୍ପନିକ ରୋଗ ମନ ଉପରେ ଆରୋପ କରନ୍ତି ।

କଥା ହେଉଛି, ସବୁ ନୂତନ ଆବିଷ୍କାର ସତ୍ତ୍ୱେ ପାଶ୍ଚାତ୍ୟ ମନସ୍ତତ୍ତ୍ୱର ବିକାଶ ଆହୁରି କ୍ଷୀଣ । ପାଶ୍ଚାତ୍ୟ ମନସ୍ତତ୍ତ୍ୱବିଦ୍‌ମାନେ ଆହୁରି ମନର ସମୁଦାୟ ରାଜ୍ୟ ଆଲୋଡ଼ନ କରିନାହାନ୍ତି, କେବଳ ଗୋଟିଏ ଅଂଶ ଦେଖିଛନ୍ତି । ମନର ଅଧୀନ ହୋଇ ବ୍ୟଷ୍ଟି-ମନ ଦ୍ୱାରା ବିଶ୍ୱ ମନକୁ ବିଶ୍ଳେଷଣ କରିବାର ଅସାଧ୍ୟ ଚେଷ୍ଟାକରି ସେମାନେ ପୂର୍ଣ୍ଣ ମନୋରଥ ହୋଇ ପାରିନାହାନ୍ତି । ପ୍ରାଚୀନ ଭାରତୀୟ ମନସ୍ତତ୍ତ୍ୱବିଦ୍‌-ମାନେ ମନୋରାଜ୍ୟର ଉପରକୁ ଯାଇଥିଲେ; ଏଣୁ ତାଙ୍କର ବିଶ୍ଳେଷଣ ସତ୍ୟମୂଳକ ଓ ପ୍ରଣାଳୀ କାର୍ଯ୍ୟକ୍ଷମ ହୋଇଥିଲା । ବିଖ୍ୟାତ ମନସ୍ତତ୍ତ୍ୱବିଦ୍‌ ଓ ଦ୍ରଷ୍ଟା ପାତଞ୍ଜଳ ମନର ଗତି ନିର୍ଦ୍ଦେଶ କରି ତାହାକୁ ଆୟତ୍ତ କରିବା ସକାଶେ ଯୋଗମାର୍ଗ ଦେଖାଇଛନ୍ତି; ଅଚେତନର ଦାସ ହେବାକୁ କହିନାହାନ୍ତି; ସାଧାରଣ ଲୋକ ଲୋଭ, କ୍ରୋଧ, ମୋହ ଇତ୍ୟାଦି ରିପୁର ବଶୀଭୂତ—ଏ କଥା ସେ ଉପଲବ୍‌ଧ କରିଛନ୍ତି, କିନ୍ତୁ ତାହାବୋଲି ସେ ରିପୁଗୁଡ଼ିକୁ ମନୁଷ୍ୟ ଉପରେ ଅନାଥ ରାଜତ୍ୱ ବିସ୍ତାର କରିବା ପାଇଁ ବାଟ ଦେଖାଇ ନାହାନ୍ତି । ପ୍ରତିପକ୍ଷ ଭାବନା ଦ୍ୱାରା, ସତ୍ ଚିନ୍ତନ ଦ୍ୱାରା ଅସତ୍ ଚିତ୍ତବୃତ୍ତି ନିରୋଧର ମାର୍ଗ ସେ ବର୍ଣ୍ଣନା କରିଛନ୍ତି । ପୁଣି ଧ୍ୟାନ, ଧାରଣା, ଲୟ, ସମାଧି ସମନ୍ୱିତ ଅଷ୍ଟାଙ୍ଗ ଯୋଗ ଦ୍ୱାରା ମନକୁ ଦୃଢ଼ କରିବାର ଆଦର୍ଶ ଦେଖାଇଛନ୍ତି । ଦୁର୍ବଳ ମନ, ବିକ୍ଷିପ୍ତ ମନୋବୃତ୍ତିହିଁ ସବୁ ଯାତନାର ମୂଳ କାରଣ । ଯୋଗ ଦ୍ୱାରା ମନକୁ ଶକ୍ତ, ଏକାଗ୍ର କରିବାକୁ ହେବ । ପାଶ୍ଚାତ୍ୟ ମନସ୍ତତ୍ତ୍ୱବିଦ୍‌ ପକ୍ଷରେ ତ ଏ

ଅମଡ଼ା ବାଟ । ଏଣୁ ସେମାନେ ଏ କଥା ପଢ଼ିଲେ ଡରନ୍ତି, ବାଟ ଭର୍ଗି ଗ୍ଲଲିଯାନ୍ତି । କିନ୍ତୁ ପରୀକ୍ଷା ଦ୍ୱାରା ଦେଖାଯାଇଛି, ଦକ୍ଷ ଅଶ୍ୱଚାଳକ ଯେପରି ଅମଙ୍ଗ ଅଶ୍ୱକୁ ବଶକରି ଠିକ୍ ବାଟରେ ଦଉଡାଏ, ସେପରି ଯୋଗୀ ମନୋବୃତ୍ତିଗୁଡ଼ିକୁ ଆୟତ୍ତ କରି ଜୀବନର ଲକ୍ଷ୍ୟସ୍ଥାନରେ ପହଞ୍ଚିବା ଲାଗି ନିୟୋଜିତ କରେ । ଏ ଉଦାହରଣ ପ୍ଲେଟୋ, ଉପନିଷଦ, ଗୀତା ସବୁଥିରେ ଦେଖାଯାଏ ।

ତିନିଶ୍ରେଣୀର ମନୁଷ୍ୟ ଦେଖାଯାନ୍ତି । ନିମ୍ନ ସ୍ତରରେ ମନୁଷ୍ୟ ଓ ପଶୁ ମଧ୍ୟରେ ସେପରି କିଛି ପ୍ରଭେଦ ନାହିଁ । ନୀତିବାକ୍ୟ ଅନୁଯାୟୀ ଆହାର, ନିଦ୍ରା, ଭୟ, ମୈଥୁନ—ଏଥିରେ ପଶୁ ଓ ନର ସମାନ । ଏ ସ୍ତର ଉପରେ ଥିବା ମନୁଷ୍ୟଠାରେ ବିବେଚନା ଦେଖାଯାଏ । ଅସତ୍ ମାର୍ଗ ଛାଡ଼ି ସତ୍ ମାର୍ଗରେ ଯିବାପାଇଁ ସେମାନେ ଚେଷ୍ଟା କରନ୍ତି । ତାଙ୍କଠାରୁ ଉଚ୍ଚରେ ଅଳ୍ପକେତେ ଦେଖାଯାନ୍ତି—ଯେଉଁମାନେହିଁ ପ୍ରକୃତ ଯୋଗୀ, ଯେଉଁମାନେ ମନକୁ ଆୟତ୍ତ କରି ସାରିଛନ୍ତି; ସେମାନେହିଁ ପ୍ରକୃତ ଦୈବୀ ପୁରୁଷ । ପାଶ୍ଚାତ୍ୟ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏ ପର୍ଯ୍ୟନ୍ତ ପ୍ରଥମ ସ୍ତରର ମନୁଷ୍ୟ ପ୍ରକୃତିରେହିଁ ପର୍ଯ୍ୟବସିତ ହୋଇଛି । ଅନ୍ୟ ସ୍ତରଗୁଡ଼ିକୁ ଉଠି ଆସିନାହିଁ । ପାଶ୍ଚାତ୍ୟ ମନସ୍ତତ୍ତ୍ୱର ଆଉ ଗୋଟିଏ ଶାଖା—'ଆଚରଣବାଦ' (Behaviourism)ରେ ମଧ୍ୟ ଏହାର ଆଭାସ ଦେଖାଯାଏ । ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପରି ଏହା ମଧ୍ୟ ଧର୍ମ-ନୀତିର ମୂଳଚ୍ଛେଦ କରିବାର ଉପକ୍ରମ କରେ ।

ଆଚରଣବାଦ କହେ—ମନ ବୋଲି ସ୍ୱତନ୍ତ୍ର ସତ୍ତା କିଛିନାହିଁ । ଯାହାକୁ ଭାବନା ବୋଲି କହୁଁ, ତାହା କେବଳ ନୀରବ ବାଚନିକ କ୍ରିୟା । ଭାବନା କେବଳ ଗୋଟିଏ ଶାରୀରିକ କ୍ରିୟା; ମସ୍ତିଷ୍କ ଓ ବାଚନିକ-ଯନ୍ତ୍ର ସଂଯୋଗର ଗୋଟିଏ ପ୍ରତିକ୍ରିୟା, ବାହ୍ୟ ଭୌତିକ ପ୍ରେରଣା (Stimulus) ସଂଜାତ ଜବାବ (Response) । ବାସ୍ତବିକ ଆମେ କିଛି ଦେଖୁନାହୁଁ, ଆମର ଚକ୍ଷୁଯନ୍ତ୍ରର ଭୌତିକ ବସ୍ତୁ ସଂଯୋଗକୁ ଦେଖିବାକୁ କୁହାଯାଏ । ଏ ଦୃଷ୍ଟିରେ ମନୁଷ୍ୟ ଯନ୍ତ୍ର ପାଲଟିବା ସ୍ୱାଭାବିକ । ମନ୍ଦ କାର୍ଯ୍ୟଲାଗି ତାହା ଉପରେ ଦାୟିତ୍ୱ ଦିଆଯାଇ ନ ପାରେ । କାୟିକ, ବାଚିକ, ମାନସିକ ସ୍ୱାଧୀନତା ତାହାର ଆଉ କିଛି ରହି ନ ପାରେ । ତାହା ପକ୍ଷରେ ପାପପୁଣ୍ୟ, ଉଚ୍ଚକୋଟୀ ଜୀବନ, ଶିକ୍ଷା-ସଂସ୍କୃତିର ମୂଲ୍ୟ ରହେନାହିଁ । ଧର୍ମ-ବିଶ୍ୱାସ, ନୈତିକ ଆଚରଣର ମୂଳପୋଛ ହୁଏ । ସାଧାରଣରେ ମନୁଷ୍ୟର ଏପରି ସ୍ୱଭାବ ଯେ ପ୍ରଶଂସା ଶୁଣିଲାବେଳେ, ଭଲ ଫଳ ଲଭିଲାବେଳେ, ସେ ନିଜକୁ କୃତୀ ମନେ କରେ, କିନ୍ତୁ ନିନ୍ଦା ଶୁଣିଲାବେଳେ, ଦୁର୍ବିପାକବେଳେ ସେ ନିଜ ଉପରୁ ଦାୟିତ୍ୱ ଖସାଇବାକୁ ଖୋଜିବସେ । କହିବା ଅନାବଶ୍ୟକ, ଆଚରଣବାଦ ସେପରି

କରିବାପାଇଁ ତାହାକୁ ଅଧିକ ଶିଖାଏ । ଧର୍ମ ଅର୍ଜନର ଅର୍ଥ ସତ୍ୟ ଓ ନ୍ୟାୟର ପ୍ରତିଷ୍ଠା ପାଇଁ ଆଜୀବନ ଅଦମ୍ୟ ସାଧନା, ଆଧ୍ୟାତ୍ମିକ ଜୀବନର ପ୍ରତିଷ୍ଠା ପାଇଁ ପ୍ରାଣପାତ ଉଦ୍ୟମ । ଅଧ୍ୟାତ୍ମ କଥା ତେଣେ ଥାଉ, ଆଚରଣବାଦ ଯେତେବେଳେ ମାନସିକ ତତ୍ତ୍ୱ ମାନେନାହିଁ, ଜୀବନକୁ ବସ୍ତୁତନ୍ତ୍ର (Materialism)ର ନଗ୍ନ ପ୍ରସୂତି ବୋଲି କହେ, ଶରୀରମାତ୍ର ଚାଳନ Physical Process) ବୋଲି କହେ, ତେବେ ଧର୍ମ ଅର୍ଜନ ପାଇଁ, ଜୀବନର ବିକାଶୋନ୍ମୁଖ ସୋପାନ ଆରୋହଣ କରିବା ପାଇଁ ତାହାର ବା କାହିଁକି ଶ୍ରଦ୍ଧା ରହିବ ? କିନ୍ତୁ ସୁଖର କଥା, ସାମୁଦାୟିକ ଭାବରେ ଏ ଯୁକ୍ତି ମନୁଷ୍ୟର ମନକୁ କେବେ ପାଏନାହିଁ, ଯେହେତୁ ତାହାହେଲେ ମନୁଷ୍ୟତା ଆଉ ରହିବ ନାହିଁ ।

ସେ ଯାହାହେଉ, ଏ ସବୁଥିରେ କିନ୍ତୁ ଗୋଟିଏ ଆଶ୍ୱସ୍ତି ଅଛି । ମନୁଷ୍ୟ ଆଜି ପାରଂପରିକ ବିଶ୍ୱାସ, ସାମ୍ପ୍ରଦାୟିକ ଧର୍ମ ପ୍ରତି ବୀତସ୍ପୃହ ହୋଇଛି ସତ; ତଥାପି ମନ-ଜଗତକୁ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଡ଼ନ କରିବାକୁ ଆରମ୍ଭ କରିଛି; ପ୍ରକୃତ ସତ୍ୟ ସନ୍ଧାନରେ ଅଧ୍ୟବସାୟୀ ହୋଇଛି । ସ୍ୱର୍ଗର ଦେବତା ପ୍ରତି ସେ ବିତୃଷ୍ଣ ହୋଇଛି ସତ; ତଥାପି ଅନ୍ତରର ଆରାଧ୍ୟ ପ୍ରତି, ପ୍ରାଣବନ୍ତ ଅଭ୍ରାନ୍ତ ବିଶ୍ଳେଷଣାତ୍ମକ ଅନୁଭୂତି ପ୍ରତି ଆକୃଷ୍ଟ ହୋଇଛି । ଆଜି ପୁରୁଣା ଅନ୍ଧବିଶ୍ୱାସ ସ୍ଥାନରେ ନୂଆ ଅନ୍ଧବିଶ୍ୱାସ ସହସ୍ର ସହସ୍ର ଦେଖାଯାଉଛି ସତ; ଅସୀମ ଅଜ୍ଞାତକୁ ସସୀମ ବୁଦ୍ଧି ବୃତ୍ତି ଦ୍ୱାରା ଅବଗତ ହେବାର ବ୍ୟର୍ଥଚେଷ୍ଟା କରି ମନୁଷ୍ୟ ଆଜି ବାତୁଳପ୍ରାୟ ହୋଇ ଧର୍ମନୀତି-ତରୁମୂଳରେ କୁଠାରଘାତ କରିବାର ନିର୍ବୁଦ୍ଧିଆ କାମରେ ହାତ ଦେଇଛି ସତ; ତଥାପି ଏ ଚେଷ୍ଟାର ମୂଳରେ ଜାଣିବା ପାଇଁ ଯେଉଁ ଅବିଶ୍ରାନ୍ତ ନିର୍ଭୀକ ଉଦ୍ଦାମ ସ୍ଫୂର୍ତ୍ତି ଦେଖାଯାଉଛି, ତାହାହିଁ ଶିକ୍ଷା ଦେଉଛି—ଧରାପୃଷ୍ଠରୁ ମନୁଷ୍ୟତା କେବେ ମରିବ ନାହିଁ କେବେ ଜଡ଼ ପାଲଟିବ ନାହିଁ । ଜିଜ୍ଞାସା ଜୀବନର ଲକ୍ଷଣ । ଜିଜ୍ଞାସା ଯଦି ଅଛି ତେବେ ପାନ୍ଥ ଗନ୍ତବ୍ୟ ପଥରେ ଚାଲି ଚାଲି ନିଶ୍ଚୟ ଦିନେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବ । ଅମାନିଶୀ କେତେ ଅନ୍ଧକାର ହେଲେ ସୁଦ୍ଧା, ଉଷାଲେକର କନକ ଅରୁଣିମା କି ପ୍ରାଚୀଭାଲରେ ସିନ୍ଦୂର ଟୋପା ଲଗାଇବ ନାହିଁ ?

ତଥାପି, ଅନ୍ତିମ ଲକ୍ଷ୍ୟ ଯାହାହେଉ, ବାସ୍ତବ ଦୃଷ୍ଟିରେ ଆଧୁନିକ ଜୀବନ କି ଜଟିଳ, ଗ୍ରନ୍ଥିବହୁଳ, ସମସ୍ୟା-ସଙ୍କୁଳ କୁଟିଳ ହୋଇଯାଇଛି ! ଶରୀରର ବିଳାସ ପାଇଁ, ଭୌତିକର ଭୋଗ ପାଇଁ ଆଜି ବିଜ୍ଞାନ ଅସଂଖ୍ୟ ବିଚିତ୍ର ଉଦ୍ଭାବନ ଆମ ଆଗରେ ଥୋଇଛି, ଯାହା ଶହେବର୍ଷ ତଳେ ମଧ୍ୟ ସ୍ୱପ୍ନ ହୋଇଥିଲା । କିନ୍ତୁ ଏଣେ ଆମର ମାନସିକ ଯନ୍ତ୍ରଣା ସହସ୍ର ଗୁଣରେ ବଢ଼ିଛି । ଶତସହସ୍ର ବିଭୀଷିକା ଆଜି ଆଖି ଆଗରେ ପ୍ରେତ ନୃତ୍ୟ କରୁଛି, ଯାହା ଶହେବର୍ଷ ତଳେ ସ୍ୱପ୍ନ ଥିଲା । ସାହିତ୍ୟ

ଜୀବନର ଦର୍ପଣ । ଆଧୁନିକ ଉପନ୍ୟାସ, ଆଧୁନିକ ନାଟକରେ ଆଦର୍ଶ ନାହିଁ; ଅଛି ମାନସିକ ସଂଘର୍ଷର ଭୀଷଣ ପ୍ରତିକୃତି । ତହିଁରେ ସନ୍ତ୍ରସ୍ତ ହୋଇ ମନୁଷ୍ୟ ଆଜି ମନସ୍ତତ୍ତ୍ୱର ଆଶ୍ରୟ ଖୋଜୁଛି, କିନ୍ତୁ ଆଶ୍ରୟ ଦେବା କଥା ଦୂରେଥାଉ, ପାଶ୍ଚାତ୍ୟ ମନସ୍ତତ୍ତ୍ୱ ଏ ପରିସ୍ଥିତିକୁ ଆହୁରି ଭୀଷଣ କରୁଛି ମାତ୍ର । ଆମେ ଆଜି ପଥଭ୍ରାନ୍ତ ହୋଇ ଆକୁଳରେ ବୁଲୁଛୁ । ସାନ୍ତ୍ୱନା ପାଇବା ପାଇଁ ସିନେମାକୁ ଯାଉଛୁ, ଖେଳ କସରତ କରୁଛୁଁ, ଆକାଶରେ ଉଡ଼ୁଛୁଁ, ପାଣିରେ ବୁଡ଼ୁଛୁଁ, ଚନ୍ଦ୍ରଲୋକ ପର୍ଯ୍ୟନ୍ତ ଅଭିଯାନ ଚଳାଉଛୁଁ । କିନ୍ତୁ ଆଶ୍ୱାସନା କାହିଁ ? ବ୍ୟାଧିଗ୍ରସ୍ତ ସାରଙ୍ଗ ଗୁରିପଟ କାନ୍ଥ ଭିତରେ ଥାଇ ରକ୍ଷାପାଇବା ଲାଗି କାନ୍ଥ ଦିହରେ ମୁଣ୍ଡ ପିଟି ଚୂନଚୂନା କଲପରି ଆଜି ଆମର ଅବସ୍ଥା !

କିନ୍ତୁ ବାଧାର, ଦୁଃଖର ତ ସୀମା ଅଛି । ଦୁଃଖ ଯେତେ ଅଧିକ ହେବ, ମନୁଷ୍ୟ ତେତେ ତହିଁରୁ ତ୍ରାହି ପାଇବା ପାଇଁ ପ୍ରତିକାର ଖୋଜିବ । ଅନେକଥର ବୁଲିବ, ଅବାଟରେ ଯିବ । ତଥାପି ଦିନ ଆସିବ, ତାହାର ଦୁଃଖ ଘୁଞ୍ଚିଯିବ । ଉତ୍କଟ ସଦ୍ୟ ଅଭାବ ପୂରଣ କରିବାରେ ଯେପରି ବୈଜ୍ଞାନିକ ଜଗତରେ ସବୁ ଉଦ୍ଭାବନ ଘଟିଛି, ଆଧ୍ୟାତ୍ମିକ ଜଗତରେ ମଧ ସେହିପରି ଆଘାତରେ ସନ୍ତୁଷ୍ଟ ନ ହୋଇ ମନୁଷ୍ୟ ସଂସାରକୁ ଦୁଃଖମୟ ଦେଖେ, ଜିଜ୍ଞାସା କରେ ତାହା ଫଳରେ ଯେଉଁ ଆଲୋକ ଦେଖେ, ତହିଁରେ ଅନ୍ଧାର କୁହୁଡ଼ି ଅଦୃଶ୍ୟ ହୋଇଯାଏ । ସଂସାରର ବିଷାଦ-ଘନ-ଯବନିକା ଉତ୍ତୋଳନ କରି ନ ପାରି ଦିନେ ଗୌତମ ପ୍ରଣୟିନୀର ସ୍ନେହ-ଆକର୍ଷଣ ଛିନ୍ନକରି, ଶିଶୁ ଆତ୍ମଜର ମମତା ଭିନ୍ନ କରି ଜିଜ୍ଞାସା-ପଥରେ ପଦକ୍ଷେପ କରିଥିଲେ । ପୁଣି ଆଉ ଦିନେ ବୋଧିଦ୍ରୁମ ତଳେ ଯେଉଁ ମହାସତ୍ୟ ସନ୍ଦର୍ଶନ କରିଥିଲେ, ତାହା ଜନତାକୁ ଚିରକାଳ କେତେ ସୁଖ ଦେଉ ନ ଥିବ ! ମନୁଷ୍ୟ କଷ୍ଟପାଏ କାହିଁକି ? ଦୁଃଖର ମୂଳ କାରଣ କଅଣ ? ଏ ଆଜି-କାଲିର ପ୍ରଶ୍ନ ନୁହେ; ଏ ଚିରନ୍ତନ ପ୍ରଶ୍ନ । ଉପନିଷଦରେ ଏ ପ୍ରଶ୍ନ ଉଠିଛି; ଧର୍ମକ୍ଷେତ୍ର କୁରୁକ୍ଷେତ୍ରରେ ଏ ପ୍ରଶ୍ନ ଉଠିଛି; ଆଜି କାରଖାନାର ଧୂମଚ୍ଛାୟା ତଳେ, ଗହୀର ବିଲର କାଦୁଅ ପଟାରେ, ନଗରର ବଜାର-ଗହଳରେ, ପଲ୍ଲୀର ନିସ୍ପନ୍ଦ ଉହାଡ଼ରେ ବୁଭୁକ୍ଷୁ କୃଷକ-ଶ୍ରମିକ, ନିଷ୍ପେଷିତ ପୀଡ଼ିତ ଦଳିତ ଦରିଦ୍ର ସେହି ପ୍ରଶ୍ନ ପଚାରୁଛି । ମନୁଷ୍ୟ ବୋଧକରୁଛି, ଶତ୍ରୁ ବାହାରେ ନୁହେ, ଘର ଭିତରେ ।

ସବୁ ମତବାଦ, ସାମୟିକ ସଙ୍ଗତିର ଉପରକୁ ଉଠି ପ୍ରାଚୀନ ଭାରତୀୟ ଚିନ୍ତା ଘୋଷଣା କରିଛି । ସବୁର ପରିଣତି ପୂର୍ଣ୍ଣତାରେ; ଅଳ୍ପରେ ସନ୍ତୁଷ୍ଟି ନାହିଁ; ଯେ ଭୂମା, ସେ ସୁଖ । ପରିବର୍ତ୍ତନରେ ଅକ୍ଷୟର, ନଶ୍ୱରରେ ଶାଶ୍ୱତର, ମାୟାରେ ମାୟାତୀତର ସନ୍ଧାନ କରିବାକୁ ହେବ ।

ପରମର ଏ ମହାୟାନ ଦୃଷ୍ଟିରେ ପାଶ୍ଚାତ୍ୟ ମନସ୍ତତ୍ତ୍ୱ ବାସ୍ତବିକ ଆଜି ଶୈଶବରେ । କିନ୍ତୁ ଆମେ ଆଶା କରିବା—ନିକଟ ଭବିଷ୍ୟତରେ ମନର ସନ୍ଧାନ କରି ମନାଗତ ସତ୍ୟରେ ପାଶ୍ଚାତ୍ୟ ମନସ୍ତତ୍ତ୍ୱ ପହଞ୍ଚିବ । ସେତେବେଳେ ମନସ୍ତତ୍ତ୍ୱର ଧର୍ମନୀତି ସଙ୍ଗେ ମଧୁର ମିଳନ ହେବ । ଧର୍ମ ବୈଜୟନ୍ତୀ ଉଡ଼ିବ । ସତ୍ୟର ବିମଳ ଆଲୋକରେ ଧରବକ୍ଷ ଉଦ୍ଭାସିତ ହୋଇ ଉଠିବ ! ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀରେ ଏକ ଅପୂର୍ବ ଯୋଗସୂତ୍ର ପ୍ରତିଷ୍ଠିତ ହେବ ।



# ରସେଶ୍ୱର

ସବୁ ଦର୍ଶନ ଜୀବନର ମୋକ୍ଷ ବିଷୟରେ ଶିକ୍ଷା ଦିଅନ୍ତି । କିନ୍ତୁ ଶରୀରର ସ୍ଥିରତା ଓ ଦୃଢ଼ତା ନ ରହିଲେ ଏ ମୋକ୍ଷ ଅନୁଭବ ହେବ କିପରି ? ରସେଶ୍ୱର ଦର୍ଶନରେ ଏହି ବିଭବ ଆଲୋଚିତ ହୋଇଅଛି । ଶରୀରର ଏହି ସ୍ଥିରତା ଓ ଦୃଢ଼ତା ପାରଦ (Mercury)ର ଯଥାବିଧି ପ୍ରୟୋଗରେ ଅଣା ଯାଇପାରେ ବୋଲି ପାରଦର ଅଦ୍ଭୁତ ଗୁଣ ଓ ଐଶ୍ୱର୍ଯ୍ୟ ଏହି ପର୍ଯ୍ୟାୟରେ ବର୍ଣ୍ଣିତ ହୋଇଅଛି । ପାରଦ ଜୀବନକୁ ଜନ୍ମାନ୍ତରରୁ ପାର କରେ ବୋଲି ଏହାର ନାମ ପାରଦ । ଜୀବକୁ ଜୀବନ-ସାଗର ଉପରେ ପାର କରି ଦୂରତମ ତଟରେ ପହଞ୍ଚାଏ ବୋଲି ଏହାର ନାମ ପାରଦ ।

'ରସାର୍ଣ୍ଣବ'ରେ କୁହାଯାଇଛି—ପାରଦ ତାହାର ଭକ୍ତବର୍ଗଙ୍କୁ ଅନ୍ତିମ ବର୍ଗ ଦିଏ । ମହେଶ୍ୱରଙ୍କ ଦେହ ନିର୍ଗତ ବୋଲି ଏହା ରସ ନାମରେ ଖ୍ୟାତ । ଅନ୍ୟାନ୍ୟ ଦର୍ଶନରେ ମୋକ୍ଷ ଶରୀର ବିନାଶ ଉତ୍ତାରୁ ପ୍ରାପ୍ତ ହୁଏ ବୋଲି କୁହାଯାଇଛି । କିନ୍ତୁ ଏ ଉକ୍ତିରେ ପୂର୍ଣ୍ଣ ବିଶ୍ୱାସ କିପରି ରହିପାରେ ? ଏହିଭଳି ମୋକ୍ଷ ପ୍ରାପ୍ତି ପାଇଁ ଶଙ୍କାହୀନ ସନ୍ଦେହ-ବିମୁକ୍ତ କର୍ମ କିପରି କରଯାଇପାରେ ? ସେଥିପାଇଁ ସେହି 'ରସାର୍ଣ୍ଣବ'ରେ ପୁଣି ଲେଖାଅଛି—ଏହିଭଳି ମୋକ୍ଷ ମନୁଷ୍ୟ ହାତରେ କାଳ୍ପନିକ ଫଳ ଧରିଲା ପରି ପ୍ରତ୍ୟକ୍ଷରେ ଆସେ ନାହିଁ, ଅବାସ୍ତବ ହୁଏ । ମୋକ୍ଷକୁ ପ୍ରତ୍ୟକ୍ଷ, ବାସ୍ତବ କରିବାକୁ ହେଲେ ଶରୀରକୁ ପାରଦ ତଥା ଔଷଧୀ ଦ୍ୱାରା ରକ୍ଷା କରିବାକୁ ହେବ । ଏକଥା ବୁଝାଇ ଗୋବିନ୍ଦ-ଭଗବତ୍ କହିଛନ୍ତି—ଶାସ୍ତ୍ର କହିଛି ଦୈହିକ ତଥା ଭୌତିକ ସୁଖ ସ୍ଥାୟୀ ନୁହେ; ତେଣୁ ମୋକ୍ଷ ପାଇଁ ଚେଷ୍ଟା କରିବା ପ୍ରତ୍ୟେକ ଲୋକର କର୍ତ୍ତବ୍ୟ; ମୋକ୍ଷ ଜ୍ଞାନଦ୍ୱାରା ସାଧିତ ହୁଏ; ଜ୍ଞାନ ଶିକ୍ଷାରୁ ଆସେ; କିନ୍ତୁ ଶିକ୍ଷା ସୁସ୍ଥ ଶରୀର ବିନା କିପରି ସମ୍ଭବ ?

ଏଠାରେ ଆପତ୍ତି ଉଠିପାରେ—ଶରୀର ତ ବିନାଶଶୀଳ, ଅସ୍ଥାୟୀ; ତାହାକୁ କିପରି ସ୍ଥାୟୀ ଅମର କରଯିବ ? ରସେଶ୍ୱର ଏହାର ଜବାବ ଦିଏ—ନା, ନା, ସେପରି ବିଚାର କରନାହିଁ; ପଞ୍ଚ-କୋଷ ନିର୍ମିତ ଏହି ଶରୀର ବିନାଶଶୀଳ ସତ; କିନ୍ତୁ ହର-ଗୌରୀ ନାମାନ୍ତର ପାରଦ-ଅଭ୍ର (Mercury Mica) ସୃଷ୍ଟ ଶରୀର ଅମର

ହୋଇପାରେ । ସେଥିପାଇଁ 'ରସ ହୃଦୟ'ରେ କୁହାଯାଇଛି—ଯେଉଁମାନେ ଏହି ଶରୀର ତ୍ୟାଗ ନ କରି ହର-ଗୌରୀ ସୃଷ୍ଟ ନୂତନ କଳେବର ପ୍ରାପ୍ତ ହୁଅନ୍ତି, ସେମାନେ ପ୍ରଶଂସନୀୟ; ପାରଦ ଦ୍ୱାରା ସେମାନେ ପୂର୍ଣ୍ଣତା ପ୍ରାପ୍ତ ହୁଅନ୍ତି । ସବୁ ଇନ୍ଦ୍ରଜାଲ ତଥା ଭେଳକିବିଦ୍ୟାର ମୂଳ ଉତ୍ସ ଏହି ପାରଦ-ପ୍ରୟୋଗ ।

ସେଥିପାଇଁ ଯେଉଁ ତପସ୍ୱୀ ମୋକ୍ଷକାମୀ, ପ୍ରଥମେ ସେ ଏହି ଉଜ୍ଜ୍ୱଳ ମହତ୍ ଶରୀରଧାରୀ ହେବାକୁ ହେବ । ସୃଜନମୂଳକ ହର ଗୌରୀ ସଂଯୋଗରେ ପାରଦର ଉତ୍ପତ୍ତି; ଅଭ୍ର ଗୌରୀଜ । ସେଥିପାଇଁ ସେ ଦୁଇ ହର-ଗୌରୀ ସ୍ୱରୂପ । ସେଥିପାଇଁ ହର କହିଛନ୍ତି—ପାରଦ ମୋହର ବୀଜ, ଅଭ୍ର ତୁମର । ଦେବୀ ! ଏ ଦୁଇର ସମ୍ମେଳନ ମୃତ୍ୟୁ ତଥା ଦାରିଦ୍ର୍ୟ ଧ୍ୱଂସକାରକ ।

ଏଠାରେ ଆପତ୍ତି ହୋଇପାରେ—ଆଚ୍ଛା, ଏହା କହିବା କଥା ନା ସ୍ୱଦେହରେ ଏପରି ଦିବ୍ୟ ଦେହର ପ୍ରବର୍ତ୍ତନ ଏଥିପୂର୍ବେ କାହାର ଘଟିଅଛି ? ଏହାର ଉତ୍ତରରେ 'ରସେଶ୍ୱର ସିଦ୍ଧାନ୍ତ' କହେ—ହଁ, ସେପରି ଅସଂଖ୍ୟ ଉଦାହରଣ ଅଛି । ମହେଶ ତଥା ଅନ୍ୟାନ୍ୟ ଦେବତା, ଶୁକ୍ର ତଥା ଅନ୍ୟାନ୍ୟ ଦୈତ୍ୟ, ବାଲଖିଲ୍ୟ ତଥା ଅନ୍ୟାନ୍ୟ ମୁନି, ସୋମେଶ୍ୱର ତଥା ଅନ୍ୟାନ୍ୟ ନରପତି, ଗୋବିନ୍ଦ ଭଗବତ୍, ଗୋବିନ୍ଦ ନାୟକ, ଚର୍ବତି, କପିଳ, ବ୍ୟାଳି, କପାଳି, କଣ୍ଡଳାୟନ—ଏହିପରି ଅନେକ ପାରଦ-ଶରୀର ପ୍ରାପ୍ତ ହୋଇ ମୁକ୍ତ ତଥା ସିଦ୍ଧ ହୋଇଛନ୍ତି । ଏଥିପାଇଁ ପରମେଶ୍ୱର ପରମେଶ୍ୱରୀଙ୍କୁ ବୁଝାଇ କହିଛନ୍ତି - ଦେବୀ ! ଶରୀରକୁ କର୍ମଦ୍ୱାରା ଅଜର, ଅମର କରାଯାଇପାରେ । ଏ କର୍ମ-ଯୋଜନାର ମୂଳ ଆଶ୍ରୟ ଦ୍ୱିବିଧ—ପାରଦ ଓ ବାୟୁ । ଏ ଦୁଇଟିର ଭିନ୍ନ ଭିନ୍ନ ସମୁଚିତ ପ୍ରୟୋଗରେ ରୋଗ ନାଶ ହୁଏ, ମୃତ ସଂଜୀବିତ ହୁଏ, ମନୁଷ୍ୟର ଆକାଶରେ ଉଡ଼ିବାର କ୍ଷମତା ଆସେ ।

ପାରଦର ଭିନ୍ନ ଭିନ୍ନ ଅବସ୍ଥା ଅଛି । ଭିନ୍ନ ଭିନ୍ନ ପରିଶୋଧନରେ ତାହାର ଭିନ୍ନ ଭିନ୍ନ ଗୁଣ—ଆର୍ଦ୍ରତା, ଗତିଶୀଳତା, ଗୁରୁତା, ଉଜ୍ଜ୍ୱଳତା, ଘନତା, ବର୍ଣ୍ଣ, ପ୍ରସାରଣ, କ୍ରମ, ବିଶୁଦ୍ଧି, ଭେଦ ଇତ୍ୟାଦି ଊଣା-ଅଧିକରେ ପ୍ରକାଶିତ ହୁଏ ।

ଏଠାରେ ଆପତ୍ତି ଉଠିପାରେ—ପାରଦ ହର-ଗୌରୀ ସୃଷ୍ଟ ବୋଲି ପ୍ରତିପାଦିତ ହେଲେ ତଦ୍ୱାରା ଦେହର ସ୍ଥାୟିତ୍ୱରେ ବିଶ୍ୱାସ କରାଯାଇପାରେ ସତ; କିନ୍ତୁ ପ୍ରଥମେ ତାହା ସେପରି ସୃଷ୍ଟ ବୋଲି କିପରି ପ୍ରମାଣିତ ହେବ ? ସେହି ପ୍ରମାଣ ଶାସ୍ତ୍ରରେ ଅଛି । ପାରଦର ବିଶୁଦ୍ଧିକରଣ ଓ ପ୍ରୟୋଗ ସମ୍ବନ୍ଧରେ ଅଠର ପ୍ରକାର ବିଧି ତହିଁରେ ଉଲ୍ଲେଖ କରାଯାଇଛି । ଗୋବିନ୍ଦ-ଭଗବତ୍, ସର୍ବଜ୍ଞ ରାମେଶ୍ୱର ଓ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥକାର ଏ ସବୁ ବର୍ଣ୍ଣନା କରି ଅଛନ୍ତି ।

ରସେଶ୍ୱର କେବଳ ଗୋଟିଏ ଧାତୁର ଗୁଣ ବର୍ଣ୍ଣନା ନୁହେ; ତାହା ଶରୀର ଧାରଣ ଉପାୟନରେ ମୁକ୍ତି-ମାର୍ଗର ସଙ୍କେତ । ରକ୍ତ ଓ ଦେହରେ ସେହି ପ୍ରୟୋଗ ଦ୍ୱାରା ଶରୀରର ସୂକ୍ଷ୍ମତା, ଦିବ୍ୟତା ଆସେ ।

ପୁଣି ଆପତ୍ତି ଉଠିପାରେ – ମୁକ୍ତି ତ ସତ୍‌-ଚିତ୍‌ ଆନନ୍ଦର ସ୍ୱୟଂପ୍ରକାଶ; ଶରୀରର ତହିଁରେ କି ସମ୍ବନ୍ଧ ଅଛି ଯେ ତାକୁ ଏପରି କରିବା ପାଇଁ ଏତେ ପ୍ରୟାସ ଆମେ କରିବୁ ? ଏତେ କ୍ଲେଶ ଆମେ ଅନୁଭବ କରିବୁ ? ରସେଶ୍ୱର ଉତ୍ତର ଦିଏ— ଏହା ଆପତ୍ତି ନୁହେ । ସୁସ୍ଥ ସକ୍ଷମ ଶରୀର ବିନା ମୁକ୍ତି ଅସମ୍ଭବ । ଏଥିପାଇଁ 'ରସ-ହୃଦୟ' କହିଛି—ସବୁ ଦର୍ଶନ ସତ୍‌-ଚିତ୍‌-ଆନନ୍ଦ ବିଷୟରେ ବିଚାର କରିଛି । କିନ୍ତୁ ତାହାକୁ ପାଇବାର ମାର୍ଗ ବିଷୟରେ ସେହି ସବୁରେ ବହୁତ ସନ୍ଦେହ । ଅନିଶ୍ଚିତତା, ବାଦବିବାଦ, ଗହନ ତର୍କ ରହିଛି । ସତ୍‌-ଚିତ୍‌-ଆନନ୍ଦ ସ୍ୱୟଂପ୍ରକାଶ ସତ; ତଥାପି ଯେଉଁ ଜୀବର ଶରୀର ଦିବ୍ୟ ହୋଇନାହିଁ, ତାହାର କେଉଁ ଆଧାରରେ ସେହି ସତ୍‌-ଚିତ୍‌-ଆନନ୍ଦ ପ୍ରକାଶ ପାଇବ ? ଯେଉଁ ଲୋକ ଦୁର୍ବଳ, ରୁଗ୍ଣ, କ୍ଷୀଣ, ସେ ତହିଁର ଗଭୀର ଏକାନ୍ତ ଧ୍ୟାନରେ କିପରି ସମର୍ଥ ହେବ ? ତାହାର ଅବରୁଦ୍ଧ, ଆଚ୍ଛାଦିତ ବୁଦ୍ଧି-ବୃତ୍ତି କିପରି ପରିଷ୍କୃତ, ସମ୍ମାର୍ଜିତ, ବିକଶିତ ହେବ ? ମୁମୂର୍ଷୁ ସ୍ଥବିର, ଅତିରିକ୍ତ ଇନ୍ଦ୍ରିୟ ସୁଖାନୁରକ୍ତ ଷୋହଳ ବର୍ଷର ତରୁଣ ହେଲେ ମଧ୍ୟ, ମୋକ୍ଷ କିପରି ପ୍ରାପ୍ତ ହେବ ?

ଏଠାରେ ଆଉ ଗୋଟିଏ ଆପତ୍ତି ଉଠିପାରେ—ଜୀବାତ୍ମାର ଜନ୍ମାନ୍ତର ତ ସ୍ୱାଭାବିକ କଥା; ମୁକ୍ତି ତ ସେହି ଜନ୍ମାନ୍ତରର ନିବାରଣ କଥା; ତେବେ ଏହି ଗୋଟିଏ ଶରୀରରେ ଏ ବିପରୀତ ଦୁଇଟି କଥା କିପରି ସମ୍ଭବ ହେବ ? ଏ ଆପତ୍ତି ଅମୂଳକ । ସବୁ ଦର୍ଶନର ଶେଷ ମୀମାଂସା – ମୋକ୍ଷ । ତେବେ ସେହି ମୋକ୍ଷ ବୋଧଗମ୍ୟ ନା ବୋଧଗମ୍ୟ ନୁହେ ? ଯେବେ ବୋଧଗମ୍ୟ ନୁହେ, ତେବେ ତାହା କାଳ୍ପନିକ, ସତ୍ତାହୀନ ବୋଲିବାକୁ ହେବ ନାହିଁକି ? ଯଦି ତାହା ବୋଧଗମ୍ୟ, ତେବେ ଜୀବନ ନ ଥାଇ ତାହା କିପରି ବୋଧ କରାଯାଇପାରେ ? ନିଷ୍ପ୍ରାଣ ବସ୍ତୁ କୌଣସି କଥା ବୋଧ କରିବା ତ ଅସମ୍ଭବ । ତେବେ ଏ ଦେହରେ ସେ କଥା ନ ହେଲେ, ମରଣ ଉତ୍ତାରୁ ତାହା କିପରି ସମ୍ଭବ, ସେଥିପାଇଁ 'ରସ ସିଦ୍ଧାନ୍ତ' କହିଛି— ସବୁ ଶାସ୍ତ୍ର ଜ୍ଞାତା ଓ ଜ୍ଞେୟ ମାନିଛନ୍ତି; କିନ୍ତୁ କୌଣସି ମୃତ ବସ୍ତୁ ଜ୍ଞାତା ହୋଇ ନ ପାରେ, ଜ୍ଞେୟକୁ ଅବଧାରଣ କରି ନ ପାରେ । ସେଥିପାଇଁ ସ୍ୱଦେହରେ ମୋକ୍ଷପ୍ରାପ୍ତି ରସେଶ୍ୱରର ବୈଶିଷ୍ଟ୍ୟ । ଅନ୍ୟ ସବୁ ଦର୍ଶନ ବିବାଦମୂଳକ । ଜୀବନହିଁ ଶ୍ରେଷ୍ଠ, ଜୀବନହିଁ କାମ୍ୟ, ଜୀବନହିଁ ଶ୍ରେୟ, ଉପାସ୍ୟ ।

ପୁଣି ଆପତ୍ତି ଉଠିପାରେ—ଏହାକି ଗୋଟିଏ ନୂତନ ଆଶ୍ଚର୍ଯ୍ୟଜନକ କଥା ନୁହେ ? ଏହାର କି କୌଣସି ପୂର୍ବାଗ୍ରହ ଅଛନ୍ତି ? ପରଂପରା ଅଛି ? ରସେଶ୍ୱର

କହେ--ହଁ, ଅଛି; ନରସିଂହ ରୂପରେ ଶରୀରର ଅମରତ୍ୱ, ଚିରତ୍ୱ ପ୍ରତିପାଦିତ ହୋଇଅଛି । ସେଥିପାଇଁ 'ସାକାର ସିଦ୍ଧି'ରେ ବିଷ୍ଣୁସ୍ୱାମୀ ପ୍ରତିପାଦିତ ଏହି ନରସିଂହ ରୂପ ସତ୍, ଚିତ୍, ତଥା ଶାଶ୍ୱତ ପୂର୍ଣ୍ଣ ଅଚିନ୍ତନୀୟ ସୌନ୍ଦର୍ଯ୍ୟ ବୋଲି ପ୍ରମାଣିତ ହୋଇଅଛି ।

ଏଠାରେ ପୁଣି ଆପତ୍ତି ହୋଇପାରେ—ନରସିଂହ ରୂପ କବି କଳ୍ପନା ସିନା, ସେଭଳି ମିଶ୍ରିତ, ଚିତ୍ରିତ ରୂପ କି ବାସ୍ତବ ଜଗତରେ ଦେଖାଯାଏ ? ରସେଶ୍ୱର କହେ—ନା ତାହା କବି-କଳ୍ପନା ନୁହେ; ଆମର ସ୍ଥୂଳ, ନିପଟ ଭୌତିକ ଆଖିରେ ତାହା ଦେଖା ନଗଲେ ସୁଦ୍ଧା ତହିଁର ସ୍ଥିତି ସମ୍ବନ୍ଧରେ ତ୍ରିବିଧ ପ୍ରମାଣ ରହିଛି । ଶନକ ଇତ୍ୟାଦି ତାହା ଦେଖିଛନ୍ତି; 'ସହସ୍ରଶୀର୍ଷ ପୁରୁଷ' ଉକ୍ତି ଛଳରେ ବେଦରେ ତାହା ପ୍ରମାଣିତ ହୋଇଛି; 'ନଳୀନାକ୍ଷ, ଶଙ୍ଖ-ଚକ୍ର-ଗଦା-ପଦ୍ମ ଶୋଭିତ ଚତୁର୍ଭୁଜ' ଇତ୍ୟାଦି ଉକ୍ତିରେ ପୁରାଣ ତାହା ପ୍ରତିପାଦନ କରିଛି । ବିଷ୍ଣୁସ୍ୱାମୀ ଶିଷ୍ୟ ଶ୍ରୀକାନ୍ତ ମିଶ୍ର ପ୍ରମୁଖ ତାହାର ବାସ୍ତବତା ବ୍ୟାଖ୍ୟାନ କରିଛନ୍ତି । ସେହେତୁ ଶରୀରର ଶାଶ୍ୱତାବସ୍ଥା ଗୋଟାଏ ନୂଆ ମନଗଢ଼ା କଥା ବୋଲି ବିଚାର ନାହିଁ । ଅମର, ଅଜର, ସକଳ ବିଜ୍ଞାନ-ପୂର୍ଣ୍ଣତା-ସମ୍ପଦ ମୁକ୍ତିର ଆଧାର ଶରୀର ଏହାଠାରୁ ବଳି କି ମହତ୍ ଓ ସୁନ୍ଦର କଳ୍ପନା କରଯାଇପାରେ ? ଶରୀରକୁ ଏପରି କରିବାର ମାର୍ଗ ଓ ଉପାଦାନ କେବଳ ପାରଦ ପ୍ରୟୋଗ । ଏହି ପରମ ଔଷଧୀହିଁ ଶରୀରକୁ ଅବିନଶ୍ୱର କରିପାରେ । ପ୍ରୟୋଗ ପର୍ଯ୍ୟନ୍ତ କାହିଁକି, କେବଳ ଦର୍ଶନ ବା ସ୍ପର୍ଶରେ ଏହାର ଗୁଣ ଅଶେଷ । 'ରସାର୍ଣ୍ଣବ'ରେ ବର୍ଣ୍ଣିତ ଅଛି—ତାହାକୁ ଦେଖିବାରେ, ଛୁଇଁବାରେ, ଖାଇବାରେ, ମନେ ପକାଇବାରେ, ପୂଜା କରିବାରେ, ରଖିବାରେ, ବାଣ୍ଟିବାରେ ଛଅପ୍ରକାର ପୁଣ୍ୟ ଅଛି । କେଦାର, କାଶୀ-ବିଶ୍ୱେଶ୍ୱର ଇତ୍ୟାଦି ସକଳ ଲିଙ୍ଗ ଦର୍ଶନ ଓ ପୂଜନରେ ଯେଉଁ ପୁଣ୍ୟ ହୁଏ, ଏଥିରୁ ମଧ୍ୟ ତାହା ହୁଏ; ସକଳ ପବିତ୍ରତା ଓ ସୌନ୍ଦର୍ଯ୍ୟ ମିଳେ; ପୂର୍ଣ୍ଣସ୍ୱାସ୍ଥ୍ୟ, ଅଜରତା, ଅମରତା ମିଳେ । ପାରଦର ନିନ୍ଦା ଶୁଣିଲେ ରସେଶ୍ୱର-ପଥଗାମୀ ପାରଦକୁ ସ୍ମରଣ କରିବ, ସେ ସ୍ଥାନ ତଥା ନିନ୍ଦକକୁ ତ୍ୟାଗ କରିବ; ନିନ୍ଦକ ତହିଁରେ ଘୋର ପାପୀ ହେବ ।

ଏହିପରି ଭବରେ ଏହି ଦର୍ଶନ-ଅନୁଗମନରେ ଜୀବାତ୍ମାର ଶ୍ରେଷ୍ଠ ଅପବର୍ଗ ସାଧିତ ହୁଏ, ଅନ୍ତିମ ତତ୍ତ୍ୱ ଅବଧାରିତ ହୁଏ, ଦିବ୍ୟ ଶରୀର ପ୍ରାପ୍ତ ହୁଏ, ଅପୂର୍ବ ସଂଯୋଜନା ସଂଘଟିତ ହୁଏ । ସେହି ଦିବ୍ୟଦୃଷ୍ଟି ସମ୍ପନ୍ନ ଲୋକର ଭ୍ରୂଯୁଗଳ ମଧ୍ୟରୁ ବିଶୁଦ୍ଧ ପ୍ରତିଭାର ବିମଳ ଆଲୋକ ଉଦ୍ଗାରିତ ହୋଇ ଅଗ୍ନି ବା ସୂର୍ଯ୍ୟ ବା ବିଦ୍ୟୁତପରି ବିଶ୍ୱକୁ ଉଦ୍‌ଭାସିତ କରେ । ସେହି ଲୋକ ତାହାର ଅନ୍ତଃକରଣକୁ ଅପମିଶ୍ରିତ, ଅଖଣ୍ଡ, ଜ୍ୟୋତିଃସାର ଅବିଭକ୍ତ ପୂର୍ଣ୍ଣ ସୌନ୍ଦର୍ଯ୍ୟ ଉପରେ ନିବଦ୍ଧ ରଖେ । ତାହାର ସବୁ

ଯାତନା, ଦୁଃଖକଷ୍ଟ ଦୂରୀଭୂତ ହୁଏ । ଶାନ୍ତ, ସ୍ୱୟଂପ୍ରକାଶ ଈଶ୍ୱରଙ୍କ ଧ୍ୟାନରେ ନିର୍ମଳ ଚେତନା ସମାହିତ ସମଗ୍ର ବିଶ୍ୱବିକାଶ ଅନୁଭବ କରି ସେହି ଲୋକ ପରମକୁ ପ୍ରାପ୍ତ ହୁଏ । ତାହାର କର୍ମ-ବନ୍ଧନୀ ଆପେ ଆପେ ଫିଟିଯାଏ ।

ବେଦ କହିଛି—ପାରଦହିଁ ରସ; ତାହାର ପ୍ଲାବନରେ, ଅବଗାହନରେ ଜୀବନ ରସାପ୍ଲୁତ, ସୁନ୍ଦର, ମହୀୟାନ, ଗରୀୟାନ ହୁଏ; ଜନ୍ମାନ୍ତରର ଦୁର୍ଦ୍ଦଶା-ବୋଝ ଓହ୍ଲାଇଯାଏ । ଏ ଦୃଷ୍ଟିରେ ପାରଦ ଓ ପରମାତ୍ମା ଏକସ୍ୱରୂପ । ସେଥିପାଇଁ ଶାସ୍ତ୍ରରେ ବନ୍ଦନା କରଯାଇଛି—ଆତ୍ମରୂପୀ ପାରଦ ମତେ ସକଳ ଅବସାଦରୁ, ଆପଦରୁ, ଭୟରୁ ଉଦ୍ଧାର କରୁ । ମାୟାର ଆବର୍ତ୍ତକ ପ୍ରହେଳିକାରୁ ମୁକ୍ତିକାମୀ ଲୋକ ପକ୍ଷରେ ପାରଦ ପୁନଃ ପୁନଃ ପ୍ରଯୁଜ୍ୟ । ତାହା ଅନ୍ୟକୁ ବାଧାଦିଏ ନାହିଁ, ପ୍ରବଞ୍ଚନା କରେ ନାହିଁ ।

( ୨ )

ଚାର୍ବାକ-ନାସ୍ତିକତା ପରି ରସେଶ୍ୱରର ପାର୍ଥିବ ଶରୀର ଭିତରେ ଏପରି ମୋକ୍ଷ ଦୃଷ୍ଟି ବିଭିନ୍ନ ଦର୍ଶନ ଦିଗରୁ ସମାଲୋଚ୍ୟ । ତାହା ମଧ୍ୟ ଏକପକ୍ଷ, ସଂକୀର୍ଣ୍ଣ, ଅଧୋଗତ ବୋଲି ବୋଧ ହୋଇପାରେ । ଶରୀର ଉପରେ ଇନ୍ଦ୍ରିୟ, ତା' ଉପରେ ମନ, ବୁଦ୍ଧି, ଚିତ୍ତ, ଅହଂକାର ତା' ଉପରେ ମହତ୍, ପ୍ରକୃତି, ସର୍ବୋପରି ଆତ୍ମାର ବିଶ୍ୱବ୍ୟାପୀ ପ୍ରଭୁତ୍ୱ ଥାଉ ଥାଉ, କେବଳ ଶରୀର ଉପରେ ଏତେ କର୍ତ୍ତୃତ୍ୱ, ଅଧିକାର ଦେବା ଅସମୀଚୀନ ଜଣା ଯାଇପାରେ, ଆଧୁନିକ ବସ୍ତୁବାଦ ବା ଭୌତିକବାଦର ରୂପାନ୍ତର ଦିଶିପାରେ । ତଥାପି ଚାର୍ବାକ-ଦର୍ଶନ ଯେପରି ଅସମଦର୍ଶୀ ପ୍ରଶ୍ନର ବିରୁଦ୍ଧରେ ସର୍ବଦା ସମର-ଡାକ ଦେଉଥିବ, ଏ ଦର୍ଶନ ମଧ୍ୟ ସେପରି ଦେଉଥିବ । ପୁଣି ମନେ ରଖିବାର ଅଛି ଚାର୍ବାକ-ଦର୍ଶନ ପରି ଏ ଦର୍ଶନ ଆମର ଯେପରି ଅଛି ସେପରି ଶରୀର ଉପରେ ପ୍ରାଧାନ୍ୟ ଦେଇନାହିଁ । ଶରୀରକୁ ଦିବ୍ୟକଲେ ହିଁ ତାହାର ଐଶ୍ୱର୍ଯ୍ୟ କଳନା କରିଛି । କହିବା ଅନାବଶ୍ୟକ ଯେ କୌଣସି ଆଦର୍ଶବୋଧରେ ଶରୀରର ସ୍ଥାନ ନ ଥାଇ ରହିବ ନାହିଁ । ସେଥିପାଇଁ ଶାସ୍ତ୍ର କହିଛି ଧର୍ମ ସାଧନରେ ଶରୀର ଆଦ୍ୟ । ଭଗବତ-ବାଣୀ ସେଥିପାଇଁ ଘୋଷିତ ହେଉଛି—

ଅନ୍ନ ଛାଡ଼ିଲେ ଆୟୁ ହାନି,
ଯୋଗ ସାଧିବୁ କାହା ଘେନି ?

ଏ ପ୍ରାଥମିକ ସତ୍ୟକୁ ଅବଧାରଣ କରି ରସେଶ୍ୱର ତାହାକୁ ମାର୍ଜିତ କରିବାର ପ୍ରୟାସ କରିଛି । ଦେହ ତଥା ଜୀବନର ମହତ୍ତ୍ୱ ଉପଲବ୍ଧ କରି ରସେଶ୍ୱର ଆଧୁନିକ ବୈଜ୍ଞାନିକ ଚିନ୍ତାର ନିକଟତମ ସ୍ତରକୁ ଆସିଛନ୍ତି । ବର୍ତ୍ତମାନ ଆମ ଶିକ୍ଷା-ପ୍ରଣାଳୀରେ

ଶାରୀରିକ ଶିକ୍ଷାର ଉପାଦେୟତା ଉପରେ ଯେଉଁ ଦୃଷ୍ଟି ପଡ଼ିଛି, ତାହା ଏ ଦର୍ଶନର ଅନୁକୂଳ । ବେଦାନ୍ତ ତଥା ତତ୍ତ୍ୱର ଅବୁଝାମଣା ବା ଅର୍ଦ୍ଧବୁଝାମଣା ଜନିତ ଦେହ ତଥା ଜୀବନର ଅସ୍ୱାଭାବିକ ଅବମାନନା—ଦାର୍ଶନିକ ଛଳରେ ପ୍ରାକୃତିକ ବିଭୂତିର ଅବମାନନା ନ କରିବା ପାଇଁ ଏହି ଦର୍ଶନ ସର୍ବଦା ସତର୍କ-ବାଣୀ ଶୁଣାଉଥିବ । କିନ୍ତୁ କେବଳ ସେତିକି ଯଥେଷ୍ଟ ନୁହେ । ଅନ୍ୟପକ୍ଷରେ ପାରଦ ପ୍ରୟୋଗ ବିଧିର ଏଡ଼େ ଐଶ୍ୱର୍ଯ୍ୟ ବର୍ଣ୍ଣନ ନିରର୍ଥକ ହୋଇନପାରେ । ଆମର ଆୟୁର୍ବେଦରେ ମଧ୍ୟ ତାହା ଚର୍ଚ୍ଚା କରଯାଇଛି । ତଥାପି ଏହାର ପୂର୍ଣ୍ଣ ଅଭିବ୍ୟକ୍ତି ତଥା ରହସ୍ୟଭେଦ ଆଧୁନିକ ବୈଜ୍ଞାନିକ ଚିକିତ୍ସା ପ୍ରଣାଳୀର ଗଭୀର ଗବେଷଣା ସାପେକ୍ଷ । ଭେଷଜ-ଗବେଷଣାର ଗୋଟିଏ ମୌଳିକ ବିଭାଗ ଏଥିଦ୍ୱାରା ଫିଟିଯିବ ।



## ପଦ୍ୟ ବିଭାଗ

# ଊର୍ମିଳା

—୧—

ରାମ ଯିବେ ବନ-ବାସ — ବ୍ୟାପିଲା ବାରତା —
କାନ୍ଦେ ଅଯୋଧ୍ୟା ରାଣୀ, କାନ୍ଦିଲେ ତରୁଲତା,
କାନ୍ଦିଲେ ବିହଙ୍ଗମ, କାନ୍ଦିଲେ ଚରାଚର;
ଗିରି-ବନ କାନ୍ଦେ; କାନ୍ଦେ ସରଯୂର ତୀର ।

ରାଣୀ ହଂସପୁରେ ଉଠେ ବିଳାପର ଧ୍ୱନି;
ଉତ୍ସବ ଦିବସେ ଘୋଟେ ବିଷାଦ-ରଜନୀ,
କାନ୍ଦିଲେ ପୁର ନିବାସୀ, କାନ୍ଦେ ଦଶରଥ—
ପାତ୍ର-ମନ୍ତ୍ରୀ, ଶତ୍ରୁ-ମିତ୍ର, ବାନ୍ଧବ ସଙ୍ଗତ ।

କରୁଣ ରାଗ ମୁଖର ବାଲ୍ମୀକୀ ବିପଞ୍ଚୀ
ରଖିଲା କରୁଣ ରସ ଯୁଗ ଯୁଗ ସଞ୍ଚି ।
ମହାକାବ୍ୟ ରାମାୟଣ ହେଲା ବିରଚିତ—
ସାହିତ୍ୟ-ଭଣ୍ଡାରେ ମଣି ଅମୂଲ୍ୟ, ଦୀପିତ ।

ନିନାଦିତ ହେଲା ତହିଁ ସୀତା-ପତିଭକ୍ତି,
ସୌମ୍ୟ ସଉମିତ୍ରୀ ଅଳ୍ପ ସହୋଦର-ପ୍ରୀତି ।

ପୁତ୍ର ଶୋକେ ମରିବାର ପିତା ଝୁରି ଝୁରି,
ଜୀବନବ୍ୟାପୀ ଜନନୀ-ଚିନ୍ତା-ଶାଣଛୁରି,
ପାଦୁକା ବନ୍ଦି ସାନୁଜ ରାଜ୍ୟ ପାଳିବାର,
ଧାଇଁବାର ଗଙ୍ଗାତଟ ଯାଏଁ ନାଗ୍ରି-ନର,

ଝଟକିଲ ସ୍ୱର୍ଣ୍ଣସମ ଭରତୀ-ନିକଷେ;
କିନ୍ତୁ କାହିଁ ? ଉର୍ମିଳାର ଘନ ଚିତ୍ତାକାଶେ
ସ୍ଫୁରିଥିଲା ବିଦ୍ୟୁଲ୍ଲତା—ତା'ର କ୍ଷୀଣାଲୋକ
ଥରେ ମଧ୍ୟ ପଡ଼ିନାହିଁ ଗ୍ରନ୍ଥ ଗୋଟି ଯାକ !

କିଶୋରୀ-ହୃଦୟେ-ସିନ୍ଧୁ ସନ୍ତାପ-ଲହରୀ
ପାଦକୁ ଥରେ ଛୁଇଁନି ରାମାୟଣ ଗିରି !

—୨—

ହେ କଲ୍ୟାଣୀ !
ତ୍ୟାଗ-ସହିଷ୍ଣୁତା-ରାଜ୍ୟ ଅନୁପମା ରାଣୀ !
ଫାଟି ନ ଯାଇ ଫୁଟି କି ଗଲା ବକ୍ଷସ୍ଥଳ ?
ନୟନୁ ନିଗିଡ଼ିଲା କି ରକତ-କଲ୍ଲୋଳ ?

ଅବା ପ୍ରିୟତମେ କରି ଅଶୁଭ ଆଶଙ୍କା
ଟଳଟଳ ଲୁହ ନ ବହିଲା ବହି ଦକା ?

—୩—

ବିଦାୟ କାଳରେ ଆସି ଆରାଧ୍ୟ ଦେବତା
କହିଥିବେ—"ସୁଭଗା ! ବଳିଷ୍ଠ ବିଧାତା-
ବିଧାନ କିଏ କେବେ କରିପାରେ ଆନ ?
ସେ ବିଧାନେ ବନ୍ଧା ମୁହିଁ, ଯାଉଅଛି ବନ !

ରହିଗଲା ଦୁଃଖ—ବନ୍ଦ ହେଲା ଅଭିସାର,
ମଉଳିଲା ସଜକଞ୍ଜ ନ ହେଉ ଦୋସର ।
ଉଇଁମାର ଚନ୍ଦ୍ରମାକୁ ଘୋଟି ଦେଲା ରାହୁ,
ଝାଉଁଳିଲା କୁସୁମିତା ଲତା ରହୁଁ ରହୁଁ ।"

ଶାନ୍ତ ସଂଯତ ବଚନେ ଆଗୋ ନିରିମାଖୀ
କହିଥିବ ସେତେବେଳେ—"ଯାଅ, ମୁକ୍ତ ପକ୍ଷୀ !
ପ୍ରେମ-କାରାଗାରେ ବାନ୍ଧି ରଖିବାକୁ ମୋର
ନାହିଁ ଲୋଡ଼ା, ନାହିଁ ବାଞ୍ଛା ବିଳାସ-ବିଭୋର ।

ବ୍ରହ୍ମଚାରୀ ! ଯୋଗୀ ! ହେ ସଂଯମୀ ବଳୀୟାର !
କର ଦୁଷ୍ଟ ନାଶ ଲଭି ଶକ୍ତି ଚମତ୍କାର !
ଅଜ୍ଞାଣତା, ଅଗୁଣତା କାଟିବି ମୁଁ କାଳ,
ମୋ ନାଁ ଲିଭୁ, ତୁମ ଯଶ ରହୁ ମହୀତଳ ।"

—୪—

ସ୍ନେହମୟୀ !
ବଡ଼ ବଡ଼ିଆଙ୍କ କୀର୍ତ୍ତି ଗାଉଥାଉ ମହୀ ।
ଇତିହାସ ପୂର୍ଣ୍ଣହେଉ ବୀରଗାଥା ପୁଞ୍ଜେ,
ପ୍ରଣୟ ପୁଷ୍ପ ବିକଶୁ କାବ୍ୟ ମଧୁକୁଞ୍ଜେ ।

ସରଳ ପ୍ରାଣର ଶିଷ୍ଟ ନଗ୍ନ ଅନୁଭୂତି
ନ ପାଉ ପଦକେ କରତାଳି ମହାମତି—
ତଥାପି ସହଜ ଭବ, ସଦିଚ୍ଛାର ମୂଳ—
ଟେକା ଟେକି କେତେ କଲେ କେ ହେବ ତା'ତୁଲ ?

—୫—

ହେ ସରଳା !
ଜାଣନିକି କାଳ-ଗତି ନିୟତ କୁଟିଳା ?
ସ୍ୱାର୍ଥ ସବୁ ଦିନେ ପର ଗୁଡେ ଘୋର ରଡ଼ି
ପାଟିକଲ ଲୋକ ପଛ ଆଗ ପାଏ ପଡି ?
ନିରୀହ ପ୍ରାଣର ତିକ୍ତ ରୁଦ୍ଧ ଅନୁଭୂତି
ଗୁପିରହେ—ଏହିପର ବିଜ୍ଞାପନ—ସ୍ତୁତି ?

ତଥାପି ବେଳ ଆସିବ, ଫୁଟିବ କଳିକା,
ଗୁନ୍ଥିଦେବ ସୁରଭିତ କୁସୁମ ମାଳିକା
ସମ ଅନୁଭୂତି ସମେ ନେଇଯିବ ଟାଣି,
ଯୁଗଭେଦ, ଦେଶଭେଦ ଦେଇଯିବ ହାଣି ।

ପ୍ରଚାର ? ଅଗ୍ରସମ୍ମାନ ? ଲେଢ଼ା ନାହିଁ ନାହିଁ,
ସରସ ସ୍ନିଗ୍ଧ ସୁନ୍ଦର ମନୁଷ୍ୟତା ନାହିଁ ?

ପୁରସ୍କାର ? ନେତାପଣ ? ଲେଡ଼ା ନାହିଁ ନାହିଁ,
ଅଖଣ୍ଡ ତପସ୍ୟା, ନୀରବ ସାଧନା କାହିଁ ?

ଜନହିତେ; ବିଶ୍ୱହିତେ କ୍ଷୁଦ୍ରସ୍ୱାର୍ଥ ପୋଛି—
ତିଳେ ତିଳେ ବଳିଦେବା କହ କାହିଁ ଅଛି ?
ସାଧରଣ ଜୀବନରେ ହଜାଇ ନିଜକୁ—
ଅନେକରେ ଗୋଟିକକୁ ପକାଇ ପଛକୁ—
ଅଯାଚିତେ ବିନୀତ ପ୍ରଣତି ଢ଼ାଳିବାର
ସପନ ସିନା ! ବିଚିତ୍ର ସଂସାର ବେଭର !

ତଥାପି ତାହାହିଁ ଆମ ଶ୍ରେୟ, ଅତିପ୍ରିୟ—
ଉର୍ମିଳା—କାହାଣୀ ଦେଉଥିବ ଏ ଅଭୟ !



# ଖୋଜୁଛୁ କାହାକୁ ?

—୧—

"ବାଳ ତ ଗଲଣି ପାଚି—ଦିଶେ ଝୋଟ ପରି;
ଦାନ୍ତ ତ ଗଲଣି ପଡ଼ି—ଦିଶୁ ହତ-ଶିରି ।
ଥରୁଅଛି ହାତଗୋଡ଼, ଚାଲିବାକୁ ବଳ
ନାହିଁ; ସାହା ନାହିଁ କେହି କାଟିବାକୁ କାଳ ।

ବାଡ଼ି ଖଣ୍ଡି ଧରି ବାଟେ ଯାଉ ଠୁକୁ ଠୁକୁ,
ଆଖି ମାରିଯାଏ ଝୋଲ; ଉଠେ ପଡ଼େ ବୁକୁ ।
ଖାଇବାକୁ ନାହିଁ ଦାନା, ପିନ୍ଧିବାକୁ କନା,
ପଞ୍ଜର ହାଡ଼ ଦି ଖଣ୍ଡ ହେବ ଚୁନୁଚୁନା ।

କୁଡ଼ିଆ କରିଛୁ ମାଟି ଡ଼ାଳ ପତରରେ,
ଆସିବ ବାଆ-ବତାସ, ଭାଙ୍ଗି ଦେବ ଖରେ ।
ଆସିବ ଶୀତ-କୋହଲ, ଦେବ ହାଡ ଭାଙ୍ଗି,
ଆସିବ ଝଡ-ବରଷା, ଭଜିଯିବ ଠାଙ୍ଗି ।

ମୁଣ୍ଡ ଗୁଞ୍ଜିବାକୁ ଥାନ ନ ଥିବ ଟିକିଏ,
ଯହିଁ ଗଲେ ମାରଧର କରିବେ ସଭିଏଁ ।
କାନ୍ତାର କାଳ; ନ ମିଳେ ମହିଏ ତୋଡାଣି,
ଯେଣେ ଗଲେ ଛି ଛି କରି ବୋଲିବେ 'ଡ଼ାଆଣି' ।

ଆଉ କି ଭାବୁଛୁ ବୁଢ଼ି ?
କି'ଆଶା ରଖି ମଞ୍ଚରେ ହେଉ ଭିଡାଭିଡ଼ି ?"

ଗାଆଁ ସେ ମୁଣ୍ଡ ଗୋହିଆ ତଡେ ଆମ୍ବ ମୂଳେ
ବସିଥିଲା ବୁଢ଼ି ନଈପଡି ପଲା ତଳେ,
ଗୋଟାଉ ଥିଲା ଶୁଖିଲା ପତର ଢାଳେଣି,
ଯାଉଥିଲି ପୋଖରୀକୁ ସେହି ବାଟେ ମୁହିଁ—

କୁତୁହଳେ ପଗରିଲି ବୁଢ଼ିକୁ ଏସନ,
ଥଙ୍ଗି ଥଙ୍ଗି ବୁଢି ତହୁଁ କହିଲା ଭଷଣ—

"ପୁଅରେ ! କରିବି ମୁଁ କିସ ?
ବିତି ତ ଯାଉଛି ଏପରି ମାସ ବରଷ ।

ମୋ ଗଦେଇ ଗଲାଦିନୁ ରେଙ୍ଗୁନୁ ଦେଶକୁ
ଗୃହିଁ ରହିଅଛି ବାଟ ତା'ର ଆସିବାକୁ ।

ଆଉ ଆସିବ ନାଇଁ ସେ ? କରିବନି ଘର ?
ବରମାରୁ ଟଙ୍କା ଆଣିମନି ଧନ ମୋର ?
ହେବନାହିଁ ବାହା ? ଶେଷକାଳେ ହେବନାହିଁ ସାହା ?
ପୁଅ-ବୋହୂ-ନାତି ଧରିବେନି ମୋର ଗହା ?

ସେତେବେଳେ ଏ ଦୁଃଖ ପାଶୋରି ପରା ଯିବି,
ଅଫିମ ଟିକିଏ ଖାଇ ଆରମ ମୁଁ ହେବି ।
ଚୁଡ଼ାଭଜା, ପଖାଳ ନିତି ମିଳିବ ଗଣ୍ଡେ,
ଦମ୍ଭଧରି ବାସ ପିନ୍ଧି ଗୁଲିବିକି ଦାଣ୍ଡେ ।
ଗୋଡ ହାତକୁ ମୋ କେ ପରା ଦେବ ଆଉଁଶି,
କେ ମତେ ଛିଗୁଙ୍କର ନ କରିବେ ଭରସି—

ପୂରିବ କି ଆଶା ?
ଷୋହଳ ବରଷେ ପୁଅ ବାନ୍ଧିବ କି ବସା ?"

"ଆସିବ, ଆସିବ,—
ଆଶା ତୋ ପୂରିବ ବୁଢ଼ି, ଦୁଃଖ ନିଶ୍ଚେ ଯିବ ।"

କହିଲି ଏସନ; ଘୁଲିଗଲି ବାଟେବାଟେ,
ମନେହେଲା ନରନାରୀ ଦମ୍ଭ କେତେ ସତେ ?
ଆଶା ସତେ ଅସରନ୍ତି ।—ଧରଣୀ-ମାଟିକୁ
ଛାଡିଯିବା ପାଇଁ କା'ର ନ ଥରଇ ବୁକୁ ?

—୨—

ମନେ ଗଲା ପଡ଼ି କବି କାଳିଦାସ କଥା—
ଦକ୍ଷିଣ ଭ୍ରମଣେ ଯାଇ ପାଇଥିଲେ ବ୍ୟଥା ।

ଦେଖିଥିଲେ ବୁଢ଼ି ଜଣେ ଆସେ ନଇଁନଇଁ—
ତଳମୁହାଁ ହୋଇ ଦରଣ୍ଡୁ ଥିଲା ଭୁଇଁ ।
କଲେ ପରିହାସ—
'କାହାକୁ ଖୋଜୁଛୁ ବୁଢ଼ି ? ବୋଲି କଲେ ଭଷ ।

'ରେ ମୂରୁଖ !'
କହିଲାକ ବୁଢ଼ି—ଚିତ୍ତେ ନ ବହିଣ ଦକ—
'ଖୋଜୁଛି ଯୌବନ'—କବି ହଂସା ଗଲା ଉଡ଼ି !
ପ୍ରକୃତି ଧକ୍‌କାରେ କାବ୍ୟ ଭଙ୍ଗୀ ହେଲା ମୋଡ଼ି !

—୩—

ଏଇ ତ ଜୀବନ—ବିପରୀତ ପଥ ବାହୀ—
ଅନନ୍ତ ଅନୁସନ୍ଧାନେ କାଳ ଯାଏ ବହି—

ସସୀମରେ ଅସୀମକୁ, ଗୁଣ ଠାରେ ଦୋଷ,
ନିରଶାରେ ଆଶା, ଦୁଃଖ-ଜଞ୍ଜାଳରେ ତୋଷ,
ଶୀତେ ବସନ୍ତର ମୃଦୁ ମଧୁ ପରିମଳ,
ଜରା ବକ୍ଷେ ଯଉବନ ନୂତନ ଚଞ୍ଚଳ—

ଖୋଜିବାର ଅବିରତ, କ୍ଷଣିକେ ଶାଶ୍ୱତ
ପୂରଣ ପାଇଁକି ସୃଷ୍ଟି ଚିର ଆତଯାତ ।

ପଡ଼ିବା ଉଠିବା ପୁଣି ଉଠିବା ପଡ଼ିବା—
ପ୍ରକୃତିର ଛନ୍ଦେ ଛନ୍ଦେ ତାଳ ପକାଇବା—

ରୂପ-ପାରବାରେ ଅପରୂପର ସନ୍ଧାନ—
ସାମାନ୍ୟରେ ବିଚିତ୍ରର ନବ ଆକର୍ଷଣ—

ଏଇ ତ ସଂସାର—
ସୀମାହୀନ କୂଳହୀନ ସ୍ରୋତ ଝରଝର
ଯାଏ ବହି; ପୂରିଥାଏ ଅଶେଷ ତରଙ୍ଗେ—
ବାହିଯାଏ ତହିଁ ଯାତ୍ରୀ ନୌକା ରଙ୍ଗେଭଙ୍ଗେ !



# ଭଞ୍ଜ-ପୀଠ

ବେଳ ଯାଉଥିଲା ବୁଡ଼ି, ପଶ୍ଚିମ ଆକାଶ
ଦିଶୁଥିଲା ରକ୍ତବର୍ଣ୍ଣ, ପିନ୍ଧି କୃଷ୍ଣବାସ
ଅବତରୁ ଥିଲା ମର୍ତ୍ତ୍ୟେ ଧୀରେ ସନ୍ଧ୍ୟାରାଣୀ,
ଗାଉଥିଲେ ବିହଙ୍ଗମ ମଧୁର ରାଗିଣୀ ।

ଫେରୁଥିଲେ ଧେନୁପଲ କରି ହମ୍ବା ରଡ଼ି,
ସନ୍ଧ୍ୟାଦୀପ ଜଳିଲାକ ହୋଇ ଧାଡ଼ି ଧାଡ଼ି,
ଦୂରେ ଦେବଦାରୁ-ଝାଉଁ ଗଛ ଛୁଇଁ ଛୁଇଁ
ଶିରି ଶିରି ବହୁଥିଲା ସମୀର ଥକାଇ ।

'ଘାଇ'ର ସ୍ୱଚ୍ଛ ପ୍ରଶାନ୍ତ ସଲିଳ-ମୁକୁରେ
ଦିଶିଲାକ ତାରା ଯେହ୍ନେ ମଲ୍ଲିକା ଚିକୁରେ,
ଦଶପଲ୍ଲା ରଣପୁର ସୀମା ସ୍ଥିତ ବନ—
ଗିରି ଦିଶୁଥିଲା ଧୂମାୟିତ, ଅବସନ୍ନ,

ଛାତ୍ରାବାସ ଛାତ୍ରଙ୍କର ଖେଳ କଉତୁକ,
ହସ ମେଳ ହୋଇଥିଲା ଆନନ୍ଦ ଦାୟକ,

ସଙ୍ଗେ ଥିଲେ ରହି ଦୁଇ ବନ୍ଧୁ-ରାମଚନ୍ଦ୍ର—
ମୃତ୍ୟୁଞ୍ଜୟେ ଗାଉଥିଲେ ମଧୁ-ଗୀତ-ମନ୍ଦ୍ର—

---

ଭଞ୍ଜ-ସାହିତ୍ୟ-ପରିଷଦର କେନ୍ଦ୍ର ରସଲକୋଣ୍ଡା ହାଇସ୍କୁଲକୁ, 'ଉପେନ୍ଦ୍ର ଭଞ୍ଜ ହାଇସ୍କୁଲ' ନାମ ଦିଆଯାଇଛି । ସ୍କୁଲ ହତା ଭିତରେ ଛାତ୍ରାବାସ । ତାକୁ ଲାଗି ଗୋଟିଏ ବେଦୀ—'ଭଞ୍ଜ-ପୀଠ' ବୋଲି ପରିଚିତ । ରସଲକୋଣ୍ଡା ଘାଇ ଗୋଟିଏ ବଡ଼ ଜଳାଶୟ । ସାତ ବର୍ଷ ତଳେ ପ୍ରଥମ ଥର ଏ ସବୁ ଦେଖିଥିଲି । ସାଙ୍ଗରେ ଶିକ୍ଷକ ରାମଚନ୍ଦ୍ର ମହାପାତ୍ର ଓ ଖ୍ୟାତନାମା ସଙ୍ଗୀତ-କଳାକାର ମୃତ୍ୟୁଞ୍ଜୟ ପଣ୍ଡା ଥିଲେ ।

ଓଡ଼ିଶୀ ଚୌପଦୀ, ଛାନ୍ଦ, ଚଉତିଶା ସ୍ୱର
ଦୂରେ ବହି ଯାଉଥିଲା ତରଙ୍ଗ ଆକାର—

ଝରୁଥିଲା ଅବା ତହିଁ ଅମୃତ ଝରଣା,
ମର୍ତ୍ତ୍ୟ କି ସ୍ୱରଗ ସତେ ନୋହୁଥିଲା ଜଣା,
ଜୀବନର ଶତ ଶତ ମାନ, ଅଭିମାନ
ଶତ ଶତ ସୁଖ ଦୁଃଖ, ଦୀନତା, ରଞ୍ଜନ—

କୁଟୁମ୍ବ-ସମାଜ କଥା ଲଗୁଥିଲା ତୁଚ୍ଛ
ଚଢ଼ୁଥିଲା ଭବନାର ସ୍ଫଟିକ ପାବଚ୍ଛ ।
ଉଚ୍ଛୁଳି ଉଠିଲା ଚିନ୍ତା—କିଏ ? କାହାପାଇଁ ?
କେଉଁ ଆଦ୍ୟ ? କିବା ଲକ୍ଷ୍ୟ ? ସର୍ଜନା କିପାଇଁ ?

ଦେଖାଇ ଦେଲେ ସେ କାଳେ ବନ୍ଧୁ ଟେକି ହାତ,
'ଭଞ୍ଜ-ପୀଠ ଏହି'—ଆପେ ଶିର ହେଲା ନତ—

ଉତ୍କଳ କବି-ସମ୍ରାଟ ! ରସ-କଳାକର !
ଅଳଙ୍କାର ଶେଖର ! ଭଷା-ବିଭବ-ପିଅର !
ଆଜୀବନ ସରସ୍ୱତୀ ବର ଉପାସକ !
ସୁନ୍ଦର ମଧୁର କାବ୍ୟ ବରେଣ୍ୟ ନାୟକ !

ମନେହେଲା, ଏ ସାମାନ୍ୟ ଚୂନ ଇଟା-ବେଦୀ
ବିରାଟ ସ୍ମୃତିକୁ ତବ ପାରିବ କି ଭେଦି ?
ସେ ବିରାଟ କୃତିତ୍ୱକୁ ସ୍ଥୂଳ ନାମେ ଗ୍ରୁପ
ଦେଇ ଶସ୍ତା ସମ୍ବରଣେ କରିବା କି ମାପ ?

ସପ୍ତମୀ ଚନ୍ଦ୍ର ଉଠିଲା ନିର୍ମଳ ଆକାଶେ
ଚନ୍ଦ୍ରିକା ବିଛୁରି ଗଲା ବାଟେ, ଘାଟେ, ଘାସେ ।
ଜ୍ୟୋତ୍ସ୍ନାସ୍ନାତ ପୂତ ପୀଠେ ବସୁ କିଛିକାଳ—
ଭବ-ସାଗରେ ଖେଳିଲା ସ୍ମୃତିର ହିଲ୍ଲୋଳ—

ଭଞ୍ଜ ହେ ! ରେପିଲ ମଞ୍ଜୁ-କାବ୍ୟ-ରସଲତା—
ଖଞ୍ଜି ମଣି, ମାଣିକ୍ୟ, ବୈଦୁର୍ଯ୍ୟ ମୁକୁତା,

'ସେଲୁଲଇଡ୍' ଯୁଗରେ ନ ପାଣ୍ଟୁ ମୂଲ୍ୟ କଳି !
'ଗ୍ରଇନା କ୍ରେ' ପସରାରେ ଯାଉ ପରା ଭଳି !

ଭଞ୍ଜ ହେ ! ପରଶି ଗଲ ଖଜା, ଖିରି, ପିଠା—
ଘି'ଖିଆ ତୁଣ୍ଡେ ଆଜି ନ ଧରଇ ମିଠା,
ନ ହୁଏ ଗ୍ରେବାଇ, ପେଟେ ଲଗଇ ଅଜୀର୍ଣ୍ଣ;
ରସ-ତେଜ-ଓଜ ହୋଇଅଛି ପର ଶୀର୍ଣ୍ଣ !

ସବୁ କ୍ଷୀଣ ! କ୍ଷୀଣ ବପୁ, ଆୟୁଷ, ପ୍ରତିଭା !
ମହତ୍-ଗୁଣ-ବାରିଧି ପାର କି ହୋଇବା ?
ଭଞ୍ଜ ବୀରବର ! ତବ କାବ୍ୟାମୃତ ପାନେ
ଘୁଞ୍ଚୁ ଏ କ୍ଷୀଣତା, ବଳ, ଶକ୍ତି ଆସୁ ମନେ ।



# ଉଠ ମା !

—୧—

ଉଠ ମା ! ବନ୍ଦୁଛୁ ଆଜି ଚରଣ ଯୁଗଳ;
ପୂଜିବାକୁ, ସେବିବାକୁ, ହୋଇଅଛୁ ଠୁଳ
ପାହିଲାଣି ଅମାଗତି; ପୂରୁବ ଆକାଶେ
ରକ୍ତରାଗ ଫୁଟି ଉଠେ ବିକଚ ଆଭାସେ ।

ଆଶା-ଭରସାର ଅନାଗତ ମଧୁ ଦ୍ୟୁତି
ଆସିଛି; ମିଳିଛନ୍ତି ଚକ୍ରବାକ ଦମ୍ପତି ।
ଦୁଃଖୀ, ରଙ୍କୀ, ଦାସୀର ଶୃଙ୍ଖଳେ ବନ୍ଧାହୋଇ
ଆଉ କେତେକାଳ ମାଆ ରହିଥିବୁ ଶୋଇ ?

ଉଠ ମା ! ସିଂହ ବିକ୍ରମରେ ଉଠ ! ଅଗତି
ଦୂରେ, ବହୁଦୂରେ ଧାଉଁ ପାଇ ଲଜ୍ଜା, ଭୀତି ।
ଛିନ୍ନକର ଅଧୀନତା ରଜ୍ଜୁ, ଘୁଞ୍ଚୁ ଦୁଃଖ;
ବିଷାଦ-ଘନେ ଘଉଡୁ ବିଜୟ-ମୟୂଖ ।

ମା ଗୋ ! ଖ୍ରିଶି କୋଟୀ ସନ୍ତାନ ବୀରବେଶେ
କରିଅଛୁ ମୁକ୍ତିପଣ ଆଜି ମୁକ୍ତକେଶେ;
ସିଦ୍ଧି-ଫୁଲ ତୋଳିବାକୁ ବଢ଼ାଇଛୁ ହାତ;
ଦୃଢ଼ କର ହାତ ଆମ, ନ ହେଉ କମ୍ପିତ ।

ଜନନୀ ! ସ୍ନେହମୟୀ ! ତୋ' ପ୍ରାଚୀନ ଗରିମା,
ଆତ୍ମ ଶକ୍ତି ଓଜ ଆମ ହୃଦେ କର ଜମା ।
ଆଉ ନାହିଁ ଶଙ୍କା-ଦକା, ନ ହଟିବୁ ପାଦେ,
ନ ଛାଡ଼ିବୁ ତୋତେ, ଜିଣିବୁ ତୋ'ର ପ୍ରସାଦେ ।

ଗ୍ରିଶି କୋଟୀ ହୃଦୟ ତୋହର ନିବାସ,
ତୋର ବର୍ମ, ଯଜ୍ଞବେଦୀ, ମଞ୍ଜୁ କୁଞ୍ଜବାସ ।
ଗାଇବୁ ତୋହର ମା'ଗୋ ଆଦିମ ଗୌରବ
ମନ୍ଦ୍ରକଣ୍ଠେ; ଚନ୍ଦ୍ର, ତାରା, ରବି ହେବେ ସ୍ତବ୍ଧ ।

ବାହୁଡ଼ି ଆସିବ ରାମରାଜ୍ୟ-ଶାନ୍ତି-ପ୍ରୀତି,
ଗୁପ୍ତ-ସ୍ୱର୍ଣ୍ଣରାଜ୍ୟ ଶ୍ରେଷ୍ଠ ସମ୍ମାନ, ବିଭୂତି ।

—୨—

ପୂଜା-ଫୁଲେ ମଣ୍ଡୁ ହିନ୍ଦୁ ତୋହର କିରୀଟ,
ପାରଶି ଜାଳୁ ମା' ଆଶା-ଦୀପ ତୋ ପୁରତ,
ତୋର ରକ୍ଷା ପାଇଁ ମା' ଆଜି ମୁସଲମାନ
ଟେକୁ ପ୍ରେମ-ଖଣ୍ଡା ହୋଇ ଅତି ସାବଧାନ,

ପ୍ରାର୍ଥନା-ସ୍ତବକ ଗାଉ ଧୀରେ ଖ୍ରୀଷ୍ଟିଆନ,
ଅହିଂସା-ମନ୍ତ୍ର ପ୍ରଚାରୁ ତତ୍ପରତ ଜୈନ,

ବୌଦ୍ଧକରୁ ନିଷ୍ପାପର ନୀତିର ପ୍ରସାର,
ସବୁ ଧର୍ମ, ସବୁ ମତ ମିଳି ରଚୁ ସ୍ୱର ।
ଅପସରୁ ବିସମ୍ବାଦ, ଭେଦ, ଅବସାଦ,
ତୋଳାହେଉ ମିଳନର ପ୍ରକାଣ୍ଡ ପ୍ରାସାଦ !

—୩—

ପୁଣ୍ୟପୀଠେ ଜଳିଉଠୁ ହେମବହ୍ନି-ଶିଖା
କରି ଭରତ-ମାତାର ମୁକତି ପ୍ରତୀକ୍ଷା ।
ଉଦାତ୍ତ ସ୍ୱରେ ବ୍ରାହ୍ମଣ କରୁ ବେଦଧ୍ୱନି,
କ୍ଷତ୍ରୀୟ ଦେଇ ଆହୂତି ମୃତ-ସଞ୍ଜୀବନୀ,

ବୈଶ୍ୟ ଢାଳୁ ଘୃତଧାର, ଫପଦ ଅମୂଲ,
ଶୂଦ୍ର କରୁ ଅନୁଷ୍ଠାନ ଅମର ଅତୁଳ,
ଜ୍ଞାନୀ ହେଉ ପ୍ରବର୍ତ୍ତକ, କର୍ମୀ ବୀରବର
ଯୋଗୀ ସମତାର ମନ୍ତ୍ର କରୁ ହେ ଝଙ୍କାର ।

ଉଚ୍ଚ-ନୀଚ, ଧନୀ-ଭିକ୍ଷୁ, ସମ୍ଭ୍ରାନ୍ତ-ପତିତ,
ନର-ନାରୀ, ବୃଦ୍ଧ-ଶିଶୁ  ମହତ-ବିନୀତ—
ସର୍ବେ ମିଶି କରନ୍ତୁ ମା' ଶୁଭ ଶଙ୍ଖ-ଧ୍ୱନି;
ସମର-ଦୁନ୍ଦୁଭି ବାଜୁ; କମ୍ପୁ ହେ ମେଦିନୀ ।

ପରଦ୍ରବ୍ୟେ ଦୁଷ୍ଟ, ଖଳ, କୁମତି, ଶୋଷକ
ହେଉ ପରାଜିତ, ଜିଣୁ ଧର୍ମର ଶାସକ ।
ମା'ଗୋ ! ତୋର ଶିରୀ ଦେଖି ତୁଙ୍ଗ ହିମାଚଳ
ଦେବ ଦେଗା ବକ୍ଷେ ଘେନି ଭଧର, ପ୍ରଫୁଲ୍ଲ ।

ଗଙ୍ଗା, ସିନ୍ଧୁ, ଗୋଦାବରୀ ଖେଳନ୍ତି ତରଙ୍ଗେ;
ମହୋଦଧି ତାଳେତାଳେ ନାଚେ ଉର୍ମୀ-ରଙ୍ଗେ;
ପୁଲକିତ ବନସ୍ପତି, ନଦୀ, ଗିରି, ହ୍ରଦ,
ଶରତର ଶୁଭ୍ର ଜ୍ୟୋସ୍ନା ଦେଉଛି ଆହ୍ଲାଦ ।

—୪—

ମା'ଆର ମଙ୍ଗଳ ଦେଖି ମୋଦେ କନ୍ୟା-ବାଳୀ
ପିନ୍ଧି ପାଟ-ପତନି ଦିଅନ୍ତି ହୁଳହୁଳି ।
ମଥାରେ ସିନ୍ଦୂର ଟୋପା, ନୟନେ କଜ୍ଜ୍ୱଳ,
କସ୍ତୁରୀ କୁଙ୍କୁମେ ମାଜି  ଅଙ୍ଗ-ଶତଦଳ,

ନୂପୁର-ନିକ୍ୱଣେ ରଚି ସଙ୍ଗୀତ ମଧୁର
ଚାଲିଛନ୍ତି ରାଜପଥେ କମ୍ପାଇ ଅଧର ।
ମା' ହାତେ ସ୍ନେହଭରେ ଦେଇ ଉପହାର
ପ୍ରକୃତିର ଅନୁପମ ସୌନ୍ଦର୍ଯ୍ୟ କାଶ୍ମୀର

ଦିଏ; ଆର୍ଯ୍ୟ-ମଥାମଣି ପବିତ୍ର ଓଁକାର
ପଞ୍ଚନଦ ଘୋଷେ, ଗୁଜରାଟ୍ ଧର୍ମବୀର
ଲମ୍ବାଏ କଣ୍ଠେ; କର୍ଣ୍ଣାଟକ ଖଞ୍ଜେ ଟାଟଙ୍କ,
କେରଳ ବସାଏ ନାସାରେ ମୁକୁତା ବାଙ୍କ,

ପାଣ୍ଡ୍ୟ-ଚୋଳ ବାନ୍ଧନ୍ତି ପଦ୍ମରାଗ ବନ୍ଧନୀ,
ରତ୍ନ ପୁଷ୍ପେ ଗଭ ମଣ୍ଡେ ଆନ୍ଧ୍ର-ସୀମନ୍ତିନୀ,

କଳାବତୀ ଉତ୍କଳ ବାଢ଼େ କଳା ସମ୍ଭାର,
ଉର୍ବର ବଙ୍ଗ ସଜାଏ ଶ୍ୟାମଳ କେଦାର,

ଉପତ୍ୟକା-ଜାତ-ଦ୍ରବ୍ୟ ବିଞ୍ଚେ କାମରୂପ,
ମାଳବ, କୁନ୍ତଳ, ଚେଦୀ ଦ୍ୟନ୍ତି ଯେ'ଝା ଧୂପ ।
ମେଖଳା-ମଧ୍ୟ-ବିନ୍ଧ୍ୟ କରେ ଦିଏ କାଚ,
ସୁଜଳା ଉତ୍ତର ରଚେ ମନୋହର ନାଚ,

ଆର୍ଯ୍ୟାବର୍ତ୍ତ, ଦାକ୍ଷିଣାତ୍ୟ ସେବିକା ଚରଣେ,
ଅନନ୍ତ ମହିମା ଭରତୀ ଗୋ କେ ବଖାଣେ ?

—୫—

ଗ୍ରହିଣୀ କୋଟୀ ସେ୍ନହର ଦୁଲାଲେ ତୋହର
ଭକ୍ତିଭରେ, ସେ୍ନହଭରେ ତୋର ପାଶେ ଠୁଳ ।
ମତାଇଛି ତାଙ୍କୁ ଆଜି ଜାତୀୟ ସ୍ପନ୍ଦନ !
ରାଣୀ ! ଦେବୀ ! ଘେନ ପ୍ରଣତ ଅଭିନନ୍ଦନ !



# ପଥ କାହିଁ ?

କାହିଁ ପଥ ? ଦଶଦିଗ ଘନ ଅନ୍ଧକାର,
ବିପଦସଙ୍କୁଳ ଭୀମ ଦୁର୍ଗମ କାନ୍ତାର ।

ସାଙ୍ଗହୀନ ପଥିକ ମୁଁ ଚକିତ, ସ୍ତମ୍ଭିତ,
ବାଟ କାଟି ଯିବାରେ ଦୁର୍ବଳ, ଅସମର୍ଥ ।

ଖୋଜି ବୁଲେ ଉପଦେଶ, ମହାଜନ ପନ୍ଥା,
ମହାଜନ କିନ୍ତୁ ଦିଏ କଥା-ଜାଲ ଫନ୍ଦା

କା' କଥା ଶୁଣିବି ? ଦେଖେ, ଜଣକେ ରଥୀଏ,
ଲୁଚି ଲୁଚି ନେତା ପଣ ନେବାକୁ ସଭିଏଁ ।

କର୍ମୀ ! ସେବକ । ଦେଶୋଦ୍ଧାରକ ! ତୁଚ୍ଛା କଥା,
ଅଭିମାନ, ଖ୍ୟାତି ଆଶା ଘାରିଦିଏ ମଥା

ସମସ୍ତେ ତ କୁହାଳିଆ, ଶୁଣିବାକୁ କିଏ ?
ସମସ୍ତେ ତ ଆଗୁସାର ପଛେ କିଏ ରହେ ?

ଯାହା କଥା ତା'କୁ ପୁଣି ଅତି ଗଉରବ ।
ଯାହା ଶିକ୍ଷା ତା'କୁ ପୁଣି ଅତି ବଇଭବ ।

ଶିକ୍ଷାର୍ଥୀକୁ କିନ୍ତୁ ଅହୋରୂପ ମହୋଧ୍ୱନି,
ମତବାଦେ ଭରକ୍ରାନ୍ତ ଆଜିଏ ମେଦିନୀ ।

—୨—

କହେ ବୈଜ୍ଞାନିକ—ଭଲ, ବିଜ୍ଞାନର ଯୁଗ,
ବିଶ୍ଳେଷଣ, ଯନ୍ତ୍ର-ପରୀକ୍ଷାରେ ଲଗ, ଲଗ,

ସାମ୍ୟବାଦୀ ବୋଲେ—ଧ୍ୱଂସ ! କର ଏକାକାର !
ଧନୀ, ଅତ୍ୟାଚାରୀ ରକ୍ତ ନିଗାଡ଼ ପ୍ରଚୁର !

ବ୍ୟବସାୟୀ ଡ଼ାକଦିଏ—ଶିଳ୍ପ କାରଖାନା
ହଜାରେ ହଜାରେ ତୋଳ, ଦେଶ ହେଉ ସୁନା ।

କାନେ ଫୁଙ୍କେ ଅହିଂସକ—ସତ୍ୟାଗ୍ରହ ! ପ୍ରେମ !
ଭିତିରି ଠାରଇ ଆଖି-ଲଗା ଧୂମ୍ ଧାମ !

ଧମକାଇ ତା'କୁ କରେ ଚିତ୍କାର ବିପ୍ଳବୀ—
ନୂଆ ସୃଷ୍ଟି ! ପୁରୁଣାକୁ ଦୂରେ ଦିଏ ଫିଙ୍ଗି !

ସମଜାଏ ଡ଼ରିମରି ପ୍ରାଚୀନ—ହେ ବାବା !
ପୁରୁଣା-ପୁନାଦ ଉପରେ ତୋଳ ହେ ଢ଼ାବା ।

ତା'ର ପକ୍ଷ ଧରି ଐତିହାସିକ ସ୍ୱରରେ—
ଇତିହାସ ଫେରେଟି ବାରମ୍ବାର ଧରରେ ।

ଉପେକ୍ଷା କରି ତାହାରେ କହେ ମାନବିକ—
ମନୁଷ୍ୟତା-ମାନଦଣ୍ଡେ ମାପ ପୃଥ୍ୱୀଯାକ !

ସ୍ମିତହାସେ ପ୍ରାକୃତିକ କଂପାଇ ଆନନ
ବୋଲେ—ଆଜି ପ୍ରକୃତିକ ଲଘିଂଯିବ ଜନ ?

ମୁକ୍ତବାଦୀ କରେ ବାଦ—ପ୍ରକୃତିକି ଚିରି
ମଣିଷ ବନ୍ଧନ କରେ ନିଜ ଭଗ୍ୟ ଡୋରି ।

ଭଗ୍ୟବାଦୀ କରେ ନାହିଁ ନଗ୍ନଇ ଭୁଲତା—
ନର-ଗାଈ, ଦଇବ-ଦଉଡ଼ି, ଜାଣିନି ତା' ?

ନୀରବ ଲୋତକ ଢାଳି କହେ ବିଷାଦିକ—
ସବୁ ଦୁଃଖ, ହାହାକାର, ଯନ୍ତ୍ରଣାଦାୟକ ।

ମାନେ ନାହିଁ ଆଶାବାଦୀ, ଉର୍ଦ୍ଧ୍ୱେ ଟେକି ବାହା,
କରତାଳି ଦେଇ ବୋଲେ—ବାହାବା, ବାହାବା !

ଦୂରୁ ବୀଣା ବାଇ କବି ସଙ୍ଗୀତ-ତରଙ୍ଗେ
ବୁହାଏ ରସର ଢେଉ କାବ୍ୟ-ନବରଙ୍ଗେ ।

ପସର ବାଢ଼େ ତାର୍କିକ—ଚଣା ଫୁଟା କଥା—
ଧୂମ-ବହ୍ନି, କରଯୁକ୍ତି ନ୍ୟାୟ ତତ୍ତ୍ୱ ଦାତା ।

ଭକ୍ତଯାଏ ମୁହଁମୋଡ଼ି—ଭବୁକ ନିକଟ,
ତର୍କେ ବହୁଦୂର, ଭୁଲୁଛ କି ସିଦ୍ଧ ବାଟ ?

କଥାରେ ଅଛଇ କିସ ? କାର୍ଯ୍ୟ ? —ରଡ଼େ କର୍ମୀ,
ରଡ଼ୁ ରଡ଼ୁ କର୍ମ ତା'ର ଶୂନ୍ୟେ ଯାଏ ଭ୍ରମି ।

କର୍ମର ମମତା ଦେବ ବାନ୍ଧି ଆଦର୍ଶକ
କହେ—ଉଚ୍ଚ ଲକ୍ଷ ଗଲେ ଭୁଲି ହେ ପଥିକ ।

ବସ୍ତୁବାଦୀ ଚେଇଁ ଉଠେ—ଆଦର୍ଶ ସ୍ୱପନ,
ନିପଟ ବାସ୍ତବ ପ୍ରତି ଦେଉ ନାହିଁ ମନ ?

ବ୍ୟକ୍ତିବାଦୀ ବୋଲେ—ସବୁଥିବେ କିସ ହେବ ?
ସୁଧା ପାତ୍ରେ ଦୁଷ୍ଟ-ବ୍ୟକ୍ତିତ୍ୱ ତ ବିଷ ହେବ ?

ସାମାଜିକ ନିଷେଧଇ—ସଙ୍ଗଠନ କଲ
ବ୍ୟକ୍ତି ଯାହା ପଛେ ହେଉ, ବଳିଷ୍ଠ ତ ମେଳ ।

ରାଜନୀତିକ ପୁଛଇ—ଗୃହୁଁ ନା ଜଗତେ
ମୋର ନୀତି-ଖେଳ ଆଜି ଗ୍ରାସିଛି କେମନ୍ତେ ?

ପଛୁ ଡାକେ ଅର୍ଥବେତ୍ତା-ତୋ ନୀତି ପୋଇଲି;
ମୋ ଗଣୀ ନଥିଲେ କ୍ଷଣେ ଯିବ ସେ ଦୋହଲି ।

ନିଗଡ଼ ଗଣ୍ଡି ଛିଣ୍ଡାଇ ଦୁର୍ଦ୍ଧର୍ଷ ଗୃର୍ବାକୀ
ବୋଲେ-ମୁଣ୍ଡବଥା କାହିଁ ? ମୁଣ୍ଡ ଅଛି ଟିକି ?

ଆରେ ! ଖାଅପିଅ ! କରଫୁର୍ତ୍ତି ! ଯାଉ ଦିନ !
ପୋଡ଼ୁ ତୁମ ଗ୍ରନ୍ଥ-କୋଟୀ ପ୍ରାକ୍ତନ ବିଧାନ !

ହାୟ !—ଦୀର୍ଘଶ୍ୱାସ ଛାଡ଼ି ବୋଲେ ଆଧ୍ୟାତ୍ମିକ—
ମନୁଷ୍ୟ-ପଶୁରେ ତେବେ ଆଉକି ଫରକ ?

—୩—

ଏହିଭଳି - ବୋଲବୋଲି ପେଲପେଲି ମଧ୍ୟେ
ଠେଲଠେଲି, ପିଟାପିଟି, ବାଦ ବିସମ୍ବାଦେ ।

ବ୍ୟସ୍ତ, ବ୍ୟଥିତ ମୁଁ; ଆଶ୍ରା କାହିଁ ? କେ ବା ଗୁରୁ ?
ପଥ କାହିଁ ? ଉଠେ ପ୍ରଶ୍ନ ହୃଦ ଅଭ୍ୟନ୍ତରୁ !

—୪—

ବୋଲୁଚି ବା କିଏ—ଏତେ ଭବ—ଧାର ଦୋଳେ
ନୋହୁଁକି ଉନ୍ନତ ଆମେ ନଗର ଗହଳେ

ହୋଇପାରେ; ଆମେ ସଭ୍ୟ ! ବିଜ୍ଞାନୀ ! ସାଧକ
ଆମ ଆହରଣ ମଣି ଦିଶେ ଝକମକ ।

ଆମ ସଭ୍ୟତା ପ୍ରତୀକ ? ପରମାଣୁ ବୋମା
ପ୍ରଗତି ? ତୃତୀୟ ମହା ସମର ଯୋଜନା !

ଶିକ୍ଷା ? ପାଶ୍ଚାତ୍ୟ ସଭ୍ୟତା ଚର୍ବିତ ଚର୍ବଣ !
ଦୀକ୍ଷା ? ନିଜେ ଭୁଲି ପର ଧର୍ମ ଆଚରଣ !

ସ୍ୱାସ୍ଥ୍ୟ ? ବାଇଶି ବର୍ଷର ଜୀବନ୍ତ ମରଣ !
ସହଯୋଗ ? ଅନ୍ତର୍ଜାତି—କୂଟ-ଆବରଣ !

ଚରିତ୍ର ? ପିଠି ଆଉଁସି ପରସ୍ୱାପହରଣ !
ବିଜ୍ଞାନ ? କୋଟି କୋଟିର ମରଣ ଭିଆଣ ।

ସାହିତ୍ୟ ? ଅସଂଯତ କାମଚେଷ୍ଟା ପ୍ରଳାପ !
ମୈତ୍ରୀ ? ବାହାରେ, ଭିତରେ ହିଂସା ଦପଦପ

କେତେ ବଖାଣିବି ? ଲେଖିଲେଖି ଦିନ ଗତି
ଶେଷ ହେବନାହିଁ ବର୍ଷ ବର୍ଷ ଗଲେ ବିତି ।

—୪—

ପଥକାହିଁ ? ଅନ୍ଧକାରେ ଜଳାଇବ ବତି
କେହୁ ? ଦେଖାଇବ ବାଟ ଦୂର କରି ଭୀତି ?

ଆଲୋକ-ସନ୍ଧାନୀ ମୁଁ ବିନୀତ ଜିଜ୍ଞାସୁ
ପଥ ଖୋଜି ବୁଲେ; କେ ଉଦ୍ଧାରିବ ଏ ପ୍ରାଶ୍ନୁ ?



# ଇତିହାସ ଉପରେ ଅର୍ଥନୀତିର ପ୍ରଭାବ

ଇତିହାସ ଉପରେ ଅର୍ଥନୀତିର ପ୍ରଭାବ ଖୁବ୍ ବେଶୀ । ଐତିହାସିକ ଘଟଣାର ଅନେକ କାରଣ ଥାଇପାରେ । କୌଣସି ପ୍ରଚ୍ଛନ୍ନ ଶକ୍ତି, ମହାଜନ, ଜାତୀୟତା, ଧର୍ମ ବା ଜଳବାୟୁର ପ୍ରଭାବରେ କେତେକ ଐତିହାସିକ ଘଟଣା ଘଟିଥାଏ । କିନ୍ତୁ ଅର୍ଥନୀତିର ପ୍ରଭାବ ତୁଳନାରେ ଏହି ସବୁ କିଛି ନୁହେ । ଅର୍ଥନୀତି ଇତିହାସର ଭିତ୍ତି । ଇତିହାସର ପ୍ରଧାନ ବିଷୟ ମାନବ ଜୀବନ-ପ୍ରସୂତ ଭାବ, ବିଶ୍ୱାସ ଓ ଅନୁଷ୍ଠାନର ବିଶଦ ବର୍ଣ୍ଣନା । ଏହି ଭାବ, ବିଶ୍ୱାସ ଓ ଅନୁଷ୍ଠାନ ସମ୍ପତ୍ତିର ଉତ୍ପାଦନ, ବଣ୍ଟନ ଓ ଆଦାନପ୍ରଦାନ (production, distribution and exchange) ଉପରେ ନିର୍ଭର କରେ । କୌଣସି ସମାଜର ସମ୍ପତ୍ତି ଉତ୍ପାଦନ ଓ ଅନୁଭୋଗ କରିବା ପ୍ରଣାଳୀ ସେହି ସମାଜକୁ ବିଭିନ୍ନ ଶ୍ରେଣୀରେ (classes) ବିଭକ୍ତ କରିଥାଏ । ସ୍ୱାଧୀନତା, ସମତା (equality), ନ୍ୟାୟ, ସତ୍ୟ ଓ ଏହିଭଳି ସବୁ ଐତିହାସିକ ଶବ୍ଦର ସୂକ୍ଷ୍ମ ଓ ସ୍ଥୂଳ ଅର୍ଥ ସମ୍ପତ୍ତି ଆଦାନପ୍ରଦାନର ଯୋଜନା ଉପରେ ନିର୍ଭର କରେ । ସ୍ଥୂଳତଃ ଇତିହାସ କୌଣସି ଦେଶ ବା ଜାତିର ଆର୍ଥିକ ବିକାଶର କାହାଣୀ ମାତ୍ର । ଆର୍ଥିକ ଅଭାବ ପୂରଣ ଚେଷ୍ଟା ଫଳରେ କଳା, ବିଜ୍ଞାନ, ଧର୍ମ ଓ ବ୍ୟବହାରର ମହତ୍ ଆଦର୍ଶ ବିକଶିତ ଓ ଉପଲବ୍ଧ ହୁଏ । ରାଜନୈତିକ ଇତିହାସ ଓ ଶାସନ ତନ୍ତ୍ର ଅର୍ଥନୀତି ସୂତ୍ର ନ ଜାଣିଲେ ବୁଝିହୁଏ ନାହିଁ । ବିଶେଷତଃ ଆଧୁନିକ ଇତିହାସ ପୂର୍ଣ୍ଣମାତ୍ରାରେ ଅର୍ଥନୈତିକ (Economical) ବର୍ତ୍ତମାନ ଯୁଗର ପ୍ରକାଣ୍ଡ କଳ କାରଖାନା ଓ ବ୍ୟବସାୟ ମନୁଷ୍ୟର ସମସ୍ତ ଶକ୍ତି ଓ ଆଦର୍ଶକୁ ଅର୍ଥନୀତି ଛାଞ୍ଚରେ ଗଢୁଅଛି ।

ଆର୍ଥିକ ଅଭାବ ସମସ୍ତ ସାମାଜିକ କ୍ରିୟାକଳାପର ମୂଳ ବୀଜ । ଆର୍ଥିକ ଅଭାବ ମନୁଷ୍ୟକୁ ଯୁଦ୍ଧରେ ମତାଏ । ଜନସଂଖ୍ୟା ବୃଦ୍ଧି ଏବଂ ତଜ୍ଜନିତ ଖାଦ୍ୟ ଅଭାବ ଯୁଦ୍ଧର ମୂଳ କାରଣ । କୌଣସି ସମାଜ ଯେତିକି ଧନୀ ହୁଏ ସେହି ପରିମାଣରେ ତାହାକୁ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ ହୁଏ । କାରଣ ଧନ କଳହ ଓ ଆତ୍ମରକ୍ଷାର ସୂତ୍ରପାତ କରେ । ସଭ୍ୟତା ଅର୍ଥନୀତି ପ୍ରସୂତ । ଆଦିମ ଯୁଗର ମନୁଷ୍ୟ ଅସଭ୍ୟ ବୋଲି ବିବେଚିତ ହୁଏ । କିନ୍ତୁ ମନୁଷ୍ୟ ଭୂମିକର୍ଷଣ ଓ ଫସଲ ଆଦାୟ କରି ଶିଖି କର୍ମର ମହତ୍ତ୍ୱ ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ସଭ୍ୟତାର କ୍ରମବିକାଶ ଆରମ୍ଭ ହେଲା ।

ପ୍ରତ୍ୟେକ ଦେଶର ଇତିହାସ ଅର୍ଥନୀତି ଦ୍ୱାରା ପ୍ରଭାବାନ୍ୱିତ । ଶକ୍ତିଶାଳୀ ଗ୍ରୀକ୍ ଜାତି ପ୍ରଭୁ ଓ ଦାସର (citizens and slaves) ବିପକ୍ଷତା ହେତୁ ଦୁର୍ବଳ ହୋଇଥିଲା । ପ୍ରବଳ ପରାକ୍ରାନ୍ତ ରୋମ ଜାତିର ଗୌରବ-ରବି ସେହି ଅର୍ଥନୈତିକ କାରଣରୁ ଅସ୍ତମିତ ହୋଇଥିଲା ।

ପାର୍ଲିଆମେଣ୍ଟ ବିଲାତର ପ୍ରଧାନ ଐତିହାସିକ ଅନୁଷ୍ଠାନ । ଏହି ପାର୍ଲିଆମେଣ୍ଟ ଅର୍ଥନୀତର ପ୍ରଭାବରେ ଗଠିତ ହୋଇଅଛି । ଷ୍ଟୁଆର୍ଟ ଯୁଗରେ (Stuart period) ଅଧିକାଂଶ ବିଲାତବାସୀ ବ୍ୟବସାୟ କରି ସମ୍ପତ୍ତିବାନ୍ ହେଲେ । ଦେଶରେ ଶାନ୍ତି ରହିଲା । ଏଣୁ ବିଲାତବାସୀ ବାଣିଜ୍ୟର ଉତ୍ତରୋତ୍ତର ଉନ୍ନତି କାମନା କଲେ । କିନ୍ତୁ ସେହି ଯୁଗର ରାଜାମାନେ ତାହା କରାଇ ଦେଲେ ନାହିଁ । ଏଣୁ ପ୍ରଜାଗଣ ଜଣେ ରାଜାଙ୍କ ହାତରେ ନିରଙ୍କୁଶ କ୍ଷମତା ଦେବାକୁ ମଙ୍ଗିଲେ ନାହିଁ । କର ଧାର୍ଯ୍ୟ କରିବା କୃଷି ବାଣିଜ୍ୟ ଶିଳ୍ପ ଇତ୍ୟାଦିର ଉନ୍ନତି ପାଇଁ ପ୍ରଣାଳୀ ଗଠନ କରିବା, ସୈନ୍ୟ ଦଳର ନିଯୁକ୍ତି ଓ ଗଠନ କରିବା, ଲୋକ ସାଧାରଣଙ୍କ ଧନ (public finance) ବ୍ୟବହାର ପାଇଁ ସୁବନ୍ଦୋବସ୍ତ କରିବା ଇତ୍ୟାଦି କାର୍ଯ୍ୟରେ ସାଧାରଣ ଲୋକ (Commons) ଅଧିକାର ଚଳାଇବାକୁ ସେମାନେ ଧରି ବସିଲେ । ତାହାରି ଫଳରେ କେତେ ରକ୍ତପାତ ହେଲା । ପ୍ରଥମ ଚାର୍ଲସଙ୍କ ( Charles I ) ମୁଣ୍ଡ ଛିଡିଥିଲା । ଦ୍ୱିତୀୟ ଜେମ୍ସଙ୍କ ( James II ) ଆସନ ଟଳିଗଲା । ସର୍ବଶେଷରେ ପାର୍ଲିଆମେଣ୍ଟ ରାଜଗାଦି ଉପରେ ଅଧିକାର ଚଳାଇବାକୁ ସମର୍ଥ ହେଲା ।

ପାର୍ଲିଆମେଣ୍ଟର କାର୍ଯ୍ୟକ୍ରମ ଆଲୋଚନା କଲେ ମଧ୍ୟ ଆମ୍ଭେମାନେ ଅର୍ଥନୀତିର ପ୍ରଭାବ ସ୍ପଷ୍ଟ ଦେଖିପାରୁ । ପ୍ରଥମ ରିଫାର୍ମ ଆକ୍ଟ ଦ୍ୱାରା (First Reform Act) କୃଷକର କ୍ଷମତା ବଣିକ ହାତକୁ ଆସିବା ସଙ୍ଗେ ସଙ୍ଗେ ବାଣିଜ୍ୟର ଉନ୍ନତି ନିମନ୍ତେ କାରଖାନା ଆଇନ (Factory Acts) ନେଭିଗେସନ୍ ଆକ୍ଟ (Navigation Act) ଇତ୍ୟାଦି ଅନେକ ଆଇନ ଜାରି ହୋଇଥିଲା । ଶତ ଶତ ବର୍ଷ ମଧ୍ୟରେ ହୋଇଥିବା ପାର୍ଲିଆମେଣ୍ଟ ସଭ୍ୟଙ୍କର ବ୍ୟବସାୟ ପ୍ରତି ଦୃଷ୍ଟି ଦେଲେ ରାଜନୈତିକ political କ୍ଷେତ୍ରରେ ଅର୍ଥନୀତିର ପ୍ରଭାବ ଜଣାଯାଏ । କୃଷକ, ବଣିକ, ରେଲୱେ ଡ଼ାଇରେକ୍ଟର (Railway Director , ଲୁହା ବ୍ୟବସାୟୀ ଓ ବ୍ୟାଙ୍କ୍ ବ୍ୟବସାୟୀ କ୍ରମଶଃ ପାର୍ଲିଆମେଣ୍ଟରେ କ୍ଷମତା ବଜାୟ ରଖିଥିଲେ । ବର୍ତ୍ତମାନ ଶ୍ରମିକ ସେହି ଆସନ ମାଡି ବସିଅଛି । ଶ୍ରମ (Labour) ଅର୍ଥନୀତିର ଗୋଟିଏ ପ୍ରଧାନ ଅଙ୍ଗ । ମଜୁରିଆ ରାମସେ ମେକ୍ଡୋନାଲ୍ଡ଼ (Mr Ramsay Macdonald) ବିଲାତର ପ୍ରଧାନମନ୍ତ୍ରୀ ହେବା ଦ୍ୱାରା ଅର୍ଥନୀତିର ପ୍ରଭାବ ବିଶେଷ ଭାବରେ ପ୍ରତିପାଦିତ ହେଉଅଛି ।

ଆମେରିକା ଅର୍ଥନୀତିର ବିଚକ୍ଷଣ ଶିଷ୍ୟ । ଯେତେ ଦିନ ଯାଏ ଆମେରିକା ମଧ୍ୟରେ ଏକ ଦିଗରେ ଫରାସୀ ଓ ଅନ୍ୟ ଦିଗରେ ସ୍ପେନିସ୍ ଆତଙ୍କ ଥିଲା ସେତେ ଦିନ ଯାଏ ସେ ବିଲାତର ବାଣିଜ୍ୟ ପ୍ରଣାଳୀରେ କୌଣସି ଆପତ୍ତି ଉଠାଇ ନଥିଲା । କିନ୍ତୁ ସେ ଭୟ ଘୁଞ୍ଚିଯିବା କ୍ଷଣି ସେଥିରେ ଆପତ୍ତି ଉଠିଲା । ଯାହାର ଫଳରେ ଆମେରିକା ସ୍ୱାଧୀନ ହେଲା । ବର୍ତ୍ତମାନ ଆମେରିକା ପ୍ରଭୂତ ସମ୍ପତ୍ତି ବଳରେ ପୃଥିବୀର ସମସ୍ତ ଜାତିକୁ ଦବାଇ ରଖିଅଛି ।

ଉତ୍ତର ଓ ଦକ୍ଷିଣ କାନାଡା Canada) ମଧ୍ୟରେ ଜାତି ଓ ଧର୍ମଗତ ପାର୍ଥକ୍ୟ ଥିଲେ ସୁଦ୍ଧା କାନାଡ଼ିଏନ୍-ପେସିଫିକ୍-ରେଲଓୟେ (Canadian Pacific Railway) ନିର୍ମାଣ ସେମାନଙ୍କୁ ଏକାଠି କରିଅଛି । ସେହିପରି ରେଲଓୟେ ନିର୍ମାତା ଓ ବହିର୍ଦେଶ ବାଣିଜ୍ୟ (Foreign Commerce ପ୍ରଣାଳୀ ଅଷ୍ଟ୍ରେଲିଆର ଛଅଟି ବିଭିନ୍ନ ପ୍ରଦେଶକୁ ଗୋଟିଏ କାମନ-ଓ୍ୱେଲ୍ଥ (Common wealth) ଏବଂ ଜର୍ମାନୀର ଅସଂଖ୍ୟ ପ୍ରଦେଶକୁ ଗୋଟିଏ ଫେଡ଼େରେସନ୍ (Federation) ରେ ପରିଣତ କରିଅଛି । ବିଲାତ ବଣିକଙ୍କର ସ୍ୱାର୍ଥରକ୍ଷା ସକାଶେ ବ୍ରିଟିଶ ଇଜିପ୍ଟ ଓ ଗୁଇନାରେ ବସତି ସ୍ଥାପନ କରିଅଛି । ବିଲାତର କାରଖାନାକୁ ଉତ୍ପନ୍ନ ଜିନଷ (Raw materials) ଯୋଗାଇବା ସକାଶେ ଆଫ୍ରିକାରେ ବସତି ସ୍ଥାପନ କରିଅଛି । ଆଫ୍ରିକାବାସୀ ଗୋରାର ବ୍ୟବସାୟ ଚଳାଇବା ସକାଶେ ମଜୁରି ଆବଶ୍ୟକ । ଏହି ମଜୁରି ପ୍ରାପ୍ତିର (Labour supply) ନିଶ୍ଚୟତା ରଖିବା ପାଇଁ ଆଫ୍ରିକାର 'କାଲା ଆଦ୍‌ମି' ଏକ ପ୍ରକାର କ୍ରୀତଦାସ ରୂପେ ବ୍ୟବହୃତ ହୁଏ । ତେଣୁ ଆମ୍ଭେମାନେ ଆଜି ଆଫ୍ରିକାରେ ଏତେ ଦୂର କଳାଗୋରା ପାର୍ଥକ୍ୟ ଦେଖୁ । ସେହି କାରଣରୁ ମଧ୍ୟ ଫିଲିପାଇନ୍‌ସ୍ (Phillipines) ଓ ଅନ୍ୟାନ୍ୟ ଦ୍ୱୀପପୁଞ୍ଜ ଆମେରିକା ଦ୍ୱାରା ଅଧିକୃତ ।

ଋଷିଆରେ ବର୍ତ୍ତମାନ ଯେଉଁ ସାମ୍ୟବାଦର (Bolshevism) ପ୍ରବଳ ଭିତ ବୋହି ଯାଉଅଛି; ଇଟାଲିରେ ଯେଉଁ ଫାସିଷ୍ଟ ଆନ୍ଦୋଳନର (Fascist Movement) ତରଙ୍ଗ ଖେଳି ଯାଉଅଛି, ସେହି ସବୁ ଆର୍ଥିକ ଅଭାବର ପରିଣାମ । ସେହି ସେହି ଦେଶରେ ଲୋକେ ଖାଇବାକୁ ମୁଠେ ନ ପାଇ, ପିନ୍ଧିବାକୁ ଖଣ୍ଡେ ନ ପାଇ, ଉଦ୍‌ଭ୍ରାନ୍ତ ହୋଇ ଏହି ସବୁ ଆନ୍ଦୋଳନର ସୂତ୍ରପାତ କରିଅଛନ୍ତି ।

ଭାରତ ଇତିହାସରେ ମଧ୍ୟ ଆମ୍ଭେମାନେ ଯଥେଷ୍ଟ ପରିମାଣରେ ଅର୍ଥନୀତିର ଆଭାସ ପାଉ । ବୈଦିକ ଯୁଗ ଶେଷ ଏବଂ ପୌରାଣିକ ଯୁଗ ଆରମ୍ଭରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ନାମାଙ୍କିତ ବର୍ଣ୍ଣ ଶ୍ରମର ପ୍ରତିଷ୍ଠା ଅର୍ଥନୀତି ସମ୍ବଳିତ । ଜାତିର

ଏହିଭଳି ଶ୍ରମ-ବିଭାଗ (Division of labour) ଦ୍ୱାରା ସମୟ ଓ ଉତ୍ପାଦନ ଶକ୍ତିର ପ୍ରକୃତ ବ୍ୟବହାର ହେଉଥିଲା । ଧନ ଲୋଲୁପତା ମୋଗଲ ଆକ୍ରମଣ ଓ ସାମ୍ରାଜ୍ୟ ପ୍ରତିଷ୍ଠାନର ପ୍ରଧାନ କାରଣ । ଶିବାଜୀ ଶୃଙ୍ଖଳାବଦ୍ଧ ଭୂ-କର ପ୍ରଣାଳୀ (Land Revenue system) ସାହାଯ୍ୟରେ ବିଶେଷ କ୍ଷମତା ଲାଭ କରିଥିଲେ । ଇଷ୍ଟ୍ ଇଣ୍ଡିଆ କମ୍ପାନୀ ବାଣିଜ୍ୟ ଚଳାଇବା ସକାଶେ ଭାରତକୁ ଆସିଥିଲେ ଏବଂ ତାହାରି ଫଳରେ ଭାରତ ବ୍ରିଟିଶ ଅଧୀନ ହେଲା । ବର୍ତ୍ତମାନ ବ୍ରିଟିଶ ରାଜତ୍ୱ ଯେ କେବଳ ଅର୍ଥନୀତି ଉପରେ ଦୃଢ଼ୀଭୂତ ହୋଇଅଛି ଏହା କାହାରି କି ଅଜଣା ନାହିଁ । ଭାରତରେ ବ୍ରିଟିଶ ଅଧିକାର ଆଂଶିକ ରାଜନୈତିକ; କିନ୍ତୁ ପୂର୍ଣ୍ଣମାତ୍ରାରେ ଅର୍ଥନୈତିକ, ରାଜନୈତିକ ଅଧିକାର ଅପେକ୍ଷା ଅର୍ଥନୈତିକ ଅଧିକାର ଆହୁରି ଭୀଷଣ ଓ ମାରାତ୍ମକ । ପ୍ରଥମଟି ମନୁଷ୍ୟର ସ୍ୱାଧୀନତା ଛଡ଼ାଇ ନିଏ, କିନ୍ତୁ ଅପରଟି ପେଟ ମାରି ଦିଏ । ରାଜନୈତିକ ଅଧିକାର ଖଣ୍ଡା ଟେକି ଗୋଟାଏ ଚୋଟରେ ମୁଣ୍ଡ ଛିଣ୍ଡାଇ ଦେବା ଭଳି; କିନ୍ତୁ ଅର୍ଥନୈତିକ ଅଧିକାର ପଦେ ପଦେ ଜୀବନ୍ତ ମରଣ ସଦୃଶ । ପ୍ରତ୍ୟେକ ବର୍ଷ ଭାରତରୁ ବିଶେଷ ପରିମାଣରେ ଧାନ, ଗହମ, କପା ଇତ୍ୟାଦି ଅତି ଆବଶ୍ୟକ ଜିନିଷ ବିଲାତକୁ ରପ୍ତାନୀ ହୁଏ ଏବଂ ବିଦେଶରୁ ସେହି ପଇସାରେ ରଙ୍ଗରଙ୍ଗିଆ ଲୁଗା, ଯୋତା, ଟୋପି, ଝରକଲମ, ସାବୁନ, ବାସନା ତେଲ ଇତ୍ୟାଦି କେତେଗୁଡ଼ିଏ ସାଧାରଣ ଅନାବଶ୍ୟକ ଜିନିଷ ଆମଦାନୀ ହୁଏ । ଗରିବ ରୟତ ଠାରୁ ମୁଦ୍ରାକର (stamp duty), ନିଶା-ବିଭାଗ ଆୟ (Excise Revenue) ଇତ୍ୟାଦି ଛଳନାରେ ଅଜସ୍ର ଅର୍ଥ ଆଦାୟ କରାଯାଇ ବିଦେଶକୁ ମୋଟା ଦରମା, ଭତିଆ ଓ ପେନ୍‌ସନ୍ ରୂପେ ପଠାଯାଏ । ଏହିସବୁ କାରଣରୁ ସମୃଦ୍ଧିଶାଳୀ ଭାରତ ଅନ୍ତଃସାରଶୂନ୍ୟ ହୋଇଯାଉଅଛି । ଅସହଯୋଗ ଆନ୍ଦୋଳନ ଏହି ଅବୈଧ, କ୍ରୂର, ସ୍ୱାର୍ଥପର ଅର୍ଥନୈତିକ ଅଧିକାରର ପ୍ରତିବାଦ ମାତ୍ର ।

ଉତ୍କଳରେ ଅର୍ଥନୀତି ଚର୍ଚ୍ଚାର ଆଦର ବା ଆକାଂକ୍ଷା ନାହିଁ; ତେଣୁ ଆଧୁନିକ ଉତ୍କଳ ଇତିହାସର ଗରିମା ନାହିଁ । ପ୍ରାଚୀନ ସମ୍ପତ୍ତିବାନ୍ ଉତ୍କଳ ଶକ୍ତିଶାଳୀ ଥିଲା; କିନ୍ତୁ ବର୍ତ୍ତମାନ ଉତ୍କଳବାସୀ ଦୀନ ଦରିଦ୍ର । ଉତ୍କଳର ବର୍ତ୍ତମାନ ଦାରିଦ୍ର୍ୟର କାରଣ କଣ ? କି ଉପାୟ ଅବଲମ୍ବନ କଲେ ତାହା ଘୁଞ୍ଚିବ ? ଚିରବନ୍ୟା-ଦୁର୍ଭିକ୍ଷ-ସମସ୍ୟାର କିପରି ସମାଧାନ ହେବ ? ସମ୍ବଲପୁରୀ ଶାଢ଼ୀ, କଟକୀ ଶିଂଘ ଜିନିଷ, ତିଗିରିଆ ମଠା, ବେଲଗୁଣ୍ଠା (ଗଞ୍ଜାମ) ପିତଳ ସାମାନ, ବ୍ରହ୍ମପୁରୀ ପାଟ ଇତ୍ୟାଦି ଅସଂଖ୍ୟ କୁଟୀର ଶିଳ୍ପର କିପରି ଉନ୍ନତି ହେବ । ଗଡ଼ଜାତର ପ୍ରାକୃତିକ ସମ୍ପଦ କିପରି ପ୍ରୟୋଜନରେ ଆସିବ ? ଉତ୍କଳ ଟ୍ୟାନରି, ଆସ୍କା ଚିନି କାରଖାନା ଇତ୍ୟାଦି କେତୋଟି କାରଖାନାର ଅବନତି କିପରି ଅପସାରିତ ହେବ । କଲିକତା ରେଙ୍ଗୁନ ପ୍ରବାସୀ ଓଡ଼ିଆମାନେ କିପରି ସଂଘବଦ୍ଧ

ହୋଇ ବେଶି ଧନ ଅର୍ଜନ କରି ତାହାର ସୁବ୍ୟବହାର କରିବେ । ଏହିସବୁ ଉତ୍କଳର ଜୀବନ ନାଟିକା ସ୍ୱରୂପ ଗୁରୁତର ବିଷୟ ଆମ୍ଭେମାନେ ତିଳେ ଭବି ନ ଥାଉ । ଏହି ସବୁ ସମସ୍ୟା ସମାଧାନରେ ଉତ୍କଳର ପୂର୍ବଗୌରବ ଓ ବିଭବ ଫେରିଆସିବ । ଉତ୍କଳ ଇତିହାସ ପୁଣି ଉଜ୍ଜ୍ୱଳ, ମହତ ଓ ସୁନ୍ଦର ହୋଇଉଠିବ ।

ମୂଳତଃ ଇତିହାସ ମନୁଷ୍ୟର ସର୍ବତୋମୁଖୀ ବିକାଶ ପ୍ରକାଶ କରେ । ମନୁଷ୍ୟର ପ୍ରଥମ ପ୍ରୟୋଜନୀୟ ବସ୍ତୁ ଖାଦ୍ୟ । ଏହି ଖାଦ୍ୟ ସମସ୍ୟା ଅର୍ଥନୀତିର ମୂଳ । ଏହା ପୂରଣ ନ ହେବା ପର୍ଯ୍ୟନ୍ତ ମନୁଷ୍ୟର ଶାରୀରିକ, ମାନସିକ, ସାମାଜିକ, ରାଜନୈତିକ, ନୈତିକ ବା ଯେ କୌଣସି ଉନ୍ନତି ଅସମ୍ଭବ । ତେଣୁ ଅର୍ଥନୀତି ପ୍ରଭାବ ଇତିହାସ ଉପରେ ଖୁବ୍ ବେଶୀ ।

( ସହକାର, ଦଶମ ଭାଗ, ଷଷ୍ଠ ସଂଖ୍ୟା (ଆଶ୍ୱିନ-୧୩୩୭ ସାଲ) ପୃ ୨୪୫-୨୪୭ ଷା ମଧ୍ୟରୁ ସଂଗୃହୀତ । )




Late Kapileswar Das

The late Kapileswar Das (1906-1990)was born at Chingudikhol in Ganjam District, Orissa and passed M.A. in English and Philosophy from Calcutta University.

After receiving his B.Ed degree from Andhra University, he started his career as a teacher and served as a Head Master in different High schools in Orissa and Andhra Pradesh for 25 years He was the first Principal in R.C.M.College, Khallikote, Ganjam. As a writer of repute, he published "**Jeevana Chinta(1952)** a book of thought-provoking essays,on Philosophy, Religion, Culture, History, Economics and Education alongwith poems and criticism. His writing career continued for about 30 years (1930-60) during which he contributed his essays to such internationally renowned journals like *Prabudha Bharat, Vedanta Kasari, Educational Review, Educational India, Dharma Rajya*(Delhi), and also in *Triveni* in which he published on Oriya Literature in English as the first writer to write such essays. His important essays appeared regularly in Oriya periodicals namely *Sahakar, Jhankar, Navaravi, Chaturanga, Satavdi, Vina, Nabina etc.* He edited **Chandrakala** (1968-69) a monthly magazine in which he made a new approach to literature, religion and culture. Kapileswar Das also made his name as the founder of Andhra-Utkal Sanskrit Parishad, Ganjam Sahitya Sammelan, Basu Sahitya Parishad, Biranchinarayan Sahitya Parishad, Jaugada Research institute, Budhagiri Reseasch institute, Astadurga Sahitya Pratisthana, Madras Oriya Sabha, Andhra Pradesh Oriya Association etc. He was influenced by the ideas of great personalities like Dr Radhakrishnan, Dr. H. K. Mahatab, Utkalmani Gopabandhu Dash, Dr Neelakantha Dash, and Pt. Godavarish Misra. In his own way he influenced many young poets, essayists, novelists, critics, editors and organisors and innumerable publications appeared under his able guidance.

His long-writing career was marked by, literary and philosophical contributions to renowned periodicals and journals. He was recognised by various organisations, societies and persons. Orissa Sahitya Academy, Berhampur University, South Orissa cultural conference, Jadumani Sahitya Sansad and Indian P.E.N have honoured him. Now all his writings (essays, translations, book reviews, editorials and poems) have been published in two volumes; **KAPILESWAR RACHANAVALI**, (Part I & Part II), and **REFLECTIONS** contains all his essays in English, edited by Dr. Durga Madhab Nanda, Reader, P.G. Dept.of Oriya, K .K.(Autonomous) College, Berhampur, Orissa, India.

The writings of **Sri Kapileswar Das** show rare insight into life and there is alawys a profound philosophy that colours his vision